# ଶ୍ରୀଜୟଦେବ ଓ ଶ୍ରୀଗୀତଗୋବିନ୍ଦ

ଲେଖକ :—

**ଶ୍ରୀ କେଦାର ନାଥ ମହାପାତ୍ର**, ବି: ଏ: (ଅନର୍ସ), ଡି: ଇଡ୍:

ରାଜ୍ୟ ପ୍ରତ୍ନତତ୍ତ୍ୱ ବିଭାଗର ଅବସର-ପ୍ରାପ୍ତ ଅଧ୍ୟକ୍ଷ ।

ପ୍ରକାଶକ — ଗ୍ରନ୍ଥକର୍ତ୍ତା

୧୯୭୩

( ଓଡ଼ିଶା ସରକାରଙ୍କ ସାଂସ୍କୃତିକ ବ୍ୟାପାର ବିଭାଗରୁ ଗ୍ରନ୍ଥ ପ୍ରକାଶ ପାଇଁ
ପ୍ରାପ୍ତ ଅର୍ଥ ସାହାଯ୍ୟ ଓ ନିଜ ବ୍ୟୟରେ ମୁଦ୍ରିତ )

ପ୍ରଥମ ସଂସ୍କରଣ — ୧୦୦୦ ( ଏକ ହଜାର )

ମୁଦ୍ରାକର :-

**ଶ୍ରୀ ପ୍ରସନ୍ନ କୁମାର ମହାପାତ୍ର**, ବି. ଏ. ( ଅନର୍ସ )

ଶ୍ରୀ ଶାରଦା ପ୍ରେସ

ଭୁବନେଶ୍ୱର - ୨

ମୂଲ୍ୟ: — ବୋର୍ଡ଼ ବନ୍ଧାଇ — **୫୧୪-୦୦**

# ଉତ୍ସର୍ଗ

ସଂସ୍କୃତ-ସାହିତ୍ୟ-ପ୍ରବୀଣ ଶ୍ରୀ ଗୀତଗୋବିନ୍ଦ-ପ୍ରେମୀ

**ଶ୍ରୀଯୁକ୍ତ ବିମଳ କିଶୋର ମିଶ୍ର**, ଆଇ·ଏ·ଏସ୍· ମହାଶୟଙ୍କ

ସାହାଯ୍ୟ, ସହଯୋଗ ଓ ସହାନୁଭୂତି ଯୋଗୁଁ

**"ଶ୍ରୀ ଜୟଦେବ ଓ ଶ୍ରୀ ଗୀତଗୋବିନ୍ଦ"**

ପୁସ୍ତକର ସଙ୍କଳନ ଓ ପ୍ରକାଶ ଘଟିଥିବାରୁ

ଭକ୍ତି ଓ କୃତଜ୍ଞତାର ନିଦର୍ଶନ ସ୍ୱରୂପ

ତାଙ୍କର କର-କମଳରେ

ଏହି କୃତି

ଉତ୍ସର୍ଗ କଲି ।

ଭୁବନେଶ୍ୱର, ବଡ଼ଦାଣ୍ଡ
୨ - ୭ - ୧୯୭୩

ବିନୟାବନତ
**ଶ୍ରୀ କେଦାର ନାଥ ମହାପାତ୍ର**

# ଭୂମିକା

ଆଜକୁ ପ୍ରାୟ ୫୭ ବର୍ଷ ପୂର୍ବେ ୧୯୧୭ ମସିହାରେ ସର୍ବପ୍ରଥମେ ସ୍ୱର୍ଗତଃ ଐତିହାସିକ ଜଗବନ୍ଧୁ ସିଂହ ଉତ୍କଳ ସାହିତ୍ୟ ସମାଜର ଏକ ସାଧାରଣ ଅଧିବେଶନରେ 'ପ୍ରାଚୀନ ଉତ୍କଳର ସଂସ୍କୃତ ସାହିତ୍ୟ ଓ ଜୟଦେବ' ଶୀର୍ଷକ ପ୍ରବନ୍ଧ ପାଠକରି ସେଥିରେ ଶ୍ରୀ ଗୀତଗୋବିନ୍ଦ ପ୍ରଣେତା ଶ୍ରୀ ଜୟଦେବ ପ୍ରାଚୀ ତୀରବର୍ତ୍ତୀ କେନ୍ଦୁଳୀ (କେନ୍ଦୁବିଲ୍ୱ)ରେ ଜନ୍ମ ଗ୍ରହଣ କରିଥିବା ତଥ୍ୟ ପ୍ରକାଶ କରିଥିଲେ । ଏହାର କଚ୍ଛିଦିନ ପରେ ସ୍ୱର୍ଗତଃ ପଣ୍ଡିତ ମୃତ୍ୟୁଞ୍ଜୟ ରଥ ୨୪-୧୧-୧୯୧୭ ତାରିଖ ସାୟଂ କାଳରେ ଉତ୍କଳ ସାହିତ୍ୟ ସମାଜରେ 'ଜୟଦେବ ଜନ୍ମ ବୃତ୍ତାନ୍ତ' ଶୀର୍ଷକ ଏକ ଦୀର୍ଘ ପ୍ରବନ୍ଧ ପାଠକରି ଜଗବନ୍ଧୁ ସିଂହଙ୍କ ମତ ବିରୋଧରେ ଶ୍ରୀ ଜୟଦେବଙ୍କ ବଙ୍ଗୀୟତ୍ୱକୁ ସମର୍ଥନ କରିଥିଲେ । ଜଗବନ୍ଧୁବାବୁଙ୍କ ପ୍ରବନ୍ଧ ୧୯୨୯ରେ ପ୍ରକାଶିତ ତାଙ୍କର 'ପ୍ରାଚୀନ ଉତ୍କଳ' ନାମକ ଇତିହାସ ପୁସ୍ତକରେ ସ୍ଥାନଲାଭ କରିଥିଲା । ପଣ୍ଡିତ ମୃତ୍ୟୁଞ୍ଜୟଙ୍କ ପ୍ରବନ୍ଧ ଉତ୍କଳ ସାହିତ୍ୟ, ୨୧ ଭାଗ, ପୌଷ, ୧୩୨୫ ନବମ ସଂଖ୍ୟାରେ ପ୍ରକାଶିତ ହୋଇଥିଲା । ଏହି ଦୁଇ ଐତିହାସିକଙ୍କ ପ୍ରବନ୍ଧ ଆଲୋଚିତ ଓ ପ୍ରକାଶିତ ହେବା ସମୟରୁ ଶ୍ରୀ ଜୟଦେବଙ୍କ ଜନ୍ମସ୍ଥାନ କେନ୍ଦୁଳୀର ଅବସ୍ଥିତି ନିର୍ଣ୍ଣୟ ସମ୍ପର୍କରେ ଓଡ଼ିଶାରେ ବାଦାନୁବାଦ ଆରମ୍ଭ ହେଲା ।

ଜଗବନ୍ଧୁ ସିଂହଙ୍କ ମତକୁ ପ୍ରମାଣିତ କରିବାପାଇଁ 'ବସନ୍ତକୋକିଳ' ଶ୍ରୀ ଭଗବାନ ପଣ୍ଡା ତାଙ୍କ ଦ୍ୱାରା ସମ୍ପାଦିତ 'ସହକାର' ମାସିକ ପତ୍ରିକାରେ ୧୩୩୬ ସାଲ ବା ୧୯୨୯ ଖ୍ରୀଷ୍ଟାବ୍ଦରେ "ଜୟଦେବ ଓ ଗୀତଗୋବିନ୍ଦ" ଧାରାବାହିକ ଭାବରେ ଅନେକ ଗୁରୁତ୍ୱ ଉପାଦେୟ ପ୍ରବନ୍ଧ ପ୍ରକାଶ କରି ଉତ୍କଳୀୟ ସୁଧୀ ସମାଜରେ ଚହଳ ପକାଇ ଥିଲେ । ଏହାର କେତେ କାଳ ପରେ ପଣ୍ଡା ମହାଶୟଙ୍କ ଦ୍ୱାରା ଲିଖିତ 'ଗୀତଗୋବିନ୍ଦ' ଶୀର୍ଷକ ଅନ୍ୟ ଏକ ପ୍ରବନ୍ଧ ୨୯-୧୧-୧୯୩୪ ତାରିଖରେ ଉତ୍କଳ ସାହିତ୍ୟ ସମାଜରେ ପଠିତ ଓ ଆଲୋଚିତ ହୋଇ ପରେ ସହକାର, ଷୋଡ଼ଶ ଭାଗ, ଦ୍ୱିତୀୟ ସଂଖ୍ୟାରେ (୧୩୪୨) ପ୍ରକାଶିତ ହୋଇଥିଲା ।

ଶ୍ରୀ ଜୟଦେବଙ୍କ ଉତ୍କଳୀୟତ୍ୱ ପ୍ରଚାର ବିଷୟରେ କବିଚନ୍ଦ୍ର ଶ୍ରୀ କାଳୀଚରଣ ପଟ୍ଟନାୟକଙ୍କ ଅବଦାନ ପ୍ରଶଂସନୀୟ । 'ଉତ୍କଳ ସାହିତ୍ୟ ସମାଜ' ଦ୍ୱାରା ୧୯୩୨ରେ ଶ୍ରେଷ୍ଠ ନାଟକ ରୂପେ ପୁରସ୍କୃତ କବିଚନ୍ଦ୍ରଙ୍କ ରଚିତ 'ଜୟଦେବ' ନାଟକ ଉତ୍କଳର ନାନାସ୍ଥାନରେ ଅଭିନୀତ ହୋଇ ଶ୍ରୀ ଗୀତଗୋବିନ୍ଦ ଓ ତଦୀୟ ପ୍ରଣେତା ଶ୍ରୀ ଜୟଦେବଙ୍କ ଲୋକପ୍ରିୟତା ବୃଦ୍ଧି କରିଥିଲା । କବିଚନ୍ଦ୍ର ୧୯୩୩ରେ ଶ୍ରୀଗୀତ-

ଗୋବନ୍ଦର ମୂଳଛନ୍ଦ, ବୃତ୍ତ, ରାଗ, ତାଳ ପ୍ରଭୃତି ଅନୁସରଣ କରି ଯେଉଁ ଆୟାସସାଧ୍ୟ ଉତ୍କୃଷ୍ଟ ପଦ୍ୟାନୁବାଦ କରିଥିଲେ ତାହା ଦୀର୍ଘକାଳ ପରେ ୧୯୬୦ ମସିହାରେ ମୁଦ୍ରିତ ଓ ପ୍ରକାଶିତ ହୋଇଅଛି ।

ଜୟଦେବଙ୍କ ସଂପର୍କୀୟ ଗବେଷଣା ବିଷୟରେ ସ୍ୱର୍ଗତଃ ସଂସ୍କୃତ ଅଧ୍ୟାପକ କରୁଣାକର କରଙ୍କ ନାମ ଉଲ୍ଲେଖଯୋଗ୍ୟ । ସେ ମହାଶୟଙ୍କ ସଂସ୍କୃତରେ ଲିଖିତ 'ପୀୟୂଷଲହରୀ' ନାମକ ଏକାଙ୍କିକାର ମୂଳ ଟୀକା ଓ ଇଂରେଜୀ ଅନୁବାଦ ସହ ଶ୍ରୀ ଜୟଦେବଙ୍କ ଉତ୍କଳୀୟତ୍ୱ ପ୍ରତିପାଦନ ପାଇଁ ଏକ ତଥ୍ୟସମ୍ବଳିତ ଇଂରେଜୀ ପ୍ରବନ୍ଧ ଅଧୁନାଲୁପ୍ତ କଳିଙ୍ଗ ଐତିହାସିକ ଗବେଷଣା ସମିତି ପତ୍ରିକାର ପ୍ରଥମଭାଗ ୪ର୍ଥ ସଂଖ୍ୟାରେ ୧୯୪୭ ମସିହା ମାର୍ଚ୍ଚ ମାସରେ ପ୍ରକାଶିତ ହୋଇଥିଲା ।

ଏହାର କେତେକାଳ ପରେ ୧୯୫୬ ମସିହାରେ ପଣ୍ଡିତ ଶ୍ରୀ ସଦାଶିବ ରଥ ଶର୍ମା ଜୟଦେବଙ୍କ ଜୀବନୀ, ଶ୍ରୀଗୀତଗୋବିନ୍ଦର ମୂଳ ଓ ଧରଣୀଧରଙ୍କ ପଦ୍ୟାନୁବାଦ ସମ୍ବଳିତ 'ଜୟଦେବ ଓ ଗୀତଗୋବିନ୍ଦ' ନାମକ ପୁସ୍ତକ ପ୍ରକାଶ କରିଥିଲେ ।

ଉପରୋକ୍ତ ଗବେଷକମାନଙ୍କ ପରି ମୁଁ ମଧ୍ୟ ରେଭେନ୍‌ସା କଲେଜରେ ଅଧ୍ୟୟନ କରୁଥିବା ସମୟରୁ (୧୯୨୯ – ୧୯୩୩) ଶ୍ରୀ ଜୟଦେବଙ୍କ ଜନ୍ମସ୍ଥାନ ନିର୍ଦ୍ଧାରଣ ଏବଂ ଐତିହାସିକ ଦୃଷ୍ଟିକୋଣରୁ ତତ୍ତ୍ୱକୃତ ଶ୍ରୀଗୀତଗୋବିନ୍ଦର ଆଲୋଚନା କରିବାପାଇଁ ହୃଦୟରେ ଗଭୀର ଅଭିଳାଷ ପୋଷଣ କରିଥିଲି । ଛାତ୍ରାବସ୍ଥାରେ ବାଲିଅନ୍ତା ବାଟେ କୁଶଭଦ୍ରା ନଦୀବନ୍ଧରେ କେନ୍ଦୁଲୀକୁ ଯିବାପାଇଁ ଦୁଇଥର ଉଦ୍ୟମ ବିଫଳ ହୋଇଥିଲା । କେବଳ ବେଣୁପୁରର ମୁଖ୍ୟବ୍ୟକ୍ତି ଶ୍ରୀ ଦାଶରଥି ମହାନ୍ତିଙ୍କ ଠାରୁ କେନ୍ଦୁଳୀର ଧ୍ୱଂସପ୍ରାପ୍ତ ପ୍ରାଚୀନ କୀର୍ତ୍ତି ସମ୍ବନ୍ଧରେ ଶୁଣି ଘରକୁ ମନଦୁଃଖରେ ଫେରିବାକୁ ପଡ଼ିଥିଲା ।

ଉତ୍କଳ ବିଶ୍ୱବିଦ୍ୟାଳୟ ତରଫରୁ ପ୍ରାଚୀ ଉପତ୍ୟକାରେ ଥିବା ପ୍ରାଚୀନ କୀର୍ତ୍ତି ସମୂହ ସମ୍ବନ୍ଧରେ ଅନୁସନ୍ଧାନ କରିବା ପାଇଁ ୧୯୫୫ ମସିହା ମେ ମାସରେ ଇତିହାସ ଅଧ୍ୟାପକ ଡକ୍ଟର ଶ୍ରୀ ନବୀନ କୁମାର ସାହୁ, ଓଡ଼ିଆ ଅଧ୍ୟାପକ ଶ୍ରୀ ଶ୍ରୀଧର ଦାସ ଓ ପ୍ରାଦେଶିକ ସଂଗ୍ରହାଳୟର ସଂରକ୍ଷକ ଭାବରେ ମୋତେ ନିଯୁକ୍ତ କରାଯାଇଥିଲା । ସେ ସମୟରେ କେନ୍ଦୁଳୀ ନିକଟରେ ପ୍ରାଚୀର ଉଭୟ ତଟ ଘନ ବନାଚ୍ଛାଦିତ ଥିବାରୁ ଅଡ଼ସପୁର ଠାରୁ କେନ୍ଦୁଳୀକୁ ଜିପ୍‌ରେ ଯିବା ସମ୍ଭବପର ହେଲାନାହିଁ । ଫଳରେ ଶ୍ରୀ ଜୟଦେବଙ୍କ ଜନ୍ମସ୍ଥାନ ନିର୍ଦ୍ଧାରଣ ଆଶା ଅପୂର୍ଣ୍ଣ ରହିଲା ।

ଓଡ଼ିଶାରେ ସ୍ୱତନ୍ତ୍ର ପ୍ରତ୍ନତତ୍ତ୍ୱ ବିଭାଗ (Archaeological Department)ର ସୃଷ୍ଟି ପରେ ଏହାର ଜନ୍ମଦାତା ସ୍ୱର୍ଗତଃ ପରମାନନ୍ଦ ଆଚାର୍ଯ୍ୟ ଶ୍ରୀ ଜୟଦେବଙ୍କ

ଜନ୍ମସ୍ଥାନ ନିର୍ଣ୍ଣୟ ପାଇଁ ଉଦ୍ୟମ କରିଥିଲେ । ଏହି ଉଦ୍ଦେଶ୍ୟରେ ସେ ପ୍ରସିଦ୍ଧ ଲିପିତତ୍ତ୍ୱବିତ୍ ଡକ୍ଟର ଶ୍ରୀ ଦୀନେଶଚନ୍ଦ୍ର ସରକାର ଓ ମୋତେ ଜିପ୍‌ରେ ସଙ୍ଗରେ ନେଇ ୧୯୫୭ ମସିହା ଜାନୁୟାରି ମାସ ୧୭ ତାରିଖ, ପୌଷ ଶୁକ୍ଳ ତୃତୀୟା ସୋମବାର ଦିନ ଅଠାନ୍ତର ବାଟେ କେନ୍ଦୁଲୀର ନୃସିଂହ ମନ୍ଦିର ନିକଟରେ ପହଞ୍ଚିଲେ । ସେଠାରୁ ଚଣ୍ଡୀ ମନ୍ଦିର ପର୍ଯ୍ୟନ୍ତ ଚାଲିଯିବା ପାଇଁ ନିଜର ଅକ୍ଷମତା ପ୍ରକାଶ କରି ଡକ୍ଟର ସରକାର ନିମାଳୀ ମଠ କଚେରି ଘରେ ବିଶ୍ରାମ ନେଲେ । ତହୁଁ କେନ୍ଦୁଲୀବାସୀ ନିମାଳୀ ମଠର ତହସିଲଦାର ସ୍ୱର୍ଗତଃ ବାମନ ଚରଣ ନାୟକ, ପରମାନନ୍ଦ ବାବୁ ଓ ମୋତେ ସଙ୍ଗରେ ନେଇ ଗୁରିଆଡେ ଜଙ୍ଗଲ ମାଡ଼ିଯାଇଥିବା ପ୍ରାଚୀନ କୀର୍ତ୍ତିଗୁଡ଼ିକର ଧ୍ୱଂସାବଶେଷ, ଭଗ୍ନ ସ୍ତୂପସ୍ତମ୍ଭ, ଲୋପୋନ୍ମୁଖ ଜଳାଶୟାଦି ବୁଲାଇ ଦେଖାଇଥିଲେ । ଚତୁର୍ଦ୍ଦିଗର ଅନୁସନ୍ଧାନ ପରେ ପ୍ରାଚୀ ବନ୍ୟାରୁ ସୁରକ୍ଷିତ ଭଗ୍ନ ଚଣ୍ଡୀମନ୍ଦିରର ଚତୁଃପାର୍ଶ୍ୱବର୍ତ୍ତୀ ଉଚ୍ଚ ଭୂମିରେ ନବମ-ଦଶମ ଶତାବ୍ଦୀଠାରୁ କେନ୍ଦୁବିଲ୍ୱ ଶାସନ ଅବସ୍ଥିତ ଥିବାର ନିର୍ଦ୍ଧାରିତ ହେଲା । ଏହି ସ୍ମରଣୀୟ ପ୍ରାତ୍ନତାତ୍ତ୍ୱିକ ଭୂପରିକ୍ରମା ପରେ ଆମ୍ଭେ ଦୁହେଁ ନବୀନ ଆଶା ଓ ଉତ୍ସାହ ସହକାରେ ଡକ୍ଟର ସରକାରଙ୍କ ସହ ଭୁବନେଶ୍ୱର ଫେରି ଆସିଲୁ ।

ସାଂସ୍କୃତିକ ବ୍ୟାପାର ବିଭାଗର ଗଠନ ପରେ ୧୯୬୪ ମସିହାରେ ସରକାରୀ ଅର୍ଥ ସାହାଯ୍ୟରେ ଚଣ୍ଡୀ ମନ୍ଦିର ଚତୁଃପାର୍ଶ୍ୱବର୍ତ୍ତୀ ଅଞ୍ଚଳର ପରିଷ୍କରଣ କାର୍ଯ୍ୟ ଆରମ୍ଭ କରାଗଲା । ପ୍ରାୟ ଛଅ ଏକର ପରିମିତ ଉଚ୍ଚଭୂମିକୁ ସରକାରଙ୍କ ତରଫରୁ ଦଖଲ କରିବା ପାଇଁ ତତ୍କାଳୀନ ଭୁବନେଶ୍ୱରର ସବ୍‌ଡିଭିଜନାଲ ଅଫିସର ଶ୍ରୀ ରାଜେନ୍ଦ୍ର କୁମାର ସାହୁ ୨୭-୫-୬୪ ତାରିଖ ଦିନ ମୋତେ ଓ ତାଙ୍କ ବିଭାଗୀୟ କର୍ମଚାରୀମାନଙ୍କୁ ନେଇ କେନ୍ଦୁଲୀରେ ଉପସ୍ଥିତ ହେଲେ । ସାରାଦିନ ସରଜମିନରେ ମାପଚୁପ ହୋଇ ନିମାଳୀ ମଠ କଚେରି ଘରେ ଚୁକ୍ତିପତ୍ର ଲେଖାପଢ଼ି ହେଉ ଥିବା ବେଳକୁ ରେଡ଼ିଓରେ ହଠାତ୍ ଭାରତର ପ୍ରଧାନମନ୍ତ୍ରୀ ଜବାହରଲାଲ ନେହେରୁଙ୍କ ମୃତ୍ୟୁ ସମ୍ବାଦ ଘୋଷିତ ହେବାରୁ ଲେଖାପଢ଼ା ଓ ଖାଇବା ପିଇବା ବନ୍ଦକରି ଶୋକ ଉପାସରେ ଗଭୀର ମନ ଦୁଃଖରେ ଭୁବନେଶ୍ୱର ଫେରି ଆସିଲୁ । ଏହା ପରେ ଉକ୍ତ ଜମି ଦଖଲ ସମ୍ପର୍କରେ ନାନାପ୍ରକାର ବାଧାବିଘ୍ନ ଉପସ୍ଥିତ ହେଲେମଧ୍ୟ ରାଜେନ୍ଦ୍ର ବାବୁଙ୍କ ଏକନିଷ୍ଠ ଉଦ୍ୟମ ଫଳରେ ଶେଷରେ ଏହା ସାଂସ୍କୃତିକ ବ୍ୟାପାର ବିଭାଗର ହସ୍ତଗତ ହୋଇଥିଲା । ତତ୍କାଳୀନ ପୁରୀଜିଲ୍ଲା କଲେକ୍ଟର ଶ୍ରୀ ଦେବୀପ୍ରସାଦ ଦାଶ, ଆଇ. ଏ. ଏସ୍. କୁଶଭଦ୍ରା ନଦୀବନ୍ଧରୁ ପ୍ରତାପରୁଦ୍ରପୁର ଶାସନ ବାଟେ କେନ୍ଦୁଲୀକୁ ଏକ ସଡକ ନିର୍ମାଣ କରାଇଦେବାରୁ ଏହି ସ୍ଥାନର ଉନ୍ନତିର ପଥ ସୁଗମ ହେଲା । ଶ୍ରୀ ଜୟଦେବ ପୀଠୋଦ୍ଧାର କାର୍ଯ୍ୟରେ ଏ ଦୁହିଁଙ୍କର ଉଦ୍ୟମ ଓ ଉତ୍ସାହ ଅତ୍ୟନ୍ତ ପ୍ରଶଂସନୀୟ ।

ସାଂସ୍କୃତିକ ବ୍ୟାପାର ବିଭାଗ ତରଫରୁ ୧୯୭୫-୭୬ ମସିହାରେ ମିଳି-ପାଇଥିବା ଟ ୧୯୫୦୦.୦୦ (ଊଣେଇଶି ହଜାର ପାଞ୍ଚଶତ) ଟଙ୍କାରେ ମୋର ତତ୍ତ୍ୱାବଧାନରେ ଦଖଲ କରାଯାଇଥିବା ଛଅ ଏକର ଉଚ୍ଚ ଜାଗା ଗ୍ରିଲପଟେ ତାରବାଡ଼ ଘେରାଇ କରି ତାର ମଧ୍ୟସ୍ଥଳରେ ଜୟଦେବ ସାଂସ୍କୃତିକ କେନ୍ଦ୍ର ପାଇଁ ଏକ ପକ୍କା ଗୃହ ନିର୍ମାଣ କାର୍ଯ୍ୟ ଯଥାଶୀଘ୍ର ସଂପନ୍ନ କରାଯାଇଥିଲା । ୨୩-୪-୧୯୭୭ ତାରିଖ ଅକ୍ଷୟ ତୃତୀୟା ଦିନ ଅନୁଷ୍ଠିତ ଜୟଦେବ ଜୟନ୍ତୀ ଉତ୍ସବ ସମୟରେ ମନ୍ତ୍ରୀ ଶ୍ରୀଯୁକ୍ତ ସତ୍ୟପ୍ରିୟ ମହାନ୍ତିଙ୍କ ଦ୍ୱାରା ବହୁ ଜନସମାଗମ ଓ ବିପୁଳ ଉତ୍ସାହ ମଧ୍ୟରେ ଏହି ସାଂସ୍କୃତିକ କେନ୍ଦ୍ର ଗୃହ ଉଦ୍‌ଘାଟିତ ହୋଇଥିଲା ।

ସାଂସ୍କୃତିକ କେନ୍ଦ୍ର ଗୃହର ପ୍ରତିଷ୍ଠା ପରେ ସରକାରଙ୍କ ଦ୍ୱାରା ସାତ କିସ୍ତିରେ ମଞ୍ଜୁରିପ୍ରାପ୍ତ ଟ ୩୪୦୦୦-୦୦ (ଚଉତିରିଶ ହଜାର)ଟଙ୍କାରେ ଏହା ନିକଟ-ବର୍ତ୍ତୀ ଧ୍ୱଂସସ୍ତୂପରେ ପରିଣତ ଚଣ୍ଡୀମନ୍ଦିରର ପୁନର୍ଗଠନ କାମ ୧୯୭୭ରେ ଆରମ୍ଭ ହୋଇ ୧୯୭୦ ପର୍ଯ୍ୟନ୍ତ ଚାଲିଥିଲା । ମନ୍ଦିର ନିକଟକୁ ଅଭୟପୁର ବାଟେ ପଥର, ଇଟା, ସିମେଣ୍ଟ, ଛଡ଼ ପ୍ରଭୃତି ନିର୍ମାଣ ସାମଗ୍ରୀର ପରିବହନ ପାଇଁ ବିଶେଷ ଅସୁବିଧା ସତ୍ତ୍ୱେ ମୁଁ କାର୍ଯ୍ୟରୁ ଅବସର ନେବା ପୂର୍ବରୁ ପାରୁପର୍ଯ୍ୟନ୍ତ ଲାଗି ସମଗ୍ର ଜଗମୋହନ ଓ ଗର୍ଭ-ଗୃହର ପ୍ରାୟ ୨୦ ଫୁଟ ପର୍ଯ୍ୟନ୍ତ ନିର୍ମାଣ କାର୍ଯ୍ୟ ଶେଷ କରିଥିଲି । ମୋର ଉତ୍ତରାଧିକାରୀ ଶ୍ରୀ ପ୍ରଶାନ୍ତ କୁମାର ରାୟ ୧୯୭୨ରେ ମନ୍ଦିର ନିର୍ମାଣ କାର୍ଯ୍ୟ ଶେଷ କରି ଅଧିଷ୍ଠାତ୍ରୀ ଅମ୍ବିକା ଦେବୀଙ୍କୁ ପୀଠାଧିଷ୍ଠିତ କରିଛନ୍ତି । ଏହି ମନ୍ଦିରର ପୁନଃନିର୍ମାଣ ଫଳରେ ଏ ଅଞ୍ଚଳବାସୀଙ୍କ ବହୁଦିନର ଆଶା ପୂର୍ଣ୍ଣ ହେଲା ।

ଚଳିତ ବର୍ଷ ମେ ମାସରେ ଜୟଦେବ ସାଂସ୍କୃତିକ କେନ୍ଦ୍ରଗୃହରେ ମନ୍ଦିର ନିକ-ଟରୁ ଭୂଖୋଦନ ଫଳରେ ପ୍ରାପ୍ତ ପ୍ରାଚୀନ ବିଗ୍ରହ ଓ ଭାସ୍କର୍ଯ୍ୟ ମଣ୍ଡିତ ପ୍ରସ୍ତରଖଣ୍ଡ ସମୂହ ସଂରକ୍ଷଣ କରାଯାଇ ଏକ କ୍ଷୁଦ୍ର ସଂଗ୍ରହଶାଳା ରାଜସ୍ୱ ବିଭାଗର ପ୍ରବୀଣ ସେକ୍ରେଟାରୀ ଶ୍ରୀ ବିମଳ କିଶୋର ମିଶ୍ର, ଆଇ: ଏ: ଏସ୍:ଙ୍କ ଦ୍ୱାରା ଉଦ୍‌ଘାଟିତ ହୋଇଅଛି । ସଂଗ୍ରହ-ଶାଳାର ସଂଗଠନ ବିଷୟରେ ବିଭାଗୀୟ ସେକ୍ରେଟାରୀ ହେରମ୍ବ ବାବୁଙ୍କ ଉଦ୍ୟମ ଓ ଉତ୍ସାହ ପ୍ରଶଂସନୀୟ ।

କବିରାଜ ଶ୍ରୀ ଜୟଦେବଙ୍କ ଜନ୍ମସ୍ଥାନ କେନ୍ଦୁଲୀ (କେନ୍ଦୁବିଲ୍ୱ)ର ସ୍ଥାନ ନିର୍ଦ୍ଧାରଣ ଓ ତାହାର ନାନାବିଧ ଉନ୍ନତି ନିମିତ୍ତ ଉଦ୍ୟମ କରିବା ସଙ୍ଗେ ସଙ୍ଗେ ତାଙ୍କ ସଂପର୍କରେ ଗବେଷଣା ଚଳାଇ ଓଡ଼ିଆ ଓ ଇଂରାଜୀରେ ବିଭିନ୍ନ ପ୍ରବନ୍ଧ ପ୍ରକାଶ କରିବା ପାଇଁ ମୁଁ ଛାତ୍ରାବସ୍ଥାରୁ ସାଧନାରେ ନିରତ ରହିଛି । ତାଙ୍କ ସମ୍ପର୍କରେ ମୋର ପ୍ରଥମ ପ୍ରବନ୍ଧ 'ଜୟଦେବଙ୍କ ସମୟ ନିରୂପଣ' ୧୯୩୫ ମସିହାରେ 'ଝଙ୍କାର' ପତ୍ରି-କାରେ ପ୍ରକାଶିତ ହୋଇଥିଲା । ଏହା ପରେ ୧୯୬୯ ମସିହାରେ ସମାଜରେ

'ଜୟଦେବଙ୍କ ଜନ୍ମସ୍ଥାନ' ଓ 'ଅଭିନବ ଗୀତଗୋବିନ୍ଦ ଓ ଗଜପତି ପୁରୁଷୋତ୍ତମଦେବ' ଓ 'ଝଙ୍କାର'ରେ 'ଓଡ଼ିଶାର ଅଜ୍ଞାତ କବି କମଳଲୋଚନ କବିଚନ୍ଦ୍ର' ପ୍ରବନ୍ଧଦ୍ୱୟ ପ୍ରକାଶ ପାଇଥିଲା । 'ଝଙ୍କାର' ପତ୍ରିକାରେ ଯଥାକ୍ରମେ ୧୯୫୦ରେ 'କବିଭୂଷଣ ଗୋବିନ୍ଦ ସାମନ୍ତରାୟ'ଙ୍କ ସମ୍ବନ୍ଧରେ ଦୁଇଟି ପ୍ରବନ୍ଧ, ୧୯୫୧ରେ 'କବି ଉଦୟନାଚାର୍ଯ୍ୟ' ଶୀର୍ଷକ ଏକ ପ୍ରବନ୍ଧ, ୧୯୫୩ରେ ପୀୟୂଷ ଲହରୀ ପ୍ରଣେତା 'ଜୟଦେବ' ଓ 'ଅଭିନବ ଗୀତଗୋବିନ୍ଦ'ର ପ୍ରକୃତ ପ୍ରଣେତା କବିଚନ୍ଦ୍ର ରାୟ ଦିବାକର ମିଶ୍ର, ୧୯୫୬ରେ କବି ନିତ୍ୟାନନ୍ଦ କୃତ 'ଶିବଲୀଳାମୃତ ମହାକାବ୍ୟ' ପ୍ରବନ୍ଧମାନ ପ୍ରକାଶିତ ହୋଇଥିଲା । ସାହିତ୍ୟ ଏକାଡେମୀ ଦ୍ୱାରା ପ୍ରକାଶିତ 'କୋଣାର୍କ' ପତ୍ରିକାରେ ମୋର ଯତୀନ୍ଦ୍ର ରଘୂତ୍ତମ ତୀର୍ଥ କୃତ 'ମୁକୁନ୍ଦ ବିଳାସ ମହାକାବ୍ୟମ୍' (୧୯୬୦) ଓ କବିରାଜ ନାରାୟଣ ଦାସ କୃତ 'ସର୍ବାଙ୍ଗ ସୁନ୍ଦରୀ ଟୀକା' ପ୍ରବନ୍ଧ ଦ୍ୱୟ ସ୍ଥାନ ପାଇଥିଲା । ୧୯୬୫ରେ ସମାଜର ଗୋପବନ୍ଧୁ ଶ୍ରାଦ୍ଧସଂଖ୍ୟାରେ 'କେନ୍ଦୁଲୀ ଅଞ୍ଚଳର ପ୍ରାଚୀନ କୀର୍ତ୍ତି', ଶୀର୍ଷକ ପ୍ରବନ୍ଧ ଓ 'କଳଙ୍କ' ସମ୍ବାଦପତ୍ରରେ 'ହିନ୍ଦୀ ସାହିତ୍ୟ ଉପରେ ଶ୍ରୀଗୀତଗୋବିନ୍ଦର ପ୍ରଭାବ' ଓ ଗୁଜରାଟୀ ସାହିତ୍ୟ ଉପରେ ଶ୍ରୀଗୀତଗୋବିନ୍ଦର ପ୍ରଭାବ' ୧୯୬୬-୬୭ରେ 'ଝଙ୍କାର'ରେ 'ଉତ୍କଳୀୟ କବିରାଜ ଜୟଦେବ କୃତ ଶ୍ରୀଗୀତଗୋବିନ୍ଦର ବିଭିନ୍ନ ଟୀକା' ଶୀର୍ଷକ ଦୁଇଟି ପ୍ରବନ୍ଧ ମୁଦ୍ରିତ ହୋଇଥିଲା । ୧୯୬୮ ଗୋପବନ୍ଧୁ ଶ୍ରାଦ୍ଧସଂଖ୍ୟା ସମାଜରେ ଉତ୍କଳୀୟ କବିରାଜ ଶ୍ରୀ ଜୟଦେବ କୃତ 'ଦଶାବତାର ସ୍ତୁତି' ୧୯୭୦ରେ ଡଗର ପତ୍ରିକାରେ ପ୍ରାଚୀନ ସାହିତ୍ୟରେ 'ଗୋପୀନାଥ, ଶ୍ରୀକୃଷ୍ଣ ଓ ଶ୍ରୀରାଧା' ସମ୍ପର୍କରେ ଦୁଇଟି ପ୍ରବନ୍ଧ ୧୯୭୧ ପୂଜାସଂଖ୍ୟା ଝଙ୍କାରରେ ଶ୍ରୀଜଗନ୍ନାଥ ମନ୍ଦିରରେ ଶ୍ରୀଗୀତଗୋବିନ୍ଦ ରଚନା' ପ୍ରକାଶିତ ହୋଇଅଛି । ଏତଦ୍‌ବ୍ୟତୀତ ବ୍ରହ୍ମପୁରରୁ ପ୍ରକାଶିତ 'ମନୋରମା' ନାମ୍ନୀ ସଂସ୍କୃତ ମାସିକ ପତ୍ରିକାରେ କବି ନିତ୍ୟାନନ୍ଦ କୃତ 'ଶ୍ରୀକୃଷ୍ଣ ଲୀଳାମୃତ ମହାକାବ୍ୟମ୍' ଶୀର୍ଷକ ପ୍ରବନ୍ଧ ପ୍ରକାଶଲାଭ କରିଥିଲା ।

ଶ୍ରୀ ଜୟଦେବ ବିଷୟକ ଇଂରେଜୀ ଭାଷାରେ ଲିଖିତ ମୋର ଅଧିକାଂଶ ପ୍ରବନ୍ଧ ରାଜ୍ୟ ମିଉଜିୟମ ଦ୍ୱାରା ପ୍ରକାଶିତ '**The Orissa Historical Research Journal**'ରେ ସ୍ଥାନ ପାଇଅଛି । ଯଥା 'କବିଭୂଷଣ ଗୋବିନ୍ଦ ସାମନ୍ତରାୟ ଓ କବିଚନ୍ଦ୍ର କମଳଲୋଚନ ଖଡ୍‌ଗରାୟ' (ପ୍ରଥମଭାଗ, ୧୯୫୨), କବି ନିତ୍ୟାନନ୍ଦ କୃତ 'ଶିବଲୀଳାମୃତ ମହାକାବ୍ୟମ୍' (ପଞ୍ଚମଭାଗ, ୧୯୫୬) 'ଗୋବର୍ଦ୍ଧନ ଆଚାର୍ଯ୍ୟ ଓ ଉଦୟନ ଆଚାର୍ଯ୍ୟ' (ସପ୍ତମଭାଗ, ୧୯୫୮) ଗୀତଗୋବିନ୍ଦକାର ଜୟଦେବଙ୍କ ସମ୍ପର୍କରେ ନୂତନ ଆଲୋକପାତ' '**New light on poet Jayadeva, the author of the Gitagovinda**' (ସପ୍ତମଭାଗ ୧୯୫୯) ଯତୀନ୍ଦ୍ରରଘୂତ୍ତମତୀର୍ଥ କୃତ 'ମୁକୁନ୍ଦ ବିଳାସ ମହାକାବ୍ୟମ୍' (ନବମଭାଗ, ୧୯୬୦) ଗଜପତି ପୁରୁଷୋତ୍ତମଦେବ କୃତ 'ଅଭିନବ ଗୀତଗୋବିନ୍ଦମ୍ (ନବମଭାଗ ୧୯୬୧) ଶ୍ରୀଗୀତଗୋବିନ୍ଦର ସର୍ବାଙ୍ଗସୁନ୍ଦରୀ ଟୀକା

(ତ୍ରୟୋଦଶ ଭାଗ, ୧୯୬୫) ଶ୍ରୀଗୀତଗୋବିନ୍ଦର ବିଭିନ୍ନ ଅନୁକୃତି ସମ୍ପର୍କରେ ପ୍ରାୟ ୭୪ ପୃଷ୍ଠା ବ୍ୟାପୀ ଦୁଇଟି ପ୍ରବନ୍ଧ (ପଞ୍ଚଦଶ ଭାଗ ୧୯୬୭) ପ୍ରକାଶିତ ହୋଇଅଛି । ଏତଦ୍-ବ୍ୟତୀତ କେନ୍ଦୁଲୀ ଓ ଶ୍ରୀ ଜୟଦେବଙ୍କ ସମ୍ପର୍କରେ 'Orissa Review' ୧୯୬୮ରେ ମୁଦ୍ରିତ 'Souveniron Sri Jayadeva' ପ୍ରଭୃତିରେ ଇଂରେଜୀ ପ୍ରବନ୍ଧମାନ ପ୍ରକାଶିତ ହୋଇଥିଲା ।

ସାଂସ୍କୃତିକ ବ୍ୟାପାର ବିଭାଗର ନିର୍ଦ୍ଦେଶକ, ସଂସ୍କୃତ-ଭାଷା-ପ୍ରବୀଣ ଶ୍ରୀଯୁକ୍ତ ବିମଳ କିଶୋର ମିଶ୍ର, ଆଇ. ଏ. ଏସ୍.ଙ୍କ ଉଦ୍ୟମରେ ଶ୍ରୀ ଜୟଦେବଙ୍କ ସଂପର୍କରେ ବିଭିନ୍ନ ଦିଗରୁ ପାଣ୍ଡିତ୍ୟପୂର୍ଣ୍ଣ ଆଲୋଚନା କରିବା ପାଇଁ ୧୯୬୬ ମସିହା ଡିସେମ୍ବର ମାସ ୧୬ ଓ ୧୭ ତାରିଖ ଦୁଇଦିନ ରବୀନ୍ଦ୍ର ମଣ୍ଡପ ଠାରେ ବିଭାଗୀୟ ମନ୍ତ୍ରୀ ଶ୍ରୀ ସତ୍ୟ-ପ୍ରିୟ ମହାନ୍ତିଙ୍କ ସଭାପତିତ୍ୱରେ ଏକ ଆଲୋଚନାଚକ୍ର ଅନୁଷ୍ଠିତ ହୋଇଥିଲା । ଏଥିରେ ସ୍ୱୟଂ ନିର୍ଦ୍ଦେଶକ ମହାଶୟ, ସ୍ୱର୍ଗତଃ ପରମାନନ୍ଦ ଆଚାର୍ଯ୍ୟ, କବିଚନ୍ଦ୍ର କାଳୀ-ଚରଣ ପଟ୍ଟନାୟକ, ଡକ୍ଟର ନବୀନ କୁମାର ସାହୁ, ଅଧ୍ୟାପକ ଶ୍ରୀ ଦେବରାଜ ପାଠୀ, ଅଧ୍ୟାପକ ଶ୍ରୀ କୁଳମଣି ମିଶ୍ର ଶର୍ମା ଏବଂ ମୁଁ ବିଭିନ୍ନ ବିଷୟରେ ପ୍ରବନ୍ଧ ପାଠ ଓ ଆଲୋଚନା କରିଥିଲୁ । ଏଠାର ଆଲୋଚନା ସାରଗର୍ଭକ ଓ ସନ୍ତୋଷଜନକ ହେବାରୁ ଶ୍ରୀ ଜୟଦେବଙ୍କ ସଂପର୍କରେ ଇଂରେଜୀରେ ଏକ ଗ୍ରନ୍ଥ ରଚନା ପାଇଁ ସ୍ଥିର କରାଗଲା ।

ଶ୍ରୀ ଜୟଦେବଙ୍କ ସମ୍ପର୍କରେ ଗବେଷଣାକୁ ସୁଗମ ଓ ତ୍ୱରାନ୍ୱିତ କରିବା ପାଇଁ ୧୯୬୭ରେ ପାଞ୍ଚହଜାର ଟଙ୍କା ସରକାରୀ ଗ୍ରାଣ୍ଟରେ ତନ୍ନିମିତ୍ତ ବିଭାଗ ତରଫରୁ ବହୁ ଉପାଦେୟ ପୁସ୍ତକ, ପତ୍ରିକା ଓ ରିପୋର୍ଟ କିଣାଗଲା । ଶ୍ରୀ ଜୟଦେବଙ୍କ ସମ୍ପ-ର୍କରେ ଦୁର୍ଲ୍ଲଭ ଗ୍ରନ୍ଥ ଓ ପତ୍ରପତ୍ରିକା ଗୁଡ଼ିକ ପାଠ କରିବା ପାଇଁ ମୋତେ ଉକ୍ତ ବର୍ଷ ଜୁନ୍ ମାସରେ କଲିକତାସ୍ଥ ଜାତୀୟ ଗ୍ରନ୍ଥାଗାରକୁ ପଠାଯାଇଥିଲା ।

ଇଂରେଜୀ ଭାଷାରେ 'ଶ୍ରୀ ଜୟଦେବ ଓ ଶ୍ରୀଗୀତଗୋବିନ୍ଦ' ନାମଧେୟ ଏକ ତଥ୍ୟସମ୍ବଳିତ ପ୍ରାମାଣିକ ଗ୍ରନ୍ଥ ସଂକଳନ ପାଇଁ ବିମଳ ବାବୁଙ୍କ ଉଦ୍‌ଯୋଗରେ ଉକ୍ତ ବର୍ଷ ଜୁଲାଇ ମାସରେ ଏକ 'ସଂପାଦକ ମଣ୍ଡଳୀ' ଗଠିତ ହୋଇଥିଲା । ଏହି ପୁସ୍ତକରେ ଇଂରେଜୀରେ ଦୀର୍ଘ ମୁଖବନ୍ଧ, ଶ୍ରୀଗୀତଗୋବିନ୍ଦର ବିଶୁଦ୍ଧପାଠ ଓ ଉତ୍କ-ଳୀୟ କବିରାଜ ଶ୍ରୀ ନାରାୟଣ ଦାସ କୃତ 'ସର୍ବାଙ୍ଗ ସୁନ୍ଦରୀ ଟୀକା' ଓ ଦାକ୍ଷିଣାତ୍ୟର ପ୍ରସିଦ୍ଧ ପଣ୍ଡିତ ଲକ୍ଷ୍ମଣ ସୂରି ରଚିତ 'ଶ୍ରୁତିରଞ୍ଜନୀ' ଟୀକାଦ୍ୱୟ ସନ୍ନିବିଷ୍ଟ କରିବା ପାଇଁ ସ୍ଥିର ହୋଇଥିଲା । ମୁଖ୍ୟ ସଂପାଦକ ଭାବରେ ଇଂରାଜୀରେ ମୁଖବନ୍ଧ ଲେଖିବା ଭାର ମୋ ଉପରେ ଅର୍ପିତ ହୋଇଥିଲା । ସହକାରୀ ସମ୍ପାଦକ ଭାବରେ ମନୋନୀତ ଅନ୍ୟ ପାଞ୍ଚଜଣଙ୍କ ମଧ୍ୟରୁ ଅଧ୍ୟାପକ ପଣ୍ଡିତ ଶ୍ରୀ କୁଳମଣି ମିଶ୍ର ଶର୍ମା ଏବଂ ଓଡ଼ିଶା ସାହିତ୍ୟ ଏକାଡେମୀର ପଣ୍ଡିତ ଶ୍ରୀ ସୋମନାଥ ରଥ ଟୀକାଦ୍ୱୟର ସଂଶୋଧନ, କବିଚନ୍ଦ୍ର

ଶ୍ରୀ କାଳୀଚରଣ ପଟ୍ଟନାୟକ ଶ୍ରୀଗୀତଗୋବିନ୍ଦର ସ୍ୱରଲିପି ସଂକଳନ, ମିଉଜିୟମର ପୋଥିବିଭାଗର ସଂରକ୍ଷକ ପଣ୍ଡିତ ଶ୍ରୀ ନୀଳମଣି ମିଶ୍ର ଶ୍ରୀଗୀତଗୋବିନ୍ଦର ବିଭିନ୍ନ ଅନୁବାଦ ସମୀକ୍ଷା, ଶ୍ରୀ ଚକ୍ରଧର ମହାପାତ୍ର ଶ୍ରୀଗୀତଗୋବିନ୍ଦର ଶୁଦ୍ଧପାଠ ନିର୍ଣ୍ଣୟ ଦାୟିତ୍ୱ ଗ୍ରହଣ କରିଥିଲେ । ପ୍ରାୟ ଦୁଇବର୍ଷ କାଳ ଉତ୍ସାହର ସହିତ କାର୍ଯ୍ୟ କରାଯାଇ ଟୀକା ହସ୍ତୁର ସଂଶୋଧନ ଓ ଶ୍ରୀଗୀତଗୋବିନ୍ଦର ଅନୁବାଦ ସମୀକ୍ଷା କାର୍ଯ୍ୟ ପ୍ରାୟ ଶେଷ ହୋଇଥିଲା । ମୋ ଦ୍ୱାରା ଇଂରାଜୀରେ ମୁଖବନ୍ଧ ଲେଖିବା କାର୍ଯ୍ୟ ବହୁଦୂର ଅଗ୍ରସର ହୋଇଥିଲା । କିନ୍ତୁ ସଂପାଦକମାନଙ୍କୁ ଆନୁପାତିକ ପାରିଶ୍ରମିକ ପ୍ରଦାନ ଓ ସଂକଳନ କାର୍ଯ୍ୟ ଚଳାଇବା ପାଇଁ ସରକାରୀ ଗ୍ରାଣ୍ଟ ନ ମିଳିବାରୁ ଏହି ମହତ୍ କାର୍ଯ୍ୟଟି ଅସମ୍ପୂର୍ଣ୍ଣ ରହିଗଲା ।

କେନ୍ଦୁଲୀର ସର୍ବାଙ୍ଗୀନ ଉନ୍ନତି ସାଧନ ଓ ପ୍ରତିବର୍ଷ ଜୟନ୍ତୀ ଉତ୍ସବର ସୁରୁଚିପୂର୍ଣ୍ଣ ସଂପାଦନ ପ୍ରଭୃତି ଲକ୍ଷ୍ୟରେ ୧୯୬୭ ମାର୍ଚ୍ଚ ମାସରେ 'ଜୟଦେବ ସାଂସ୍କୃତିକ ପରିଷଦ' ନାମକ ଏକ ରେଜିଷ୍ଟ୍ରିକୃତ ସମିତି ଗଠନ କରାଯାଇଥିଲା । ଏହାଦ୍ୱାରା ୧୯୬୮ ମସିହା ଏପ୍ରିଲ ମାସରେ ଇଂରାଜୀରେ ପ୍ରକାଶିତ 'Souvenir on Sri Jayadeva' ବା ଶ୍ରୀ ଜୟଦେବ ସ୍ମରଣିକା ଗ୍ରନ୍ଥ ଭାରତର ବିଭିନ୍ନ ପ୍ରାନ୍ତର ସୁଧୀବୃନ୍ଦଙ୍କ ଦ୍ୱାରା ପ୍ରଶଂସିତ ହୋଇଥିଲା । ଏହାର ସଂକଳନ ଓ ମୁଦ୍ରଣ ପାଇଁ ମୋତେ କଠିନ ପରିଶ୍ରମ କରିବାକୁ ପଡିଥିଲା । ପରିଷଦର କର୍ମକର୍ତ୍ତା ଭୁବନେଶ୍ୱରର ଉତ୍ସାହୀ ଏସ୍. ଡି. ଓ. ଶ୍ରୀ ରବୀନ୍ଦ୍ରମୋହନ ସେନାପତି, ଆଇ. ଏ. ଏସ୍‌ଙ୍କ ଅକ୍ଳାନ୍ତ ପରିଶ୍ରମ ଫଳରେ କେନ୍ଦୁଲୀରେ ୧୯୭୧ରେ ଶ୍ରୀ ଜୟଦେବଙ୍କ ସ୍ମୃତିପୂତ ଯୂପସ୍ତମ୍ଭ ନିକଟରେ ସଭାଗୃହ ଓ ରଙ୍ଗମଞ୍ଚ ଉଦ୍ଦେଶ୍ୟରେ 'ଶ୍ରୀ ଜୟଦେବ ମଣ୍ଡପ' ଉନ୍ମୋଚିତ ହୋଇଅଛି ।

ଛାତ୍ରାବସ୍ଥାରୁ ଶ୍ରୀ ଜୟଦେବ ଓ ଶ୍ରୀଗୀତଗୋବିନ୍ଦ ସମ୍ପର୍କରେ ଐତିହାସିକ ଦୃଷ୍ଟିକୋଣରୁ ଦୀର୍ଘ ୩୫ ବର୍ଷ କାଳ ଗବେଷଣା ଚଳାଇ ଯେଉଁ ସମସ୍ତ ତଥ୍ୟ ସଂଗ୍ରହ କରିଥିଲି ତାହା ସଂକ୍ଷିପ୍ତ ଭାବରେ ଏହି ପୁସ୍ତକରେ ପ୍ରକାଶିତ ହୋଇଥିବାରୁ ମୋର ଶ୍ରମ ସାର୍ଥକ ହୋଇଛି । ଏହି ପୁସ୍ତକ ପ୍ରକାଶ ପାଇଁ ୧୯୭୧ରେ ଓଡ଼ିଶା ସାହିତ୍ୟ ଏକାଡେମୀ ତରଫରୁ ପାଞ୍ଚଶତ ଟଙ୍କା ଏବଂ ୧୯୭୨ରେ ସାଂସ୍କୃତିକ ବ୍ୟାପାର ବିଭାଗ ତରଫରୁ ଟ ୨୨୫୦-୦୦ (ବାଇଶଶହ ପଚାଶ ଟଙ୍କା) ସାହାଯ୍ୟ ଲାଭରେ ସହାୟକ ହୋଇଥିବାରୁ ମୁଁ ଉକ୍ତ ବିଭାଗର ନିର୍ଦ୍ଦେଶକ ଓ ସେକ୍ରେଟାରୀ ଶ୍ରୀଯୁକ୍ତ ହେରମ୍ବ ନାରାୟଣ ଦାସମହାପାତ୍ର, ଆଇ.ଏ.ଏସ୍‌ଙ୍କୁ ଗଭୀର କୃତଜ୍ଞତା ଜ୍ଞାପନ କରୁଅଛି ।

ଉକ୍ତ ଗ୍ରନ୍ଥ ରଚନା ପାଇଁ ମିଉଜିୟମର ଭୂତପୂର୍ବ ଗବେଷକ ପଣ୍ଡିତ ଶ୍ରୀ ନୀଳମଣି ମିଶ୍ର, ମିଉଜିୟମ ପ୍ରକାଶ ବିଭାଗର ସଂପାଦକ ଶ୍ରୀ ଭଗବାନ ପଣ୍ଡା, ଏକାଡେମୀର ପଣ୍ଡିତ ଶ୍ରୀ ସୋମନାଥ ରଥ ଓ ବନ୍ଧୁବର ଶ୍ରୀ ଚକ୍ରଧର ମହାପାତ୍ର ବିଭିନ୍ନ ସମୟରେ ମୂଲ୍ୟବାନ ତଥ୍ୟ ଯୋଗାଇ ଥିବାରୁ ମୁଁ ସେମାନଙ୍କ ନିକଟରେ ବିଶେଷ

କୃତଜ୍ଞ । ମୋତେ ଏହି ଦୁଃସାଧ୍ୟ କାର୍ଯ୍ୟରେ ଅଗ୍ରସର ହେବାପାଇଁ ସର୍ବଦା ଉତ୍ସାହିତ କରିଥିବାରୁ ପୂର୍ବତନ ବିଭାଗୀୟ ମନ୍ତ୍ରୀ ଶ୍ରୀଯୁକ୍ତ ସତ୍ୟପ୍ରିୟ ମହାନ୍ତି ଆମ ଅଞ୍ଚଳର କର୍ମପ୍ରବଣ ଲୋକସଭା ସଭ୍ୟ ଶ୍ରୀ ଚିନ୍ତାମଣି ପାଣିଗ୍ରାହୀ, ବାଗ୍ମୀପ୍ରବର ଅଧ୍ୟାପକ ଡକ୍ଟର ଶ୍ରୀ ରାମଚନ୍ଦ୍ର ଦାଶ, ବମ୍ବେବାସୀ ମୋର ଜାମାତା କ୍ୟାପ୍ଟେନ୍ ଶ୍ରୀମାନ୍ ନାରାୟଣ ପଣ୍ଡା, ମୋର ପୂର୍ବତନ ସହକର୍ମୀ ଶ୍ରୀ ଅର୍ଜ୍ଜୁନ ଜୋଷୀ, ଶ୍ରୀ ମହେଶ ପ୍ରସାଦ ଦାଶ ଓ ଶ୍ରୀ ପ୍ରଶାନ୍ତ କୁମାର ରାୟ ଆନ୍ତରିକ ଧନ୍ୟବାଦର ପାତ୍ର ।

ସଂସ୍କୃତ ଭାଷାରେ ମୋର ସ୍ୱଳ୍ପଜ୍ଞାନ ଥିବାରୁ ବିଶ୍ୱବିଶ୍ରୁତ ଉତ୍କଳୀୟ ମହାକବି ଶ୍ରୀ ଜୟଦେବ ଓ ତଦୀୟ ଅମର କୃତି ଶ୍ରୀଗୀତଗୋବିନ୍ଦ ସମ୍ପର୍କରେ ଏହି ପୁସ୍ତକ ପ୍ରଣୟନ ମୋ ପକ୍ଷରେ ଏକ ଦୁଃସାହସ ମାତ୍ର । ତଥାପି ଏ ସମ୍ପର୍କରେ ଦୀର୍ଘକାଳ ଗବେଷଣା କରି ଯେଉଁ ସମସ୍ତ ତଥ୍ୟ ସଂଗ୍ରହ କରିଛି ସେଗୁଡ଼ିକ ଉତ୍କଳୀୟ ସୁଧୀବୃନ୍ଦଙ୍କ ନିକଟରେ ଉପସ୍ଥାପିତ ନ କଲେ ମୋର କର୍ତ୍ତବ୍ୟରେ ଗୁରୁତର ତ୍ରୁଟି ହେବ ବୋଲି ବିଚାର କରି ଉକ୍ତ ପୁସ୍ତକ ପ୍ରକାଶରେ ପ୍ରବୃତ୍ତ ହେଲି । କେଦାରରୁ ଉତ୍ପନ୍ନ ପାଚିଲା ଧାନରେ ଅଗାଡ଼ି, କଣ୍ଟା, ଧୂସ ରହିଲା ପରି କେଦାରନାଥଙ୍କ କୃତିରେ ତ୍ରୁଟି ବିଚ୍ୟୁତି ରହିଥିବ । ସେଗୁଡ଼ିକ ପ୍ରତି ଉଦାର ଭାବରେ ଦୃଷ୍ଟିପାତ ନ କରି ବନ୍ଧୁ ଅଧ୍ୟାୟମାନଙ୍କର ସଂକଳିତ ଉକ୍ତ ଗ୍ରନ୍ଥରୁ ସାର ସଂଗ୍ରହ କରିବା ପାଇଁ ସଜ୍ଜନମାନଙ୍କୁ ମୋର ସାନୁନୟ ଅନୁରୋଧ ।

ଶ୍ରୀଗୁଣ୍ଡିଚା, ଭୁବନେଶ୍ୱର
ତା ୨ । ୭ । ୧୯୭୩

ବିନୀତ ଲେଖକ
**ଶ୍ରୀ କେଦାର ନାଥ ମହାପାତ୍ର**



# ସୂଚୀପତ୍ର

## ଚତୁର୍ଥ ଅଧ୍ୟାୟ—



## ପଞ୍ଚମ ଅଧ୍ୟାୟ—

**ମାଧବ ଭକ୍ତ ଶ୍ରୀ ଜୟଦେବ—**

ପୃଷ୍ଠାଙ୍କ

## ଷଷ୍ଠ ଅଧ୍ୟାୟ—

## ଶ୍ରୀଗୀତଗୋବିନ୍ଦରେ ଶ୍ରୀରାଧା



## ସପ୍ତମ ଅଧ୍ୟାୟ—

ପୃଷ୍ଠାଙ୍କ

## ଦଶମ ଅଧ୍ୟାୟ —

## ଶ୍ରୀଗୀତଗୋବିନ୍ଦର ବିଭିନ୍ନ ଅନୁକୃତି

## ଏକାଦଶ ଅଧ୍ୟାୟ—

## ଭାରତର ବିଭିନ୍ନ ପ୍ରାନ୍ତରେ ରଚିତ ଶ୍ରୀଗୀତଗୋବିନ୍ଦର ବିଭିନ୍ନ ଟୀକା

## ଦ୍ୱାଦଶ ଅଧ୍ୟାୟ —

## ‘ଶ୍ରୀଗୀତଗୋବିନ୍ଦମ୍’ରେ ପ୍ରକ୍ଷେପ





# ପ୍ର ଥ ମ ଅ ଧ୍ୟା ୟ

## କବିରାଜ ଶ୍ରୀ ଜୟଦେବଙ୍କ ଜନ୍ମସ୍ଥାନ କିନ୍ଦୁବିଲ୍ୱ ଶାସନ

ପ୍ରାଚୀନ ଭାରତର ବହୁ ମହାକବି ଓ ପ୍ରଖ୍ୟାତ ପଣ୍ଡିତ ନିଜ ଜନ୍ମସ୍ଥାନ, ଆବିର୍ଭାବ କାଳ ଓ ବଂଶପରିଚୟ ସମ୍ବନ୍ଧରେ ସ୍ୱ ସ୍ୱ କୃତି ସମୂହରେ କୌଣସି ଉଲ୍ଲେଖ କରି ନ ଥିବାରୁ ସେ ସମ୍ପର୍କରେ ବହୁ ଗବେଷଣା ସତ୍ତ୍ୱେ ପ୍ରତ୍ନତତ୍ତ୍ୱବିଦ୍‌ଗଣ କୌଣସି ସ୍ଥିର ସିଦ୍ଧାନ୍ତରେ ଉପନୀତ ହୋଇପାରୁ ନାହାନ୍ତି । ତେଣୁ ମହର୍ଷି ବାଲ୍ମୀକି, ମହର୍ଷି ବେଦବ୍ୟାସ, ସୁପ୍ରସିଦ୍ଧ ନାଟ୍ୟକାର ଭାସ, ଜଗତ୍‌ପ୍ରସିଦ୍ଧ ମହାକବି କାଳିଦାସ ପ୍ରଭୃତିଙ୍କ ଜୀବନ ବୃତ୍ତାନ୍ତ ଅଦ୍ୟାବଧି ସର୍ବବାଦୀସମ୍ମତ ଭାବରେ ସଂକଳିତ ହୋଇପାରୁ ନାହିଁ । କିନ୍ତୁ ଏ କ୍ଷେତ୍ରରେ ଉତ୍ତର ଭାରତର ସମ୍ରାଟ ମହାରାଜାଧିରାଜ ଶ୍ରୀ ହର୍ଷବର୍ଦ୍ଧନ (ଖ୍ରୀ: ଅ: ୬୦୬—୬୪୮)ଙ୍କ ସଭା ପଣ୍ଡିତ 'କବି ସାର୍ବଭୌମ' ବାଣ ଭଟ୍ଟ ଏକ ନୂତନ ଆଦର୍ଶ ପ୍ରତିଷ୍ଠିତ କରିଥିଲେ । ତତ୍‌କୃତ 'କାଦମ୍ବରୀ' ଓ 'ହର୍ଷଚରିତ' ପ୍ରଭୃତି ଗ୍ରନ୍ଥରୁ ତାଙ୍କର ଜନ୍ମସ୍ଥାନ, ବଂଶ ଗୌରବ ଓ ପୂର୍ବପୁରୁଷମାନଙ୍କ ସମ୍ବନ୍ଧରେ ବହୁ ଉପାଦେୟ ତଥ୍ୟ ମିଳେ ।

ତାଙ୍କର ହର୍ଷଚରିତର ପ୍ରଥମ ଓ ଦ୍ୱିତୀୟ ଉଚ୍ଛ୍ୱାସ ପାଠରୁ ଜଣାଯାଏ ଯେ, 'ବାତ୍ସାୟନ ବଂଶାଶ୍ରୟ' ବାଣ ଭଟ୍ଟ 'ଶୋଣ' ନଦୀ ତୀରବର୍ତ୍ତୀ 'ପ୍ରୀତିକୂଟ' ନାମକ 'ବ୍ରାହ୍ମଣାଧିବାସ' ବା ବ୍ରାହ୍ମଣ ଶାସନର ଅଧିବାସୀ ଥିଲେ । (୧) ବାଣ ତାଙ୍କର 'ପାର୍ବତୀ ପରିଣୟମ୍' ନାମକ ନାଟକର ପ୍ରସ୍ତାବନାରେ ନିଜକୁ 'ବାତ୍ସାୟନ ଜଳଧି ସମ୍ଭବ' 'କବି ସାର୍ବଭୌମ' ରୂପେ ଅଭିହିତ କରିଛନ୍ତି । (୨)

ବାଣଭଟ୍ଟଙ୍କ ଆଦର୍ଶ ଅନୁସରଣ କରି ଅନ୍ୟତମ ଭାରତ ପ୍ରସିଦ୍ଧ ସଂସ୍କୃତ ନାଟକ ପ୍ରଣେତା ଭବଭୂତି ସ୍ୱୀୟ 'ମହାବୀର ଚରିତମ୍' ଓ 'ମାଳତୀ ମାଧବମ୍' ପ୍ରଭୃତି

---

(୧) (କ) ସରସ୍ୱତୀ 'ଶୋଣସୈକତେ' ସମୁପବିଷ୍ଟା (ପୃ-୧୭)

(ଖ) କୃତଦାର ପରିଗ୍ରହସ୍ୟାସ୍ୟ ତସ୍ମିନ୍ନେବ ପ୍ରଦେଶେ ପ୍ରୀତ୍ୟା 'ପ୍ରୀତିକୂଟ ନାମାନଂ ନିବାସମ୍' (ପୃ-୧୮)

(ଗ) 'ବାତ୍ସାୟନ ବଂଶାଶ୍ରୟା' ମାତ୍ୟନୋ ଜନ୍ମଭୂବଂ ବ୍ରାହ୍ମଣାଧିବାସମଗମତ୍ (ପୃ-୧୯) The 'Harshacharita' of Banabhatta edited by Dr P. V. Kane.

(୨) 'ଅସ୍ତି କବିସାର୍ବଭୌମୋ ବାତ୍ସ୍ୟାୟନ ଜଳଧିସମ୍ଭବୋ ବାଣଃ' (ପ୍ରଥମ ଅଙ୍କ ।

ନାଟକରେ ନିଜର ଜନ୍ମସ୍ଥାନ, ବଂଶ ପରିଚୟ ଓ ଗୋତ୍ରାଦି ଉଲ୍ଲେଖ କରିଛନ୍ତି । ତାଙ୍କର 'ମହାବୀର ଚରିତମ୍'ରୁ ଜଣାଯାଏ ଯେ, ସେ ଦକ୍ଷିଣାପଥର ପଦ୍ମପୁର ନାମକ ନଗରରେ ଜନ୍ମଗ୍ରହଣ କରିଥିଲେ ଏବଂ ତାଙ୍କ ପିତାମହଙ୍କ ନାମ ଗୋପାଳ ଭଟ୍ଟ, ପିତାଙ୍କ ନାମ ନୀଳକଣ୍ଠ ଭଟ୍ଟ ଓ ମାତାଙ୍କ ନାମ ଜାତୁକର୍ଣ୍ଣୀ । (୩) 'ମାଳତୀ ମାଧବମ୍' ନାଟକରେ ତାଙ୍କ ଜନ୍ମସ୍ଥାନ ପଦ୍ମପୁର ନଗର ବିଦର୍ଭ ରାଜ୍ୟରେ ଅବସ୍ଥିତ ଥିବାର ବର୍ଣ୍ଣିତ ହୋଇଛି । (୪)

ନବମ ଶତାବ୍ଦୀରେ ଆବିର୍ଭୂତ ପ୍ରସିଦ୍ଧ 'ଅନର୍ଘ ରାଘବମ୍' ନାମକ ନାଟକର ପ୍ରଣେତା ମହାକବି ମୁରାରି ସ୍ୱୀୟ ଗ୍ରନ୍ଥର ମଙ୍ଗଳାଚରଣରେ 'ଜଗନ୍ନିଧି' ବା ଜଗନ୍ନାଥଙ୍କ ସ୍ତୁତିଗାନ ଓ ପ୍ରସ୍ତାବନାରେ 'ତ୍ରିଭୁବନ ମୌଳି ମଣ୍ଡନ **ମହାନୀଳମଣି** X X 'ଭଗବାନ୍ ପୁରୁଷୋତ୍ତମ (ଜଗନ୍ନାଥ)ଙ୍କ ଯାତ୍ରା' ବା ରଥଯାତ୍ରା ସମୟରେ ତାଙ୍କ ନାଟକର ଅଭିନୟ ବିଷୟ ଉଲ୍ଲେଖ ଦ୍ୱାରା 'ଲବଣୋଦଧିବେଳା'ରେ ଅବସ୍ଥିତ ଶ୍ରୀକ୍ଷେତ୍ର ବା ପୁରୀ ସହିତ ତାଙ୍କର ସମ୍ପର୍କ ସ୍ପଷ୍ଟ ଭାବରେ ସୂଚିତ କରିଛନ୍ତି । ନାଟକର ସୂତ୍ରଧାରର ଉକ୍ତିରୁ ଜଣାଯାଏ ଯେ, 'ମୌଦ୍‌ଗଲ୍ୟ ଗୋତ୍ର ସମ୍ଭବ' ମହାକବି ମୁରାରି ଶ୍ରୀ ବର୍ଦ୍ଧମାନ ଭଟ୍ଟ ଓ ତନ୍ତୁମତୀଙ୍କ ପୁତ୍ର ଥିଲେ । (୫) ଗ୍ରନ୍ଥ ପ୍ରଶସ୍ତି କାରକ 'ନଟ'ର ଉକ୍ତିରୁ ଜଣାଯାଏ ଯେ, ସେ 'ବାଳବାଲ୍ମୀକି' ନାମରେ ପ୍ରଖ୍ୟାତ ଥିଲେ । (୬)

ଭାରତ ପ୍ରସିଦ୍ଧ ଉତ୍କଳୀୟ ଜ୍ୟୋତିଷ ଓ ସ୍ମୃତିକାର ଶ୍ରୀ ଶତାନନ୍ଦ ଆଚାର୍ଯ୍ୟ କୃତ 'ଭାସ୍ୱତୀ' ଗ୍ରନ୍ଥର ଶେଷ ଶ୍ଳୋକ ଅନୁଯାୟୀ ଶ୍ରୀ ପୁରୁଷୋତ୍ତମସ୍ଥ (ପୁରୀବାସୀ) ସରସ୍ୱତୀ ଓ ଶଙ୍କରଙ୍କ ପୁତ୍ର ଶ୍ରୀମାନ୍ ଶତାନନ୍ଦ ଖଖାଷ୍ଟିବେଦ (୦୦୨୪ = ୪୨୦୦) ପ୍ରମିତ ଯୁଗାବ୍ଦ (୧୦୯୯ ଖ୍ରୀଷ୍ଟାବ୍ଦ)ରେ ଉକ୍ତ ଗ୍ରନ୍ଥ ପ୍ରଣୟନ କରିଥିଲେ । (୭)

---

(୩) "ଅସ୍ତି ଦକ୍ଷିଣାପଥେ 'ପଦ୍ମପୁର ନାମ ନଗରମ୍ X X X 'ଭଟ୍ଟ ଗୋପାଳସ୍ୟ ପୌତ୍ରଃ ପବିତ୍ରକୀର୍ତ୍ତି 'ନୀଳକଣ୍ଠ' ସ୍ୟାତ୍ମସମ୍ଭବଃ ଶ୍ରୀ କଣ୍ଠପଦଲାଞ୍ଛନୋ ଭବଭୂତି ନାମ 'ଜାତୁକର୍ଣ୍ଣୀ' ପୁତ୍ର" (ମହାବୀର ଚରିତମ୍)

(୪) "ଅସ୍ତି ଦକ୍ଷିଣାପଥେ ବିଦର୍ଭେଷୁ ପଦ୍ମପୁର ନାମ ନଗରମ୍ (ମାଳତୀ ମାଧବମ୍)

(୫) "ଅସ୍ତି ମୌଦ୍‌ଗଲ୍ୟଗୋତ୍ରସମ୍ଭବସ୍ୟ ମହାକବେ ର୍ଭଟ୍ଟଶ୍ରୀ ବର୍ଦ୍ଧମାନତନୁଜନ୍ମନ ସ୍ତନ୍ତୁମତୀ ନନ୍ଦନସ୍ୟ ମୁରାରେଃ କୃତି ରଭିନବ ମନର୍ଘରାଘବ ନାମ ନାଟକମ୍"

(୬) "ନଟଃ ( ସହର୍ଷମ୍ ) X X ଅହୋ ମୌଦ୍‌ଗଲ୍ୟାନାଂ ବନ୍ଧୁର୍ବିଶୀମନ୍ଦ୍ୱୟମୁର୍ଦ୍ଧନ୍ୟସ୍ୟ ମୁରାରେର୍ନାମଧେୟ ବାଳବାଲ୍ମୀକେଃ"

(୭) "ଖଖାଷ୍ଟିବେଦ ପ୍ରମିତେ ଯୁଗାବ୍ଦେ
ଦିବ୍ୟୋତ୍କଳଃ ଶ୍ରୀ ପୁରୁଷୋତ୍ତମସ୍ଥ
ଶ୍ରୀମାନ୍ ଶତାନନ୍ଦ ଇତୀଦମାହ
ସରସ୍ୱତୀଶଙ୍କରୟୋ ସ୍ତନୁଜଃ"

କବିରାଜ ଜୟଦେବଙ୍କ ଦ୍ୱାରା ପ୍ରଶଂସିତ ମହାକବି ଗୋବର୍ଦ୍ଧନ ଆଚାର୍ଯ୍ୟ ସ୍ୱ 'ଆର୍ଯ୍ୟାସପ୍ତଶତୀ' ଗ୍ରନ୍ଥରେ ନିଜର ପିତା କବି ନୀଳାମ୍ବର ଆଚାର୍ଯ୍ୟ ଓ ଶିଷ୍ୟ ଓ ସୋଦର ଉଦୟନ ଓ ବଳଭଦ୍ରଙ୍କ ସମ୍ବନ୍ଧରେ ଉଲ୍ଲେଖ କରି ଗର୍ବ ଓ ଗୌରବ ଅନୁଭବ କରିଛନ୍ତି । (୮)

ଶ୍ରୀକ୍ଷେତ୍ରବାସୀ ଗୋବର୍ଦ୍ଧନ ଆଚାର୍ଯ୍ୟ ସ୍ୱ ଆରାଧ୍ୟ ଦେବତା ଜଗନ୍ନାଥଙ୍କ ଉଦ୍ଦେଶ୍ୟରେ ଏକ ଶତକ ରଚନା କରିଥିବାର ଜନଶ୍ରୁତି ପ୍ରଚଳିତ ଅଛି । କିନ୍ତୁ ଉକ୍ତ ଗ୍ରନ୍ଥ କୌଣସି ପଣ୍ଡିତଙ୍କ ଦ୍ୱାରା ଏପର୍ଯ୍ୟନ୍ତ ସମୀକ୍ଷିତ ହୋଇ ନ ଥିବାରୁ ସେ ସମ୍ପର୍କରେ ଆଲୋଚନା କରାଯାଇ ପାରୁନାହିଁ ।

କବିରାଜ ଜୟଦେବ ବାଣଭଟ୍ଟ, ଭବଭୂତି, ମୁରାରି, ଗୋବର୍ଦ୍ଧନ ପ୍ରଭୃତି ସୁନାମଧନ୍ୟ କବି ପଣ୍ଡିତମାନଙ୍କ ଆଦର୍ଶ ଅନୁସରଣ କରି ସ୍ୱୀୟ ଅମର କୃତି 'ଶ୍ରୀ ଗୀତଗୋବିନ୍ଦ'ର ତୃତୀୟ ସର୍ଗରେ ନିଜକୁ କେ (କ)ନ୍ଦୁବିଲ୍ୱ ରୂପକ ସମୁଦ୍ରରୁ ଜାତ ଚନ୍ଦ୍ର ବୋଲି ସଗର୍ବରେ ଘୋଷଣା କରିଛନ୍ତି । (୯) ଚତୁର୍ଦ୍ଦଶ ଶତାବ୍ଦୀରେ ଆବିର୍ଭୂତ କବିରାଜ ନାରାୟଣ ଦାସ ସ୍ୱକୃତ ଶ୍ରୀ ଗୀତଗୋବିନ୍ଦର ପ୍ରସିଦ୍ଧ 'ସର୍ବାଙ୍ଗସୁନ୍ଦରୀ ଟୀକା'ରେ ଏହି ଶ୍ଳୋକର ଯେପରି ବ୍ୟାଖ୍ୟା କରିଛନ୍ତି ସେଥିରୁ ଜଣାଯାଏ ଯେ କେନ୍ଦୁବିଲ୍ୱ ଶାସନର ବିଶେଷ ଖ୍ୟାତି ଥିବାରୁ ଏହା ସମୁଦ୍ର ସହିତ ତୁଳିତ ହୋଇଅଛି । ସମୁଦ୍ରରୁ ଜାତ ଚନ୍ଦ୍ର ଯେପରି ସ୍ୱୀୟ ଆକର୍ଷଣ ଶକ୍ତି ମାଧ୍ୟମରେ ଜ୍ୟୋତ୍ସ୍ନା ଧବଳିତ ସମୁଦ୍ର ବକ୍ଷରେ ଉଦ୍ବେଳ ତରଙ୍ଗ ସୃଷ୍ଟି ଦ୍ୱାରା ତାହାର ଶ୍ରୀବୃଦ୍ଧି ସାଧନ କରେ, କେନ୍ଦୁବିଲ୍ୱ ଶାସନ ରୂପକ ସାଗରରୁ ସମ୍ଭୂତ କବିରାଜ-ରାଜ ଶ୍ରୀ ଜୟଦେବ ନିଜର କବିତ୍ୱ ଓ ପାଣ୍ଡିତ୍ୟର ଖ୍ୟାତି ପ୍ରତିଷ୍ଠା ଦ୍ୱାରା ସ୍ୱୀୟ ଜନ୍ମଭୂମିର ବିଶେଷ ଉନ୍ନତି ସାଧନ କରିଥିଲେ । (୧୦)

---

O. H. R. J. Vol V No. 3. pp 163-189.ରେ ପ୍ରକାଶିତ ମୋର ଶତାନନ୍ଦ ଆଚାର୍ଯ୍ୟଙ୍କ ସମ୍ପର୍କୀୟ ପ୍ରବନ୍ଧ ଦ୍ରଷ୍ଟବ୍ୟ ।

(୮) (କ) "କବିମନ୍ଦମୁଣନସମିଦଂ ତଂ ତାତଂ ନୀଳାମ୍ବରଂ ବନ୍ଦେ" (୩୮ ଶ୍ଳୋକ)

(ଖ) ଉଦୟନ-ବଳଭଦ୍ରାଭ୍ୟାଂ ସପ୍ତଶତୀ ଶିଷ୍ୟସୋଦରାଭ୍ୟାଂନଃ
ଦ୍ୟୌରିବ ରବିଚନ୍ଦ୍ରାଭ୍ୟାଂ ପ୍ରକାଶିତା ନିର୍ମଳୀକୃତ୍ୟ (ଶ୍ଳୋ-୭୦୧)
ଓଡ଼ିଶା ରାଜ୍ୟ ସଂଗ୍ରହାଳୟରେ ସଂରକ୍ଷିତ ପୋଥିରୁ ଉଦ୍ଧୃତ ।

(୯) 'ବର୍ଣ୍ଣିତଂ ଜୟଦେବକେନ ହରେ ରିଦଂ ପ୍ରବଣେନ
(କେ.କିନ୍ଦୁବିଲ୍ୱ-ସମୁଦ୍ର ସମ୍ଭବ-ରୋହିଣୀରମଣେନ, ହରି ହରି ।
ଶ୍ରୀଗୀତଗୋବିନ୍ଦ, ତୃତୀୟ ସର୍ଗ

(୧୦) "କିନ୍ଦୁବିଲ୍ୱ ଖ୍ୟାଂ ଶାସନଂ, ତଚ୍ଚ ମହତ୍ତ୍ୱାତ୍ ସମୁଦ୍ରତ୍ୱେନ ରୂପିତଂ,
କିନ୍ଦୁବିଲ୍ୱ-ସମୁଦ୍ର ସମ୍ଭବଶ୍ଚାସୌ ରୋହିଣୀ ରମଣଶ୍ଚେତି × ×

ଶ୍ରୀ ଗୀତଗୋବିନ୍ଦର ଅନ୍ୟ ପ୍ରସିଦ୍ଧ ଟୀକାକାର ମିବାରର ରାଣା କୁମ୍ଭକର୍ଣ୍ଣ (ଖ୍ରୀ: ଅ: ୧୪୪୦-୧୪୬୦) ତାଙ୍କ ‘ରସିକପ୍ରିୟା’ ଟୀକାରେ ମଧ୍ୟ କାନ୍ଦୁବିଲ୍ୱକୁ ଏକ ଶାସନ, ନିବାସ ବା ଗ୍ରାମ ଅର୍ଥରେ ଗ୍ରହଣ କରିଛନ୍ତି । (୧୧)

**କାନ୍ଦୁବିଲ୍ୱ ଶାସନର ନାମକରଣ**—ପୂର୍ବକାଳରେ ଦେବତା, ରାଜା, ରାଣୀ, ରାଜପୁରୁଷ, ନଦୀ, ଦୁର୍ଗ, ପର୍ବତ, ବୃକ୍ଷଲତା, ଫୁଲ ପ୍ରଭୃତିର ନାମାନୁସାରେ ସାଧାରଣତଃ ମାନବ ବସତିର ନାମକରଣ ହେଉଥିଲା । (୧୨) ଆଲୋଚ୍ୟ

---

ତଦେବଂ କେନ୍ଦୁବିଲ୍ୱ ଶାସନାଖ୍ୟାତ ସ୍ୱପ୍ନୋବୋଦ୍ଭବାରକୋ
ଯଥା ସାଗରୋଦ୍ଭବାତଃ ଚନ୍ଦ୍ର ସାଗର ବୃଦ୍ଧିକାରକ ଇତ୍ୟର୍ଥଃ ସଂପଦ୍ୟତେ ।”
ସର୍ବାଙ୍ଗସୁନ୍ଦରୀ ଟୀକା’ ସମ୍ବନ୍ଧରେ ବିସ୍ତୃତ ବିବରଣ ପାଇଁ ମୋର ପ୍ରବନ୍ଧ ଦ୍ରଷ୍ଟବ୍ୟ
**O. H. R. J. Vol XIII No. 3 pp 26 41.**

(୧୧) “କେନ୍ଦୁବିଲ୍ୱଂ ତନ୍ନାମକଂ ନିବାସୋ ବା ଗ୍ରାମଃ ସମୁଦ୍ରଇବ,
ତସ୍ମାତ୍ସମ୍ଭବ ରୋହିଣୀରମଣେନେବ ଚନ୍ଦ୍ରେଣେବ ।”

(୧୨) ଦେବତା—ଶ୍ରୀ ପୁରୁଷୋତ୍ତମ, ସତ୍ୟବାଦୀ, ବିରଜାକ୍ଷେତ୍ର, ଗୋପାଳପୁର, ଦେବୀଦ୍ୱାର ଚଣ୍ଡିକା, ମଙ୍ଗଳପୁର, ମୁଖଲିଙ୍ଗ ଲକ୍ଷ୍ମୀନାରାୟଣପୁର ଇତ୍ୟାଦି ।
ରାଜା—ଯଯାତିନଗର କପିଳେଶ୍ୱରପୁର, ଭୀମପୁର ନରସିଂହପୁର ଇତ୍ୟାଦି ।
ରାଣୀ—ଲକ୍ଷ୍ମୀପୁର, କୌଶଲ୍ୟାପୁର, ପାର୍ବତୀପୁର, ବାଗଲପୁର, ସତ୍ୟଭାମାପୁର ।
ରାଜପୁରୁଷ—ଜ୍ୟୋଷ୍ଠବିଦ୍ୟାଧରପୁର, ଦାସବିଦ୍ୟାଧରପୁର, ଦନେଇ ବିଦ୍ୟାଧରପୁର କନ୍ହେଇ ବିଦ୍ୟାଧରପୁର ଇତ୍ୟାଦି ।
ନଦୀ—ବାରଣାସୀ, କାବେରୀପତ୍ତନ, ଗଙ୍ଗାସାଗର ।
ଦୁର୍ଗ—ନବଦୁର୍ଗ, ଅଷ୍ଟଦୁର୍ଗ (ଆଠଗଡ଼) ଖଲ୍ଲିକୋଟ, ଧରାକୋଟ, ପଞ୍ଚକୋଟ, ହୀରଗଡ଼ ।
ପର୍ବତ—ଧଉଳି, କୃଷ୍ଣଗିରି, ନୀଳଗିରି ନୀଳାଦ୍ରି (ପୁରୀ), ସ୍ୱର୍ଣ୍ଣାଦ୍ରି (ଭୁବନେଶ୍ୱର), ହିମାଚଳ ରତ୍ନଗିରି ଇତ୍ୟାଦି ।
ବୃକ୍ଷଲତା—କେନ୍ଦୁଝର, କେନ୍ଦୁପାଟଣା, କେନ୍ଦୁଝୁଣ୍ଡା (ନୀଳଗିରି ଅଞ୍ଚଳ) କେନ୍ଦୁ (ପ୍ରାଚୀନ ଭୁବନେଶ୍ୱରର ଏକ ଅଞ୍ଚଳ) ତାଳଚେର, ତାଳବସ୍ତ (ବାଙ୍କୀ ଅଞ୍ଚଳ), ତାଳଦଣ୍ଡା, ତାଳପଡ଼ା, ତାଳବନ୍ଧ (ପ୍ରାଚୀନ ଭୁବନେଶ୍ୱରର ଏକ ଅଞ୍ଚଳ), ଶାଳବଣି ଶାଳଗାଁ ବାଉଁଶଗଡ଼ା (ଜଲେଶ୍ୱର ଥାନା), ବେତନଟି (ମୟୂରଭଞ୍ଜ), ବେତଗଡ଼ିଆ (ବାଲିଆପାଳ), ରାଇବଣିଆ ଦୁର୍ଗ (ରାଇ ଏକପ୍ରକାର ବୃକ୍ଷ), କୋଚିଲପୁଟ, ପଣସପୁଟ, ଏକାମ୍ର (ଭୁବନେଶ୍ୱର) ତୁଳସୀକ୍ଷେତ୍ର (କେନ୍ଦ୍ରାପଡ଼ା), ତୁଳସୀଚୌରା, ତୁଳସୀପୁର, ବେଲଗାଁ, ବେଲପଡ଼ା ଇତ୍ୟାଦି ।
ଫୁଲ—କିଆଲୀ ଶାସନ, ମନ୍ଦାରବସ୍ତ, ଚମ୍ପାପୁର, କଇଁଦଣ୍ଡା ଇତ୍ୟାଦି ।

କ(କେ)ନ୍ଦୁ ବିଲ୍ୱ' ନାମକ ବ୍ରାହ୍ମଣ ଗ୍ରାମରେ କେନ୍ଦୁ ଓ (ବିଲ୍ୱ) ବେଲଗଛ ବହୁ ସଖ୍ୟାରେ ଥିବାରୁ ଏହି ଗ୍ରାମ କେନ୍ଦୁବିଲ୍ୱ ନାମରେ ଅଭିହିତ ହୋଇଥିଲା । ମହାପୁରୁଷ ଶ୍ରୀ ଜୟଦେବଙ୍କ ଜୀବନ କାଳରେ ଏହି ଗ୍ରାମର ପ୍ରସିଦ୍ଧି ବୃଦ୍ଧିଲାଭ କରିଥିଲେ ମଧ୍ୟ ଏହାର ପୂର୍ବ ନାମ ପରିବର୍ତ୍ତିତ ହୋଇ ନ ଥିଲା । ଏ କ୍ଷେତ୍ରରେ ପ୍ରାଚୀନଦୀ ତୀରବର୍ତ୍ତୀ ନିୟାଳି ଶାସନର ନାମ ଉଲ୍ଲେଖଯୋଗ୍ୟ । ଏଠାରେ ଶୋଭନେଶ୍ୱର ନାମକ ପ୍ରଥିତ ସ୍ୱୟମ୍ଭୂଙ୍କ ମନ୍ଦିର ନିର୍ମିତ ହେଲା ପରେ ମଧ୍ୟ ଶାସନର ପୂର୍ବ ନାମ ଅପରିବର୍ତ୍ତିତ ରହିଲା । (୧୩)

**କାନ୍ଦୁବିଲ୍ୱର ଅବସ୍ଥିତି :—** କନ୍ଦୁ (କେନ୍ଦୁ) ଓ ବିଲ୍ୱବୃକ୍ଷ ପରିପୂର୍ଣ୍ଣ କନ୍ଦୁବିଲ୍ୱ ଶାସନକୁ ପୁରୀଜିଲା ବାଲିଅନ୍ତାର ପ୍ରତାପରୁଦ୍ରପୁର ଗ୍ରାମପଞ୍ଚାୟତ ଅନ୍ତର୍ଭୁକ୍ତ ପ୍ରାଚୀ ତୀରବର୍ତ୍ତୀ କେନ୍ଦୁଳୀ ଗ୍ରାମ ସହିତ ନିଃସନ୍ଦେହରେ ଚିହ୍ନିତ କରାଯାଇ ପାରେ । ଏହି ଗ୍ରାମର ନିକଟରେ ବହୁ ସଂଖ୍ୟାରେ କେନ୍ଦୁଗଛ ଥିଲା । ସେଥିମଧ୍ୟରୁ ଅଧିକାଂଶ ୧୯୭୪ ମସିହାରେ 'ଜୟଦେବ ସାଂସ୍କୃତିକ କେନ୍ଦ୍ର' ପ୍ରତିଷ୍ଠା ସମୟରେ କଟା ଯାଇଥିଲା । ବିଲ୍ୱ ବା ବେଲଗଛ ମଧ୍ୟ ପ୍ରାଚୀ କୂଳେ କୂଳେ ପ୍ରଚୁର ପରିମାଣରେ ପରିଦୃଷ୍ଟ ହୁଏ । କେନ୍ଦୁଳୀ ଗ୍ରାମଠାରୁ ଅଳ୍ପ ଦୂରରେ ପ୍ରବାହିତ ଉତ୍କଳର ସରସ୍ୱତୀ ସ୍ୱରୂପା ପ୍ରାଚୀତଟରେ ବିଲ୍ୱମୂଳାଶ୍ରିତ ବିଲ୍ୱେଶ୍ୱର ନାମକ ଶିବଲିଙ୍ଗ ପୂଜିତ ହେଉଥିବା ତ୍ରୟୋଦଶ ଶତାବ୍ଦୀରେ ରଚିତ ପ୍ରସିଦ୍ଧ **କପିଳସଂହିତା** ଗ୍ରନ୍ଥ ପାଠରୁ ଜଣାଯାଏ (୧୪) । ବିଲେଶ୍ୱର ମହାଦେବଙ୍କ ମନ୍ଦିର ଶ୍ରୀ ଜୟଦେବଙ୍କ ବହୁ ପୂର୍ବରୁ ସୋମବଂଶୀ ରାଜତ୍ୱ କାଳରେ ନିର୍ମିତ ହୋଇଥିଲା ।

ଅମର କବିଙ୍କ ଜନ୍ମସ୍ଥାନ ବର୍ଣ୍ଣନା ପ୍ରସଙ୍ଗରେ 'ଶାସନ' ଶବ୍ଦର ପ୍ରୟୋଗ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ହୋଇଥିବାରୁ ଏହା ବିଶେଷ ପ୍ରଣିଧାନ ଯୋଗ୍ୟ । ଉତ୍କଳର ଅତୀତ ଇତିହାସ ପ୍ରତି ଦୃଷ୍ଟିପାତ କଲେ ଜଣାଯାଏ ଯେ ପରବର୍ତ୍ତୀ କାଳରେ 'କେଶରୀ' ପଦବୀ ଧାରୀ ପ୍ରବଳ ପରାକ୍ରାନ୍ତ ସୋମବଂଶୀ ନରପତିମାନଙ୍କ ଦୀର୍ଘ ଦୁଇଶତ ବର୍ଷାଧିକ (୮୮୦ — ୧୧୧୦ ଖ୍ରୀଷ୍ଟାବ୍ଦ) ରାଜତ୍ୱ କାଳ ମଧ୍ୟରେ ସମଗ୍ର ଉତ୍କଳ ଖଣ୍ଡରେ ବ୍ରାହ୍ମଣ୍ୟ ଧର୍ମର ପୁନରୁତ୍ଥାନ ଘଟିଥିଲା ।

---

(୧୩) ନିୟାଳି-ଶାସନ-ଗତଃ ସ ଶିବଃ ସ୍ୱୟମ୍ଭୂଃ
ଶ୍ରୀଶୋଭନେଶ୍ୱର ଇତି ପ୍ରଥିତଃ ପୃଥିବ୍ୟାଂ ॥ (J.B.O.R.S. Vol. XVII)

(୧୪) "ଏକାମ୍ର କାନନାତ୍ ପୂର୍ବେ ଯୋଜନାନ୍ତେ ମହାପତେ
ନାମ୍ନା ପ୍ରାଚୀତି ବିଖ୍ୟାତା ସଦାପ୍ତେ ସରସ୍ୱତୀ ।
ପ୍ରାଚ୍ୟାଂଦକ୍ଷି ମହେଶସ୍ୟ ଯତସ୍ୟାତ୍ସାଗରଙ୍ଗମା
କୋଣେ କୋଣେ ତଟେଲିଙ୍ଗଂ ତତଃ ପ୍ରାଚୀ ସରସ୍ୱତୀ ।

× × ×

ଭୌମ ସମ୍ରାଟ୍‌ମାନଙ୍କ ରାଜତ୍ୱ କାଳରେ (୭୧୪—୮୫୦ ଖ୍ରୀଷ୍ଟାବ୍ଦ) ଉତ୍କଳର ନାନା ସ୍ଥାନରେ ବଢ଼ଭିନ୍ନବେଦାଧ୍ୟାୟୀ, ନାନାଗୋତ୍ର ସମୁଦ୍ଭୂତ ଶତ ଶତ ବ୍ରାହ୍ମଣଙ୍କୁ ଭୂମିଦାନ ଓ ଗ୍ରାମଦାନ କରାଯାଇଥିଲେ ମଧ୍ୟ ଶାସନ ପ୍ରତିଷ୍ଠା ଇତିହାସରେ 'ପରମମାହେଶ୍ୱର, ପରମଭଟ୍ଟାରକ, ମହାରାଜାଧିରାଜ ସୋମକୁଳତିଳକ, ତ୍ରିକଳିଙ୍ଗାଧିପତି ପ୍ରଭୃତି ପଦବୀମଣ୍ଡିତ ସମଗ୍ର କୋଶଳ ଓ ଉତ୍କଳରେ ସୋମବଂଶର ଆଧିପତ୍ୟ ପ୍ରତିଷ୍ଠାତା ଯଯାତି ମହାଶିବଗୁପ୍ତଙ୍କ ନାମ ସର୍ବାଦୌ ସ୍ମରଣୀୟ । ସେ ଉତ୍କଳର ଜାହ୍ନବୀ ରୂପିଣୀ ପୁଣ୍ୟତୋୟା ବୈତରଣୀ ତୀରବର୍ତ୍ତୀ ଯାଜାପୁର ବା ଯାଜପୁର ଠାରେ ବ୍ରାହ୍ମଣ୍ୟ ଧର୍ମର ପୁନରୁତ୍ଥାନ ନିମିତ୍ତ ବହୁକାଳଲୁପ୍ତ ଦଶାଶ୍ୱମେଧ ଯଜ୍ଞ ମହା ଆଡ଼ମ୍ବର ସହକାରେ ସମ୍ପନ୍ନ କରିଥିଲେ । ଯଜ୍ଞ ସମାପନାନ୍ତେ ସେ ଯଜ୍ଞନିମନ୍ତେ ନିଜ୍ୟାଗୃହନଷ୍ଟ ଦଶସହସ୍ର ବ୍ରାହ୍ମଣଙ୍କୁ ଯାଜପୁର ନିକଟରେ ବହୁ ଶାସନ ପ୍ରତିଷ୍ଠା କରି ରଖାଇଥିଲେ । ଏଗୁଡ଼ିକ ଉତ୍କଳର ପ୍ରାଚୀନତମ ଶାସନ ।

ସୋମବଂଶୀ ରାଜତ୍ୱ କାଳରେ ଅଞ୍ଚଳରେ ଚିରସ୍ରୋତା ଓ ସୁନାବ୍ୟା ଉତ୍କଳର ସରସ୍ୱତୀ ସ୍ୱରୂପା ପୂତସଲିଳା ପ୍ରାଚୀନଦୀ କୂଳେ କୂଳେ ବହୁ ଶିବାଳୟ ଓ ମାଧବ (ବିଷ୍ଣୁ) ମନ୍ଦିର ନିର୍ମିତ ହେବା ସଙ୍ଗେ ସଙ୍ଗେ ବହୁ ବ୍ରାହ୍ମଣ ଗ୍ରାମ ସ୍ଥାପିତ ହୋଇଥିଲା । ପରବର୍ତ୍ତୀ କାଳରେ ଆଗଙ୍ଗା ଗୋଦାବରୀ ବିସ୍ତୃତ ବିଶାଳ ଉତ୍କଳ ଖଣ୍ଡରେ ପ୍ରବଳ-ପରାକ୍ରମ ଗଙ୍ଗସମ୍ରାଟ୍‌ମାନେ ଶତ ଶତ ଶାସନ ପ୍ରତିଷ୍ଠା କରିଥିଲେ । ଯେଉଁ ରାଜା ଯେତେ ଶାସନ ବସାଉଥିଲେ ଲୋକମୁଖରେ ତାଙ୍କର ଖ୍ୟାତି ସେତିକ ବଢ଼ୁଥିଲା ।

ମହାତ୍ମା ଜୟଦେବଙ୍କ ଆବିର୍ଭାବ ସମୟରେ ସମୁଦ୍ରର ବେଳାଭୂମି ପର୍ଯ୍ୟନ୍ତ ବିସ୍ତୃତ ଉତ୍କଳଖଣ୍ଡ କପରି ଶତ ଶତ ଦେବମନ୍ଦିର, ଯୂପସ୍ତମ୍ଭ, ତଡ଼ାଗ, ମଠ, ପୂଜାସ୍ଥଳୀ, ମଣ୍ଡପ, ସଭାଗାର ଓ ସୁରମ୍ୟ ଉପବନ ଓ ସେତୁନିବନ୍ଧ ଦ୍ୱାରା ମଣ୍ଡିତ ହୋଇ ଦର୍ଶକ ହୃଦୟକୁ ଯୁଗପତ୍ ହର୍ଷ ଓ ଭକ୍ତିରସାପ୍ଲୁତ କରୁଥିଲା; ତାହାର ଏକ ମନୋଜ୍ଞ ଚିତ୍ର ଭକ୍ତକବିଙ୍କ ଅନ୍ତରଙ୍ଗ ବନ୍ଧୁ ଓ ତାଙ୍କ ଶ୍ରୀ ଗୀତଗୋବିନ୍ଦର ପ୍ରଥମ ଟୀକାକାର କବୀନ୍ଦ୍ର ଉଦୟନାଚାର୍ଯ୍ୟଙ୍କ ରଚିତ ଶୋଭନେଶ୍ୱର ମନ୍ଦିର

---

ହୋଣେ ହୋଣେ ଚ ଲିଙ୍ଗାନ ତଟେ ତସ୍ୟା ମନୋରମେ
ସର୍ବଦ ସୁଖସଂସ୍ଥାରେ ବିଦ୍ୱଜ୍ଜନ ସୁସେବିତେ ॥
ତିବ ବଲେଶ୍ୱରେ ନାମ ବଲ୍ୟମୂଳାଦ୍ରି ହୋଦ୍ଭବଃ
ତଂଦୃଷ୍ଟ୍ୱା ପୂଜୟିତ୍ୱା ଚ ନରଃ ଶିବମବାପ୍ନୁୟାତ୍ ॥"
ଶ୍ରୀରାଧାରମଣ ପୁସ୍ତକାଳୟ ଦ୍ୱାରା ପ୍ରକାଶିତ କପିଳସଂହିତା,
ପୃ ୧୦୫—୧୦୭ ।

(୧୫) ଓ ମେଘେଶ୍ୱର ମନ୍ଦିର ଅଭିଲେଖ ଦ୍ୱୟରେ ପ୍ରଦତ୍ତ ହୋଇଅଛି । (୧୬) ପ୍ରଥମଟିରେ ପ୍ରାଚୀ ତୀରବର୍ତ୍ତୀ ନେ (ନ)ପ୍ୟାଳୀ ଶାସନ ଓ ଦ୍ୱିତୀୟଟିରେ ଏକାମ୍ର ନାମରେ ପ୍ରସିଦ୍ଧ ଭୁବନେଶ୍ୱରସ୍ଥ 'ବ୍ରହ୍ମପୁର' ଶାସନ ନିକଟବର୍ତ୍ତୀ ଅଞ୍ଚଳର ଐଶ୍ୱର୍ଯ୍ୟ, ବିଭବ ଓ ମାହାତ୍ମ୍ୟ କୀର୍ତ୍ତିତ ହୋଇଅଛି । କବିରାଜ ଜୟଦେବଙ୍କ ଜନ୍ମଭୂମି କେନ୍ଦୁବିଲ୍ୱ' ଶାସନ 'ନେପ୍ୟାଳ' ଓ 'ବ୍ରହ୍ମପୁର' ଶାସନ ଦ୍ୱୟର ମଧ୍ୟବର୍ତ୍ତୀ ଅଞ୍ଚଳରେ ଅବସ୍ଥିତ ଥିବାରୁ ଏବଂ ସେ ଯୁଗରେ ଶାସନ ସ୍ଥାପନ ପ୍ରଣାଳୀରେ ବିଶେଷ ସାମଞ୍ଜସ୍ୟ ଥିବାରୁ ଲେଖଦ୍ୱୟ ବର୍ଣ୍ଣିତ ବିବରଣ ନିଃସନ୍ଦେହରେ ଏଥିପ୍ରତି ପ୍ରଯୁଜ୍ୟ ହୋଇପାରେ ।

## କେନ୍ଦୁଲୀ ଅଞ୍ଚଳର ପ୍ରାଚୀନ କୀର୍ତ୍ତି—

କେନ୍ଦୁଲୀ ଅଞ୍ଚଳର ପ୍ରାଚୀନ କୀର୍ତ୍ତିରାଜି ମଧ୍ୟରେ ଏହାର ଅଦୂରବର୍ତ୍ତୀ 'ଅଡ଼ଙ୍ଗପୁର' ଗ୍ରାମସ୍ଥ ସ୍ୱପ୍ନେଶ୍ୱର ମନ୍ଦିର ସର୍ବାଦୌ ଉଲ୍ଲେଖଯୋଗ୍ୟ । 'କେନ୍ଦୁବିଲ୍ୱ' ପରି ଅଡ଼ଙ୍ଗପୁର ମଧ୍ୟ 'ହୋଶେ ହୋଶେ ତଟେ ଲିଙ୍ଗମ୍' ମଣ୍ଡିତ ପୁଣ୍ୟତୋୟା ପ୍ରାଚୀନଦୀ କୂଳରେ ଅବସ୍ଥିତ । ବୌଦ୍ଧ ବଜ୍ରଯାନର ଦେବତା 'ଉଡ୍ଡୀଶ'ଙ୍କ ନାମାନୁସାରେ ଏହାର ନାମ ଉଡ୍ଡୀଶପୁର ହୋଇଥିଲା । (୧୭) କିନ୍ତୁ କାଳଚକ୍ରର ଆବର୍ତ୍ତନରେ ପ୍ରାଚୀନଦୀର ଧାର ଏ ଅଞ୍ଚଳରେ ଶୁଷ୍କ ଓ ବନ୍ୟ ବୃକ୍ଷ ଓ କଣ୍ଟକ ଗୁଳ୍ମାଚ୍ଛାଦିତ ବାଲିବନ୍ତରେ ପରିପୂର୍ଣ୍ଣ ।

---

(୧୫) "କ୍ୱଚଦ୍ଦେବେ ବାପାଃ କ୍ୱଚଦପି ତଡ଼ାଗାଃ କ୍ୱଚଦମା
ମଠାଃ ପୂଜାଃ କ୍ୱାପି କ୍ୱଚଦପି ତଥା ମଣ୍ଡପସ୍ତୋଃ
ପ୍ରପାଃ କ୍ୱାପି କ୍ୱାପି ପ୍ରଥିତପଦମୁଦାରାଃ ଛିତରୁହୋ
ବିରାଜନ୍ତ୍ୟ ସ୍ଥାନେ ଜଲଧିବଲୟେ ଯସ୍ୟ ପରିତଃ ॥" ୨୧ ।
ଶୋଭନେଶ୍ୱର ମନ୍ଦିର ଲେଖ, (J.B.O.R.S. Vol XVII)

(୧୬) "ଅପାଂ ଶାଳାମାଳା ପଥିପଥି ତଡ଼ାଗାଃ ପ୍ରଥିପୂର୍
ପ୍ରବାପାଃ ସଂପୂର୍ଣ୍ଣାଃ ପ୍ରତିସୁରଗୃହଂ ଯସ୍ୟ ବିମଳାଃ
ମଠାଃ ବେଦାଧୀନାଂ ଦ୍ୱିଜପୁର ବିହାରାଃ ପ୍ରତିଦିଶଂ
ବିରାଜନ୍ତେ ଯତ୍ନାଣ୍ୟପି ଚ ପରିତଃ ସେତୁନିବହାଃ"
ମେଘେଶ୍ୱର ମନ୍ଦିର ଲେଖ (E I. Vol VI. p ୨00ff)

(୧୭) ବୌଦ୍ଧ ବଜ୍ରଯାନ ଦେବତା ମାରିଚୀଙ୍କ ଅବସ୍ଥିତି ଯୋଗୁଁ ସମୁଦ୍ର କୂଳବର୍ତ୍ତୀ ଏକ ଗ୍ରାମ 'ମାରିଚପୁର ନାମରେ ଆଖ୍ୟାତ ହୋଇଥିଲା । ଏହାର ବର୍ତ୍ତମାନ ନାମ ମରିଚପୁର ।

ପ୍ରାଚୀ ଖରବର୍ତ୍ତୀ ସ୍ୱପ୍ନେଶ୍ୱର ମନ୍ଦିର ମଧ୍ୟ ଭଗ୍ନଦଶାପନ୍ନ । ଏହି ମନ୍ଦିରଟି ଚତୁରସ୍ର ଓ କନ୍ଦାପଥରରେ ନିର୍ମିତ । ଜବଲପୁର ଜିଲ୍ଲାର ତିଗଓ୍ୱା, ଭୂମାର, ନାଚନା-କୁଠାର, ସାଞ୍ଚୀ, ବୁଦ୍ଧଗୟା, ଦେଓଗଡ଼ ଓ ଆସାମର ଦାହ ପର୍ବତିଆ ପ୍ରଭୃତି ସ୍ଥାନରେ ନିର୍ମିତ ଗୁପ୍ତଯୁଗର ମନ୍ଦିରମାନଙ୍କ ସହିତ ସ୍ୱପ୍ନେଶ୍ୱର ମନ୍ଦିରର ସାମଞ୍ଜସ୍ୟ ଲକ୍ଷିତ ହୁଏ । ମନ୍ଦିରର ବାଡ଼ ତୁଳନାରେ ଶିଖରର ଉଚ୍ଚତା ଅତି ଅଳ୍ପ । ଷଷ୍ଠ ଶତାବ୍ଦୀରେ ନିର୍ମିତ ଭୁବନେଶ୍ୱରର ପ୍ରାଚୀନତମ ଲକ୍ଷ୍ମଣେଶ୍ୱର, ଭରତେଶ୍ୱର ଓ ଶତ୍ରୁଘ୍ନେଶ୍ୱର ମନ୍ଦିର ସମୂହରେ ଶିଖର ଅଂଶର ଓସାର କ୍ରମଶଃ କମିଯାଇ ବେକ ନିକଟରେ ସଂପୂର୍ଣ୍ଣ ବକ୍ର ଆକାର ଧାରଣ କରିଛି । ତେଣୁ ଏଥିରେ ବେକ ଗୋଟିଏ ବଶିଷ୍ଟ ଓ ଚିତ୍ତାକର୍ଷକ ସ୍ଥାନ ଅଧିକାର କରିଛି । ବେକ ଉପରେ ଆମଳକ, ଖପୁରି ଓ କଳସ ରହିଛି । କିନ୍ତୁ ସ୍ୱପ୍ନେଶ୍ୱର ମନ୍ଦିରର ଶିଖର ଅଂଶ କ୍ରମଶଃ ଗୋଲିଆ ନ ହୋଇ ମଉଡ଼ମରା ଘରର ଚାଳପରି ଦେଖାଯାଉଛି । ଏହାର ଆଦୌ ବେକ ନାହିଁ । ମନ୍ଦିରର ଅଁଳା ପଥର ଅତିକ୍ଷୁଦ୍ର ଓ ମୁଦ ପଥର ପରି ରଖାଯାଇଛି । ମନ୍ଦିର ନିର୍ମାଣ ପ୍ରଣାଳୀରେ ଏହି ପ୍ରାଥମିକ ଅବସ୍ଥା ବିଚାରରେ ଏହାକୁ ଗୁପ୍ତଯୁଗର ଏକ ମନ୍ଦିର ରୂପେ ଗ୍ରହଣ କରାଯାଇ ପାରେ । ଏହା ପ୍ରାଚୀ ଉପତ୍ୟକାର ଏକ ପ୍ରାଚୀନତମ ମନ୍ଦିର ।

ଅଡ଼ଶପୁରରେ ଗଙ୍ଗଯୁଗରେ ନିର୍ମିତ କୃଷ୍ଣବିହାରୀଙ୍କ ପ୍ରାଚୀନ ମନ୍ଦିର ନୂତନ ଭାବରେ ନିର୍ମିତ ହୋଇଅଛି । କେବଳ ପୂର୍ବ ମନ୍ଦିରର କେତେକ କାରୁକାର୍ଯ୍ୟ ମଣ୍ଡିତ କମନୀୟ ବିଗ୍ରହ ନୂତନ ମନ୍ଦିର ଗାତ୍ରରେ ଖଞ୍ଜା ଯାଇଛି ।

ଏହି ଦୁଇଟି ମନ୍ଦିର ବ୍ୟତୀତ ଅଡ଼ଶପୁରରେ ଏକ ଦିଗମ୍ବର ଜୈନ ମନ୍ଦିର ଥିବାର ଜଣାଯାଏ । ମନ୍ଦିରଟି କାଳକ୍ରମେ ଲୁପ୍ତ ହୋଇଯାଇଛି । କିନ୍ତୁ ମନ୍ଦିରରେ ପୂଜିତ ହେଉଥିବା ମୁଗୁନି ପଥରରେ ଖୋଦିତ ଋଷଭଦେବଙ୍କ ଏକ କମନୀୟ ଦଣ୍ଡାୟମାନ ବିଗ୍ରହ (୨୮"×୧୧") ସ୍ୱପ୍ନେଶ୍ୱର ମନ୍ଦିରରେ ସୁରକ୍ଷିତ । ଋଷଭଦେବଙ୍କ ଲାଞ୍ଛନ ବୃଷଭ ଅକ୍ଷୁର୍ଣ୍ଣ ରହିଛି । ପ୍ରତିମାର ଦୁଇପାଖରେ ତଳୁ ଉପରକୁ ପର୍ଯ୍ୟାୟ କ୍ରମରେ ୧୨ଟି ଲେଖାଏଁ ଦଣ୍ଡାୟମାନ ଉଲଗ୍ନ ତୀର୍ଥଙ୍କର ମୂର୍ତ୍ତି ଖୋଦିତ ହୋଇଅଛି ।

ଅଡ଼ଶପୁରର ଅନ୍ୟ ଏକ ଶିବ ମନ୍ଦିରରେ ଦଣ୍ଡାୟମାନ ମହାବୀର ମୂର୍ତ୍ତି ରକ୍ଷିତ । ଏହାର ଦୁଇ ପାର୍ଶ୍ୱରେ ଧ୍ୟାନରତ ଆଠଟି ଲେଖାଏଁ ତୀର୍ଥଙ୍କର ବା ଅର୍ହତ ମୂର୍ତ୍ତି ଖୋଦିତ ହୋଇଅଛି । ପ୍ରତିମାର ପୃଷ୍ଠ ଦେଶରେ ମକର ତୋରଣ ବିଦ୍ୟମାନ । ଏହି ଦିଗମ୍ବର ଜୈନ ମୂର୍ତ୍ତିଦ୍ୱୟ ସୋମବଂଶୀ ରାଜତ୍ୱ କାଳରେ ନିର୍ମିତ ହୋଇଥିବାର ସ୍ଥିର କରାଯାଇପାରେ ।

ଗୁପ୍ତ ପର ଯୁଗରେ ଉତ୍ତର ଭାରତର ଅନ୍ୟାନ୍ୟ ପ୍ରାନ୍ତ ପରି ପ୍ରାଚୀ ଖରବର୍ତ୍ତୀ କେତେକ ସ୍ଥାନରେ ବଡ଼ ବଡ଼ ଇଟାରେ ଅନେକ ମନ୍ଦିର ନିର୍ମିତ ହୋଇଥିଲା ସେଥିମଧ୍ୟରୁ କେତେକ କାଳକ୍ରମେ ନଷ୍ଟ ଓ ଲୁପ୍ତ ହୋଇଗଲାଣି । ଅବଶିଷ୍ଟ ମନ୍ଦିର

ଗୁଡ଼ିକ ମଧ୍ୟରୁ ରାମେଶ୍ୱର ଗଡ଼ସ୍ଥ ରାମେଶ୍ୱର, ନୀଳକଣ୍ଠପୁର ର ନୀଳକଣ୍ଠ, ନାସିକେଶ୍ୱର ଗ୍ରାମର ନୃତ୍ୟେଶ୍ୱର, ଗୁଡ଼ିବଣେଇ ଗ୍ରାମର ନୀଳକଣ୍ଠେଶ୍ୱର, ନରୁଆ ଗ୍ରାମର ଶଙ୍କରେଶ୍ୱର, ନୁଆସଭାଙ୍ଗ ଗ୍ରାମର ଶଙ୍କରେଶ୍ୱର, କୃଷ୍ଣପ୍ରସାଦ ଗଡ଼ର ବିଶ୍ୱନାଥ, ପିତାପଡ଼ାର ଅଙ୍ଗେଶ୍ୱର, ଅମରପ୍ରସାଦ ଗଡ଼ର ଅମରେଶ୍ୱର, ଲତାହରଣ ଗ୍ରାମର ରାମେଶ୍ୱର, ଜଜଲୁ ଗ୍ରାମର ଈଶ୍ୱରନାଥଙ୍କ ମନ୍ଦିର ଉଲ୍ଲେଖଯୋଗ୍ୟ ।

କେନ୍ଦୁଳି ଗ୍ରାମରେ ମଧ୍ୟ ସୋମବଂଶୀ ରାଜତ୍ୱ କାଳରେ ବଡ଼ ବଡ଼ ଇଟାରେ ନିର୍ମିତ ଦୁଇଟି ଦେବୀ ମନ୍ଦିର ଓ କନ୍ଦା ପଥରରେ ଗଠିତ ଏକ କ୍ଷୁଦ୍ର ଶିବ ମନ୍ଦିରର ଧ୍ୱଂସାବଶେଷ ବିଦ୍ୟମାନ ଥିଲା । ଏହି ଦୁଇଟି ଦେବୀ ମନ୍ଦିର ମଧ୍ୟରୁ ଗୋଟିକର ନିମ୍ନଭାଗ ଧ୍ୱଂସସ୍ତୂପ ମଧ୍ୟରେ ବିଦ୍ୟମାନ ଥିଲା । ଏଥିରେ ଅମ୍ବିକା ନାମରେ ଖ୍ୟାତ ଦେବୀ ବିଗ୍ରହ ପୂଜିତ ହେଉଛନ୍ତି । ଜାଗେଶ୍ୱରୀ ନାମରେ ପରିଚିତ ଅନ୍ୟ ଦେବୀଙ୍କ ମନ୍ଦିରଟି ଗୋଟିଏ ବରଗଛର ଚେର, ଓହଳ ଓ ଗଣ୍ଡି ଭିତରେ ରହିଯାଇ କାଳକ୍ରମେ ଧ୍ୱସ୍ତ ଓ ବିଲୁପ୍ତ ହୋଇଗଲା । ଅମ୍ବିକାଙ୍କ ମନ୍ଦିରଟି ବିମାନ ଓ ଜଗମୋହନକୁ ନେଇ ଗଠିତ । ବିମାନର ଗୋଟିଏ କ୍ଷୁଦ୍ର ପୀଠ ଅଛି ଏବଂ ଏହା ଚତୁରସ୍ର ଓ ପଞ୍ଚରଥ ବିଶିଷ୍ଟ । ଏହା ପୂର୍ବାଭିମୁଖୀ ଏବଂ ଏହାର ପ୍ରବେଶ ଦ୍ୱାର ବଗଡ଼ା କନ୍ଦା ପଥରରେ ଏବଂ ଅନ୍ୟ ସମସ୍ତ ଅଂଶ ବିଭିନ୍ନ ଆକାରର ବଡ଼ ବଡ଼ ଇଟାରେ ତିଆରି ହୋଇଥିଲା । ପ୍ରବେଶ ଦ୍ୱାରରେ ନବଗ୍ରହ ପାଠ ରହିଛି । ନବଗ୍ରହଙ୍କ ତଳେ ବାମଆଡ଼କୁ ଭକ୍ତକବି ଶ୍ରୀ ଜୟଦେବଙ୍କ ଶ୍ରୀ ଗୀତଗୋବିନ୍ଦର ଅତି ଲୋକପ୍ରିୟ 'ଶ୍ରିତକମଳା କୁଚମଣ୍ଡଳ' ଗୀତର ଭଣିତା **ଜୟ ଜୟ ଦେବ ହରେ** ଖୋଦିତ ହୋଇଅଛି । ଲେଖ ଶେଷରେ ଥିବା ଗୃହେଟି ଅଙ୍କ ୧୧୦୨ ବା ୧୧୧୨ ରୂପେ ପଠିତ ହୋଇପାରେ । ଗଙ୍ଗ ରାଜତ୍ୱରେ ଉତ୍କଳରେ ଶକାବ୍ଦର ବିଶେଷ ପ୍ରଚଳନ ଥିବାରୁ ଗଣନା ଅନୁସାରେ ଏହା ୧୧୮୦ ବା ୧୧୯୦ ଖ୍ରୀଷ୍ଟାବ୍ଦ ହେଉଛି । ଏଥିରୁ ସ୍ପଷ୍ଟ ଭାବରେ ଜଣାଯାଏ ଯେ ଏହି ସମୟ ପୂର୍ବରୁ ଶ୍ରୀ ଗୀତଗୋବିନ୍ଦ ରଚିତ ହୋଇ ବିଶେଷ ଲୋକପ୍ରିୟତା ଅର୍ଜନ କରିଥିଲା ।

ଏହି ମନ୍ଦିରର ଜଗମୋହନଟି ବୋଧହୁଏ ଏହି କ୍ଷୁଦ୍ର ଅଭିଲେଖ ଖୋଦିତ ହେବା ପରେ ଛୋଟ ଛୋଟ ମାଙ୍କଡ଼ା ପଥରରେ ନିର୍ମିତ ହୋଇଥିଲା । ଏହାର ଦକ୍ଷିଣ ପୂର୍ବ କୋଣରେ ଅଳ୍ପ ଦୂରରେ **ଜାଗେଶ୍ୱରୀ** ନାମରେ ପରିଚିତ ଦେବୀଙ୍କ ଇଟା ମନ୍ଦିର ଥିଲା । ଦେବୀ ଓ ତାଙ୍କର ପାଦପୀଠ ବ୍ୟତୀତ ସମଗ୍ର ମନ୍ଦିରଟି ଲୋପ ପାଇଯାଇଥିଲା । ଏହାର ପ୍ରବେଶ ଦ୍ୱାର ମଧ୍ୟ କନ୍ଦା ପଥରରେ ନିର୍ମିତ ହୋଇଥିଲା । ଏହାର ପାଠ ପଥରର ଏକ ବଡ଼ଭାଗ ଭଙ୍ଗା ଇଟା ଗଦା ସଫା କରିବା ସମୟରେ ଅଳ୍ପଦିନ ପୂର୍ବେ ମିଳିଅଛି । ସେଥିରେ ମଧ୍ୟ ଗଙ୍ଗ ଯୁଗର ଏକ କ୍ଷୁଦ୍ର ଅଭିଲେଖ ବିଦ୍ୟମାନ । ଏହାର ଅକ୍ଷର ଗୁଡ଼ିକ ନଷ୍ଟ ହୋଇଥିବାରୁ ପଢ଼ାଯାଇ ପାରୁନାହିଁ । ଅମ୍ବିକାଙ୍କ ମନ୍ଦିରର

ଉତ୍ତର ପୂର୍ବ କୋଣରେ କଳା ପଥରରେ ନିର୍ମିତ ଏକ କ୍ଷୁଦ୍ର ଭଗ୍ନ ମନ୍ଦିରରେ 'ମୁକ୍ତେଶ୍ୱର' ନାମରେ ପ୍ରଖ୍ୟାତ ଲିଙ୍ଗମୂର୍ତ୍ତି ପୂଜିତ ହେଉଛନ୍ତି । ଏହି ମନ୍ଦିର ସମୂହର ଚତୁଃପାର୍ଶ୍ୱରେ ମାଙ୍କଡ଼ା ପଥରରେ ନିର୍ମିତ ଏକ ପ୍ରାଚୀର ଥିଲା । ତାହା କାଳକ୍ରମେ ଲୋପ ପାଇଗଲାଣି । ମନ୍ଦିର ଗୃହପାଖ ସଫା କରିବା ସମୟରେ ଦୁଇଟି କ୍ଷୁଦ୍ର ମାଧବ ବିଗ୍ରହ ମିଳିଅଛି । ତେଣୁ ପ୍ରାଚୀକୂଳର ଅନ୍ୟାନ୍ୟ ସ୍ଥାନ ପରି ଏଠାରେ ମଧ୍ୟ ଏକ କ୍ଷୁଦ୍ର ମାଧବ ମନ୍ଦିର ବିଦ୍ୟମାନ ଥିଲା । କିନ୍ତୁ ବର୍ତ୍ତମାନ ଏହାର ଅସ୍ତିତ୍ୱ ଲୁପ୍ତ । ମାଟି ଭିତରୁ ବିଭିନ୍ନ ଆକୃତିର କଳା ପଥରରେ ନିର୍ମିତ ବହୁ ସ୍ତମ୍ଭ ଓ ସ୍ତମ୍ଭର ଅଂଶବିଶେଷ ମିଳି-ଥିବାରୁ ମନ୍ଦିର ନିକଟରେ କେତେକ ମଣ୍ଡପ ନିର୍ମିତ ହୋଇଥିବାର ଜଣାଯାଏ ।

ମୁଖ୍ୟ ମନ୍ଦିରର ଅଧିଷ୍ଠାତ୍ରୀ ଦେବୀ ଅମ୍ବିକା ଚିକ୍କଣ କଳାମୁଗୁନି ପଥ-ରରେ ଖୋଦିତ । ଦ୍ୱିଭୁଜା ଦେବୀ ବିଶ୍ୱପଦ୍ମାସନରେ ଉପବିଷ୍ଟା । ମୂର୍ତ୍ତି ଉପରେ ସପ୍ତଫଣା ବିଶିଷ୍ଟ ନାଗମୂର୍ତ୍ତି, ପଦ୍ମାସନ ତଳକୁ ·ପୀଠ ଦେହରେ ଏକ କୁଣ୍ଡ ମଧ୍ୟରୁ ଉଦ୍‌ଗତ ଲତାର ଦୁଇଆଡ଼କୁ ପତ୍ରପୁଷ୍ପ ଲୋଟିଯାଉଥିବାର ଚିତ୍ର ଖୋଦିତ ହୋଇ-ଅଛି । ଲତାର ବାମଭାଗରେ ଆକ୍ରମଣୋଦ୍ୟତ କ୍ଷୁଦ୍ର ସିଂହମୂର୍ତ୍ତି । ଏହାର ଦକ୍ଷିଣ ଭାଗରେ ଏକ ଉପାସକ ଓ ଏକ ଉପାସିକା ଭୂମିରେ ଜାନୁପାତ ପୂର୍ବକ ଉପାସନାରେ ରତ । ପୀଠର ସର୍ବନିମ୍ନ ଭାଗରେ ପ୍ରକଟିତ ନର୍ତ୍ତକୀମାନଙ୍କର ନୃତ୍ୟ ଅତି ଚମତ୍କାର ଓ ରୁଚିବୋଧକ । ପ୍ରାଚୀନ ମୂର୍ତ୍ତିର ପାଦପୀଠରେ ଏପରି ନୃତ୍ୟର ଦୃଶ୍ୟ କ୍ୱଚିତ୍ ପରିଦୃଷ୍ଟ ହୁଏ । ମୂର୍ତ୍ତିର ମୁଖମଣ୍ଡଳରେ ସୌମ୍ୟଭାବ ଓ ପ୍ରସନ୍ନତା ଫୁଟିଉଠିଛି । ଦୁଇ କାନରେ ଲଗାଯାଇଥିବା ଅଳଙ୍କାର (କାନପାଶା)ର ଗଠନ ଅତି ଚମତ୍କାର । ମସ୍ତକ ସୁନ୍ଦର କିରୀଟ ଓ ମୁକୁଟରେ ମଣ୍ଡିତ । ବେକରେ ଗୃଷପଟି, ପଦକ ଖଞ୍ଜା ରତ୍ନସରିଆ ହାର ଏବଂ ବାହୁରେ କେୟୂର ଓ କଙ୍କଣ ଶୋଭାପାଉଛି । ଉପବୀତସୂତ୍ର ବାମ ସ୍କନ୍ଧରୁ ଦକ୍ଷିଣ ଜାନୁର ଉପର ପର୍ଯ୍ୟନ୍ତ ଦୁଇ କୁଚ ମଧ୍ୟରେ ଲମ୍ବିତ । ଦୁଇପାଦରେ ନୂପୁର, କଟୀରେ ଚନ୍ଦ୍ରହାର ଓ କଙ୍କିଣୀମାଳା ମୂର୍ତ୍ତିଟି ବାମ ହସ୍ତରେ ଏକ ବିକଚ ପଦ୍ମର ନାଳ ଧାରଣ କରିଛନ୍ତି । ପଦ୍ମଫୁଲଟି ବାମସ୍କନ୍ଧ ଉପରକୁ ଅକ୍ଷୁର୍ଣ୍ଣ ଥିଲେ ମଧ୍ୟ ନାଳଟି ଭାଙ୍ଗିଯାଇଛି । ଦକ୍ଷିଣ ହସ୍ତ ଭଗ୍ନ । ଦକ୍ଷିଣ ସ୍କନ୍ଧ ଉପରକୁ ଏକ ପତ୍ରକାହାଳ ମଧ୍ୟରେ ପାଞ୍ଚଟି କଷି ଆମ୍ବର ଏକ ପେନ୍ଥା ଥିବାର ଦେଖାଯାଉଛି । ଅନୁପମ ସୌନ୍ଦର୍ଯ୍ୟ ଓ ଶ୍ରୀସମ୍ପନ୍ନା ଏହି ଅମ୍ବିକା ମୂର୍ତ୍ତି ସିଂହବାହିନୀ ହୋଇଥିବାରୁ ତାହାଙ୍କୁ ପାର୍ବତୀଙ୍କ ସହିତ ଚିହ୍ନିତ କରାଯାଉଛି । କିନ୍ତୁ ମସ୍ତକୋପରି ସପ୍ତଫଣା ବିଶିଷ୍ଟ ନାଗର ଅବସ୍ଥିତି ଯୋଗୁଁ ଏହା ସନ୍ଦେହମୁକ୍ତ ହୋଇପାରୁ ନାହିଁ ।

ଏହି ସ୍ଥାନରେ ପୂଜିତା ଜାଗେଶ୍ୱରୀ ମୂର୍ତ୍ତିଟି ମଧ୍ୟ ମୁଗୁନି ପଥରରେ ଖୋଦିତ । ଦ୍ୱିଭୁଜା ଓ ବିଶ୍ୱପଦ୍ମାସନରେ ଉପବିଷ୍ଟା ଦେବୀମୂର୍ତ୍ତିଙ୍କ ମସ୍ତକୋପରି

ନାଗର ସପ୍ତଫଣା । ପୀଠ ଦେହରେ ପତ୍ରପୁଷ୍ପ ଘରରେ ଅବନତା ଲତା, ପୀଠର ଦକ୍ଷିଣ ବାଗରେ ତଥା ନିମ୍ନଭାଗରେ ଉପାସକ ଓ ଉପାସିକା ମୂର୍ତ୍ତି । ମୂର୍ତ୍ତିର ବାମହସ୍ତ ଭଗ୍ନ । ବାମସ୍କନ୍ଧ ଉପରକୁ ପଦ୍ମ ସମ୍ବଳିତ ବକଚ ପଦ୍ମ । ଦକ୍ଷିଣ ହସ୍ତରେ ଡେମ୍ଫ ଓ ପତ୍ରଥିବା ଗୋଟିଏ ଫଳ (ବୋଧହୁଏ ନେଡ଼ୁଆ) ମୂର୍ତ୍ତିର କଙ୍କଣ ଓ ମୁକୁଟ ଅମ୍ବିକାଙ୍କ କଙ୍କଣ ଓ ମୁକୁଟ ଠାରୁ ପୃଥକ୍ । କର୍ଣ୍ଣଭୂଷଣ, ହାର ଓ କଟୀବନ୍ଧ ମଧ୍ୟ ଟିକଏ ଭିନ୍ନ ପ୍ରକାରର । କଟୀରେ କିଙ୍କିଣୀମାଳ ନାହିଁ । ଉଭୟ ପ୍ରତିମାର ଉପର ଦୁଇକୋଣରେ ଥିବା ଉଡ଼ନ୍ତା ଅପ୍ସରାଙ୍କ ମୂର୍ତ୍ତିରେ ପାର୍ଥକ୍ୟ ଲକ୍ଷିତ ହୁଏ । ଏ ସମସ୍ତ ପାର୍ଥକ୍ୟ ସତ୍ତ୍ୱେ ଉଭୟ ବିଗ୍ରହର ଖୋଦନ ଶୈଳୀରେ ବିଶେଷ ସାମଞ୍ଜସ୍ୟ ଥିବାରୁ ଏ ଦୁଇଟି ଏକ ଯୁଗରେ ନିର୍ମିତ ହୋଇଥିବାର ସ୍ଥିର କରାଯାଇପାରେ ।

ଏଠାରେ ପୂଜିତ ହେଉଥିବା ଦୁଇଟି ମାଧବ ପ୍ରତିମା ମଧ୍ୟରୁ ଗୋଟିକର ଉପର ଭାଗରେ ମକର ତୋରଣ ପରିବର୍ତ୍ତରେ ଅଣ୍ଡାକୃତି ପ୍ରଭାମଣ୍ଡଳ ଖୋଦିତ । ଦୁଇ ପାର୍ଶ୍ୱରେ ଦଣ୍ଡାୟମାନ ଶ୍ରୀ(ଲକ୍ଷ୍ମୀ) ଓ ପୁଷ୍ଟିଙ୍କ ଶିର ଉପରେ ମଧ୍ୟ ସେହିପରି ପ୍ରଭା-ମଣ୍ଡଳ ବିଦ୍ୟମାନ । ତୋରଣ ପରିବର୍ତ୍ତରେ ପ୍ରଭାମଣ୍ଡଳର ଖୋଦନ ମୂର୍ତ୍ତିର ପ୍ରାଚୀନତ୍ୱର ପରିଚାୟକ । ତେଣୁ ଏହାକୁ ନିର୍ଦ୍ଦିଷ୍ଟ ଭାବରେ ସୋମବଂଶୀ ଯୁଗରେ ଅବସ୍ଥାପିତ କରାଯାଇ ପାରେ ।

ମୂର୍ତ୍ତିଙ୍କ ଊର୍ଦ୍ଧ୍ୱ ଦକ୍ଷିଣ ହସ୍ତରେ ଚକ୍ର, ନିମ୍ନ ଦକ୍ଷିଣ ହସ୍ତରେ ପଦ୍ମର ସଙ୍କେତ ରହିଛି । ଊର୍ଦ୍ଧ୍ୱ ବାମହସ୍ତ ଭଗ୍ନ, ନିମ୍ନ ବାମହସ୍ତଟି ଗଦା ଉପରେ ନ୍ୟସ୍ତ । ଚମ୍ପକ-କଳିକାମାଳ ସର୍ବାଙ୍ଗରେ ଲମ୍ବିତ । ବକ୍ଷ ଓ ବାମସ୍କନ୍ଧ ଉପରେ ଉତ୍ତରୀୟ । ଉତ୍ତରୀୟ ଦେହରୁ ଦୁଇଆଡ଼କୁ ଓ ପଛପଟେ ଆଣ୍ଠୁ ତଳ ପର୍ଯ୍ୟନ୍ତ ଆଚ୍ଛାଦନ ବସ୍ତ୍ର ଲମ୍ବିଅଛି । ପରିଧେୟ ବସ୍ତ୍ର କଟୀ ଠାରୁ ଲମ୍ବି ଦୁଇ ଜଂଘ ଉପରେ ଗୁଡ଼ାଯାଇଛି । ଦେହରେ ଉପବୀତ ସୂତ୍ର, କଟୀରେ କଟୀବନ୍ଧ ଓ କିଙ୍କିଣୀ ମାଳ, ଦୁଇ ବାହୁରେ କେୟୂର ଓ କଙ୍କଣ, ବେକରେ କଣ୍ଠିମାଳ ଓ ହାର । ଦୁଇ ମଣିବନ୍ଧରେ ଖଡ଼ୁ ଓ ଦୁଇ ପାଦରେ ନୂପୁର ଶୋଭମାନ । ମୂର୍ତ୍ତିର ଉପର ଦୁଇକୋଣରେ ପୁଷ୍ପମାଲ୍ୟହସ୍ତା ଉଡ୍ଡୀୟମାନା ଅପ୍ସରା । ପ୍ରାଚୀକୂଳରେ ଆବିଷ୍କୃତ ପ୍ରାଚୀନତମ ମାଧବ ବିଗ୍ରହମାନଙ୍କ ମଧ୍ୟରେ ଏହା ଏକତମ ! କିନ୍ତୁ କେନ୍ଦୁଳୀରେ ଅବସ୍ଥିତ ମାଧବ ମନ୍ଦିରଟି ବର୍ତ୍ତମାନ ଲୁପ୍ତ ।

କେନ୍ଦୁଳୀର ଅନ୍ୟ ମାଧବ ବିଗ୍ରହଟି ପରବର୍ତ୍ତୀ କାଳର । ଏପରି ମାଧବ ବିଗ୍ରହ ପ୍ରାଚୀକୂଳର ବହୁ ମନ୍ଦିରରେ ପୂଜିତ ହେଉଛନ୍ତି । ଏହି ମାଧବ ବିଗ୍ରହଙ୍କ ପାଦପୀଠରେ ଅତି ମନୋଜ୍ଞ ଲତା କାମ ଖୋଦିତ ହୋଇଛି । ଏହାର ଦୁଇପାର୍ଶ୍ୱରେ ଶ୍ରୀ ଓ ପୁଷ୍ଟି ବସି, ପଦ୍ମାସନ ଉପରେ ଦୁଇଟି ଦଶାଳାକୃତି ତୋରଣ ତଳେ ... ତିଭଙ୍ଗ

ଠାଣୀରେ ଦଣ୍ଡାୟମାନ'। ସେମାନଙ୍କ ଉପରକୁ ଦୁଇ ପାଖରେ ଦୁଇଟି ମନୋହାରିଣୀ ଚାମରଧାରିଣୀ ମୂର୍ତ୍ତି। ବିଗ୍ରହ ଉପରେ ସୁନ୍ଦର କାରୁକାର୍ଯ୍ୟ ଖଚିତ ତ୍ରିଭଙ୍ଗ ମକର ତୋରଣ। ମକର ଦ୍ୱୟର ଉପରକୁ ଦକ୍ଷିଣରେ ମହେଶ୍ୱର ଓ ବାମରେ ବ୍ରହ୍ମା ଉପବିଷ୍ଟ। ସେମାନଙ୍କ ଠିକଏ ଉପରକୁ ଦୁଇ ପାଖରେ ଦୁଇଜଣ ଲେଖାଁଏ ବାଦ୍ୟକାର ବିଭିନ୍ନ ଭଙ୍ଗୀରେ ବାଜା ବଜାଉଛନ୍ତି। ମୂର୍ତ୍ତିର ଉପର ଦୁଇ କୋଣରେ ଉଡ଼ନ୍ତା ଅପ୍ସରା ମାଧବଙ୍କ ଆୟୁଧମାନଙ୍କ ମଧ୍ୟରୁ ଉ:ଦ ହସ୍ତରେ ଚକ୍ର ଓ ଉ:ବା ହସ୍ତରେ ଶଙ୍ଖ ଅତି ଚମତ୍କାର ଭାବରେ ଖୋଦିତ ହୋଇଅଛି। ନିମ୍ନ ଦ: ହସ୍ତରେ ପଦ୍ମର ସଙ୍କେତ ଓ ନିମ୍ନ ବାମହସ୍ତ ଭଗ୍ନ। ଶିରଃ ଭୂଷଣ କିରୀଟ, ମୁକୁଟ ଓ ମୁକୁଟ ପ୍ରଭାରେ ଖୋଦନକଳା ଅତି ଚମତ୍କାର ଭାବରେ ପ୍ରକଟିତ ହୋଇଅଛି।

କାନରେ ଝରା କାମ ଥିବା ନୋଳି, ହାତରେ ଖଡ଼ୁ, ବାଜୁବନ୍ଧ ଓ କଙ୍କଣ ବେକରେ ବଡ଼ ପଦକ ବସା ପାଞ୍ଚସରିଆ ହାର, କଟୀରେ ଚନ୍ଦ୍ରହାର ଓ କିଙ୍କିଣୀମାଳ, ପାଦରେ ପାଉଜି, ଦେହରେ ଉପବୀତ ସୂତ୍ର ଓ ଚମ୍ପକମାଳା, ପରିଧେୟ ବସ୍ତ୍ରରେ ସୁନ୍ଦର ଧଡ଼ି ଓ ପଠା ପଠା ଗାର ରହିଛି। କିନ୍ତୁ ଏଥିରେ ପ୍ରାଚୀନ ମୂର୍ତ୍ତି ପରି ଉତ୍ତରୀୟ ଓ ଆଚ୍ଛାଦନ ବସ୍ତ୍ର ନାହିଁ। ଦକ୍ଷିଣ ପାଦ ନିକଟରେ ଗରୁଡ଼ ଜାନୁପାତ ପୂର୍ବକ ଉପବିଷ୍ଟ। ମାଧବଙ୍କ ଦୁଇ ସହଚରୀ, ଦୁଇ ଚାମରଧାରିଣୀ ସେବିକାଙ୍କର ଅଙ୍ଗସୌଷ୍ଠବ, ରୂପଲାବଣ୍ୟ ଏବଂ ପ୍ରସନ୍ନ ଓ ସସ୍ମିତ ମୁଖମଣ୍ଡଳ ଦେଖିଲେ ସେଗୁଡ଼ିକ ଜୀବନ୍ତ ପରି ପ୍ରତିଭାତ ହୁଅନ୍ତି। ମୂର୍ତ୍ତି ଖୋଦନରେ ପ୍ରଦର୍ଶିତ ଭାସ୍କର୍ଯ୍ୟର ନୈପୁଣ୍ୟ, ସାବଲୀଳତା ଓ ଚମତ୍କାରିତା ପ୍ରତି ଲକ୍ଷ୍ୟ କଲେ ଏହା ସୋମବଂଶୀ ରାଜତ୍ୱ କାଳରେ (ଆ ୮୭୫ - ୧୧୧୦ ଖ୍ରୀଷ୍ଟାବ୍ଦ) ନିର୍ମିତ ହୋଇଥିବାର ସ୍ଥିର କରାଯାଇ ପାରେ।

କେନ୍ଦୁଲୀର ଏହି ମାଧବଙ୍କ ପାଇଁ ନିର୍ମିତ ମନ୍ଦିରଟି କାଳଗର୍ଭରେ ବିଲୀନ ହୋଇଯାଇଛି। କିନ୍ତୁ କବିରାଜ ଜୟଦେବଙ୍କ ସମୟରେ ଏହି ଦୁଇ ମାଧବଙ୍କ ମନ୍ଦିର ଯେ ଅକ୍ଷୁଣ୍ଣ ଭାବରେ ଦଣ୍ଡାୟମାନ ଥିଲା, ସେଥିରେ ସନ୍ଦେହ ନାହିଁ। ପ୍ରାଚୀ କୂଳେ କୂଳେ ଆବାଲ୍ୟରୁ ଶତ ଶତ ମନ୍ଦିରରେ ପୂର୍ଣ୍ଣ ଅଙ୍ଗ ସୌଷ୍ଠବରେ ଦଣ୍ଡାୟମାନ ଏବଂ ବିଧ ବିଧି କମନୀୟ ଜୀବନ୍ତ ମାଧବ ବିଗ୍ରହ ସନ୍ଦର୍ଶନ କରି ମହାକବି ଜୟଦେବ ମାଧବ ଭକ୍ତିରସରେ ଆପ୍ଲୁତ ହୋଇଯାଇଥିଲେ। ତେଣୁ ସେ ସ୍ୱୀୟ ଅମର କୃତି ଶ୍ରୀଗୀତଗୋବିନ୍ଦରେ ଭକ୍ତବତ୍ସଳ ଚିତ୍ତରେ ବାରମ୍ବାର ମାଧବଙ୍କ ମାହାତ୍ମ୍ୟ କୀର୍ତ୍ତନ କରି ସ୍ୱୀୟ ମାଧବଭକ୍ତିର ପରାକାଷ୍ଠା ପ୍ରଦର୍ଶନ କରିଛନ୍ତି।

ଏଠାରୁ ମିଳିଥିବା କ୍ଷୁଦ୍ର ପାର୍ବତୀ ମୂର୍ତ୍ତିର ମଧ୍ୟ ବିଶେଷତ୍ୱ ରହିଛି। ବିଶ୍ୱ ପଦ୍ମାସନରେ ଉପବିଷ୍ଟା ଏହି ବିଗ୍ରହର ବାମ ଜଂଘ ଉପରେ ଗଣେଶ ଉପବିଷ୍ଟ। ଏପରି ପାର୍ବତୀ ମୂର୍ତ୍ତି କ୍ୱଚିତ୍ ଦେଖାଯାଏ। ଏହା ଏଠାରେ ଅବସ୍ଥିତ କ୍ଷୁଦ୍ର ମୁକ୍ତେଶ୍ୱର ମନ୍ଦିରର ପାର୍ଶ୍ୱଦେବତା ହୋଇଥିବାର ମନେହୁଏ।

ପ୍ରାଚୀ ଉପତ୍ୟକାର ବୈଶିଷ୍ଟ୍ୟ ହେଉଛି ପ୍ରତ୍ୟେକ ତୀର୍ଥ ସ୍ଥାନରେ ଶୈବ୍ (ଲିଙ୍ଗ) ଓ ବୈଷ୍ଣବ (ମାଧବ) ମନ୍ଦିର ଦ୍ୱୟର ଏକତ୍ର ସମାବେଶ । କନ୍ଦୁବିଲ୍ୱ ବା କେନ୍ଦୁଲୀ ଶାସନରେ ଏହି ନିୟମର କୌଣସି ବ୍ୟତିକ୍ରମ ଘଟି ନ ଥିଲା ।

ଏଠାରେ ଅବସ୍ଥିତ ଭୈରବ ମୂର୍ତ୍ତି ଚତୁର୍ଭୁଜ । ଏହାଙ୍କ ଊ.ଦ. ହସ୍ତରେ ତ୍ରିଶୂଳ, ଊ.ବାମ ହସ୍ତରେ କପାଳ, ନିମ୍ନ ବାମ ହସ୍ତରେ ଛିନ୍ନ ମସ୍ତକ ଓ ନିମ୍ନ ଦକ୍ଷିଣ ହସ୍ତ ଭଗ୍ନ । ଊର୍ଦ୍ଧ୍ୱଗ କେଶ, ନୃମୁଣ୍ଡମାଳା, ବିକଟ ବଦନ, ଭୈରବ ଶବ ଉପରେ ଦଣ୍ଡାୟମାନ । ଶବର ବାମ ପାଦକୁ ଶୃଗାଳ ଟାଣୁଛି ଏବଂ ବକ୍ଷଦେଶକୁ ଗୃଧ୍ର ବିଦାରଣ କରୁଛି । ଏହି ଭୈରବ ମୂର୍ତ୍ତି ଏଠାର କୌଣସି ସ୍ୱତନ୍ତ୍ର ମନ୍ଦିରରେ ପୂଜିତ ହେଉଥିଲେ କିମ୍ବା କୌଣସି ମନ୍ଦିର ଗାତ୍ରର ପାର୍ଶ୍ୱଦେବତା ରୂପେ ଖଚିତ ହୋଇଥିଲେ ।

ଉତ୍କଳର କେତେକ ବିଶିଷ୍ଟ ସ୍ଥାନ ପରି ଏଠାରେ ମଧ୍ୟ ଏକ ସୁନ୍ଦର ଆସ୍ତିକ ଓ ଜରତ୍କାରୁ ବିଗ୍ରହ ପୂଜିତ ହେଉଥିବାର ଦେଖାଯାଏ । ଏଗୁଡ଼ିକ ବ୍ୟତୀତ ଆହୁରି କେତେକ ଦେବ ଦେବୀ ବିଗ୍ରହ ଅଦ୍ୟାପି ଭୂଗର୍ଭରେ ଲୁକ୍କାୟିତ ଥିବାର ଅନୁମାନ କରାଯାଏ । କେତେକ ବିଗ୍ରହ ସ୍ଥାନାନ୍ତରିତ ହୋଇଥିବାର ଲୋକ ମୁଖରୁ ଶୁଣାଯାଏ ।

ଅମ୍ବିକା ମନ୍ଦିରରୁ ପ୍ରାୟ ୍ଦଇଶହ ହାତ ଦୂରରେ ଦକ୍ଷିଣ ଦିଗରେ ଅଦ୍ୟାପି ଏକତ୍ର ପ୍ରୋଥିତ ଦୁଇଟି ଯୂପସ୍ତମ୍ଭର ଭଗ୍ନାବଶେଷ ପରିଦୃଷ୍ଟ ହୁଏ । ଜନଶ୍ରୁତି ଅନୁଯାୟୀ ଶ୍ରୀ ଜୟଦେବ ଏଠାରେ ଯଜ୍ଞାନୁଷ୍ଠାନ କରିଥିଲେ । ଅଦ୍ୟାପି ପ୍ରତିବର୍ଷ ପବିତ୍ର ଅକ୍ଷୟ ତୃତୀୟା ଦିବସରେ ସେହି ମହାପୁରୁଷଙ୍କ ସ୍ମୃତି ରକ୍ଷା ଉଦ୍ଦେଶ୍ୟରେ ଏହା ନିକଟରେ ଯଜ୍ଞ ସମ୍ପନ୍ନ କରାଯାଏ । ଏହି ଯୂପ ସ୍ତମ୍ଭଦ୍ୱୟ ଏ ସ୍ଥାନର ପ୍ରାଚୀନତ୍ୱର ପରିଚାୟକ । ପ୍ରାଚୀ କୂଳବର୍ତ୍ତୀ ତୋଳା – ଗୋପୀନାଥପୁର ଗ୍ରାମରେ 'ଅଗ୍ନି ତୀର୍ଥ' ନାମରେ ବିଦିତ ଏକ କ୍ଷେତ୍ରରେ ନଦୀ ଗର୍ଭର ବିଭିନ୍ନ ସ୍ଥାନରେ କେତେଗୁଡ଼ିଏ ଯୂପସ୍ତମ୍ଭ ଦେଖାଯାଏ ଏବଂ ପ୍ରତ୍ୟେକ ସ୍ଥାନରେ ଦୁଇଟି ବା ତିନୋଟି ଲେଖାଏ ଯୂପସ୍ତମ୍ଭର ଏକତ୍ର ସମାବେଶ କରାଯାଇଛି । ଏଥିମଧ୍ୟରୁ ଗୋଟିକର ଉଚ୍ଚତା ୪'.୫" ଓ ପରିଧି ୩' । ଜନଶ୍ରୁତି ଅନୁସାରେ ଏଠାରେ ଶ୍ରୀରାମଚନ୍ଦ୍ର ଏକ ବିରାଟ ଯଜ୍ଞ ସମ୍ପନ୍ନ କରିଥିଲେ । କେନ୍ଦୁଲୀରେ ଦୁଇଟି ଯୂପସ୍ତମ୍ଭ ଭାଙ୍ଗି ଯାଇଥିବାରୁ ଓ ଏହାର କେତେକାଂଶ ମାଟିରେ ପୋତି ହୋଇଥିବାରୁ ଉଚ୍ଚତା ଜଣା ପଡୁନାହିଁ । କିନ୍ତୁ ଏହି ଯୂପସ୍ତମ୍ଭର ପରିଧି ପ୍ରାୟ ୩ ଫୁଟ ।

ଦୁଇ ଯୂପସ୍ତମ୍ଭର ଅଳ୍ପ ଦୂରରେ ଦକ୍ଷିଣ ପଶ୍ଚିମ କୋଣରେ ଅତୀତରେ ଚନ୍ଦନ ଯାତ୍ରା ଉଦ୍ଦେଶ୍ୟରେ ବ୍ୟବହୃତ ଏକ ଜଳାଶୟ ବର୍ତ୍ତମାନ ପରିତ୍ୟକ୍ତ ଓ ଦଳାଚ୍ଛାଦିତ ଅବସ୍ଥାରେ ପରିଦୃଷ୍ଟ ହୁଏ । ଚନ୍ଦନଯାତ୍ରା ସମଗ୍ର ଉତ୍କଳର ଏକ ବିଶିଷ୍ଟ ଜାତୀୟ

ପର୍ବ । ପ୍ରତିବର୍ଷ ଅକ୍ଷୟ ତୃତୀୟା ଦିନରୁ ୨୧ ବା ୨୨ ଦିନ ପର୍ଯ୍ୟନ୍ତ ଚନ୍ଦନୋତ୍ସବ ଉତ୍କଳର ପ୍ରସିଦ୍ଧ ସ୍ଥାନ ଗୁଡ଼ିକରେ ମହାସମାରୋହରେ ଅନୁଷ୍ଠିତ ହୁଏ । କେନ୍ଦୁଲୀରେ ଚନ୍ଦନ ପୁଷ୍କରିଣୀର ଅବସ୍ଥିତି ଏ ଶାସନର ବୈଶିଷ୍ଟ୍ୟର ପରିଚାୟକ । ଚନ୍ଦନ ପୁଷ୍କରିଣୀ ବ୍ୟତୀତ ଅମ୍ବିକା ମନ୍ଦିରର ଅଳ୍ପଦୂରରେ ଉତ୍ତର ପୂର୍ବ କୋଣରେ ଏକ ନାତି-ବୃହତ୍ ପ୍ରାଚୀନ ଜଳାଶୟର ଅବଶେଷ ଦୃଷ୍ଟିଗୋଚର ହୁଏ । ମନ୍ଦିର ଗୁଡ଼ିକର ନିର୍ମାଣ ସମୟରେ ଏହି ତଡ଼ାଗ ଖୋଦିତ ହୋଇଥିବା ମନେହୁଏ ।

କେନ୍ଦୁଲୀ ଗ୍ରାମର ଦକ୍ଷିଣ ସୀମାରେ ପ୍ରାଚୀନ ନୃସିଂହ ମନ୍ଦିର ଅବସ୍ଥିତ । ଗତ କେତେ ବର୍ଷ ପୂର୍ବେ ଏହି ମନ୍ଦିରର ଜୀର୍ଣ୍ଣୋଦ୍ଧାର କାର୍ଯ୍ୟ ସାଧିତ ହୋଇଅଛି । ଶ୍ରୀ ନୃସିଂହ ବର୍ତ୍ତମାନ କେନ୍ଦୁଲୀ ଗ୍ରାମର ମୁଖ୍ୟ ଦେବତା ରୂପେ ପୂଜିତ ହେଉଅଛି । ଗଙ୍ଗବଂଶ ରାଜତ୍ୱ କାଳରେ ଶ୍ରୀନୃସିଂହ ପୂଜା ଉତ୍କଳରେ ବିଶେଷ ଭାବରେ ପ୍ରଚଳିତ ହୋଇଥିଲା । ତେଣୁ ଉକ୍ତ ମନ୍ଦିରଟି କେନ୍ଦୁଲୀ ତାମ୍ର ଶାସନର ଦାତା ଗଙ୍ଗ ସମ୍ରାଟ୍ ଚତୁର୍ଥ ନରସିଂହଙ୍କ ଦ୍ୱାରା ନିର୍ମିତ ହୋଇଥିବା ସ୍ଥିର କରାଯାଇ ପାରେ ।

ଉକ୍ତ ମନ୍ଦିର ନିକଟରେ ଥିବା ପ୍ରାଚୀନ ଜଳାଶୟର ପଙ୍କୋଦ୍ଧାର ସମୟରେ ଏକ ପଥର ପେଡ଼ି ମଧ୍ୟରେ ଗଙ୍ଗ ସମ୍ରାଟ୍ ଚତୁର୍ଥ ନରସିଂହ ଦେବ (୧୩୭୮ — ୧୪୦୬)ଙ୍କ ଏକ ବୃହତ୍ ତାମ୍ର ଶାସନ ଆବିଷ୍କୃତ ହୋଇଥିଲା । କେନ୍ଦୁଲୀ ଗ୍ରାମ ଜଗନ୍ନାଥ ମହାପ୍ରଭୁଙ୍କ 'ଅମୃତ ମଣୋହି' ସମ୍ପତ୍ତି । ଏହି ସମ୍ପତ୍ତିର ନ୍ୟାସୀ ପୁରୀ ଝାମାଲୀ ମଠର ମହନ୍ତ ମହାରାଜ ଉକ୍ତ ତାମ୍ର ଶାସନଟିକୁ ପୁରୀ ମଠକୁ ନେଇଗଲେ । କିନ୍ତୁ ଏହାର ପଥର ପେଡ଼ିଟି କେନ୍ଦୁଲୀରେ ଥିବା ଝାମାଲୀ ମଠ କଚେରୀ ହତା ମଧ୍ୟରେ ଏପର୍ଯ୍ୟନ୍ତ ରଖା ଯାଇଥିଲା । ପ୍ରଥମେ ସ୍ୱର୍ଗତଃ ମନମୋହନ ଚକ୍ରବର୍ତ୍ତୀ ଏହି ତାମ୍ର ଶାସନର ପାଠ ୧୮୯୫ ମସିହାରେ କଲିକତାରୁ ପ୍ରକାଶିତ ଏସିଆଟିକ ସୋସାଇଟି ପତ୍ରିକାରେ ପ୍ରକାଶ କରିଥିଲେ । (୧୮)

ବହୁଦିନ ପରେ ୧୯୨୭ ମସିହାରେ ପଣ୍ଡିତ ଶ୍ରୀ ସତ୍ୟନାରାୟଣ ରାଜଗୁରୁ ଝାମାଲୀ ମଠ ମହନ୍ତଙ୍କ ଆନୁକୂଲ୍ୟରେ ଏହି ପ୍ରସିଦ୍ଧ ତାମ୍ର ଶାସନର ପ୍ରତିଲିପି ସଂଗ୍ରହ କରିଥିଲେ । ପ୍ରାୟ ସାର୍ଦ୍ଧ ୩୦ ବର୍ଷ ପରେ ୧୯୫୬ ମସିହାରେ ରାଜଗୁରୁ ମହାଶୟ ବିସ୍ତୃତ ଆଲୋଚନା ସହ 'ଚତୁର୍ଥ ନରସିଂହ ଦେବଙ୍କ କେନ୍ଦୁଲୀ ତାମ୍ର ଶାସନ'ଟିକୁ ରାଜ୍ୟ ମିଉଜିୟମ୍ ତରଫରୁ ଇଂରେଜୀ ଭାଷାରେ ମୁଦ୍ରିତ ଗବେଷଣା ପତ୍ରିକାରେ ପ୍ରକାଶ

---

(୧୮) 'Two copper plate inscriptions of King Narasimha Deva IV of Orissa'. The J. A. S. Bengal, Vol. LXIV, 1895.

କରିଥିଲେ । (୧୯) ଏହି ଦାନପତ୍ରଟି ଶ୍ରୀ ନୃସିଂହଦେବ (ଚତୁର୍ଥ)ଙ୍କ ରାଜତ୍ବର ଅଷ୍ଟମ ଅଙ୍କରେ ୧୩୦୫ ଶକାବ୍ଦ (୧୩୮୩ ଖ୍ରୀଷ୍ଟାବ୍ଦରେ ଓଡ଼ିଶା ରାଜଧାନୀ ବାରାଣସୀ କଟକରୁ ପ୍ରଦତ୍ତ ହୋଇଥିଲା । ଏହାଦ୍ୱାରା କଳମୋର (ବିଷୟ) ଉତ୍ତରଖଣ୍ଡ ମଧ୍ୟବର୍ତ୍ତୀ କନର ଗ୍ରାମକୁ ବିଜୟ ନରସିଂହପୁର ଶାସନ ନାମକରଣ କରାଯାଇ ମହାପାତ୍ର ନରହରି ଦାସ ପ୍ରହରାଜଙ୍କୁ ପ୍ରଦତ୍ତ ହୋଇଥିଲା । ଦାନ ଗ୍ରହୀତା ହରି ପ୍ରହରାଜ ନାମରେ ଏ ଅଞ୍ଚଳରେ ପ୍ରଚଳିତ ଜନଶ୍ରୁତିରେ ଅଦ୍ୟାପି ଆଖ୍ୟାତ ହୁଅନ୍ତି । ତାଙ୍କର ଘର, ହ୍ରଦ, ପୋଖରୀ ପ୍ରଭୃତି କେନ୍ଦୁଳୀ ଠାରୁ ଅଳ୍ପ ଦୂରବର୍ତ୍ତୀ ଏକ ଗ୍ରାମରେ ପରିଦୃଷ୍ଟ ହୁଏ ।

ତାମ୍ରଶାସନ ବର୍ଣ୍ଣିତ 'ମହୁଲୁଣ୍ଡା'ର ବର୍ତ୍ତମାନ ନାମ 'ମହୁଖଣ୍ଡା' ଏବଂ ଏହା ଏ ଅଞ୍ଚଳର ଏକ ବଡ଼ ଗ୍ରାମ । ଏଥିରେ ଲିଖିତ 'ଭକର ସାହି ଗ୍ରାମ' ଏବେମଧ୍ୟ ସେହି ପୂର୍ବ ନାମରେ ପ୍ରଖ୍ୟାତ । ଏହା କୁଶଭଦ୍ରା ନଦୀ କୂଳରେ ଅବସ୍ଥିତ ଏକ ବଶିଷ୍ଟ ଗ୍ରାମ ।

ଦାନପତ୍ରରୁ ଜଣାଯାଏ ଯେ, ଏହି ଶାସନର ପଶ୍ଚିମ ସୀମାରେ ଉଲଟପୁର ଶାସନ ଓ **ଅଳହାସପୁର** ନାମକ ଦୁଇଟି ଶାସନ ଅବସ୍ଥିତ ଥିଲା । ଅଳହାସପୁର ଶାସନର ବିଶେଷ ଐତିହାସିକ ଗୁରୁତ୍ୱ ରହିଛି । ଉତ୍କଳରେ ଗଙ୍ଗସାମ୍ରାଜ୍ୟ ପ୍ରତିଷ୍ଠାତା ଶ୍ରୀ ଚୋଡ଼ଗଙ୍ଗ ଦେବଙ୍କ କନିଷ୍ଠ ପୁତ୍ରଙ୍କ ନାମ ଅଳହାସଦେବ । ସେ ତାଙ୍କ ନାମରେ କେନ୍ଦୁଳୀ ଅଞ୍ଚଳରେ ଉକ୍ତ ଶାସନ ପ୍ରତିଷ୍ଠା କରିଥିବାରୁ ଦ୍ୱାଦଶ ଶତାବ୍ଦୀରେ ଏ ଅଞ୍ଚଳର ଗୁରୁତ୍ୱ ସ୍ପଷ୍ଟ ପ୍ରତିପାଦିତ ହୁଏ ।

ଗଙ୍ଗସମ୍ରାଟ୍ ଚତୁର୍ଥ ନରସିଂହଦେବ କେନ୍ଦୁବିଲ୍ୱ ଶାସନ ନିକଟରେ ୧୩୮୧ ଖ୍ରୀଷ୍ଟାବ୍ଦରେ ସ୍ୱ ନାମରେ 'ବିଜୟ ନରସିଂହପୁର ଶାସନ' ପ୍ରତିଷ୍ଠା ପୂର୍ବକ କେନ୍ଦୁବିଲ୍ୱ ଗ୍ରାମର ପଶ୍ଚିମ ସୀମାରେ ଶ୍ରୀ ନୃସିଂହଙ୍କ ପାଇଁ ଏକ ମନ୍ଦିର ନିର୍ମାଣ କରିବା ଦ୍ୱାରା ଭକ୍ତକବି ସ୍ମୃତିପୂତ ଉକ୍ତ ଶାସନର ମହତ୍ତ୍ୱ ଓ ଗୌରବ ବୃଦ୍ଧି ଲାଭ କରିଥିଲା ।

କେନ୍ଦୁବିଲ୍ୱ ଶାସନର ପ୍ରାୟ ଦୁଇମାଇଲ ଦୂରରେ ଉତ୍କଳ ପ୍ରସିଦ୍ଧ 'ତ୍ରିବେଣୀ ସଙ୍ଗମ' ଅବସ୍ଥିତ । କମ୍ବଦନ୍ତୀ ଅନୁଯାୟୀ ଭକ୍ତକବି ଶ୍ରୀ ଜୟଦେବ ପ୍ରତ୍ୟହ ଏହି ତ୍ରିବେଣୀ ସଂଗମରେ ସ୍ନାନ ସମାପନାନ୍ତେ ଘାଟରେ ଅବସ୍ଥିତ ତ୍ରିବେଣୀ ମାଧବଙ୍କୁ ଅତ୍ୟନ୍ତ ଭକ୍ତି ସହକାରେ ପୂଜା କରୁଥିଲେ । ଏଠାରେ ପ୍ରତିବର୍ଷ

(୧୯) The Kenduli copperplate grant of Narasimha Deva IV of Saka 1305. The O. H. R. Journal, Vol V, April 1956, No I, pp 1-100.

'ତ୍ରିବେଣୀ ଅମାବାସ୍ୟା' ନାମରେ ଉତ୍କଳ ଦେଶୀୟ ପଞ୍ଜିକା ଗୁଡ଼ିକରେ ପ୍ରଖ୍ୟାତ ମାଘ ଅମାବାସ୍ୟା ଦିନ ଏକ ବଡ଼ଧରଣର ଯାତ୍ରା ହୁଏ । ଉକ୍ତ ଦିବସରେ ଏଠାରେ ବୁଡ଼ ପକାଇବା ପରେ ଚନ୍ଦ୍ରଭାଗା ମୁହାଣରେ ମାଘ ଶୁକ୍ଳ ସପ୍ତମୀ ଦିନ ବୁଡ଼ ପକାଇବାର ବିଧି ପ୍ରଚଳିତ ଥିଲା । ତ୍ରୟୋଦଶ ଶତାବ୍ଦୀରେ ରଚିତ ଉତ୍କଳର ବିଭିନ୍ନ ତୀର୍ଥର ମହାତ୍ମ୍ୟ ଜ୍ଞାପକ **କପିଳ ସଂହିତା** ନାମକ ଗ୍ରନ୍ଥରେ ଏହାର ବର୍ଣ୍ଣନା ମିଳୁଥିବାରୁ ଏହା ପୂର୍ବରୁ ଯେ ଏହା ଏକ ପ୍ରସିଦ୍ଧ ତୀର୍ଥ ରୂପେ ଖ୍ୟାତିଲାଭ କରିଥିଲା ଏଥିରେ ସନ୍ଦେହ ନାହିଁ । (୨୦)

କେନ୍ଦୁଲୀ ଠାରୁ ୩।୪ ମାଇଲ ଦୂରରେ କୁଶଭଦ୍ରା ନଦୀ କୂଳରେ 'ଭଅଁରି ଗଡ଼' ନାମକ ଗ୍ରାମରେ ମଧୁକେଶ୍ୱର ମନ୍ଦିର ଅବସ୍ଥିତ । ଏହି ମନ୍ଦିରରେ ଥିବା ଓଡ଼ିଆ ଅଭିଲେଖରୁ ଜଣାଯାଏ ଯେ (୨୧) **ଅନଙ୍ଗଭୀମ ଦେବ ରାଜାଙ୍କ ଭାଇଗୋପାଳ ଛୋଟରାଏ** ଇଟା ପୋଡ଼ାଇ ମଧୁକେଶ୍ୱର ମନ୍ଦିର ତୋଳାଇଥିଲେ । ଏ ଦେଉଳ ଭାଙ୍ଗି ହେବାରୁ ପକ୍ଷଖଣ୍ଡ ଉହର ଖଣ୍ଡାଇତ ରାଏ ପିତାମର (ପୀତାମ୍ବର) ମହାପାତ୍ରେ ପାଷାଣ ଦେଉଳ କଲେ । ଦେଉଳ ପୁନଃ ନିର୍ମାଣ ସମୟ ହେଉଛି ଗଜପତି × × ପୁରୁଷୋତ୍ତମ ଦେବଙ୍କ ସମସ୍ତ ୧୫ ଅଙ୍କ କଇନ (କନ୍ୟା) ୧୧ ଦିନ ଆସ୍ୱିନ (ଆଶ୍ୱିନ) ୧୧ଦୁସି (ଏକାଦଶୀ) ରବିବାର (ରବିବାର) । ଅଶ୍ଳେଷା ନକ୍ଷତ୍ରରେ ଗଣନା ଅନୁସାରେ ଏ ଦିନ ପଡ଼ିଥିଲା ୧୪୭୪ ଖ୍ରୀଷ୍ଟାବ୍ଦ ସେପ୍ଟେମ୍ବର ମାସ ୧୨ ତାରିଖ ରବିବାର ଦିନ ସେଦିନ କନ୍ୟା ୧୩ ଦିନ ଆଶ୍ୱିନ କୃଷ୍ଣ ଏକାଦଶୀ ପଡ଼ିଥିଲା ଏବଂ ନକ୍ଷତ୍ର ଅଶ୍ଳେଷା ଥିଲା । ଲେଖ ବର୍ଣ୍ଣିତ ଅନଙ୍ଗଭୀମଦେବଙ୍କୁ ଉତ୍କଳର ଗଙ୍ଗ ସମ୍ରାଟ୍ ପ୍ରଥମ ଅନଙ୍ଗଭୀମ ଦେବ (୧୧୯୦-୧୧୯୮ ଖ୍ରୀଷ୍ଟାବ୍ଦ)ଙ୍କ ସହିତ ଚିହ୍ନିତ

---

(୨୦) "ତ୍ରିବେଣୀ ସଙ୍ଗମଂ ତତ୍ର ମହାପୁଣ୍ୟ ପ୍ରଦାୟକଂ
ତତ୍ର ସ୍ନାନଂ ମହୀପାଲ ମାଘମାସେ ପ୍ରକୀର୍ତ୍ତିତମ୍ ॥
ବିଶେଷେଣ ପ୍ରବକ୍ଷ୍ୟାମି ଅମାବାସ୍ୟାଂ ଫଳଂମହତ୍
ସ୍ନାନଂ ଦତ୍ତ୍ୱା ଜପୋ ଦାନମକ୍ଷୟ୍ୟଂତୁ ସମୀରିତଂ ॥

× × ×

ଏବଂ ବହୁନ୍ କାଳାନ୍ ସନ୍ତି ତସ୍ୟାସ୍ତଟେ ଶୁଭେ
କଃ ଶକ୍ନୋତି ଗୁଣାନ୍ ବକ୍ତୁଂ ତସ୍ୟାଃ ପ୍ରାଚ୍ୟା ମହୀପତେ"
୧୯୨୮ରେ ସ୍ୱର୍ଗତଃ ପଣ୍ଡିତ ରତ୍ନାକର ଗର୍ଗବଟୁଙ୍କ ଦ୍ୱାରା ପ୍ରକାଶିତ କପିଳସଂହିତା
(ପୃ ୧୦୫—୧୦୬)

(୨୧) ଏହି ଗୁରୁତ୍ୱପୂର୍ଣ୍ଣ ଓଡ଼ିଆ ଅଭିଲେଖଟି ମୋ ଦ୍ୱାରା ଆବିଷ୍କୃତ, ପଠିତ ଓ ପ୍ରକାଶିତ ହୋଇଅଛି ।

କରାଯାଇପାରେ । ମଧୁକେଶ୍ୱର ମନ୍ଦିର ନିକଟରେ କବି ଜୟଦେବଙ୍କ ଦ୍ୱାରା ବର୍ଣ୍ଣିତ ରକ୍ତବର୍ଣ୍ଣ ରମ୍ୟ ପାଟଳୀ ପୁଷ୍ପ* ଧାରୀ ବୃକ୍ଷସମୂହର ଏକ ବିରାଟ ଉପବନ ଅଦ୍ୟାପି ବିଦ୍ୟମାନ । ମଧୁକେଶ୍ୱର ମନ୍ଦିର ତ୍ରିବେଣୀ ସଂଗମ ଠାରୁ ଅଳ୍ପ ଦୂରରେ ଅବସ୍ଥିତ ।

ଏହି ଅନଙ୍ଗଭୀମଦେବ (ପ୍ରଥମ)ଙ୍କ ପାଟରାଣୀଙ୍କ ନାମ ବାଘଲ ଦେବୀ । (୨୨) ସେ କୁଶଭଦ୍ରାର ଅପର ପାରରେ ବାଘଲପୁର (ବର୍ତ୍ତମାନ ବାଗଲପୁର) ନାମକ ଶାସନ ପ୍ରତିଷ୍ଠା କରି ଏହା ନିକଟରେ ଏକ ବିରାଟ ପୁଷ୍କରିଣୀ ଖନନ କରିଥିଲେ । ସେ ଏହି ଜଳାଶୟର ପୂର୍ବଦିଗରେ ଶ୍ରୀ ବଳଭଦ୍ର ସୁଭଦ୍ରା, ଓ ଶ୍ରୀଜଗନ୍ନାଥଙ୍କ ପାଷାଣ ବିଗ୍ରହ ସମୂହର ପୂଜା ନିମିତ୍ତ ଇଟାର ଏକ ମନ୍ଦିର ନିର୍ମାଣ କରିଥିଲେ । ମନ୍ଦିରଟି ବର୍ତ୍ତମାନ ଭଗ୍ନ ଏବଂ ପାଷାଣ ବିଗ୍ରହସମୂ ପରିତ୍ୟକ୍ତ ଅବସ୍ଥାରେ ଦଣ୍ଡାୟମାନ । ଗାରେଡ଼ପାଞ୍ଚଣ ଗ୍ରାମରେ ଅବସ୍ଥିତ ଅର୍ଦ୍ଧଭଗ୍ନ ବୁଢନାଥଙ୍କ ବିଶାଳ ମନ୍ଦିର ଅନଙ୍ଗଭୀମ ଦେବଙ୍କ ଦ୍ୱାରା ନିର୍ମିତ ବୋଲି କିମ୍ବଦନ୍ତୀ ଅଦ୍ୟାପି ପ୍ରଚଳିତ ଅଛି ।

କେନ୍ଦୁବିଲ୍ୱ ଶାସନର ପଶ୍ଚିମକୁ ଗଙ୍ଗବଂଶୀୟ ପ୍ରଥମ ନରସିଂହ ଦେବଙ୍କ ଦ୍ୱାରା ନିର୍ମିତ ମାଣିକେଶ୍ୱର ମନ୍ଦିର ବିଦ୍ୟମାନ । ଏହାର ଗର୍ଭଗୃହର ପ୍ରବେଶ ଦ୍ୱାରରେ ଏକ କ୍ଷୁଦ୍ର ଅଭିଲେଖ ଦେଖାଯାଏ । ଏହି ମନ୍ଦିର ନିକଟରେ ବିରାଟ ଚନ୍ଦନ ଜଳାଶୟ ରହିଅଛି । ଏହାର ଅଦୂରରେ ଜଟାଜୁଟ ମଣ୍ଡିତ କୌପୀନଧାରୀ ଏକ ସନ୍ୟାସୀଙ୍କ ଚତୁର୍ଭୁଜ ବିଗ୍ରହ ଅଦ୍ୟାପି ଅବହେଳିତ ଭାବରେ ଦଣ୍ଡାୟମାନ । ଏହା ଭକ୍ତକବି ଜୟଦେବଙ୍କ ମୂର୍ତ୍ତି ବୋଲି ଜନଶ୍ରୁତି ପ୍ରଚଳିତ ଅଛି ।

କୁଶଭଦ୍ରା ନଦୀର ଅପର ପାର୍ଶ୍ୱରେ କାକୋଦରପୁର ନାମକ ଏକ ବ୍ରାହ୍ମଣ ଶାସନ ବିଦ୍ୟମାନ । ନିଆଳି ଶାସନର ଶୋଭନେଶ୍ୱର ମନ୍ଦିରସ୍ଥ ଅଭିଲେଖ ଅନୁଯାୟୀ ଗଙ୍ଗସମ୍ରାଟ୍‌ଙ୍କ ସାମନ୍ତ ବ୍ରାହ୍ମଣ ବଂଶୀୟ କ୍ଷମତାଶାଳୀ ବୈଦ୍ୟନାଥଙ୍କ ରାଜଧାନୀର ନାମ ଥିଲି **ଭୁଜଙ୍ଗମପୁରୀ** । ଏହା ଓ 'କାକୋଦରପୁର' ଏକ ଓ ଅଭିନ୍ନ ବୋଲି ଲେଖ ପାଠକ ଶ୍ରୀ ସୁଧାକର ପଟ୍ଟନାୟକ ମତ ପ୍ରକାଶ କରିଥିଲେ । ତାଙ୍କର ଏହି

---

* "ମିଳତଗଲିମୁଖ ପାଟଳ-ପଟଳ କୃତସ୍ମର ତୂଣବିଳାସେ" ଶ୍ରୀଗୀତଗୋବିନ୍ଦମ୍, ଖଣ୍ଡ ଗୀତ ।

(୨୨) "ତସ୍ୟାସୀଦନସୃଙ୍ଗଭୀମ ନୃପତେର୍ବାଙ୍ଗଲକ୍ଷ୍ମୀଃ ପ୍ରସୂଂ
ସ୍ନେହାତଶସ୍ୟେନ ପଟ୍ଟମହିଷୀ ବାଘଲ୍ଲ ଦେବୀ ଭୁବି ।" (୪୮)
ଏହି ଶ୍ଳୋକଟି ଚତୁର୍ଥ ନରସିଂହଙ୍କ କେନ୍ଦୁଲୀ ତାମ୍ରଶାସନ ଓ ଗଙ୍ଗବଂଶୀୟ ଅନ୍ୟ ତାମ୍ରଶାସନ ଗୁଡ଼ିକରେ ମଧ୍ୟ ପରିଦୃଷ୍ଟ ହୁଏ ।

ସୁଚନ୍ତ୍ରିତ ମତ ଗ୍ରହଣୀୟ । ଏହି ରାଜା ବୈଦ୍ୟନାଥ ନୟାଳି ଶାସନରେ ଶୋଭନେଶ୍ୱର ମନ୍ଦିର ନିର୍ମାଣ କରିଥିଲେ । (୨୩) ମାଧବ ଗ୍ରାମର ପ୍ରସିଦ୍ଧ ମାଧବାନନ୍ଦ ମନ୍ଦିର ତାଙ୍କର କୀର୍ତ୍ତି ରୂପେ ଗୃହୀତ ହୋଇପାରେ ।

କେନ୍ଦୁଲି ଗ୍ରାମ ନିକଟରେ ସ୍ଥାପିତ ବିଶାଳ 'ପ୍ରତାପରୁଦ୍ରପୁର' ଶାସନର ସମୟ ନିରୂପଣ ପାଇଁ ପୁରୀ ଜଗନ୍ନାଥ ମନ୍ଦିରର ଜୟବିଜୟ ଦ୍ୱାରରେ ଖୋଦିତ ଗଜପତି ପ୍ରତାପରୁଦ୍ରଦେବଙ୍କ ଓଡ଼ିଆ ଅଭିଲେଖ ବିଶେଷ ସହାୟକ । ଏହି ଅଭିଲେଖଟି ତାଙ୍କ ରାଜତ୍ୱର ଅ ୪ଙ୍କ, କକଡ଼ା, ଶୁ ୧୦ ବୁଧବାର ଦିନ ଲିଖିତ ହୋଇଥିଲା । (୨୪) ଗଣନା ଅନୁସାରେ ଏହି ଲେଖର ସମୟ ହେଉଛି ୧୫୦୦ ଖ୍ରୀଷ୍ଟାବ୍ଦ, **ଜୁଲାଇ ମାସ ୮ ତାରିଖ, ଆଷାଢ ଶୁକ୍ଳ ଦଶମୀ, ବୁଧବାର ।** ଏ ଦିନ ଶ୍ରୀ ଜଗନ୍ନାଥ ମହାପ୍ରଭୁଙ୍କ ବାହୁଡ଼ାଯାତ୍ରା ଥିବାରୁ ଭାରତର ସର୍ବାଞ୍ଚଳରୁ ଆଗତ ସହସ୍ର ସହସ୍ର ଯାତ୍ରୀ ଶ୍ରୀକ୍ଷେତ୍ରରେ ସମବେତ ହୋଇଥିଲେ । ବିଶାଳ ଭକ୍ତ ଜନତାର ଅବଗତି ନିମିତ୍ତ ଗଜପତି ପ୍ରତାପରୁଦ୍ରଙ୍କ ଆଦେଶ ଅଭିଲେଖ ମାଧ୍ୟମରେ ଘୋଷିତ ହୋଇଥିଲା । ଏହି ଘୋଷଣା ଅନୁଯାୟୀ ଶ୍ରୀ ଗୀତଗୋବିନ୍ଦର ଗୀତ ବ୍ୟତୀତ ଅନ୍ୟ କୌଣସି ଗୀତ ଶ୍ରୀ ଜଗନ୍ନାଥ ମହାପ୍ରଭୁଙ୍କ ବଡ଼ସିଂହାର ଭୃତ୍ୟରୁ ଗାଇବା ବା ନୃତ୍ୟ ସମୟରେ ବୋଲିବା ନିଷେଧ କରାଗଲା । ଦେଉଳର ପରିଛା ବା ସେବକମାନେ ଏ ଆଦେଶ ଅମାନ୍ୟ କଲେ ଶ୍ରୀ ଜଗନ୍ନାଥଙ୍କ ଠାରେ ଦ୍ରୋହୀ ହେବେ ବୋଲି ଘୋଷିତ ହେଲା ।

ଏହି ଘୋଷଣାର ପୃଷ୍ଠଭୂମିରେ ରହିଛି ଆଦ୍ୟରୁ ପ୍ରଚଳିତ ଶ୍ରୀ ଜୟଦେବ ପ୍ରଣୀତ 'ଶ୍ରୀ ଗୀତଗୋବିନ୍ଦ' ପରିବର୍ତ୍ତେ ଉତ୍କଳର କୌଣସି ନରପତିଙ୍କ ଦ୍ୱାରା ପ୍ରଣୀତ ଅନ୍ୟ ଏକ ଗୀତଗୋବିନ୍ଦ ଗାନର ଶ୍ରୀ ଜଗନ୍ନାଥ ମହାପ୍ରଭୁଙ୍କ ସେବାରେ ପ୍ରବର୍ତ୍ତନ । ଏହାଦ୍ୱାରା ଶ୍ରୀଜଗନ୍ନାଥଙ୍କ ସେବାରେ ବହୁପୂର୍ବରୁ ସୁପ୍ରତିଷ୍ଠିତ 'ଶ୍ରୀ ଗୀତଗୋବିନ୍ଦ' ଗାନର ପରଂପରା ଲୋପ ପାଇବାରୁ ଲୋକମତ ଉତ୍କ୍ଷିପ୍ତ ହୋଇଥିଲା । ତେଣୁ ପରମ ବୈଷ୍ଣବ ଗଜପତି ପ୍ରତାପରୁଦ୍ରଦେବ ଏହି ରାଜକୀୟ ଘୋଷଣା ଦ୍ୱାରା ଶ୍ରୀ ଗୀତଗୋବିନ୍ଦ ଗାନ ପୁନଃ ପ୍ରବର୍ତ୍ତନ କରିଥିଲେ । ଏହା ଶ୍ରୀ ଗୀତଗୋବିନ୍ଦ ପ୍ରତି ତାଙ୍କର ଗଭୀର ଭକ୍ତି ଓ ଶ୍ରଦ୍ଧାର ପରିଚାୟକ । ଏହାଦ୍ୱାରା ଅନୁପ୍ରାଣିତ ହୋଇ ସେ

---

(୨୩) **Sobhaneswar temple inscription of Sri Vaidyanath J.B O R,S Vol XVII**

(୨୪) (କ) 'Antiquities of Orissa' by R. L. Mitra, Vol II pp 165 (Appendix)

(ଖ) J. A S. Bengal Vol LXII, 1893. pp 96-97.

ଭକ୍ତକବି ଜୟଦେବଙ୍କ ଜନ୍ମଭୂମି କେନ୍ଦୁବିଲ୍ୱ ଶାସନର ପୂର୍ବ ଗୌରବର ଉଦ୍ଧାର ପାଇଁ ସ୍ୱ ନାମରେ ୧୫୦୯ ଖ୍ରୀଷ୍ଟାବ୍ଦ ବା ତାହାର କିଛିକାଳ ପରେ ବିଶାଳ ପ୍ରତାପରୁଦ୍ରପୁର ଶାସନ ପ୍ରତିଷ୍ଠା କରିଥିଲେ । ଏହି ଶାସନର ପୂର୍ବ ଗୌରବ ଓ ବିଭବ ନ ଥିଲେ ମଧ୍ୟ ଏହା ଅଦ୍ୟାପି ବିଦ୍ୟମାନ ।

## ପ୍ରାଚୀନ ହିନ୍ଦୀ ସାହିତ୍ୟରେ କେନ୍ଦୁବିଲ୍ୱର ମହିମା କୀର୍ତ୍ତନ—

ଷୋଡ଼ଶ ଶତାବ୍ଦୀରେ ଶ୍ରୀକ୍ଷେତ୍ରବାସୀ ମହାପ୍ରଭୁ ଶ୍ରୀଚୈତନ୍ୟ ଓ ତାଙ୍କର 'ପଞ୍ଚସଖା' ନାମରେ ପ୍ରଖ୍ୟାତ ଶ୍ରୀ ବଳରାମ, ଶ୍ରୀ ଜଗନ୍ନାଥ, ଶ୍ରୀ ଯଶୋବନ୍ତ, ଶ୍ରୀ ଅନନ୍ତ ଓ ଶ୍ରୀ ଅଚ୍ୟୁତ ପ୍ରମୁଖ ଭକ୍ତକବିଗଣ ଓ ଶ୍ରୀଚୈତନ୍ୟଙ୍କ ପରମ ସୁହୃଦ ରାୟ ରାମାନନ୍ଦ ଏବଂ ଗୌଡ଼ଦେଶରେ ଆବିର୍ଭୂତ ପ୍ରଭୁ ନିତ୍ୟାନନ୍ଦ ଓ ଶ୍ରୀଚୈତନ୍ୟଙ୍କ ପଟ୍ଟଶିଷ୍ୟ ରୂପେ ପରିଚିତ ଶ୍ରୀରୂପ, ଶ୍ରୀ ସନାତନ, ଶ୍ରୀ ଗୋପାଳ ଭଟ୍ଟ, ଶ୍ରୀ ରଘୁନାଥ ଦାସ ଓ ଶ୍ରୀକୃଷ୍ଣ ଦାସ ପ୍ରମୁଖ ଷଟ୍ ଗୋସ୍ୱାମୀଙ୍କ ପ୍ରବଳ ପ୍ରଚାର ଫଳରେ ଉତ୍କଳ, ଗୌଡ଼ ଓ ବୃନ୍ଦାବନ ଅଞ୍ଚଳ (ବ୍ରଜଭୂମି)ରେ ବୈଷ୍ଣବ ଧର୍ମର ଏକ ମହାପ୍ଲାବନ ଘଟିଥିଲା । ଆନ୍ଧ୍ରପ୍ରଦେଶରେ ଆବିର୍ଭୂତ ଶ୍ରୀ ବଲ୍ଲଭାଚାର୍ଯ୍ୟ ଓ ତାଙ୍କର ଶିଷ୍ୟବର୍ଗ ଗୌଡ଼ୀୟ ଷଟ୍ ଗୋସ୍ୱାମୀଙ୍କ ପରି ବୃନ୍ଦାବନଧାମକୁ ନିଜର ପ୍ରଧାନ କର୍ମକେନ୍ଦ୍ରରେ ପରିଣତ କରିଥିଲେ । ମହାତ୍ମା ତୁଳସୀ ଦାସ, ସନ୍ଥ-ସୁରଦାସ, ରାଜସ୍ଥାନର ପରମ ବୈଷ୍ଣବୀ କବି ମୀରା ବାଈ ସ୍ୱ ରଚନାବଳୀ ଦ୍ୱାରା ସମଗ୍ର ହିନ୍ଦୀଭାଷୀ ଭୂଖଣ୍ଡରେ ବୈଷ୍ଣବ ଧର୍ମର ଏକ ପ୍ରବଳ ବନ୍ୟା ସୃଷ୍ଟି କରିଥିଲେ ।

ବୈଷ୍ଣବ ଧର୍ମର ଏହି ଅଭୂତପୂର୍ବ ଅଭ୍ୟୁତ୍ଥାନ ଯୁଗରେ ପ୍ରାଚୀନ ସାଧୁ, ସନ୍ଥ, ମହାପୁରୁଷ ଓ ଭକ୍ତମାନଙ୍କ ଜୀବନୀ ଚରିତ ସଂଗ୍ରହ ଓ ପ୍ରଚାର ପାଇଁ ଧାରାବାହିକ ଉଦ୍ୟମ ଆରମ୍ଭ ହୋଇଗଲା । **ନାଭାଜୀ** ନାମକ ରାଜସ୍ଥାନର ଜଣେ ପ୍ରଖ୍ୟାତ ରାମଭକ୍ତ କବି ଏହି ଆନ୍ଦୋଳନର ନେତୃତ୍ୱ ଗ୍ରହଣ କରିଥିଲେ । ସେ ୧୬୪୨ ବିକ୍ରମ ସମ୍ବତ ବା ୧୫୮୫ ଖ୍ରୀଷ୍ଟାବ୍ଦରେ ହିନ୍ଦୀ ଭାଷାରେ ବହୁ ଭକ୍ତଙ୍କ ସଂକ୍ଷିପ୍ତ ଜୀବନ ଚରିତ ସମ୍ବଳିତ **ଭକ୍ତମାଳ** ନାମକ ଏକ ଗ୍ରନ୍ଥ ରଚନା କରିଥିଲେ । ଏଥିରେ ସେ ଶ୍ରୀ ଗୀତଗୋବିନ୍ଦକାର ଭକ୍ତକବି ଜୟଦେବଙ୍କ ସମ୍ବନ୍ଧରେ ଏକ ଛପ୍ପୟ (୩୯ ସଂଖ୍ୟକ) ବା ଷଟ୍‌ପଦୀ ସନ୍ନିବିଷ୍ଟ କରିଥିଲେ । ଏହି ଗ୍ରନ୍ଥ ସମଗ୍ର ଉତ୍ତର ଭାରତ, ମହାରାଷ୍ଟ୍ର ଓ ଗୁଜୁରାଟ ଅଞ୍ଚଳରେ ଏକ ନବ ଜାଗରଣ ସୃଷ୍ଟି କରିଥିଲା ।

ଏହି କ୍ଷୁଦ୍ର ଷଟ୍‌ପଦୀରେ ଭକ୍ତକବି ନାଭାଜୀ ଲେଖିଛନ୍ତି ଯେ, 'କବିଚକ୍ରବର୍ତ୍ତୀ' ସନ୍ଥ ଶିରୋମଣି 'ପଦ୍ମା'ଙ୍କ ସୁଖଜନକ ଜୟଦେବ କୃତ 'ଶୃଙ୍ଗାର-ସାଗର' 'ନବ-ରସ-ସରସ' 'କୋକକାବ୍ୟ' ଗୀତଗୋବିନ୍ଦର ଅଷ୍ଟପଦୀ ତନ୍ମୟ ଭାବରେ ଗାନ କଲେ ଶ୍ରୀ ରାଧାରମଣ ପ୍ରସନ୍ନ ହୋଇ ଶ୍ରବଣ କରନ୍ତି ।"

ପରବର୍ତ୍ତୀ କାଳରେ ପ୍ରିୟା ଦାସ ନାମକ ଏକ ପ୍ରସିଦ୍ଧ ସନ୍ଥ ୧୭୬୯ ବିକ୍ରମ ସମ୍ବତ୍ ବା ୧୭୧୨ ଖ୍ରୀଷ୍ଟାବ୍ଦରେ ଗୁରୁ ନାଭାଜୀଙ୍କ ଅଭିଳାଷ ପୂର୍ଣ୍ଣ କରିବା ଉଦ୍ଦେଶ୍ୟରେ ତତ୍କୃତ 'ଭକ୍ତମାଳ' ଉପରେ ବିସ୍ତୃତ ଭାବରେ ଏକ ଟୀକା ରଚନା କରିଥିଲେ । ଏହି ଟୀକା ଆଦ୍ୟରେ ସେ ଲେଖିଛନ୍ତି ଯେ, ଜଗନ୍ନାଥ ଦେବଙ୍କ ସ୍ୱରୂପ ବା ଅବତାର ରସିକ ଜୟଦେବ, ଶ୍ରୀକ୍ଷେତ୍ର ନିକଟବର୍ତ୍ତୀ କିନ୍ଦୁବିଲ୍ୱ ଗ୍ରାମର ଅଧିବାସୀ ଥିଲେ ।

"କିନ୍ଦୁବିଲ୍ୱ ଗ୍ରାମ, ତାମୈଂ ଭୟୁ କବିରାଜ ରାଜ
ଭର୍‌ୟୋ ରସରାଜ ହିୟେ ମନ ମନ ଚାଖିୟେ ।
ଦିନଦିନ ପ୍ରତି ରୂଖ ରୂଖ ତର ଜାଇ ରହେଁ
ଗହେଁ ଏକ ଗୁଦରୀ, କମଂଡଲକୋ, ରାଖିୟେ ॥
କହୀ ଦେବେ ବିପ୍ର ସୁତା ଜଗନ୍ନାଥ ଦେବ ଜୁକୋଂ,
ଭୟୋ ଜବ ସମେ ଚଲ୍ୟୋ ଜୈନ ପ୍ରଭୁ ଭାଖିୟୈଂ ।
ରସିକ ଜୈଦେବ ନାମ ମେରାଇ ସରୂପ,
ତାହି ଦେବେ ତତକାଲ ଅହୋ, ମେରୀ କହି ସାଖିୟୈଂ ॥"

ଶ୍ରୀକ୍ଷେତ୍ର ନିକଟବର୍ତ୍ତୀ 'କିନ୍ଦୁବିଲ୍ୱ' ଗ୍ରାମ ବର୍ତ୍ତମାନ କେନ୍ଦୁଲୀ ସମ୍ଭବତ ନିଃସନ୍ଦେହରେ ଚିହ୍ନିତ ହୋଇପାରେ । ଏହାର ପରବର୍ତ୍ତୀ ପଦାବଳୀରେ ଜଗନ୍ନାଥ ମହାପ୍ରଭୁଙ୍କ ଆଦେଶରେ ସନ୍ୟାସୀ ଜୟଦେବଙ୍କର ପଦ୍ମାବତୀଙ୍କୁ ନିଜର ପତ୍ନୀ ରୂପେ ଗ୍ରହଣ କରି ଶ୍ରୀକ୍ଷେତ୍ର ଅବସ୍ଥାନ କାଳରେ ଗୀତଗୋବିନ୍ଦ ରଚନା ବିଷୟ ବର୍ଣ୍ଣିତ ହୋଇଛି । ଯଥା —

"ଜାମି ଜବ 'ଭଈ ତିୟା କୟା, ପ୍ରଭୁ ଜୋର ମୋ ପୈଂ,
ତୋ ପୈ ଏକ ଝୋପଡ଼ୀକି ଛୁୟା କରି ଲାଜୟେ ॥
ଭଈ ତବ ଛୁୟା, ଶ୍ୟାମ ସେବା ପଧରାଇ ଲଈ,
ନଈ ଏକ ପୋଥୀ ମେ ବନାଉଁ, ମନ କାଜୟେ ॥
ଭୟୋ ଜୁ ପ୍ରଗଟ **ଗୀତ ସରସ ଗୋବିନ୍ଦ** ଜୁକୋ,
ମାନ ମେଂ ପ୍ରସଂଗ "ସୀସ ମଂଡନ ସୋ (କୋ) ଧାଜୟୋ" ॥

× × ×

ଏହାର ପରବର୍ତ୍ତୀ ପଦାବଳୀ ଗୁଡ଼ିକରେ ପୁରୀରାଜାଙ୍କ ରଚିତ 'ଗୀତଗୋବିନ୍ଦ' ଓ ସାଧୁ-ପ୍ରଧାନ ଜୟଦେବ କୃତ ଶ୍ରୀ ଗୀତଗୋବିନ୍ଦକୁ ଜଗନ୍ନାଥଙ୍କ ମନ୍ଦିରରେ ପରୀକ୍ଷା ପାଇଁ ରଖାଯାଇଥିଲା ।

'ଧନ୍ୟ ହୋଇ ମନ୍ଦର ମୈଂ **ଜଗନ୍ନାଥଦେବଜ୍ କେ,**
ହୋମ ଯନ୍ତ୍ର ଡାରି, ବନ୍ଦ ଦ୍ୱାର ଲପଟାଇୟେ ।''

ଜଗନ୍ନାଥ ମହାପ୍ରଭୁ ରାଜା କୃତ ଗୀତଗୋବିନ୍ଦକୁ ତଳେ ଫିଙ୍ଗିଦେଇ 'ଶ୍ରୀ ଗୀତଗୋବିନ୍ଦ' ଉପରେ ନଜର ଦ୍ୱାର ରଖିବାରୁ ରାଜା ଅପମାନିତ ହୋଇ ସମୁଦ୍ରରେ ଲମ୍ଫ ପ୍ରଦାନ ପୂର୍ବକ ପ୍ରାଣ ବିସର୍ଜନ କରିବାକୁ ସ୍ଥିର କଲେ । ପରେ ମହାପ୍ରଭୁଙ୍କ ଆଦେଶରେ ରାଜ-ରଚିତ ବାରଟି ଶ୍ଲୋକ ଶ୍ରୀ ଗୀତଗୋବିନ୍ଦର ବାରଟି ସର୍ଗରେ ସନ୍ନିବିଷ୍ଟ କରାଯିବାରୁ ରାଜା ଆଶ୍ୱସ୍ତ ହୋଇଥିଲେ । ଯଥା—

''ଆଜ୍ଞା ପ୍ରଭୁ ଦଈ ''ମତ ବୁଡ଼େ ତୂ ସମୁଦ୍ର ମାଁହି,
ଦୂସରୋ ନ ଗ୍ରନ୍ଥ ଏସୋ, ବୃଥା ତନୁପାତ ହୈ ।
ଦ୍ୱାଦଶ ସୁଶ୍ଲୋକ ଲିଖି ଦିଜୈ ସର୍ଗ ଦ୍ୱାଦଶ ମୈଂ,
ତାହି ସଂଗ ଚଲୌ ଜାକି ଖ୍ୟାତି ପାତ ପାତ ହୈ ॥

ଏହା ପରେ ସନ୍ଥ ପ୍ରିୟା ଦାସ ଶ୍ରୀ ଜୟଦେବ ସ୍ୱାମୀଙ୍କ ସମ୍ବନ୍ଧରେ କେତେକ ଅଲୌକିକ ଘଟଣା ବର୍ଣ୍ଣନା କରି ଶେଷରେ ଲେଖିଛନ୍ତି ଯେ, ଭକ୍ତପ୍ରବର ଜୟଦେବ ପୁରୀ ରାଜାଙ୍କ ଠାରୁ ବିଦାୟ ଗ୍ରହଣ ପୂର୍ବକ ନିଜ ଗ୍ରାମ 'କିନ୍ଦୁବିଲ୍ଲୁ'କୁ ଫେରିଆସିଲେ । ଯଥା—

'କରି ସମାଧାନ, ନିଜ ଗ୍ରାମ ଆଏ **କିନ୍ଦୁବିଲ୍ଲୁ**
ଜୈସୋ କଛୁ ସୁନ୍ୟୋ ଯନ୍ତ୍ର ପରଚୈ ଲୈ ଗାୟୋ ହୈ ॥

ପ୍ରିୟା ଦାସଙ୍କ ଟୀକା ପାଠକଲେ ଦୃଢ଼ ଧାରଣା ଜାତ ହୁଏ ଯେ, ଭକ୍ତ ଶିରୋମଣି ଶ୍ରୀ ଜୟଦେବଙ୍କ ଜନ୍ମସ୍ଥାନ 'କିନ୍ଦୁବିଲ୍ଲୁ' (କେନ୍ଦୁଲୀ ଶ୍ରୀକ୍ଷେତ୍ର ନିକଟରେ ଅବସ୍ଥିତ ଥିଲା । ପରବର୍ତ୍ତୀ କାଳରେ ଶ୍ରୀଚୈତନ୍ୟ ମହାପ୍ରଭୁଙ୍କ ପରି ମହାତ୍ମା ଜୟଦେବ ସଂସାର ତ୍ୟାଗ ପୂର୍ବକ ଶ୍ରୀକ୍ଷେତ୍ରରେ ନିଜର ସନ୍ନ୍ୟାସୀ ଜୀବନଯାପନ କରିଥିଲେ । ତାଙ୍କର ପ୍ରଧାନ ଆରାଧ୍ୟ ଦେବତା ଥିଲେ ଶ୍ରୀଜଗନ୍ନାଥ, ପ୍ରଧାନ ପୃଷ୍ଠପୋଷକ ଥିଲେ ନୀଳାଚଳ ଧାମର ପଣ୍ଡିତ ନୃପତି ବା ଉତ୍କଳାଧୀଶ । ଶ୍ରୀରାଧା-କୃଷ୍ଣଙ୍କ ଯମୁନା ତୀରବର୍ତ୍ତୀ ବୃନ୍ଦାବନରେ ବସନ୍ତ ରାସ ବର୍ଣ୍ଣନ ତାଙ୍କ ମହାକାବ୍ୟର ପ୍ରଧାନ ଉପଜୀବ୍ୟ ବିଷୟ ଥିଲେମଧ୍ୟ ସେ ସ୍ୱୀୟ ପ୍ରାଣପ୍ରିୟା ପତ୍ନୀ ପଦ୍ମାବତୀଙ୍କ ସହ ବୃନ୍ଦାବନ ଧାମକୁ ଯାଇଥିବା ଉକ୍ତ ଟୀକାରେ କୌଣସି ଉଲ୍ଲେଖ ନାହିଁ । (୨୫)

---

(୨୫) ଗୋସ୍ୱାମୀ ଶ୍ରୀ ନାଭାଜୀ କୃତ ଶ୍ରୀ ଭକ୍ତମାଳ' ଶ୍ରୀ ପ୍ରିୟାଦାସଜୀ ପ୍ରଣୀତ 'ଟୀକା-କବିତ୍ତ' ସମେତ । ପ୍ରକାଶକ — ତେଜକୁମାର ପ୍ରେସ ବୁକ ଡ଼ିପୋ, ଲକ୍ଷ୍ନଉ ।
(ପୃ ୬୪୬—୬୭୪)

## ପ୍ରାଚୀନ ମରହଟି ସାହିତ୍ୟରେ କିନ୍ଦୁବିଲ୍ୱର ବର୍ଣ୍ଣନା –

ଗୋସ୍ୱାମୀ ଶ୍ରୀ ନାଭାଜୀ କୃତ 'ଶ୍ରୀଭକ୍ତମାଳ' ପାଠରେ ଅନୁପ୍ରାଣିତ ହୋଇ ମହୀପତି ନାମକ ମହାରାଷ୍ଟ୍ରର ଜଣେ ପ୍ରସିଦ୍ଧ ସନ୍ଥକବି **ଭକ୍ତବିଜୟ** ନାମକ ଏକ ବିରାଟ ଗ୍ରନ୍ଥ ରଚନା କରିଥିଲେ । ଏହି ଗ୍ରନ୍ଥ ୧୬୮୪ ଶକ ଚିତ୍ରଭାନୁ ସମ୍ବତ୍ସରରେ ରଚିତ ହୋଇଥିଲା । ଅର୍ଥାତ୍ ଏହାର ରଚନା କାଳ ହେଉଛି ୧୭୬୨ଖ୍ରୀଷ୍ଟାବ୍ଦ । ଏଥିରେ ସନ୍ଥକବି ମହୀପତି ପରମ କୃଷ୍ଣଭକ୍ତ ଶ୍ରୀ ଜୟଦେବଙ୍କୁ ମହର୍ଷି ବ୍ୟାସଙ୍କ ଅବତାର ରୂପେ ଗ୍ରହଣ କରି ଗ୍ରନ୍ଥ ଆଦ୍ୟରେ ତାଙ୍କ ଜୀବନ ଚରିତ ବର୍ଣ୍ଣନା କରିଛନ୍ତି । ଆଉମଧ୍ୟ ଶ୍ରୀ ଜୟଦେବଙ୍କ ଜନ୍ମସ୍ଥାନ ତ (କ)ନ୍ଦୁବିଲ୍ୱ ଶ୍ରୀ ଜଗନ୍ନାଥ କ୍ଷେତ୍ର ସମୀପବର୍ତ୍ତୀ ବୋଲି ତାଙ୍କ ଦ୍ୱାରା ବଜ୍ରନିର୍ଘୋଷରେ ଘୋଷିତ ହୋଇଅଛି ।

ଶ୍ରୀ ଗଣେଶାୟ ନମଃ ॥ ଶ୍ରୀ ଗୋପାଳକୃଷ୍ଣାୟ ନମଃ ॥

'ଯାବରୀ ବ୍ୟାସାସୀ ସାଂଗେ ରାଜୀବନୟନ
ତ୍ୱାଂ କଥିଲୀଂ ପୁରାଣେଂ ସଂପୂର୍ଣ୍ଣ ॥
ତ୍ୟାଂଚା ଅର୍ଥ ନ କଳେ ଗହନା ॥ ଅଜ୍ଞାନଜନାଂ କଳିଯୁଗୀ ॥ ୧ ॥
ତୂଂ ଜୟଦେବ ରୂପେଂ ଅବତାର ॥
ଘେଉନି କରୀଂ ଜନାଂଚା ଉଦ୍ଧାର ॥
ଏସେଂ ଏକୂନ ନମସ୍କାର ॥ ବ୍ୟାସେଂ ଘାତଲା ସାଷ୍ଟାଂଗ । ୨ ॥

**ଜଗନ୍ନାଥ କ୍ଷେତ୍ରା ସମୀପ ଜାଣ**
**ତିଂଦୁବିଲ୍ୱ ଗ୍ରାମ ନାମାଭିଧାନ ॥**
**ବ୍ରାହ୍ମଣବଂଶୀଂ ଅବତାର ପୂର୍ଣ୍ଣ**
**ତେଥେଂ ଘେତଲା ଶ୍ରୀ ବ୍ୟାସେଂ ॥ ୩ ॥**

× × ×

ଶୋନି ଜୟଦେବ କବୀନେଂ କବିନ
ଗୀତଗୋବିଂଦ ଗ୍ରଂଥ କେଲା । ୧୨ ॥

ପଦ୍ମପୁରାଣୀଂଚା ଇତିହାସ ॥ ତ୍ୟାଂତ ବର୍ଣ୍ଣିଲା ରାଧାବିଳାସ,
ଗୋକୁଳୀଂ କ୍ରୀଡ଼ଲା ଜଗନ୍ନିବାସ ॥ କୃଷ୍ଣ ବିତାରୀ ନିଜ ଲୀଳେଂ ॥ ୧୩ ॥

× × ×

ତୋଂ **ଜଗନ୍ନାଥୀଂ ରାଜା ଏକ** । ନାମ ତୟାଚେଂ ସାତ୍ତ୍ୱିକ ॥
ତ୍ୟାନେଂହି ଗ୍ରଂଥ କେଲା ଏକ । ଜୟଦେବ ସ୍ୱାମୀ ସଙ୍ଖା ॥

କିନ୍ତୁ ମହାପ୍ରଭୁ ଜଗନ୍ନାଥ ରାଜାଙ୍କ ଗ୍ରନ୍ଥକୁ ଗ୍ରହଣ ନ କରିବାରୁ ରାଜା ଅପମାନରେ ଆତ୍ମହତ୍ୟା କରିବା ପାଇଁ ଉଦ୍ୟତ ହେଲେ । ତେଣୁ ମହାପ୍ରଭୁ ତତ୍କୃତ ୨୪ଟି ଶ୍ଳୋକ ଶ୍ରୀ ଗୀତଗୋବିନ୍ଦର ଅନ୍ତର୍ଭୁକ୍ତ କରିବା ପାଇଁ ଆଦେଶ ଦେଲେ । ଯଥା :—

"ତେସ୍ପ ମୀ ପ୍ରାଣ ଦେଇନ ଆଚାଂ
ଏ ସେଂ ବୋଲେ ନୃପବର । ୪୬ ॥
ଏସେଂ ଏକୋନ କରୁଣା ବଚନ ॥ ପ୍ରସନ୍ନ ହ୍ୟାଲା ନାରାୟଣ ॥
ରାଜସ୍ଥାରେ ଗ୍ରଂଥାଚୂନ ॥ ଚୈବିଶ ଶ୍ଳୋକ ଯେତଲେ ॥ ୪୭ ॥
ଜୟଦେବାରେ ଗ୍ରଂଥୀଂ ଲିହୂନ । ତତ୍କାଳ ଠେବୀ ଜଗଜ୍ଜୀବନ ।
ରାଜସ୍ଥାଚେଂ ସମାଧାନ ॥ ଇଚ୍ଛୁକେନ ହ୍ୟାଲେଂ ତେଧବାଂ ॥ ୪୮ ॥"

ଏହାପରେ ଶ୍ରୀ ଜଗନ୍ନାଥଙ୍କ ଆଦେଶରେ ପଦ୍ମାବତୀଙ୍କ ପାଣିଗ୍ରହଣ, ପଦ୍ମାବତୀଙ୍କ ପାତିବ୍ରତ୍ୟ ପରୀକ୍ଷା ପ୍ରଭୃତି ବହୁ ଅଲୌକିକ ଘଟଣା ମହୀପତିଙ୍କ ଦ୍ୱାରା ବର୍ଣ୍ଣିତ ହୋଇଛି । ସେଗୁଡ଼ିକ ଏଠାରେ ଆଲୋଚନା କରିବା ଅନାବଶ୍ୟକ ।

ମହୀପତି ରଚିତ ଉକ୍ତ ଜୀବନ ଚରିତ ପାଠକଲେ ସ୍ପଷ୍ଟ ଜଣାଯାଏ ଯେ, ଜଗନ୍ନାଥ ପୁରୀର ନିକଟବର୍ତ୍ତୀ କିନ୍ଦୁବିଲ୍ୱ ଗ୍ରାମରେ ଆବିର୍ଭୂତ ବ୍ୟାସାବତାର ଭକ୍ତକବି ଶ୍ରୀ ଜୟଦେବ ଶ୍ରୀକ୍ଷେତ୍ରବାସ କାଳରେ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ଅନୁଗ୍ରହ ଓ ଶ୍ରୀକ୍ଷେତ୍ରାଧିପତିଙ୍କ ପୃଷ୍ଠପୋଷକତା ଲାଭକରି ପତିବ୍ରତା ପତ୍ନୀ ପଦ୍ମାବତୀଙ୍କ ସହ ସୁଖ ଶାନ୍ତିରେ କାଳାତିପାତ କରିଥିଲେ । (୨୬)

## ବଙ୍ଗଳା 'ଭକ୍ତମାଳ' ଗ୍ରନ୍ଥରେ କେନ୍ଦୁବିଲ୍ୱର ଉଲ୍ଲେଖ —

ବର୍ତ୍ତମାନ ସାରା ବିଶ୍ୱରେ ବଙ୍ଗଳାର ଅଜୟ ନଦୀ ତୀରବର୍ତ୍ତୀ 'ଜୟଦେବ ମେଳା'ର ସ୍ଥାନକୁ କେନ୍ଦୁଲୀ ବୋଲି ସକଳ ପ୍ରକାର ମାଧ୍ୟମରେ ପ୍ରଚାର କରାଯାଉଥିଲେ ମଧ୍ୟ ବଙ୍ଗଳାରେ 'ଶ୍ରୀ ଶ୍ରୀ ଭକ୍ତମାଳ' ଗ୍ରନ୍ଥ ଲେଖକ ବୈଷ୍ଣବ କବି କୃଷ୍ଣ ଦାସ (୨୭) ଶ୍ରୀ ଜୟଦେବଙ୍କ ଜନ୍ମସ୍ଥାନ କେନ୍ଦୁବିଲ୍ୱ ଗ୍ରାମ ଶ୍ରୀ ପୁରୁଷୋତ୍ତମ କ୍ଷେତ୍ର ନିକଟବର୍ତ୍ତୀ ଥିବାର ମୁକ୍ତକଣ୍ଠରେ ସ୍ୱୀକାର କରିଛନ୍ତି । ଯଥା —

---

(୨୬) ବମ୍ବେଇ ନିର୍ଣ୍ଣୟ ସାଗର ପ୍ରେସ ଦ୍ୱାରା ୧୯୬୮ ମସିହାରେ ମୁଦ୍ରିତ 'ଭକ୍ତ ବିଜୟ' ପ୍ରଥମ ଦଶପୃଷ୍ଠା ।

(୨୭) କଲିକତାର ବସୁମତୀ ସାହିତ୍ୟ ମନ୍ଦିର ଦ୍ୱାରା ଚୈତନ୍ୟାବ୍ଦ ୪୬୭ ବା ୧୯୨୨ ଖ୍ରୀଷ୍ଟାବ୍ଦରେ ବହୁ ପୁରାତନ ପାଣ୍ଡୁଲିପି ସାହାଯ୍ୟରେ ମୁଦ୍ରିତ 'ଶ୍ରୀ ଶ୍ରୀ ଭକ୍ତମାଳା'

'କେନ୍ଦୁବିଲ୍ୱ' ନାମେ ଗ୍ରାମ ସାଗର ହଇତେ
ଶ୍ରୀମାନ୍ ଜୟଦେବ ଦ୍ୱିଜ ହଇଲ ବଦତେ ।
ଶ୍ରୀଲ-ପୁରୁଷୋତ୍ତମ ମହାକାଶ ଗିୟା

× × ×

**ଜୟଦେବ ମହାଶୟ ମହାନ୍ ମାନୁଷ**
**ଶ୍ରୀ ପୁରୁଷୋତ୍ତମକ୍ଷେତ୍ରେ ବୃକ୍ଷ ତଲେ ବାସ ॥**
**ଅଗାଧ ପାଣ୍ଡିତ୍ୟ ହୟ ଅତୁଲ ଭକ୍ତିମାନ୍**
**ଶ୍ରୀ ଜଗନ୍ନାଥ ପ୍ରଭୁର କୃପାର ଭାଜନ ॥**

× × ×

ଖୋପଡ଼ୀ ବାନ୍ଧିୟା ଏକ ସେବା ପ୍ରକାଶିଲ
ଶ୍ରୀ ରାଧାମାଧବ ନାମ ଠାକୁରେର ହୈଲ ॥
ତାର ପରିଚର୍ଯ୍ୟାୟ ପଦ୍ମାରେ ନିୟୋଜିଲ ।

× × ×

ପୁସ୍ତକ ରାଖିୟା ସାଧୁ ସ୍ନାନ କରିବାରେ
ଗମନ କରିଲ ତେବେ ସାଗରେର ନୀରେ ।

× × ×

'ଦେହି ପଦପଲ୍ଲବ ମୁଦାରମ୍' ଇତି
ଲିଖିଲା ଚଳିଲା ହରି ଅତି-ଦ୍ରୁତଗତି ॥

× × ×

**କ୍ଷଣମାତ୍ର ଦେଖି ପୁନ ସମୁଦ୍ର ଗମନ**
**ସ୍ନାନ କରି ପୁନ ଅର୍ଦ୍ଧକ୍ରୋଶ ଆଗମନ ॥"**

(ଶ୍ରୀ ଶ୍ରୀ ଭକ୍ତମାଳ ଦ୍ୱାଦଶ ମାଳା, (ପୃଷ୍ଠା ୧୩୨-୧୩୩)

ମହାରାଷ୍ଟ୍ରୀୟ ସନ୍ଥକବି ମହୀପତିଙ୍କ ପରି ବଙ୍ଗଳାର ବୈଷ୍ଣବ କବି କୃଷ୍ଣ ଦାସ ପ୍ରିୟଦାସଙ୍କ ହିନ୍ଦୀ ଟୀକା ରଚନା ପରେ ଉକ୍ତ ଗ୍ରନ୍ଥ ରଚନା କରିଥିଲେ । ଯଥା—

"ବନ୍ଦୋ ଶ୍ରୀ ଅଗର ଦାସ ଯାର ଶିଷ୍ୟ ନାଭା
ତେଁହୋ କୈଲ ଭକ୍ତମାଳ ସଜ୍ଜନେର ଲୋଭା ।

× × ×

## ପ୍ରିୟା ଦାସେ ଆଙ୍କିଦେଲ ଟୀକା ବିସ୍ତାରତେ

× × ×

ବୃନ୍ଦାବନ ବାସୀ ପ୍ରିୟା ଦାସ ମହାନ୍ତ ॥

(ଶ୍ରୀ ଶ୍ରୀ ଭକ୍ତମାଳ ପୃ ୨)

ପ୍ରିୟା ଦାସଙ୍କ ଟୀକା ୧୭୬୯ ବିକ୍ରମ ସମ୍ବତ୍ ବା ୧୭୧୨ ଖ୍ରୀଷ୍ଟାବ୍ଦରେ ରଚିତ ହୋଇଥିବାରୁ ତାକୁ ଆଦର୍ଶ ରୂପେ ଗ୍ରହଣ କରିଥିବା ଶ୍ରୀକୃଷ୍ଣ ଦାସ ନିଶ୍ଚୟ ୧୭୧୨ ଖ୍ରୀଷ୍ଟାବ୍ଦ ପରେ ବଙ୍ଗଳାରେ ଶ୍ରୀ ଶ୍ରୀ ଭକ୍ତମାଳ ରଚନା କରିଥିଲେ । ଅତଏବ ଏହା ଅଷ୍ଟାଦଶ ଶତାବ୍ଦୀର ମଧ୍ୟ ଭାଗରେ ରଚିତ ହୋଇଥିଲା । ତେଣୁ ଏହା ନିଃସନ୍ଦେହରେ ସ୍ଥିର କରାଯାଇ ପାରେ ଯେ ଅଷ୍ଟାଦଶ ଶତାବ୍ଦୀର ମଧ୍ୟଭାଗ ପର୍ଯ୍ୟନ୍ତ ଅଜୟ ନଦୀକୂଳର କୌଣସି ଗ୍ରାମରେ ଭକ୍ତକବି ଶ୍ରୀ ଜୟଦେବ ଜନ୍ମ ଗ୍ରହଣ କରିଥିବା କାହାଣୀର ସୃଷ୍ଟି ହୋଇ ନ ଥିଲା ।

### ଓଡ଼ିଆ 'ଦାର୍ଢ୍ୟତାଭକ୍ତି'ରେ କେନ୍ଦୁବିଲ୍ୱର ଉଲ୍ଲେଖ :—

ଭାରତର ବିଭିନ୍ନ ପ୍ରାନ୍ତର ବୈଷ୍ଣବ କବିମାନଙ୍କ ପରି ଓଡ଼ିଆ କବି ରାମ ଦାସ ବିଷ୍ଣୁ ଭକ୍ତଙ୍କ ଜୀବନ ଚରିତ ସମ୍ବଳିତ 'ଦାର୍ଢ୍ୟତାଭକ୍ତି' ଗ୍ରନ୍ଥ ଦୁଇ ଭାଗରେ ରଚନା କରିଥିଲେ । ଏହାର ପ୍ରଥମ ଭାଗ ଗଜପତି ବୀରକେଶରୀ ଦେବଙ୍କ ବିଂଶତି ଅଙ୍କ ବା ୧୭୬୮—୬୯ ଖ୍ରୀଷ୍ଟାବ୍ଦରେ ଏବଂ ଦ୍ୱିତୀୟ ଭାଗ ପ୍ରାୟ ୩୧ ବର୍ଷ ପରେ ୧୭୯୯-୧୮୦୦ରେ ରଚିତ ହୋଇଥିଲା । ଏହାର ଶେଷ ଅଧ୍ୟାୟ (୬୦ ସଂଖ୍ୟକ)ରେ ଶ୍ରୀ ଜୟଦେବ ଚରିତ ବର୍ଣ୍ଣିତ ହୋଇଅଛି । (୨୮) ଏହା ବଙ୍ଗଳାରେ ଲିଖିତ 'ଶ୍ରୀ ଶ୍ରୀ ଭକ୍ତମାଳ' ଆଦର୍ଶରେ ଲିଖିତ ହୋଇଥିଲେ ମଧ୍ୟ ଏଥିରେ କବିଙ୍କର କେତେକ ନିଜସ୍ୱ ରହିଛି । ଏହା ପାଠ କଲେ ସ୍ପଷ୍ଟ ଜଣାଯାଏ ଯେ ୧୮୦୦ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ଶ୍ରୀ ଜୟଦେବଙ୍କ ଜନ୍ମସ୍ଥାନ 'କେନ୍ଦୁବିଲ୍ୱ'ର ଶ୍ରୀକ୍ଷେତ୍ର ନିକଟରେ ଅବସ୍ଥିତି ଭାରତର ବିଭିନ୍ନ ପ୍ରାନ୍ତର ସାଧୁସନ୍ଥ ମାନଙ୍କ ମଧ୍ୟରେ ସୁବିଦିତ ଥିଲା । ଏଥିର କେତେକ ପଦ ନିମ୍ନରେ ଉଦ୍ଧାର କରାଗଲା । ଯଥା :—

"ଜନମ କେନ୍ଦୁବିଲ୍ୱ ଗ୍ରାମେ । ବ୍ରାହ୍ମଣ ଜୟଦେବ ନାମେ ॥
ମହା ପଣ୍ଡିତ ବିଷ୍ଣୁ ଭକ୍ତ । ଜଗତଜନେ ସୁବିଦିତ
ବିରକ୍ତ ନିଃସଙ୍ଗ ଉଦାସୀ । ଶ୍ରୀକ୍ଷେତ୍ରେ ପ୍ରବେଶ ଆସି ।
ଏକ ବୃକ୍ଷର ତଳେ ଥାଇ । ଶ୍ରୀ ଜଗନ୍ନାଥଙ୍କୁ ସେବଇ ।"

× × ×

(୨୮) ଶ୍ରୀ କେଦାରନାଥ ମହାପାତ୍ର କୃତ 'ଖୁରୁଧା ଇତିହାସ' (ପୃ ୨୧୨-୨୧୩)

ସେ କନ୍ୟା ନାମ ପଦ୍ମାବତୀ । ପଦ୍ମିନୀ ଗୁଣବତୀ ସତୀ ।

× × ×

ସେ ଇଚ୍ଛା ଜଗନ୍ନାଥଙ୍କର । ଚିହ୍ନିକ ଆଉ କ ବସ୍ତୁର ।
ଗୋଟିଏ କୁଟୀର ନିର୍ମାଣି । ତହିଁ ରହିଲ ଭାର୍ଯ୍ୟା ଘେନି ।
ଶ୍ରୀ ରାଧାମାଧବ ଠାକୁରେ । ଆଣି ସ୍ଥାପିଲ ସେହି ଠାରେ ।
ଶ୍ରୀପଦ ସେବିବା କାରଣ । ପଦ୍ମାକୁ କଲ ସମର୍ପଣ ।

× × ×

**ରଚିଲ ଅପୂର୍ବ ପ୍ରବନ୍ଧ । ନାମ ଯା ଶ୍ରୀ ଗୀତଗୋବିନ୍ଦ ।**
**ଶୁଣନ୍ତି ଆଜିଯାଏ ନିତ୍ୟ । ଦ୍ୱିଜାଲେ ଯାହା ଜଗନ୍ନାଥ ।"**

ବାଇଗଣ ବାଡ଼ରେ ମାଳନୀ ମଧୁର କଣ୍ଠରେ ଶ୍ରୀ ଗୀତଗୋବିନ୍ଦ ଗାନ କରିବା ସମ୍ବନ୍ଧର ନାଟରେ ଶ୍ରୀ ଜଗନ୍ନାଥ ମହାପ୍ରଭୁଙ୍କ ଆବିର୍ଭାବ ବିଷୟ ବର୍ଣ୍ଣନା ପ୍ରସଙ୍ଗରେ କବି ଶ୍ରୀ ରାମ ଦାସ ଲେଖିଛନ୍ତି ଯେ, ମାଳୀ କନ୍ୟାର ବଂଶଧରମାନେ ଅଦ୍ୟାପି ଶ୍ରୀ ଜଗନ୍ନାଥଙ୍କ ଶ୍ରୀମୁଖରେ ଗୀତଗୋବିନ୍ଦ ଗାନ କରୁଛନ୍ତି ।

"ଆଣିଲେ ମାଳିନୀ କନ୍ୟାକୁ । କହିଲେ ତାକୁ ପଢ଼ିବାକୁ ॥
ପଢ଼ିଲା ସେ ଗୀତଗୋବିନ୍ଦ । ଶୁଣିଣ ପ୍ରଭୁ ମହାନନ୍ଦ ॥
ରହିଲ ଖଞ୍ଜା ଭୂମି ପାଇ । ପଢ଼ିଲା ନିତ୍ୟ ନିତ୍ୟ ଯାଇ ॥
**ଅଦ୍ୟାପି ତାର ବଂଶଧରେ । ଗୀତଗୋବିନ୍ଦ ପାଠ କରେ ।"**

## ମିଥିଳା ଅଞ୍ଚଳରେ କେନ୍ଦୁବିଲ୍ୱର ମାହାତ୍ମ୍ୟ :—

ଉତ୍କଳ ଓ ଗୌଡ଼ ପରି ମିଥିଳାର ପଣ୍ଡିତ, ସାଧୁ ଓ ସନ୍ଥ ସମାଜରେ ଭକ୍ତକବି ଶ୍ରୀ ଜୟଦେବଙ୍କ ଜନ୍ମସ୍ଥାନ କେନ୍ଦୁବିଲ୍ୱ ଜଗନ୍ନାଥ ପୁରୀ ନିକଟରେ ଅବସ୍ଥିତ ଥିବାର ଧାରଣା ବଦ୍ଧମୂଳ ଥିଲା । ଚନ୍ଦ୍ରଦତ୍ତ ନାମକ ଜଣେ ପ୍ରଖ୍ୟାତ ମୈଥିଳ ପଣ୍ଡିତ 'ନାଭାଦାସ'ଙ୍କ ଭକ୍ତମାଳା ଗ୍ରନ୍ଥ ପାଠରେ ଅନୁପ୍ରାଣିତ ହୋଇ ତାଙ୍କ ଦ୍ୱାରା ବର୍ଣ୍ଣିତ କତିପୟ ଭକ୍ତ ତଥା ଅନ୍ୟମାନଙ୍କ ଠାରୁ ଶୁଣିଥିବା ଭକ୍ତମାନଙ୍କ ଜୀବନ ବୃତ୍ତାନ୍ତ 'ଭକ୍ତମାଳା' ନାମକ ଏକ ସଂସ୍କୃତ ଗ୍ରନ୍ଥରେ ଲିପିବଦ୍ଧ କରିଥିଲେ । (୨୯)

---

(୨୯) "ଇତ୍ୟାଜ୍ଞାଂ ଶିରସା ଧୃତ୍ୱା ଗୁରୋର୍ବରସ୍ୟ ସନ୍ମତଃ
ତନୋତି ଭକ୍ତଚରିତଂ 'ନାଭାଦାସସ୍ତୁ ହୃଷ୍ଟଧୀ । ୨୯ ।

ଚନ୍ଦ୍ରଦତ୍ତ ଶ୍ରୀ ଜଗନ୍ନାଥଙ୍କର ଜଣେ ପରମ ଭକ୍ତ ଥିଲେ । ସେ ବହୁଭକ୍ତଙ୍କ ଜୀବନ ଚରିତ ବର୍ଣ୍ଣନା ପ୍ରସଙ୍ଗରେ ଶ୍ରୀ ଜଗନ୍ନାଥଙ୍କ ମାହାତ୍ମ୍ୟ ଭକ୍ତିଉଦ୍‌ଗତ ଭାବରେ ଗାନ କରିଛନ୍ତି । (୩୦) ତାଙ୍କର ଶ୍ରୀ ଗୀତଗୋବିନ୍ଦ ପ୍ରତି ବିଶେଷ ଶ୍ରଦ୍ଧା ଓ ଅନୁରାଗ ଥିବାରୁ ଏହାର ଅନୁକରଣରେ ସେ **'କାଶୀଗୀତ'** ନାମକ ଏକ ଗୀତିକାବ୍ୟ ରଚନା କରିଥିଲେ । ଶ୍ରୀକ୍ଷେତ୍ରବାସ ସମୟରେ ସେ ଶ୍ରୀଜଗନ୍ନାଥଙ୍କ ପରମଭକ୍ତ ଶ୍ରୀଜୟଦେବଙ୍କ ଜନ୍ମସ୍ଥାନ ଓ ଜୀବନ ଚରିତ ସମ୍ବନ୍ଧରେ ଯଥାସମ୍ଭବ ଅଭ୍ରାନ୍ତ ତଥ୍ୟ ସଂଗ୍ରହ କରି ତାଙ୍କ ଭକ୍ତମାଳା ଗ୍ରନ୍ଥରେ ଲିପିବଦ୍ଧ କରିଥିଲେ । ସେ ସ୍ପଷ୍ଟ ଭାବରେ ଲେଖିଛନ୍ତି—

"ଜଗନ୍ନାଥପୁରୀପ୍ରାନ୍ତେ ଦେଶେ ଚୈବୋତ୍କଲାଭିଧେ
(କେ)ନ୍ଦୁବିଲ୍ୱ ଇତି ଖ୍ୟାତୋ ଗ୍ରାମୋ ବ୍ରାହ୍ମଣସଂକୁଳଃ ।
ତତ୍ରୋତ୍କଲେ ଦ୍ୱିଜୋ ଜାତୋ ଜୟଦେବ ଇତି ଶ୍ରୁତଃ ।
ବିଦ୍ୟାଭ୍ୟାସରତଃ ଶାନ୍ତଃ ପୁରୁଷୋତ୍ତମପୂଜକଃ ॥

× × ×

ନିର୍ମାୟ ଗୀତଗୋବିନ୍ଦଂ ପୁସ୍ତକଂ ପୁରୁଷୋତ୍ତମେ
ନିବେଦ୍ୟ କୃତକୃତ୍ୟୋଽଭୂଜ୍ଜୟଦେବ ମହାମନାଃ ॥" (୩୧)

ଉକ୍ତ ବିବରଣ ଅନୁଯାୟୀ ଉତ୍କଳ ଦେଶରେ ଜଗନ୍ନାଥପୁରୀ ଅଦୂରବର୍ତ୍ତୀ ବ୍ରାହ୍ମଣ ସଂକୁଳ କେନ୍ଦୁବିଲ୍ୱ ନାମକ ବିଖ୍ୟାତ ଗ୍ରାମରେ ବିଦ୍ୟାଭ୍ୟାସରତ, ଶାନ୍ତ, ପୁରୁଷୋତ୍ତମପୂଜକ ଶ୍ରୀ ଜୟଦେବ ଜନ୍ମ ଗ୍ରହଣ କରିଥିଲେ । ଉକ୍ତ ସର୍ଗର ଶେଷ ଶ୍ଳୋକରୁ ଜଣାଯାଏ ଯେ, ମହାମନା ଜୟଦେବ ପୁରୁଷୋତ୍ତମ ବା ପୁରୀରେ ଅବସ୍ଥାନ କାଳରେ ଶ୍ରୀ ଗୀତଗୋବିନ୍ଦ ପୁସ୍ତକ ରଚନା କରିଥିଲେ ଏବଂ ଏହାକୁ ଶ୍ରୀ ଜଗନ୍ନାଥଙ୍କ ପଦ କମଳରେ ଅର୍ପଣ କରି କୃତକୃତ୍ୟ ହୋଇଥିଲେ ।

---

ତତୁକ୍ତମନ୍ୟୈକଥିତଂ ଶ୍ରୁତଂ ହଂ ରୁ ଯଥାମତି
ଭଗବଦ୍‌ଭକ୍ତମାହାତ୍ମ୍ୟଂ ଚକ୍ରେ ଚନ୍ଦ୍ରଦତ୍ତସୁଧୀ" । ୩୦ ।
ଭକ୍ତମାଳ, ଦ୍ୱିତୀୟ ସର୍ଗ ପୃ ୩ ।

(୩୧) ଶ୍ରୀମାର୍ଗ (୧୩ ସର୍ଗ), ରାମାନୁଜ (୨୪ ସର୍ଗ) ଉଦୟନାଚାର୍ଯ୍ୟ (୩୧ ସର୍ଗ), ଜୟଦେବ (୩୯, ୪୦, ୪୧ ସର୍ଗ, ବିଲ୍ୱମଙ୍ଗଳ (୪୭ ସର୍ଗ), କୁଳଶେଖର (୫୦, ୫୧ ସର୍ଗ), ପୁରୁଷୋତ୍ତମ ରାଜ ଚରିତ (୫୩ ସର୍ଗ), କର୍ମା ବ୍ରାହ୍ମଣୀ ଚରିତ (୫୪ ସର୍ଗ, ସାକ୍ଷୀଗୋପାଳ ଚରିତ (୭୯ ଓ ୮୦ ସର୍ଗ) ପୁରୀ ସଦାନନ୍ଦ ଚରିତ (୯୨ ସର୍ଗ), ମାଧବ ଚରିତ (୯୭-୧୦୦ ସର୍ଗ), ରଘୁନାଥ ଚରିତ (୧୦୧ ସର୍ଗ, ସଦନା ଚରିତ (୧୧୫ ସର୍ଗ), ତ୍ରିଲୋଚନ ଚରିତ (୧୧୭ ସର୍ଗ), ଲକ୍ଷ୍ମୀଭକ୍ତ ଚରିତ (୧୨୦ ସର୍ଗ), ଅଙ୍ଗଦ ଭକ୍ତ ଚରିତ (୧୨୪ ସର୍ଗ ।

(୩୧) ବମ୍ବେ ଭେଙ୍କଟେଶ୍ୱର ପ୍ରେସରେ ମୁଦ୍ରିତ ଭକ୍ତମାଳ। "ଏକୋନଚତ୍ୱାରିଂଶଃ ସର୍ଗ"।

ମୈଥିଳ ଚନ୍ଦ୍ରଦତ୍ତଙ୍କ ଦ୍ୱାରା ଶ୍ରୀକ୍ଷେତ୍ର ବା ଜଗନ୍ନାଥ ପୁରୀରେ ଅବସ୍ଥାନ ସମୟରେ ଭକ୍ତକବି ଶ୍ରୀଜୟଦେବଙ୍କ ସମ୍ପର୍କରେ ସଂଗୃହୀତ ଉପରୋକ୍ତ ତଥ୍ୟ ଅନ୍ୟ ପ୍ରମାଣ ସମୂହ ଦ୍ୱାରା ସମର୍ଥିତ ହୋଇଥିବାରୁ ଗ୍ରହଣୀୟ ।

## କଳିଙ୍ଗରେ କେନ୍ଦୁଲୀର ଅବସ୍ଥିତି :

ପାଶ୍ଚାତ୍ୟ ମନୀଷୀ ମାନଙ୍କ ମଧ୍ୟରେ ସଂସ୍କୃତ ଭାଷାରେ ଅଗାଧ ପାଣ୍ଡିତ୍ୟ ଅର୍ଜ୍ଜନ କରିଥିବା କଲିକତାରେ ନୂତନ ପ୍ରତିଷ୍ଠିତ 'ସୁପ୍ରିମ୍ କୋର୍ଟ' ବା ପ୍ରଧାନ ବିଚାରାଳୟର ବିଚାରପତି ଏବଂ ପ୍ରାଚ୍ୟଭୂଖଣ୍ଡର ପ୍ରତ୍ନତତ୍ତ୍ୱ ଗବେଷଣା ପାଇଁ କଲିକତାରେ ପ୍ରତିଷ୍ଠିତ ଏସିଆଟିକ ସୋସାଇଟିର ପ୍ରତିଷ୍ଠାତା ଓ ସଭାପତି (୧୭୮୪—୧୭୯୪) ସାର୍ ଉଇଲିୟମ ଜୋନ୍ସ ୧୭୮୪ ଖ୍ରୀଷ୍ଟାବ୍ଦରେ 'ହିନ୍ଦୁମାନଙ୍କ ସଂଗୀତ ଗୁଡ଼ିକର ବିଭିନ୍ନ ରାଗ ଓ ତାଳ' ସମ୍ବନ୍ଧରେ ଏକ ପ୍ରବନ୍ଧ ରଚନା କରିଥିଲେ ଏବଂ ଏହା ୧୭୯୯ରେ 'Asiatic Researches' ନାମକ ପତ୍ରିକାରେ ପ୍ରକାଶିତ ହୋଇଥିଲା । ଏହି ପ୍ରବନ୍ଧ ରଚନା ସମୟରେ ଶ୍ରୀ ଗୀତଗୋବିନ୍ଦରେ ବ୍ୟବହୃତ ବିଭିନ୍ନ ରାଗ ଓ ତାଳ ସମ୍ବନ୍ଧରେ ତଥ୍ୟ ସଂଗ୍ରହ କରିବା ପାଇଁ ସେ ନେପାଳ, କାଶ୍ମୀର ପ୍ରଭୃତି ଭାରତର ବିଭିନ୍ନ ପ୍ରାନ୍ତର ପଣ୍ଡିତମାନଙ୍କ ସହିତ ଆଲୋଚନା କରିଥିଲେ । ନେପାଳ ଓ କାଶ୍ମୀର ପଣ୍ଡିତମାନେ ସାହେବଙ୍କ ନିକଟରେ ପ୍ରକାଶ କରିଥିଲେ ଯେ ସେମାନଙ୍କ ଦେଶରେ ପ୍ରାଚୀନ ସଂଗୀତ ନାହିଁ ଏବଂ ଗୀତଗୋବିନ୍ଦକାର **ଦକ୍ଷିଣ ଦେଶର କୌଣସି ପ୍ରଦେଶରେ ଜନ୍ମଲାଭ କରିଥିବାରୁ** ସେ ଅଞ୍ଚଳରେ ଏଥିରେ ବ୍ୟବହୃତ ରାଗ ଓ ତାଳର ବ୍ୟବହାର ପ୍ରଚଳିତଥିବ । (୩୨)

---

(୩୨) "On the Musical modes of the Hindus" by Sir William Jones, written in 1784 and since much enlarged and published in 1799, *Asiatic Researches* Vol. III, 1799, pp 83–84.

"Although the Sanskrit books have preserved the theory of such musical compositions, the practice of it seems almost wholly left (as all the Pandits and Rajas confess) in Gaur and Magadha or the provinces of Bengal and Bihar. When I first read the songs of Jayadeva who has pre-fixed 'to each of them, the name of the mode, in which it was anciently sung, I had hope of procuring the original musick, but the Pandits of the south referred

'ଶ୍ରୀ ଗୀତଗୋବିନ୍ଦ' ପ୍ରତି ସାର୍ ୱିଲିୟମ୍ ଜୋନ୍‌ସଙ୍କର ବିଶେଷ ଆଗ୍ରହ ଥିବାରୁ ଏହା ସମ୍ବନ୍ଧରେ ଏକ ସ୍ୱତନ୍ତ୍ର ପ୍ରବନ୍ଧ ୧୭୯୯ ଖ୍ରୀଷ୍ଟାବ୍ଦରେ ପ୍ରକାଶ କରି ସେଥିରେ ଏହାର କେତେକ ଉପାଦେୟ ଶ୍ଳୋକର ଅନୁବାଦ ସନ୍ନିବିଷ୍ଟ କରିଥିଲେ । (ଗଗ) ଏହି ଗ୍ରନ୍ଥର ମୁଖବନ୍ଧରୁ ଜଣାଯାଏ ଯେ, ତାଙ୍କ ସମୟରେ ବହୁ ଲୋକ **ଜୟ-ଦେବଙ୍କ ଜନ୍ମସ୍ଥାନ କେନ୍ଦୁଲୀ କଳିଙ୍ଗରେ ଅବସ୍ଥିତ ବୋଲି ବିଶ୍ୱାସ କରୁଥିଲେ** । କିନ୍ତୁ ବର୍ଦ୍ଧମାନ ଜିଲାରେ ଥିବା କେନ୍ଦୁଲୀର ଲୋକେ ଭାରତର ଶ୍ରେଷ୍ଠ ଗୀତିକାବ୍ୟକାର ତାଙ୍କ ଦେଶବାସୀ ବୋଲି ଦାବୀ କରୁଥିଲେ ଏବଂ ତାଙ୍କର ସ୍ମୃତିରକ୍ଷା ପାଇଁ ପ୍ରତିବର୍ଷ ଏକ ଯାତ୍ରା କରି ସମସ୍ତ ରାତି ଶ୍ରୀ ଗୀତଗୋବିନ୍ଦର ଅଭିନୟ ଓ ଏହାର ମଧୁର ସଂଗୀତ ଗୁଡ଼ିକ ଗାନ କରୁଥିଲେ । (ଗ୪)

---

me to those of the west and the Brahmins of the west would have sent me to those of the south, while they, I mean those of Nepal and Cashmir declared that they had no ancient musick but imagined that *the notes to the Gitagovinda must exist if any where, is one of the southern provinces, where the poet was born.*"

(ଗଗ) "Gitagovinda or the Songs of Jayadeva" — Asiatic Researches, Vol. III, 1799 pp 180-207

In the preface to this work he has written thus — "The loves of Krshna and Rādhā X X X are the subject of this little pastoral drama entitled Gitagovinda, it was the work of Jayadeva, who flourished it is said before Kalidasa and *was born as he tells himself in Kenduli, which many believe to be in Kalinga* : but since there is a town of similar name in Burdwan, the natives of it insist that the finest lyrical poet of India was their country-man and celebrate in honour of him An annual Jubilee, passing a whole night in representing his drama and in singing his beautiful songs"

(ଗ୪) Preface to the Gitagovinda translated by Sir William Jones and published by Upendralal Das, Calcutta in 1894.

ପଣ୍ଡିତ ସାର ଉଇଲିୟମ ଜୋନ୍‌ସଙ୍କ ମୁଖବନ୍ଧରୁ ସ୍ପଷ୍ଟ ଜଣାଯାଏ ଯେ, କଳିଙ୍ଗ ଦେଶରେ ଅବସ୍ଥିତ କେନ୍ଦୁଳୀ ଗ୍ରାମରେ ମହାକବି ଜୟଦେବ ଜନ୍ମଗ୍ରହଣ କରିଥିବା ଅଧିକାଂଶ ଲୋକଙ୍କ ମତ ହେଲେ ମଧ୍ୟ ବର୍ଦ୍ଧମାନ ଜିଲ୍ଲାରେ ଅବସ୍ଥିତ କେନ୍ଦୁଳୀର ଲୋକେ ଭାରତର ଶ୍ରେଷ୍ଠ ଗୀତିକାବ୍ୟକାରଙ୍କୁ ନିଜ ଅଞ୍ଚଳର ଅଧିବାସୀ ରୂପେ ଦାବୀ କରୁଥିଲେ । ଅତଏବ ୧୭୯୯ ଖ୍ରୀଷ୍ଟାବ୍ଦ ବେଳକୁ ବା ଅଷ୍ଟାଦଶ ଶତାବ୍ଦୀର ଶେଷଭାଗରେ ଅର୍ଥାତ୍ ଶ୍ରୀ କୃଷ୍ଣ ଦାସ ବାବାଜୀ ବଙ୍ଗଳା ଭାଷାରେ ଶ୍ରୀ ଶ୍ରୀ ଭକ୍ତମାଳ ଗ୍ରନ୍ଥ ଲେଖିବାର କେତେକାଳ ପରେ ବର୍ଦ୍ଧମାନ ଜିଲ୍ଲାର ଅଜୟ ନଦୀ କୂଳରେ ଜୟଦେବଙ୍କ ଜନ୍ମସ୍ଥାନ ଚିହ୍ନିତ କରିବା ପାଇଁ ବିଶେଷ ଉଦ୍ୟମ ଆରମ୍ଭ ହୋଇଥିଲା ।

## ଅଜୟ ନଦୀ କୂଳବର୍ତ୍ତୀ କେନ୍ଦୁଳୀର ଉତ୍ପତ୍ତି —

ବର୍ତ୍ତମାନ କେତେକ ଐତିହାସିକଙ୍କ ଦ୍ୱାରା ବୀରଭୂମ ଜିଲ୍ଲାର ଅଜୟ ନଦୀ ତୀରବର୍ତ୍ତୀ ଏକ ସ୍ଥାନକୁ 'ଜୟଦେବ କେନ୍ଦୁଳୀ' ବା କବିରାଜ ଶ୍ରୀ ଜୟଦେବଙ୍କ ଜନ୍ମସ୍ଥାନ କ(କେ)ନ୍ଦୁବିଲ୍ୱ ଶାସନ ସହିତ ଚିହ୍ନିତ କରାଯାଉଛି । କିନ୍ତୁ ପ୍ରାଚୀ ତୀରବର୍ତ୍ତୀ କେନ୍ଦୁବିଲ୍ୱ ପରି ଏହା କୌଣସି ଯୁଗରେ ଏକ ବ୍ରାହ୍ମଣ ଶାସନ ନ ଥିଲା ବା ଏହାର ଆଖପାଖ ଅଞ୍ଚଳରେ କୌଣସି ବ୍ରାହ୍ମଣ ଶାସନ ବା ପ୍ରାଚୀନ ମନ୍ଦିରର ଅବସ୍ଥିତି ସମ୍ବନ୍ଧରେ କୌଣସି ତାମ୍ରଶାସନ, ଶିଳାଲେଖ ବା ପ୍ରାଚୀନ ଗ୍ରନ୍ଥରେ ଉଲ୍ଲେଖ ଦେଖାଯାଏ ନାହିଁ ।

ଅଷ୍ଟାଦଶ ଶତାବ୍ଦୀର ମଧ୍ୟଭାଗରେ ବର୍ଦ୍ଧମାନର ରାଜବଂଶ ହିନ୍ଦୁଧର୍ମର ପୁନରୁତ୍ଥାନ ପାଇଁ କେତେକ ନୂତନ ମନ୍ଦିର ନିର୍ମାଣ ଓ ପ୍ରାଚୀନ କୀର୍ତ୍ତି ସମୂହର ଜୀର୍ଣ୍ଣ ସଂସ୍କାର କରିଥିଲେ । ଶ୍ରୀ ହରେକୃଷ୍ଣ ମୁଖୋପାଧ୍ୟାୟ ବିରଚିତ **ବୀରଭୂମ ବିବରଣ** ନାମକ ଏକ ବଙ୍ଗଳା ପୁସ୍ତକରୁ ଜଣାଯାଏ ଯେ, ବର୍ଦ୍ଧମାନର ମହାରାଜ ଅଜୟ ନଦୀ କୂଳରେ ଶ୍ରୀ ରାଧାବିନୋଦଙ୍କ ପାଇଁ ଏକ ମନ୍ଦିର ନିର୍ମାଣ କରିଥିଲେ । ସେଥିରେ ୧୬୧୪ ଶକାବ୍ଦର ଏକ ଶିଳାଲିପି ଥିଲା । କିନ୍ତୁ ଏହା କୁଆଡ଼େ ହଜିଯିବାରୁ ବର୍ତ୍ତମାନ ଦେଖାଯାଉ ନାହିଁ । (୩୫) ହଜିଯାଇଥିବା ଶିଳାଲେଖର ପାଠ କୌଣସି ଗ୍ରନ୍ଥରେ ଲିପିବଦ୍ଧ ହୋଇ ନ ଥିବାରୁ ଏଥିରେ ବ୍ୟବହୃତ ଶକାବ୍ଦକୁ ଶୁଣାଶୁଣି କଥା ଉପରେ ନିର୍ଭର କରି ଏହାକୁ ୧୬୧୪ ଶକାବ୍ଦ ରୂପେ ଗ୍ରହଣ କରିବା ଆଦୌ ନିରାପଦ ନୁହେଁ ।

---

(୩୫) 'ବୀରଭୂମ ବିବରଣ'—୧୩୨୩ ସାଲରେ ପ୍ରକାଶିତ । "ମନ୍ଦିରେ ଏକଖାନି ଶିଳାଲିପି ଛିଲ, ଯାଁହାରା ଦେଖିୟାଛିଲେନ ତାଁହାରା ବଲେନ ଶିଳାଲିପିତେ ୧୬୧୪ ଶକ ଅଙ୍କିତ ଛିଲ । ଶିଳାଲିପି ଖାନି ହାରାଇୟା ଗିୟାଛେ" । (ବୀ: ବି:—ପୃ ୨୨୭)

ପରନ୍ତୁ ଶ୍ରୀକ୍ଷେତ୍ରସ୍ଥ ମାର୍କଣ୍ଡେଶ୍ୱର ପୁଷ୍କରଣୀ ଘାଟରେ ଥିବା ଶ୍ରୀକୃଷ୍ଣ ମନ୍ଦିରରେ ଖୋଦିତ ଶିଳାଲେଖରୁ ଜଣାଯାଏ, ବର୍ଦ୍ଧମାନ ରାଜା ହରେକୃଷ୍ଣ ସିଂହ କୀର୍ତ୍ତିଚନ୍ଦ୍ର, ଅଗ୍ନି (୩) ରସ (୬) ଋତୁ (୬) ଓ ଉଡ଼ୁରଶ୍ମି (୧) ଅର୍ଥାତ୍ ୧୬୬୩ ଶକାବ୍ଦରେ ମାର୍କଣ୍ଡେୟ ହ୍ରଦରୁ ପଙ୍କୋଦ୍ଧାର ପୂର୍ବକ ଏହାର ଚତୁର୍ଦ୍ଦିଗରେ ପ୍ରସ୍ତର ସୋପାନ ଶ୍ରେଣୀ ନିର୍ମାଣ କରିଥିଲେ ଏବଂ ଏହାର ଘାଟରେ ଏକ ମଣ୍ଡପ ତୋଳାଇ ସେଥିରେ ଶ୍ରୀକୃଷ୍ଣ (ରାଧାବିନୋଦ) ମୂର୍ତ୍ତି ସ୍ଥାପନ କରିଥିଲେ। ଯଥା "ଶୁଭମସ୍ତୁ ଶକାବ୍ଦ ୧୬୬୩ ଶ୍ରୀକୃଷ୍ଣ ଶକାବ୍ଦେଽଗ୍ନି ରସର୍ତ୍ତୁ ଉଡ଼ୁରଶ୍ମି ଚନ୍ଦ୍ରେ ବ୍ୟଧାପୟତ୍ ମାର୍କଣ୍ଡେୟ ହ୍ରଦାତ୍ ପଙ୍କୋଦ୍ଧାରଂ ସୋପାନ ମଣ୍ଡପୋ **ହରେକୃଷ୍ଣେନସିଂହେନ କୀର୍ତ୍ତିଚନ୍ଦ୍ର ନୃପେଣ ଚ**।"

ମାଦଳା ପାଞ୍ଜିରେ ଲେଖାଅଛି— "ବର୍ଦ୍ଧମାନ କୀର୍ତ୍ତିଚନ୍ଦ୍ର ମା ମାର୍କଣ୍ଡରେ ପଥର ବନ୍ଧାଇଲେ।" (୩୬) ଉକ୍ତ ଲେଖ ଦ୍ୱାରା ନିଃସନ୍ଦେହରେ ପ୍ରମାଣିତ ହେଉଛି ଯେ ୧୬୬୩ ଶକାବ୍ଦ ବା ୧୭୪୧ ଖ୍ରୀଷ୍ଟାବ୍ଦରେ ବର୍ଦ୍ଧମାନ ରାଜା କୀର୍ତ୍ତିଚନ୍ଦ୍ର ମାର୍କଣ୍ଡେଶ୍ୱର ପୁଷ୍କରଣୀ ନିକଟରେ ନିର୍ମିତ ଏକ ମଣ୍ଡପରେ ତାଙ୍କର ଇଷ୍ଟଦେବତା 'ରାଧାବିନୋଦ'ଙ୍କ ବିଗ୍ରହ ପ୍ରତିଷ୍ଠା କରିଥିଲେ। ତେଣୁ ୧୭୪୧ ଖ୍ରୀଷ୍ଟାବ୍ଦର ପାଖାପାଖି କୌଣସି ବର୍ଷ କୀର୍ତ୍ତିଚନ୍ଦ୍ର ତାଙ୍କ ଜମିଦାରୀର ଅନ୍ତର୍ଭୁକ୍ତ ଭୂଖଣ୍ଡରେ ପ୍ରବାହିତ ଅଜୟ ନଦୀ କୂଳରେ ତାଙ୍କ କୁଳଦେବତା ଶ୍ରୀ ରାଧାବିନୋଦଙ୍କ ବର୍ତ୍ତମାନ ମନ୍ଦିର ପ୍ରତିଷ୍ଠା କରି ତାଙ୍କ ସମ୍ମୁଖରେ ଶ୍ରୀକୃଷ୍ଣଙ୍କ ଅତ୍ୟନ୍ତ ଆଦରଣୀୟ ଶ୍ରୀ ଗୀତଗୋବିନ୍ଦର ପାଠ ପାଇଁ ବ୍ୟବସ୍ଥା କରିଥିଲେ। ଉକ୍ତ 'ବୀରଭୂମ ବିବରଣ'ରୁ ଜଣାଯାଏ ଯେ, ବୃନ୍ଦାବନବାସୀ ନିମ୍ବାର୍କ ସଂପ୍ରଦାୟର ଶ୍ରୀରାଧାରମଣ ଦେବ ନାମକ ଜଣେ ମହନ୍ତ ବର୍ଦ୍ଧମାନର ଜଣେ ମହାରାଜାଙ୍କ ପୃଷ୍ଠପୋଷକତାରେ ଉକ୍ତ ଶ୍ରୀରାଧାବିନୋଦ ମନ୍ଦିର ନିକଟରେ ଏକ ମଠ ନିର୍ମାଣ କରିଥିଲେ। ଏହି ମହନ୍ତଙ୍କ ପରବର୍ତ୍ତୀ ସାତପୁରୁଷ ମହନ୍ତମାନଙ୍କ ନାମ ହେଉଛି ଭରତ ଦାସ, ପ୍ୟାରୀଲାଲ, ହୀରାଲାଲ, ଫୁଲଚନ୍ଦ, ରାମଗୋପାଳ, ସର୍ବେଶ୍ୱର ଓ ରସବିହାରୀ। ଅତଏବ ଏହି ମଠ ଆଠପୁରୁଷ ପୂର୍ବେ ବା ପ୍ରାୟ ୨୦୦ ବର୍ଷ ପୂର୍ବେ ସ୍ଥାପିତ ହୋଇଥିଲା। ନିମ୍ବାର୍କ ସଂପ୍ରଦାୟର ସନ୍ଥ ପରଂପରାରେ ଶ୍ରୀ ଜୟଦେବ ସ୍ଥାନ ପାଇଥିବାରୁ ଏବଂ ତତ୍‌କୃତ 'ଶ୍ରୀ ଗୀତଗୋବିନ୍ଦ'ର ବିଶେଷ ଲୋକପ୍ରିୟତା ଥିବାରୁ ଜୟଦେବଙ୍କ ନାମରେ ଏଠାରେ ପ୍ରତିବର୍ଷ ମକର ସଂକ୍ରାନ୍ତି ଦିନ ଏକ ବାର୍ଷିକ ମେଳା ଅନୁଷ୍ଠିତ ହେଲା। ମଠର ପ୍ରତିଷ୍ଠାତା ଶ୍ରୀ ଜୟଦେବଙ୍କ ସଂପ୍ରଦାୟ ଭୁକ୍ତ ହୋଇଥିବାରୁ ଏହି ମେଳାର ନାମ ଅଷ୍ଟାଦଶ ଶତାବ୍ଦୀର ଶେଷବେଳକୁ ହୋଇଗଲା ଜୟଦେବ ମେଳା।

---

(୩୬) ମାଦଳାପାଞ୍ଜି (ପ୍ରାଚୀ)– ପୃ ୮୦

ମନ୍ଦିର ଓ ମଠ ପ୍ରତିଷ୍ଠା ପୂର୍ବରୁ ଅଜୟ ନଦୀ ତୀରବର୍ତ୍ତୀ ବାଲୁକାଚ୍ଛାଦିତ ଉକ୍ତ ସ୍ଥାନର ଶ୍ରୀ ଜୟଦେବଙ୍କ ସହିତ କୌଣସି ସଂପର୍କ ନ ଥିଲା । ତେଣୁ ଶ୍ରୀଚୈତନ୍ୟ ମହାପ୍ରଭୁଙ୍କ ଆବିର୍ଭାବ ପରେ ରଚିତ ଶତ ଶତ ବଂଗଳା ପୋଥିରେ ବଂଗଳାର ବିଭିନ୍ନ ପ୍ରସିଦ୍ଧ ବୈଷ୍ଣବ କେନ୍ଦ୍ରମାନଙ୍କର ବିସ୍ତୃତ ବିବରଣ ମିଳୁଥିଲେ ମଧ୍ୟ ପରବର୍ତ୍ତୀ କାଳରେ ଶ୍ରୀ ଜୟଦେବଙ୍କ ନାମ ସହିତ ସଂପୃକ୍ତ ଉକ୍ତ ସ୍ଥାନର ଉଲ୍ଲେଖ ମଧ୍ୟ ମିଳେ ନାହିଁ । ଏହି ସ୍ଥାନ ସହିତ କେବଳ ଯେ ଶ୍ରୀ ଜୟଦେବଙ୍କ ସ୍ମୃତି ଜଡ଼ିତ ହୋଇଥିଲା ତାହା ନୁହେଁ, ଶ୍ରୀ ଜୟଦେବଙ୍କ ସମକକ୍ଷ ଭାରତ ପ୍ରସିଦ୍ଧ ବୈଷ୍ଣବ କବି 'ଶ୍ରୀ ବିଲ୍ୱମଙ୍ଗଳ' ସହିତ ଏହି ସ୍ଥାନର ସଂପର୍କ ପ୍ରତିଷ୍ଠା ପାଇଁ 'ବିଲ୍ୱମଙ୍ଗଲେର ଢ଼ିପି' ନାମକ ଗୋଟିଏ ସ୍ଥାନରେ ତାଙ୍କ ବାସଗୃହର ଧ୍ୱଂସାବଶେଷ ଥିବା ଏଠାର ଲୋକେ କହୁଥାଉଛନ୍ତି । (୩୭) କିନ୍ତୁ 'ବିଲ୍ୱମଙ୍ଗଳ' ଅଜୟ ନଦୀ କୂଳରେ ବାସକରିଥିବାର ଲେଶମାତ୍ର ସୂଚନା କୌଣସି ସୂତ୍ରରୁ ମିଳେନାହିଁ ।

ଅଷ୍ଟାଦଶ ଶତାବ୍ଦୀର ମଧ୍ୟଭାଗରେ ପ୍ରସିଦ୍ଧ ଉତ୍କଳୀୟ ବୈଷ୍ଣବ ଦାର୍ଶନିକ ଶ୍ରୀ ବଳଦେବ ବିଦ୍ୟାଭୂଷଣ ଶ୍ରୀରାଧା ମୂର୍ତ୍ତି ପୂଜାର ଶାସ୍ତ୍ରସିଦ୍ଧତା ସ୍ୱୀୟ **ଗୋବିନ୍ଦଭାଷ୍ୟ** ସାହାଯ୍ୟରେ ଜୟପୁର ଠାରେ ଅନୁଷ୍ଠିତ ବୈଷ୍ଣବ ସମ୍ମିଳନୀରେ ପ୍ରମାଣିତ କରିବା ପରେ ଭାରତର ବିଭିନ୍ନ ସ୍ଥାନରେ ଶ୍ରୀରାଧା - ମାଧବ, ଶ୍ରୀରାଧା-ବିନୋଦ, ଶ୍ରୀରାଧା-କୃଷ୍ଣଙ୍କ ମନ୍ଦିରମାନ ନିର୍ମିତ ହେବାକୁ ଲାଗିଲା । ଏହାଫଳରେ ଶ୍ରୀରାଧା-କୃଷ୍ଣ ଉପାସନାକୁ ବିଶିଷ୍ଟ ସ୍ଥାନ ଦେଇଥିବା ଶ୍ରୀ ନିମ୍ବାର୍କ, ଶ୍ରୀ ଜୟଦେବ ଓ ଶ୍ରୀ ବିଲ୍ୱମଙ୍ଗଳଙ୍କ ଧର୍ମମତ ଓ ଗ୍ରନ୍ଥଗୁଡ଼ିକର ଲୋକପ୍ରିୟତା ବିଶେଷ ଭାବରେ ବୃଦ୍ଧି ଲାଭ କଲା । ସେହି ଯୁଗର ଶ୍ରୀରାଧା-କୃଷ୍ଣ ପ୍ରେମସ୍ରୋତରେ ମଜ୍ଜି ଯାଇ ବର୍ଦ୍ଧମାନ ମହାରାଜା 'ଶ୍ରୀରାଧାକୃଷ୍ଣ କେଳିକଥା ସମେତ ଶ୍ରୀ ଗୀତଗୋବିନ୍ଦକାର ପରମ ବୈଷ୍ଣବ ଶ୍ରୀ ଜୟଦେବଙ୍କ ସହିତ ସଂପର୍କ ସ୍ଥାପନ ଦ୍ୱାରା ସ୍ୱ ବଂଶର ଗୌରବ ବୃଦ୍ଧି ନିମିତ୍ତ ଅଜୟ ନଦୀ କୂଳରେ ଜୟଦେବ ମେଳା ଆରମ୍ଭ କରିଦେଲେ । ସାର୍ ଉଇଲିୟମ ଜୋନ୍ସଙ୍କ ସମୟକୁ ଏହା ବଂଗଦେଶରେ ପ୍ରସିଦ୍ଧି ଲାଭ କରିଥିବାରୁ ପରବର୍ତ୍ତୀ ଯୁଗର ଭାରତୀୟ ତଥା ଇଉରୋପୀୟ ପଣ୍ଡିତମାନେ ଅଷ୍ଟାଦଶ ଶତାବ୍ଦୀରେ ପ୍ରତିଷ୍ଠିତ ଏହି ଜୟଦେବ ମେଳା ସ୍ଥାନକୁ ଶ୍ରୀ ଜୟଦେବଙ୍କ ଜନ୍ମସ୍ଥାନ ବୋଲି ନିର୍ବିବାଦରେ ଗ୍ରହଣ କରିଗଲେ ।

ବ୍ରିଟିଶ୍ ରାଜତ୍ୱର ପ୍ରଥମ ଶତାବ୍ଦୀରେ ସମଗ୍ର ଓଡ଼ିଶା ଅଜ୍ଞାନ ତମସାଚ୍ଛନ୍ନ ଥିଲା । ଉତ୍କଳର ଅତୀତ ଗୌରବ, ବିଭବ ଲୁପ୍ତ ହୋଇଯାଇଥିଲା । ଇଂରେଜୀ ଭାଷା ଓ ସାହିତ୍ୟ ଶିକ୍ଷାର ପ୍ରଚଳନ ପରେ କଲିକତା ମହାନଗରୀ ଜ୍ଞାନଚର୍ଚ୍ଚାର ପ୍ରଧାନ କେନ୍ଦ୍ରରେ ପରିଣତ ହେଲା ।

---

(୩୭) ବୀରଭୂମ ବିବରଣ ପୃ ୨୨୧

ବହୁ ପ୍ରାଚୀନ କାଳରୁ ଜ୍ଞାନଚର୍ଚ୍ଚାର ଏକ ପ୍ରଧାନ ପୀଠ ଶ୍ରୀକ୍ଷେତ୍ର ବା ପୁରୀର ଗୌରବ ରବି ଅସ୍ତମିତ ହୋଇଗଲା । କବିରାଜ ରାଜ ଜୟଦେବଙ୍କ ପ୍ରକୃତ ଜନ୍ମ-ସ୍ଥାନ ପ୍ରାଚୀକୂଳବର୍ତ୍ତୀ କେନ୍ଦୁବିଲ୍ୱ ବା କେନ୍ଦୁଲୀ ଶାସନ, ବାଲିବନ୍ତ ପରିପୂର୍ଣ୍ଣ, ବନାଚ୍ଛାଦିତ, ଗମନାଗମନର ସୁଯୋଗରୁ ବଞ୍ଚିତ ହୋଇ ସୁଧୀସମାଜର ଦୃଷ୍ଟିପଥାରୂଢ଼ ହେଲା ନାହିଁ । ଏହି ସୁଯୋଗରେ ଅଜୟ କୂଳବର୍ତ୍ତୀ କେନ୍ଦୁଲୀରେ ଜୟଦେବଙ୍କ ଜନ୍ମ ବୃତ୍ତାନ୍ତ ପ୍ରଚାର କରିବା ପାଇଁ ଶ୍ରୀ ବନମାଳୀ ଦାସ ନାମକ ଜଣେ ଲେଖକଙ୍କ ଦ୍ୱାରା **ଜୟଦେବ ଚରିତ** ନାମକ ଏକ ପୁସ୍ତକ ଲେଖାଗଲା । ସନ ୧୨୦୮ ବା ୧୮୦୧ ଖ୍ରୀଷ୍ଟାବ୍ଦରେ ଲେଖା ହୋଇଥିବା ଏହାର ଏକମାତ୍ର ପୋଥିକୁ କଲିକତାର 'ବଙ୍ଗୀୟ ସାହିତ୍ୟ ପରିଷଦ' ମୁଦ୍ରିତ ଓ ପ୍ରକାଶିତ କରିଥିଲେ । ଏ ଗ୍ରନ୍ଥର ମାହାତ୍ମ୍ୟ ପ୍ରଖ୍ୟାପକ ଶ୍ରୀ ହରେକୃଷ୍ଣ ମୁଖୋପାଧ୍ୟାୟ ମଧ୍ୟ ସ୍ୱୀକାର କରିଛନ୍ତି ଯେ, "କୋନ ଆଦର୍ଶ ପୁଥି ହଇତେ ଏଇ ଗ୍ରନ୍ଥ ନକଲ କରାହୟ ତାହା ଜାନାଯାୟ ନାଇ । ଏ ଗ୍ରନ୍ଥ ଅନ୍ୟ କୋଥାଓ ପାଓୟା ଯାଇ ନାଇ ।" (୩୮) ତେଣୁ ସମଗ୍ର ବଙ୍ଗଦେଶରେ ପ୍ରାପ୍ତ ଏକମେବ ଅଦ୍ୱିତୀୟ ଏହି ନକଲ ଉପରେ ନିର୍ଭର କରି ଶ୍ରୀ ଜୟଦେବଙ୍କ ଜନ୍ମସ୍ଥାନ ସମ୍ବନ୍ଧରେ ଅଭ୍ରାନ୍ତ ସିଦ୍ଧାନ୍ତରେ ଉପନୀତ ହେବା ଆଦୌ ନିରାପଦ ନୁହେଁ । ତଥାପି ଏହା ଶ୍ରୀ ଜୟଦେବଙ୍କ ବଙ୍ଗୀୟତ୍ୱର ପ୍ରମାଣ ପାଇଁ ପ୍ରଧାନ ଉପାଦାନ ରୂପେ ଗୃହୀତ ହୋଇଥିବାରୁ ଏହାର ସଂକ୍ଷିପ୍ତ ସମୀକ୍ଷା ଆବଶ୍ୟକ ।

## 'ଜୟଦେବ ଚରିତ'ର ସମୀକ୍ଷା —

ଏହି ପୁସ୍ତକ ପାଠରୁ ଜଣାଯାଏ ଯେ ଦାକ୍ଷିଣାତ୍ୟର ଏକ ବ୍ରାହ୍ମଣ ଦଂପତି ଶ୍ରୀଜଗନ୍ନାଥଙ୍କ ସେବା ପାଇଁ ଉତ୍ସୃଷ୍ଟ ନିଜ କନ୍ୟା ପଦ୍ମାବତୀଙ୍କୁ ସଂଗରେ ନେଇ ଶ୍ରୀକ୍ଷେତ୍ରକୁ ଆସିଥିଲେ । ଅଜୟ ନଦୀ କୂଳବର୍ତ୍ତୀ କେନ୍ଦୁବିଲ୍ୱ ଗ୍ରାମରେ ବାସ କରୁ-ଥିବା ଶ୍ରୀ ଜୟଦେବ ପଦ୍ମାବତୀଙ୍କ ପାଇଁ ଉପଯୁକ୍ତ ବର ବୋଲି ସେମାନଙ୍କୁ ଜଗନ୍ନାଥଙ୍କ ସ୍ୱପ୍ନାଦେଶ ହେବାରୁ ସେ ଦୁହେଁ କନ୍ୟା ପଦ୍ମାବତୀଙ୍କୁ ସଙ୍ଗରେ ନେଇ ଉକ୍ତ ସ୍ଥାନର ସନ୍ଧାନରେ ବହିର୍ଗତ ହେଲେ । ୨୦ ଦିନ କାଳ ବାଟ ଚାଲି ଚାଲି ସେମାନେ ଉକ୍ତ ଗ୍ରାମରେ ଉପଗତ ହେଲେ । ସେଠାରେ ପହଞ୍ଚି ସେମାନେ ଶ୍ରୀ ଜୟଦେବଙ୍କ ବାସସ୍ଥାନ ସମ୍ବନ୍ଧରେ ପଚରା ପଚରି କଲେ । ଶ୍ରୀ ଜୟଦେବଙ୍କ କୌଳୀନ୍ୟ ସମ୍ବ-ନ୍ଧରେ ଅଜ୍ଞାତ ସେଠାର ଲୋକେ ଜୟଦେବ ନାମକ ଜଣେ ଅର୍ଦ୍ଧପାଗଳ ସାଧୁ ନଦୀକୂଳବର୍ତ୍ତୀ ଏକ ଶିବମଣ୍ଡପରେ ରହୁଥିବାର ପ୍ରକାଶ କଲେ । ସେମାନେ ଆଗନ୍ତୁକମାନଙ୍କୁ ଅଜୟ ନଦୀ ତୀରବର୍ତ୍ତୀ କଦମ୍ବ ବୃକ୍ଷ ମୂଳରେ ଥିବା କଦମ୍ବଖଣ୍ଡି

---

(୩୮) ବୀରଭୂମ ବିବରଣ ପୃ-୨୦୧

ଘାଟକୁ ନେଇଗଲେ । ସେଠାରେ ସମବେତ ଜନତାର କୋଳାହଳରେ ଜୟଦେବଙ୍କ ଗମ୍ଭୀର ଧ୍ୟାନ ଭଙ୍ଗ ହେଲା । ଏହା ପରେ ଶ୍ରୀ ଜୟଦେବଙ୍କୁ ଆଗନ୍ତୁକ ଦଂପତି ସ୍ୱ ପରିଚୟ ପ୍ରଦାନ ପୂର୍ବକ ତାଙ୍କୁ ସେମାନଙ୍କ କନ୍ୟା ପଦ୍ମାବତୀଙ୍କୁ ଅର୍ପଣ କରିବା ବିଷୟରେ ଶ୍ରୀ ଜଗନ୍ନାଥ ମହାପ୍ରଭୁଙ୍କ ସ୍ୱପ୍ନାଦେଶ ହୋଇଥିବା ବିଷୟ ଜଣାଇଥିଲେ । ଶ୍ରୀ ଜୟଦେବ ପ୍ରଭୁ ଜଗନ୍ନାଥଙ୍କ ନିର୍ଦ୍ଦେଶ ମାନିବାକୁ ସମ୍ମତି ଜଣାଇଲେ । ସେଦିନ ରାତିରେ ଜଗନ୍ନାଥ ମହାପ୍ରଭୁ ସ୍ୱପ୍ନରେ ତାଙ୍କୁ ପଦ୍ମାବତୀ ସହ ପରିଣୟ, ଶ୍ରୀ ରାଧାକୃଷ୍ଣ ଲୀଳା ପ୍ରଖ୍ୟାପନ ନିମିତ୍ତ ଶ୍ରୀ ଗୀତଗୋବିନ୍ଦ କାବ୍ୟ ପ୍ରଣୟନ ଏବଂ ଅଜୟ ନଦୀ ଗର୍ଭରେ ପଡ଼ିଥିବା ଶ୍ରୀ ରାଧାମାଧବ ବିଗ୍ରହ ଦ୍ୱୟ ଉତ୍ତୋଳନ ପାଇଁ ଆଦେଶ ଦେଇଥିଲେ ।

ପରଦିନ ପ୍ରଭାତରେ ସେ ଶ୍ରୀ ଜଗନ୍ନାଥଙ୍କ ସ୍ୱପ୍ନାଦେଶ ବର୍ଣ୍ଣନା କରିବାରୁ ଗ୍ରାମବାସୀମାନେ ଅତି ଉତ୍ସାହ ସହକାରେ ପୌଷ ସଂକ୍ରାନ୍ତି ଦିନ ଅଜୟ ନଦୀରେ ବୁଡ଼ି ଶ୍ରୀ ରାଧାମାଧବ ମୂର୍ତ୍ତି ଉଦ୍ଧାର କରିଥିଲେ । ବର୍ଦ୍ଧମାନ ମହାରାଜାଙ୍କ ସାହାଯ୍ୟରେ ଶ୍ରୀ ଜୟଦେବ ଓ ପଦ୍ମାବତୀଙ୍କ ମଧ୍ୟରେ ବିବାହ କାର୍ଯ୍ୟ ସମ୍ପନ୍ନ ହୋଇଥିଲା । ପରେ ମହାରାଜା ବହୁ ଅର୍ଥ ବ୍ୟୟରେ ଗୋଟିଏ ମନ୍ଦିର ନିର୍ମାଣ କରି ବିଗ୍ରହ ଦ୍ୱୟ ପ୍ରତିଷ୍ଠା କରିଥିଲେ ଏବଂ ଶ୍ରୀ ଜୟଦେବ ଓ ପଦ୍ମାବତୀଙ୍କ ନିବାସ ପାଇଁ ଏକ ପ୍ରାସାଦ ନିର୍ମାଣ କରିଥିଲେ ।

ଏହା ପରେ 'ଦେହି ପଦପଲ୍ଲବ ମୁଦାରଂ' ସମ୍ବନ୍ଧୀୟ ଜନଶ୍ରୁତି ଏବଂ ସାଧୁ ଜୟଦେବଙ୍କ ଦ୍ୱାରା ସେଠାରେ ଏକ ବୈଷ୍ଣବ ମେଳାର ଆୟୋଜନ ବୃତ୍ତାନ୍ତ ବର୍ଣ୍ଣିତ ହୋଇଅଛି । ପ୍ରତିବର୍ଷ ଗୋଟିଏ ଦିନ ଅଜୟ ନଦୀରେ ଗଙ୍ଗାଙ୍କ ଆବିର୍ଭାବ ଘଟିଲେ ଏହାର ପାଣି କପରି ଉଜାଣି ଉଠେ ତାହା ବିସ୍ତୃତ ଭାବରେ ଲେଖାଯାଇଛି । ସେଠାରେ କଦମ୍ବଖଣ୍ଡି ଘାଟରେ ଶ୍ରୀ ଜୟଦେବ ଓ ପଦ୍ମାବତୀ ବହୁବର୍ଷ ସୁଖରେ କାଳାତିପାତ କରି ଶ୍ରୀ ବୃନ୍ଦାବନ ଧାମକୁ ଯାତ୍ରା କରିବା ପାଇଁ ସ୍ଥିର କଲେ । ଭକ୍ତର ମନୋବାଞ୍ଛା ପୂର୍ଣ୍ଣ କରିବା ପାଇଁ ସେମାନଙ୍କ ଦ୍ୱାରା ପୂଜିତ ଶ୍ରୀ ରାଧାମାଧବ ବିଗ୍ରହ ଏକ ଶାଳଗ୍ରାମ ଶିଳା ରୂପ ଧାରଣ କରିଥିଲେ । ତହୁଁ ଉକ୍ତ ଶାଳଗ୍ରାମ ଶିଳାକୁ କୋଥଳି ଭିତରେ ରଖି ଦୁହେଁ ବୃନ୍ଦାବନ ଧାମ ପ୍ରତି ଅଗ୍ରସର ହେଲେ ସେଠାରେ ପହଞ୍ଚିବା ପରେ ସେମାନଙ୍କ ପ୍ରାର୍ଥନା ଫଳରେ ଶାଳଗ୍ରାମ ଶିଳା ପୂର୍ବ ଶ୍ରୀରାଧାମାଧବ ବିଗ୍ରହ ରୂପ ଧାରଣ କରିଥିଲେ । ବୃନ୍ଦାବନ ଧାମରେ ଶ୍ରୀ ରାଧାମାଧବ ବିଗ୍ରହଙ୍କ ସେବାରେ ଦୀର୍ଘ ଦ୍ୱାଦଶ ବର୍ଷକାଳ ସୁଖରେ ଅତିବାହିତ କରି ଉଭୟେ ସ୍ୱର୍ଗାରୋହଣ କରିଥିଲେ ।

ସ୍ୱୟଂ ବଙ୍ଗ ଦେଶରେ ଆଦୌ ପ୍ରସାର ଲାଭ କରି ନଥିବା ଉକ୍ତ 'ଜୟଦେବ ଚରିତ' ପୁସ୍ତକକୁ ସୂକ୍ଷ୍ମ ଭାବରେ ବିଚାର କଲେ ଜଣାଯାଏ ଯେ ଏହାର ରଚୟିତାଙ୍କୁ ଶ୍ରୀ ଜୟଦେବଙ୍କ ଅପେକ୍ଷା ବର୍ଦ୍ଧମାନ ରାଜବଂଶର ଗୌରବ ଗାନ ଅଧିକ ପରିମାଣରେ

ପ୍ରଭାବିତ କରିଥିଲା । ଶ୍ରୀ ଜୟଦେବଙ୍କ ଆବିର୍ଭାବ କାଳରେ ବର୍ଦ୍ଧମାନ ଜମିଦାରୀ ଓ ଏହାର ରାଜବଂଶର କୌଣସି ଅସ୍ତିତ୍ୱ ନଥିଲେ ମଧ୍ୟ ବର୍ଦ୍ଧମାନ ରାଜାଙ୍କ ସାହାଯ୍ୟରେ ଶ୍ରୀ ଜୟଦେବ ଓ ପଦ୍ମାବତୀଙ୍କ ପରିଣୟୋତ୍ସବ ସମ୍ପନ୍ନ ହୋଇଥିବା ଘଟଣା ବର୍ଣ୍ଣନା ଐତିହାସିକ ସତ୍ୟର ଘୋର ଅପଳାପ ମାତ୍ର ।

ଏଥିରେ ଉଭୟଙ୍କ ବିବାହ ପ୍ରସଙ୍ଗରେ ଶ୍ରୀ ଜଗନ୍ନାଥଙ୍କ ସ୍ୱପ୍ନାଦେଶର ଅବତାରଣା କରାଯାଇଥିଲେ ମଧ୍ୟ ପ୍ରଭୁଙ୍କ ସେବା ପାଇଁ ଉତ୍ସୃଷ୍ଟ ପଦ୍ମାବତୀ ଶ୍ରୀକ୍ଷେତ୍ର ଛାଡ଼ି ଅବିଖ୍ୟାତ ଅଜୟ ନଦୀ ତୀରବର୍ତ୍ତୀ ପୂର୍ବରୁ ଅଜ୍ଞାତ, ଅଶ୍ରୁତ ଓ କପୋଳକଳ୍ପିତ କେନ୍ଦୁବିଲ୍ୱ ଗ୍ରାମରେ ଚିର ଜୀବନ ଯାପନର ଉଲ୍ଲେଖ ଆମ ଦେଶ ପରଂପରାର ଘୋର ବିରୋଧୀ । ଜନଶ୍ରୁତି ଓ ଶିଳାଲେଖ ଦ୍ୱାରା ଅକାଟ୍ୟ ଭାବରେ ସମର୍ଥିତ ଶ୍ରୀ ଜଗନ୍ନାଥ ମନ୍ଦିରରେ ଶ୍ରୀ ଗୀତଗୋବିନ୍ଦର ନିତ୍ୟ ଗାନ ସମ୍ବନ୍ଧରେ ଉକ୍ତ ପୁସ୍ତକରେ କୌଣସି ଉଲ୍ଲେଖ ନ ଥିବାରୁ ଏହାର ଐତିହାସିକ ମୂଲ୍ୟ କ୍ଷୁର୍ଣ୍ଣ ହେଉଅଛି । ତେଣୁ ଏଥିରେ ପ୍ରଦତ୍ତ କାଳ୍ପନିକ ଓ ପ୍ରଶସ୍ତିମୂଳକ ବିବରଣ ଉପରେ ନିର୍ଭର କରି ଶ୍ରୀ ଜୟଦେବଙ୍କ ଜନ୍ମସ୍ଥାନ ନିରୂପଣ ଆଦୌ ଗ୍ରହଣ ଯୋଗ୍ୟ ନୁହେଁ ।

## ଅଜୟ କୂଳବର୍ତ୍ତୀ କେନ୍ଦୁଲୀର ଅସ୍ତିତ୍ୱ ନାହିଁ :—

ଏ ସମ୍ପର୍କରେ ବଙ୍ଗଳାର ଜନୈକ ପ୍ରଖ୍ୟାତ ଐତିହାସିକ ଡକ୍ଟର ଶ୍ରୀ ସୁକୁମାର ସେନଙ୍କ ନିମ୍ନଲିଖିତ ମନ୍ତବ୍ୟ ସର୍ବଥା ବିଚାରଯୋଗ୍ୟ । 'ଜୟଦେବେର କୋନ କୋନ ଗାନେର ଭଣିତାୟେ ନିଜକେ କେନ୍ଦୁବିଲ୍ୱ-ସମୁଦ୍ର-ରୋହଣୀରମଣ' ବଲିୟାଛେନ; ଇହା ହଇତେ ଅନୁମାନ କରାଯାୟ ଯେ ତାହାର ଅଭିଜନ ଅଥବା ନିବାସ ଛିଲ କେନ୍ଦୁବିଲ୍ୱେ । କେନ୍ଦୁବିଲ୍ୱ ତାହାର ଅଭିଜନ ଅର୍ଥାତ୍ ପୂର୍ବପୁରୁଷେର ନିବାସ ହଇଲେ କିଛୁ ବଲିବାର ନାଇ, କେନନା **'କେଁଦୁଲି' ବଲିୟା ଏଖନ କୋନ ଗାଁଇ ନାଇ ।** ନିବାସ ହଇଲେ ଅନ୍ୟ କଥା । **କେଁଦୁଲି ଗ୍ରାମେର ଅସ୍ତିତ୍ୱ ବାଙ୍ଗଲା ଦେଶେ କଖନୋ ହୟତ ଛିଲ ଏଖନ ଲୁପ୍ତ ।** ଜୟଦେବେର ମେଲା ଯେଖାନେ ବସିୟା ଥାକେ ତାହାକେ କେଁଦୁଲି ବଲିଲେ ଓ ତାହା କୋନ ଗ୍ରାମେର ମେଲା ନୟ, ଅଜୟେର ଧାରେ ବାଲୁତଟେ ପୌଷ ସଙ୍କ୍ରାନ୍ତି ସ୍ନାନେର ମେଲା ନିକଟେ ଯେ **ଗ୍ରାମ ଆଛେ ତାହାର ନାମ କେଁଦୁଲି ନୟ । ଏଖାନେ କେଁଦୁଲି ଗ୍ରାମ ଛିଲ ବଲିୟା କୋନ ପ୍ରମାଣଓ ନାଇ ।** ଶୁଧୁ ସ୍ନାନମେଲାର ନାମ 'ଜୟଦେବ କେଁଦୁଲି' ବା ଶୁଧୁ 'କେନ୍ଦୁଁଲି' । ଇହାଓ ଅନୁଧାବନ ଯୋଗ୍ୟ ଯେ ଏଇ ଅଞ୍ଚଲେ 'କେଁଦୁଲି' ଶବ୍ଦଟି ମେଲା ଅର୍ଥେ ସାଧାରଣ ବିଶେଷ୍ୟ ରୂପେ ସମଧିକ ପ୍ରଚଳିତ । ଚୈତନ୍ୟେର ସମୟେ ଜୟଦେବର ସ୍ମୃତି

ସବଳିତ ଏ ମେଲାର କୋନ ଉଲ୍ଲେଖ ନାଇଁ ଏବଂ ଜୟଦେବେର ଜନ୍ମସ୍ଥାନ ବା ବାସସ୍ଥାନ ରୂପେ କେଁନ୍ଦୁଲିର ବା ଅନ୍ୟ କୋନ ଗ୍ରାମେର କଥାଓ ନାଇ । ନିତ୍ୟାନନ୍ଦେର ଜନ୍ମସ୍ଥାନ ଏ ସ୍ଥାନ ହଇତେ ଖୁବ୍ ବେଶି ଦୁରେ ନୟ । ସୁତରାଂ ଚୈତନ୍ୟ ଚରିତେ କେଂନ୍ଦୁଲିର ଅନୁଲ୍ଲେଖ ବିସ୍ମୟାବହ । ମେଲା ସ୍ଥାନେର ନିକଟେ ଯେ ମନ୍ଦିର ଓ ଦେବ ସ୍ଥାନ ଆଛେ, ତାହାର ଇତିହାସ ଆରମ୍ଭ ହଇଆଛେ ୧୬୯୪ ଖ୍ରୀଷ୍ଟାବ୍ଦ ହଇତେ" (୩୯)

ଅନ୍ୟତ୍ର ଡକ୍ଟର୍ ସେନ ଲେଖିଛନ୍ତି "ଉଡ଼ିଷ୍ୟାୟ ପୁରୀର ଅନତିଦୂରେ ପ୍ରାଚୀ ନଦୀର ଧାରେ କେନ୍ଦୁବିଲ୍ୱ ଗ୍ରାମ ଆଛେ × × । ମନେ ହଇତେ ପାରେ ଯେ ଗୀତଗୋବିନ୍ଦର ଗାଢ଼ ଆଦରଇ ଉଡ଼ିଷ୍ୟାର ମନ୍ଦିରେର ଏକ ଧରଣେର ସ୍ଥାପତ୍ୟ ଶିଳ୍ପେରଇ ପ୍ରତିଫଳନ, ସୁତରାଂ ଜୟଦେବ ଉଡ଼ିଷ୍ୟା ନିବାସୀଇ ହଇବେନ୍ ।"(ପୃ୪୦)

ପ୍ରାଚୀନ ବଙ୍ଗଳା ସାହିତ୍ୟ ସାଗର ମନ୍ଥନ କରିଥିବା ଡକ୍ଟର ଶ୍ରୀ ସୁକୁମାର ସେନ ଶ୍ରୀ ଜୟଦେବଙ୍କ ଜନ୍ମସ୍ଥାନ କେନ୍ଦୁବିଲ୍ୱ ବା କେନ୍ଦୁଳୀ ଏବଂ ସେଠାରେ ଅନୁଷ୍ଠିତ ମେଳା ସମ୍ବନ୍ଧରେ ବଙ୍ଗଳାର ବିରାଟ ପ୍ରାଚୀନ ବୈଷ୍ଣବ ସାହିତ୍ୟରେ କୌଣସି ଉଲ୍ଲେଖ ନ ପାଇବାରୁ ବଂଗ ଦେଶରେ ତାଙ୍କର ଜନ୍ମସ୍ଥାନର ଅବସ୍ଥିତି ଅସ୍ୱୀକାର କରିବାକୁ ବାଧ୍ୟ ହୋଇଥିବାର ଜଣାଯାଏ ।

କଲିକତା ବିଶ୍ୱବିଦ୍ୟାଳୟର ଅଧ୍ୟାପକ ଡକ୍ଟର ଶ୍ରୀ ଆଶୁତୋଷ ଭଟ୍ଟାଚାର୍ଯ୍ୟ ମୁକ୍ତ କଣ୍ଠରେ ସ୍ୱୀକାର କରିଛନ୍ତି—"ଜୟଦେବ ଛିଲେନ ଓଡ଼ିଆ ଏବଂ ବୀରଭୂମେର କେନ୍ଦୁଲିତେ ଅନୁଷ୍ଠିତ ବାତ୍ସରିକ ମେଲା ଆସଲେ ବାଉଲ ମେଲା ଏବଂ ଜୟଦେବେର ଜନ୍ମେର ସଙ୍ଗେ ଏର କୋନ ସମ୍ପର୍କ ନେଇ । ଜୟଦେବ ଲକ୍ଷ୍ମଣ ସେନେର ସଭାକବି ଛିଲେନ ବଲେ ଏ ଯାବତ୍ ଯେ ସିଦ୍ଧାନ୍ତ ବିଦଗ୍ଧ ସମାଜେ ଗୃହୀତ ହୟେଛିଲ ତା' ଗ୍ରହଣଯୋଗ୍ୟ ନୟ । ଲକ୍ଷ୍ମଣ ସେନେର ଅନ୍ୟାନ୍ୟ କବିଦେର ନାମେର ସଙ୍ଗେ କବି ଜୟଦେବ ନିଜେର ନାମକେ ଯୁକ୍ତ କରିଲେଓ ତିନି ଲକ୍ଷ୍ମଣ ସେନେର ସଭାକବି ଛିଲେନ, ତା ପ୍ରମାଣିତ ହୟନା । ପ୍ରାଚୀନ ଯଶସ୍ୱୀ ସଂସ୍କୃତ କବିଦେର ନାମେର ସଙ୍ଗେ ନିଜେର ନାମ ଯୁକ୍ତକରିବାର ରୀତି ଏଖନୋ ଉଡ଼ିଷ୍ୟାୟ ପ୍ରଚଳିତ ରୟେଛେ ।"(୪୦)

---

(୩୯) ବାଙ୍ଗଲା ସାହିତ୍ୟେର ଇତିହାସ' ପ୍ରଥମ ଖଣ୍ଡ-ପୂର୍ବାର୍ଦ୍ଧ, ୧୯୭୭ ସଂସ୍କରଣ, ଲେଖକ ଡକ୍ଟର ଶ୍ରୀ ସୁକୁମାର ସେନ, ପୃ୪୧ ।

(୪୦) ବଙ୍ଗଳା ସାପ୍ତାହିକ 'ଯୁଗବାଣୀ'— ଜୁନ ୭ ତାରିଖ ୧୯୬୯, ଜୟଦେବ ପ୍ରବନ୍ଧ ଦ୍ରଷ୍ଟବ୍ୟ ।

ମହାପ୍ରଭୁ ଶ୍ରୀ ଚୈତନ୍ୟ ଶ୍ରୀକ୍ଷେତ୍ର ଅବସ୍ଥାନ କାଳରେ ସ୍ୱରୂପ ଓ ରାୟ ରାମାନନ୍ଦଙ୍କ ସହିତ ଚଣ୍ଡୀ ଦାସ ଓ ବିଦ୍ୟାପତିଙ୍କ ବୈଷ୍ଣବ ପଦାବଳୀ, ରାୟ ରାମାନନ୍ଦଙ୍କ ଜଗନ୍ନାଥ ବଲ୍ଲଭ ନାଟକ; ବିଲ୍ୱମଙ୍ଗଳ ସ୍ୱାମୀ କୃତ ଶ୍ରୀକୃଷ୍ଣକର୍ଣ୍ଣାମୃତ ଏବଂ କବିରାଜ ଶ୍ରୀ ଜୟଦେବ କୃତ ଶ୍ରୀ ଗୀତଗୋବିନ୍ଦ ଦିନରାତି ପରମ ଆନନ୍ଦରେ ଗାନ ଓ ଶ୍ରବଣ କରୁଥିବାର ଶ୍ରୀଚୈତନ୍ୟଚରିତାମୃତ ପାଠରୁ ଜଣାଯାଏ ।

(କ) "ବିଦ୍ୟାପତି, ଜୟଦେବ, ଚଣ୍ଡୀ ଦାସେର ଗୀତ
ଆସ୍ୱାଦେନ ରାମାନନ୍ଦ, ସ୍ୱରୂପ ସହିତ ॥
(ଶ୍ରୀ ଚୈ· ଚ· ଆଦି ଲୀଳା ୧୩—୪୨)

(ଖ) ଚଣ୍ଡୀ ଦାସ ବିଦ୍ୟାପତି ରାୟେର ନାଟକ ଗୀତି
କର୍ଣ୍ଣାମୃତ, ଶ୍ରୀ ଗୀତଗୋବିନ୍ଦ,
ସ୍ୱରୂପ ରାମାନନ୍ଦ ସନେ ମହାପ୍ରଭୁ ରାତ୍ରି ଦିନେ
ଗାୟ ଶୁନେ ପରମ ଆନନ୍ଦ ॥
(ଶ୍ରୀ ଚୈ· ଚ· ମଧ୍ୟଲୀଳା, ୨ୟ ପରିଚ୍ଛେଦ)

(ଗ) ବିଦ୍ୟାପତି, ଚଣ୍ଡୀଦାସ, ଶ୍ରୀ ଗୀତଗୋବିନ୍ଦ
ଭାବାନୁରୂପ ଶ୍ଳୋକ ପଢ଼େନ ରାୟ ରାମାନନ୍ଦ ।
(ଶ୍ରୀ ଚୈ: ଚ: ଅନ୍ତ୍ୟଲୀଳା ୧୭—୬)

ମହାପ୍ରଭୁ ଶ୍ରୀ ଚୈତନ୍ୟଙ୍କ ଅତିପ୍ରିୟ ଶ୍ରୀ ଗୀତଗୋବିନ୍ଦର ରଚୟିତା ପରମ ବୈଷ୍ଣବ ଶ୍ରୀ ଜୟଦେବଙ୍କ ଜନ୍ମସ୍ଥାନ କେନ୍ଦୁବିଲ୍ୱ ଶାସନ ବଙ୍ଗ ଦେଶରେ ଅବସ୍ଥିତ ଥିଲେ ଗୌଡ଼ର ବୈଷ୍ଣବ କବିମାନେ ଏହାକୁ ଏକ ମହାତୀର୍ଥରେ ପରିଣତ କରି ଶତ ମୁଖରେ ଏହାର ମାହାତ୍ମ୍ୟ କୀର୍ତ୍ତନ କରିଥାନ୍ତେ । ଏହା ଘଟି ନ ଥିବାରୁ ଅଜୟ ତୀରବର୍ତ୍ତୀ ଏକ ବାଲୁକା ପ୍ରାନ୍ତରରେ ବର୍ଦ୍ଧମାନ ମହାରାଜାଙ୍କ ଆନୁକୂଲ୍ୟରେ ଅଷ୍ଟାଦଶ ଶତାବ୍ଦୀର ଶେଷ ପାଦରେ ଅନୁଷ୍ଠିତ ଜୟଦେବ ମେଳାର ସ୍ଥାନକୁ ଶ୍ରୀ ଜୟଦେବଙ୍କ ଜନ୍ମସ୍ଥାନ କେନ୍ଦୁବିଲ୍ୱ ବୋଲି ଗ୍ରହଣ କରିବା ଐତିହାସିକ ସତ୍ୟ ମୂଳରେ କୁଠାରାଘାତ କରିବା ପରି ଅତ୍ୟନ୍ତ ଦୂଷଣୀୟ ।

ପୂର୍ବୋକ୍ତ ଦୀର୍ଘ ଆଲୋଚନା ପାଠ କଲେ ପାଠକମାନେ ହୃଦୟଙ୍ଗମ କରିପାରିବେ ଯେ ଯେତେ ଅପପ୍ରଚାର କଲେ ମଧ୍ୟ ସତ୍ୟ କେବେ ଲୁଚି ପାରିବ ନାହିଁ । ସାତତାଳ ପଙ୍କ ମଧ୍ୟରେ ଥିଲେମଧ୍ୟ ଏହା ଉପରକୁ ଫୁଟି ବାହାରି ପଡ଼ିବ । ସମସ୍ତେ

ଜାଣନ୍ତି ଯେ ଶ୍ରୀ ଚୈତନ୍ୟ ମହାପ୍ରଭୁଙ୍କ ମହାନଦୀ କୂଳବର୍ତ୍ତୀ ଗଡ଼ଗଡ଼େଶ୍ୱର ମହାଦେବଙ୍କ ନିକଟବର୍ତ୍ତୀ ଘାଟରେ ଶୁଭ ପଦାର୍ପଣକୁ ସ୍ମରଣୀୟ କରିବା ପାଇଁ ସେଠାରେ ପ୍ରତିବର୍ଷ କାର୍ତ୍ତିକ ପୂର୍ଣ୍ଣିମା ଦିନ ଏକ ମେଳା ହୁଏ । ଏହାକୁ ଭିତ୍ତିକରି ଶ୍ରୀଚୈତନ୍ୟ ମହାପ୍ରଭୁ ଗଡ଼ଗଡ଼ିଆ ଘାଟ ପାର୍ଶ୍ୱବର୍ତ୍ତୀ ବାରବାଟୀ ଗ୍ରାମରେ ଜନ୍ମ ଗ୍ରହଣ କରିଥିଲେ ବୋଲି ହଜାର ପ୍ରକାରରେ ପ୍ରଚାର କଲେ ମଧ୍ୟ ଶ୍ରୀଚୈତନ୍ୟ ଚିରକାଳ ନବଦ୍ୱୀପ ଚନ୍ଦ୍ର ରୂପେ ଜାଜ୍ଜ୍ୱଲ୍ୟମାନ ରହିବେ ।

ସେହିପରି ଶ୍ରୀ ଜୟଦେବଙ୍କ ନାମରେ ଅଜୟ ନଦୀକୂଳରେ ଏକ ମେଳା ହେଉଥିବା ଭିତ୍ତିରେ ମେଳାସ୍ଥାନକୁ ତାଙ୍କର ଜନ୍ମଭୂମି ରୂପେ ଗ୍ରହଣ କରିବା ଐତିହାସିକ ସତ୍ୟର ଘୋର ଅପଲାପ ମାତ୍ର । ଭାରତର ସର୍ବପ୍ରାନ୍ତବାସୀ ସନ୍ଥକବି ମାନଙ୍କ ଦ୍ୱାରା କୀର୍ତ୍ତିତ, ଚତୁର୍ଦ୍ଦିଗରେ ବିଭିନ୍ନ ଯୁଗର ବହୁ ପ୍ରାଚୀନ କୀର୍ତ୍ତିମଣ୍ଡିତ, ଶ୍ରୀଜଗନ୍ନାଥପୁରୀର ଅଦୂରରେ ଅବସ୍ଥିତ ପୂତସଲିଳା ପ୍ରାଚୀ ତୀରବର୍ତ୍ତୀ କେନ୍ଦୁବିଲ୍ୱ ଶାସନରେ ଆବିର୍ଭୂତ ହୋଇଥିବାରୁ କବିରାଜ ଜୟଦେବ ନିଜକୁ ଯଥାର୍ଥରେ 'କେନ୍ଦୁବିଲ୍ୱ ଚନ୍ଦ୍ର' ରୂପେ ସଗର୍ବରେ ଘୋଷଣା କରିଥିଲେ ।



# ଦ୍ୱିତୀୟ ଅଧ୍ୟାୟ

## କବିରାଜ ଶ୍ରୀ ଜୟଦେବଙ୍କ ପରିବାର

**ଶ୍ରୀ ଜୟଦେବଙ୍କ ପିତା ଓ ମାତା —** 'କବି ସାର୍ବଭୌମ' ବାଣଭଟ୍ଟ ମହାକବି ଭବଭୂତି, 'ବାଲବାଲ୍ମୀକି' ମୁରାରି, ପ୍ରସିଦ୍ଧ ଉତ୍କଳୀୟ ଜ୍ୟୋତିଷ ଓ ସ୍ମୃତି-କାର ଶ୍ରୀ ଶତାନନ୍ଦ ଆଚାର୍ଯ୍ୟ, ଉତ୍କଳୀୟ କବିବର ଗୋବର୍ଦ୍ଧନାଚାର୍ଯ୍ୟ ଓ 'କବିରାଜ ରାଜ ମୁକୁଟାଳଙ୍କାରହୀର' ଶ୍ରୀହର୍ଷଙ୍କ (୧) ପଦାଙ୍କ ଅନୁସରଣ କରି 'କବିରାଜ-ରାଜ' ଶ୍ରୀ ଜୟଦେବ ସ୍ୱୀୟ ଅମର କୃତି ଶ୍ରୀ ଗୀତଗୋବିନ୍ଦର ଶେଷ ସର୍ଗର ଶେଷାଂଶରେ ସ୍ୱୀୟ ପିତା **ଭୋଜଦେବ** ଓ ମାତା **ରାମା ଦେବୀ**ଙ୍କ ନାମୋଲ୍ଲେଖ କରିଛନ୍ତି ।

"ଶ୍ରୀ ଭୋଜଦେବପ୍ରଭବସ୍ୟ ରାମାଦେବୀ ସୁତ ଶ୍ରୀ ଜୟଦେବକସ୍ୟ ।
ପରାଶରାଦି ପ୍ରିୟବର୍ଗ କଣ୍ଠେ ଶ୍ରୀ ଗୀତଗୋବିନ୍ଦ କବିତ୍ୱମସ୍ତୁ ॥"
(ଶ୍ରୀ ଗୀତଗୋବିନ୍ଦମ୍ ଦ୍ୱାଦଶ ସର୍ଗ)

'ରାମାଦେବୀ'ଙ୍କ 'ବାମାଦେବୀ' ଓ 'ରାଧାଦେବୀ' ପାଠଭେଦ ମଧ୍ୟ ଦେଖାଯାଏ ।

ଶ୍ରୀ ଗୀତଗୋବିନ୍ଦର କେତେକ ଟୀକାରେ ଏହି ଶ୍ଳୋକର ବ୍ୟାଖ୍ୟା ଦିଆ-ଯାଇ ନ ଥିବାରୁ ଏହାକୁ କେତେକ ଐତିହାସିକ ପ୍ରକ୍ଷିପ୍ତ ବୋଲି ବିବେଚନା କରନ୍ତି । କିନ୍ତୁ ଚତୁର୍ଦ୍ଦଶ ଶତାବ୍ଦୀରେ ଆବିର୍ଭୂତ ପ୍ରସିଦ୍ଧ ମୈଥିଳ ପଣ୍ଡିତ ଜଗଦ୍ଧର କୃତ ଶ୍ରୀ ଗୀତଗୋବିନ୍ଦର 'ସାରଦୀପିକା' ନାମ୍ନୀ ଟୀକା ଏବଂ ଉକ୍ତ ଶତାବ୍ଦୀର ଶେଷଭାଗରେ ଖ୍ୟାତିଲାଭ କରିଥିବା ଉତ୍କଳୀୟ କବିରାଜ ନାରାୟଣ ଦାସ କୃତ ବହୁପ୍ରଚଳିତ **ସର୍ବାଙ୍ଗ ସୁନ୍ଦରୀ ଟୀକା**ରେ ଏହି ଶ୍ଳୋକର ବିଷଦାର୍ଥ ସନ୍ନିବିଷ୍ଟ ଥିବାରୁ ଏହାର ପ୍ରାମାଣିକତା ଗ୍ରହଣୀୟ ।

**ଶ୍ରୀ ଜୟଦେବଙ୍କ ଗୋତ୍ର —**

ବାଣଭଟ୍ଟ ଓ ମୁରାରି ପ୍ରଭୃତି ପ୍ରାଚୀନ ଭାରତର ପ୍ରସିଦ୍ଧ କବିପଣ୍ଡିତଗଣ ସ୍ୱ ପିତାମାତାଙ୍କ ବର୍ଣ୍ଣନା ପ୍ରସଙ୍ଗରେ ଯଥାକ୍ରମେ ସ୍ୱୀୟ ଗୋତ୍ର 'ବାତ୍ସ୍ୟାୟନ' ଓ 'ମୌଦ୍‌ଗଲ୍ୟ'

---

(୧) "ଶ୍ରୀହର୍ଷଂ କବିରାଜ-ରାଜି-ମୁକୁଟାଳଂକାର-ହୀରଃ ସୁତଂ
ଶ୍ରୀହୀରଃ ସୁଷୁବେ ଜିତେନ୍ଦ୍ରିୟଚୟଂ ମାମଲ୍ଲଦେବୀ ଚ ଯମ୍"
ଏହି ଉଦ୍ଧୃତାଂଶ ମହାକବି ଶ୍ରୀହର୍ଷ କୃତ ଦ୍ୱାବିଂଶତି ସର୍ଗ ବିଶିଷ୍ଟ 'ନୈଷଧୀୟ ଚରିତମ୍' ମହାକାବ୍ୟର ପ୍ରଥମ ସର୍ଗର ଶେଷ ଶ୍ଳୋକରେ ପରିଦୃଷ୍ଟ ହୁଏ ।

ପ୍ରଭୃତର ଉଲ୍ଲେଖ କରଛନ୍ତି । କନ୍ତୁ 'ଶ୍ରୀ ଗୀତଗୋବନ୍ଦକାର' ସ୍ୱ ଗ୍ରନ୍ଥର ଶେଷ ଶ୍ଳୋକରେ ନଜ ପିତାମାତାଙ୍କ ନାମ ଲେଖିଥିଲେ ମଧ୍ୟ ଏଠାରେ ବା ଗ୍ରନ୍ଥର ଅନ୍ୟ କୁତ୍ରାପି ତାଙ୍କ ଗୋତ୍ର ସମ୍ବନ୍ଧରେ ସୂଚନା ଦେଇ ନ ଥିବାରୁ ଏହି ଭୂବନବନ୍ଦତ ବାଣୀ-ପୁତ୍ରଙ୍କ ବଂଶଧରମାନଙ୍କ ସନ୍ଧାନ ସମ୍ଭବପର ହେଉନାହିଁ ।

## ଜୟଦେବ ନାମର ପ୍ରାଚୀନତ୍ୱ —

ପ୍ରାଚୀନ ଜୈନ ଲେଖମାନଙ୍କରେ 'ଜୟଦେବ' ନାମଧାରୀ ବହୁ ଜୈନ ଆଚାର୍ଯ୍ୟଙ୍କ ନାମ ମିଳେ । ମଥୁରାରୁ ପ୍ରାପ୍ତ ପ୍ରାକୃତ ଭାଷାରେ ଲିଖିତ ଦୁଇଟି ଲେଖ ମଧ୍ୟରୁ ଗୋଟିକରେ 'ଜୟଦେବଙ୍କ ବଧୂ' (୨) ଓ ଅନ୍ୟଟିରେ 'ଗ୍ରାମିକ ଜୟଦେବ'ଙ୍କ ଉଲ୍ଲେଖ ଦେଖାଯାଏ । (୩) ଲକ୍ଷ୍ମେଶ୍ୱର ମନ୍ଦରରେ ଥିବା ୬୫୬ ଶକାବ୍ଦ ବା ୭୩୪ ଖ୍ରୀଷ୍ଟାବ୍ଦର ଏକ ସଂସ୍କୃତ ଅଭିଲେଖରେ ରାମଦେବାଚାର୍ଯ୍ୟଙ୍କ ଶିଷ୍ୟ ବପକ୍ଷବାଦୀ ବଜୟୀ ଜନୈକ ଜୟଦେବ ପଣ୍ଡିତଙ୍କ ବବରଣ ମିଳେ—

"ରାମଦେବାଚାର୍ଯ୍ୟଶିଷ୍ୟାୟ ବିଜତବପକ୍ଷବାଦୀ **ଜୟଦେବ ପଣ୍ଡିତା**-ନ୍ତେବାସିନେ × × × ଶ୍ରୀ ବଜୟଦେବ ପଣ୍ଡିତାଚାର୍ଯ୍ୟାୟ ।"
(ଜୈନ: ଶି: ସଂ ଦ୍ୱିତୀୟଭାଗଃ ପୃ ୧୧୪)

ଉକ୍ତ ଲକ୍ଷ୍ମେଶ୍ୱର ମନ୍ଦରରେ ଅବସ୍ଥିତ ୮୯୦ ଶକାବ୍ଦ ବା ୯୬୮ ଖ୍ରୀଷ୍ଟା-ବ୍ଦରେ ଖୋଦତ ଅନ୍ୟ ଏକ ଲେଖରେ ଜଣେ ପ୍ରଥିତ-ଯଶା ଜୟଦେବ ପଣ୍ଡିତଙ୍କ ପ୍ରଶସ୍ତି ବର୍ଣ୍ଣିତ ହୋଇଛି —

'ମନ୍ତ୍ରବତସ୍ୟ ତସ୍ୟ ମନ୍ତ୍ରବୈନ୍ନହିତାଂ ପ୍ରଥମସ୍ୟ ଚ ପ୍ରଥମ ଶିଷ୍ୟତୟା
**ଜୟଦେବ ପଣ୍ଡିତ** ଇତ ପ୍ରଥିତଂ ପ୍ରଥମାନ ଶାସ୍ତ୍ରମହିମ ଦ୍ରବଣଃ ॥"
(ଜୈନ ଶିଳାଲେଖ ସଂଗ୍ରହଃ, ପୃ ୧୯୩)

ଦୁବକୁଣ୍ଡ ନାମକ ସ୍ଥାନରେ ୧୧୪୫ ବକ୍ରମ ସମ୍ବତ୍ ବା ୧୦୮୮ ଖ୍ରୀଷ୍ଟାବ୍ଦରେ ଖୋଦତ ଏକ ଶିଳାଲେଖରେ ସଜ୍ଜନାଗ୍ରଣୀ ଜୟଦେବଙ୍କ ବବରଣ ମିଳେ—

"ପୁତ୍ରୋସ୍ୟ ବୈଭବପଦଂ **ଜୟଦେବ** ନାମା
ସୀମାୟମାନଚରିତୋ ଜନ ସଜ୍ଜନାନାମ୍ ॥
(ଜୈନ ଶିଳାଲେଖ ସଂଗ୍ରହଃ, ପୃ ୩୩୪)

---

(୨) 'ଜୟଦେବସ୍ୟ ବଧୂ'
ଜୈନ ଶିଳାଲେଖ ସଂଗ୍ରହ (ଦ୍ୱିତୀୟ ଖଣ୍ଡ), ଲେଖକ — ପଣ୍ଡିତ ବଜୟ ମୂର୍ତ୍ତି ଏମ୍. ଏ. ପୃ ୨୧ ।

(୩) 'ଗ୍ରାମିକ ଜୟଦେବସ୍ୟ' (ଜୈ: ଶି: ସଂ: ପୃ ୩୫)

ଆଲୋଚିତ ଅଭିଲେଖସମୂହ ଶ୍ରୀ ଗୀତଗୋବିନ୍ଦକାର ଶ୍ରୀ ଜୟଦେବଙ୍କ ବହୁ ପୂର୍ବବର୍ତ୍ତୀ ହୋଇଥିବାରୁ ଜୈନମାନଙ୍କ ମଧ୍ୟରେ ଜୟଦେବ ନାମଧାରୀ କେତେକ ବିଶିଷ୍ଟ ବ୍ୟକ୍ତି ଆବିର୍ଭୂତ ହୋଇଥିବା ଜଣାଯାଏ ।

ଜୈନମାନଙ୍କ ପରି ପ୍ରାଚୀନ କାଳରେ ହିନ୍ଦୁ ବା ବ୍ରାହ୍ମଣ୍ୟ ଧର୍ମାବଲମ୍ବୀମାନଙ୍କ ମଧ୍ୟରେ ମଧ୍ୟ ଜୟଦେବ ନାମର ବ୍ୟବହାର ଦେଖାଯାଏ । ନେପାଳରେ ଅବସ୍ଥିତ ପ୍ରସିଦ୍ଧ ପଶୁପତିନାଥ ମନ୍ଦିରର ପଶ୍ଚିମ ତୋରଣର ପାର୍ଶ୍ୱରେ ସଂଲଗ୍ନ ଏକ ଲିପିରେ ନେପାଳର ଲିଚ୍ଛବୀ ବଂଶୀ ଅଧିପତି **ଦ୍ୱିତୀୟ ଜୟଦେବଙ୍କ** ଦୀର୍ଘ ବଂଶ ପରିଚୟ ଓ ତାଙ୍କ ଶ୍ୱଶୁର ଓ ସ୍ତ୍ରୀଙ୍କ ବିବରଣ ଜଣାଯାଏ । ଏହି ଶିଳାଲେଖଟି ୧୫୩ ହର୍ଷାବ୍ଦ ବା ୭୫୯ ଖ୍ରୀଷ୍ଟାବ୍ଦରେ ଉତ୍କୀର୍ଣ୍ଣ ହୋଇଥିଲା । ଏଥିରେ ପ୍ରଦତ୍ତ ନିମ୍ନୋକ୍ତ ବିବରଣ ଅନୁଯାୟୀ ନେପାଳ ରାଜ ଶିବଦେବ ଓ ବତ୍ସଦେବୀଙ୍କ ପୁତ୍ର ଦ୍ୱିତୀୟ ଜୟଦେବ ଗୌଡ଼, ଉଡ୍ର, କଳିଙ୍ଗ ଓ କୋଶଳର ଅଧିପତି ଭଗଦତ୍ତ ବଂଶୀୟ ଶ୍ରୀହର୍ଷ ଦେବଙ୍କ କନ୍ୟା ଦେବୀ ରାଜ୍ୟମତୀଙ୍କୁ ବିବାହ କରି ବିଶେଷ କ୍ଷମତାଶାଳୀ ହୋଇଥିଲେ ।

"ମାଦ୍ୟଦ୍ଦନ୍ତି ସମୂହ ଦନ୍ତମୂସଳ କ୍ଷୁଣ୍ଣାରିଭୂଭୃତ୍ଛିରୋ
ଗୌଡ଼ୋଡ୍ରାଦି-କଳିଙ୍ଗ-କୋସଳପତି-ଶ୍ରୀହର୍ଷଦେବାତ୍ମଜା
ଦେବୀ ରାଜ୍ୟମତୀ କୁଳୋଚିତଗୁଣୈର୍ଯୁକ୍ତା ପ୍ରଭୂତା କୁଳୈ-
ର୍ଯେନୋଢ଼ା ଭଗଦତ୍ତରାଜକୁଳଜା ଲକ୍ଷ୍ମୀରିବ କ୍ଷ୍ମାଭୁଜା"

(Indian Antiquary Vol IX (1880) p 181)

ତାଙ୍କର ଜଣେ ପୂର୍ବପୁରୁଷଙ୍କ ନାମ ମଧ୍ୟ ଜୟଦେବ ଥିଲା । ସେ ନେପାଳ ଅଧିପତି **ପ୍ରଥମ ଜୟଦେବ** ନାମରେ ପ୍ରଖ୍ୟାତ ।

ଦ୍ୱାଦଶ ଶତାବ୍ଦୀର ମଧ୍ୟଭାଗରେ ଆବିର୍ଭୂତ (ଆନୁମାନିକ ୧୧୫୦ ଖ୍ରୀଷ୍ଟାବ୍ଦ) ବିଦ୍ୟାକର ନାମକ ଜନୈକ ପଣ୍ଡିତଙ୍କ ଦ୍ୱାରା ସଂଗୃହୀତ 'ସୁଭାଷିତ ରତ୍ନକୋଷ' ନାମକ ପୁସ୍ତକରେ ଜନୈକ ଜୟଦେବ କବିଙ୍କ ଦ୍ୱାରା ରଚିତ ଦୁଇଟି ଶ୍ଳୋକ ଉଦ୍ଧୃତ ହୋଇଅଛି ।

"D. D Kosumbhi and V. V. Gokhaleଙ୍କ ଦ୍ୱାରା ସଂପାଦିତ ଓ ପ୍ରକାଶିତ **ସୁଭାଷିତ ରତ୍ନକୋଷ**ରେ ପ୍ରାବୃଟ ବ୍ରଜ୍ୟାରେ ଥିବା ୨୪୦ ସଂଖ୍ୟକ ଶ୍ଳୋକ ଓ ପ୍ରଶସ୍ତି ବ୍ରଜ୍ୟାରେ ଥିବା ୧୫୬୮ ସଂଖ୍ୟକ ଶ୍ଳୋକ ଉକ୍ତ ଜୟଦେବଙ୍କ ନାମରେ ସୂଚିତ ହୋଇଅଛି । ଏଥିମଧ୍ୟରୁ ଦ୍ୱିତୀୟଟି **ସଦୁକ୍ତିକର୍ଣ୍ଣାମୃତମ୍**ର ୧୫୩୮ ସଂଖ୍ୟକ ଶ୍ଳୋକ ଭାବରେ ଜୟଦେବଙ୍କ ନାମରେ ଦର୍ଶାଯାଇଥିବାରୁ ଏହା ଯେ ଭକ୍ତକବି ଜୟଦେବଙ୍କ ଦ୍ୱାରା ରଚିତ ହୋଇଥିଲା, ଏହା ନିଃସନ୍ଦେହରେ କୁହାଯାଇ ପାରେ ।

ଉକ୍ତ କବି ଜୟଦେବ ଯେ ଶ୍ରୀ ଗୀତଗୋବିନ୍ଦକାର ଶ୍ରୀ ଜୟଦେବଙ୍କ ପୂର୍ବବର୍ତ୍ତୀ, ଏହା ପ୍ରମାଣିତ ହୋଇଅଛି ।

'ନୈଷଧୀୟ ଚରିତ' ମହାକାବ୍ୟ ପ୍ରଣେତା ଶ୍ରୀହର୍ଷଙ୍କ ପରବର୍ତ୍ତୀ କୌଣ୍ଡିନ୍ୟ ଗୋତ୍ର ସମ୍ଭବ ମହାଦେବ ଓ ସୁମିତ୍ରାଙ୍କ ନନ୍ଦନ ଅନ୍ୟ ଏକ କବୀନ୍ଦ୍ର ଜୟଦେବ 'ପ୍ରସନ୍ନ ରାଘବମ୍' ନାମକ ନାଟକ ଓ 'ଚନ୍ଦ୍ରାଲୋକ' ନାମକ ଅଳଙ୍କାର ଶାସ୍ତ୍ର ପ୍ରଣୟନ କରି ବିଶେଷ ଖ୍ୟାତି ଅର୍ଜନ କରିଥିବାର ଜଣାଯାଏ ।

ସୂତ୍ରଧାରଃ **କବୀନ୍ଦ୍ରଃ କୌଣ୍ଡିନ୍ୟଃ ସଏବ ଜୟଦେବ** ଶ୍ରବଣୟୋ-
ରୟାସୀଦାତିଥ୍ୟଂ ନ କମିହ **ମହାଦେବତନୟଃ** ॥ ୧୪ ।
(ପ୍ରସନ୍ନ ରାଘବମ୍)

× × ×

**ମହାଦେବଃ** ସତ୍ର ପ୍ରମୁଖମଖବିଦ୍ୟୈକ ଚତୁରଃ
**ସୁମିତ୍ରା** ତଦ୍‌ଭକ୍ତି ପ୍ରଣିହିତମତିର୍ଯସ୍ୟ ପିତରୌ ।
ଅନେନାସାବାଦ୍ୟ **ସୁକବିଜୟଦେବେନ** ରଚିତେ
ଚିରଂ **ଚନ୍ଦ୍ରାଲୋକେ** ସୁଖୟତୁ ମୟୂଖଃ ସୁମନସଃ ।
(ଚନ୍ଦ୍ରାଲୋକ)

ଅତଏବ ଅମର କବି ଶ୍ରୀ ଜୟଦେବଙ୍କ ପୂର୍ବବର୍ତ୍ତୀ ଜୟଦେବ ନାମଧାରୀ କତିପୟ ପ୍ରଖ୍ୟାତନାମା ଜୈନ ଆଚାର୍ଯ୍ୟ, ବ୍ରାହ୍ମଣ ପଣ୍ଡିତ ଓ ରାଜ୍ୟଶାସକ ଭାରତ ଇତିହାସର ଦୀର୍ଘ ଏକସହସ୍ର ବର୍ଷ ବ୍ୟାପୀ ତମସାଚ୍ଛନ୍ନ ଭୂଭାଗରେ ଏକ ଏକ ଆଲୋକ ସ୍ତମ୍ଭ ସ୍ୱରୂପ ଦେଦୀପ୍ୟମାନ ହୋଇଥିବାର ଗବେଷଣା ଦ୍ୱାରା ଜଣାଗଲାଣି ।

## ଦେବ କୁଳସଂଜ୍ଞା —

'ଜୟଦେବ' **ପଦର** 'ଦେବ' ଶବ୍ଦକୁ କବିଙ୍କ କୌଳିକ ସଂଜ୍ଞାରୂପେ ଗ୍ରହଣ କରିବା ବିଷୟ ପ୍ରଣିଧାନ ଯୋଗ୍ୟ । ଏ ସଂପର୍କରେ ତାଙ୍କ ପିତାଙ୍କ 'ଭୋଜଦେବ' ନାମ ମଧ୍ୟ ଏପରି ବିଚାରକୁ ସମର୍ଥନ କରେ । ସମଗ୍ର ଉତ୍କଳରେ ପ୍ରାୟ ଦୁଇ ଶତାବ୍ଦୀରୁ ଅଧିକ କାଳ ଆଧିପତ୍ୟ ପ୍ରତିଷ୍ଠା କରିଥିବା ଭୌମ ସମ୍ରାଟଙ୍କ ରାଜତ୍ୱ କାଳରେ (ପ୍ରାୟ ଖ୍ରୀ: ଅ: ୭୨୦—୮୭୦ ଖ୍ରୀଷ୍ଟାବ୍ଦ) ଭୂମିଦାନ ଗ୍ରହଣ କରିଥିବା ବ୍ରାହ୍ମଣମାନଙ୍କର ସ୍ୱାମୀ, ଭଟ୍ଟ, **ଦେବ,** ଦୀକ୍ଷିତ, ଭୂତି ବଟୁ, ଅଗ୍ନିହୋତ୍ରୀ, କର, ପ୍ରଭୃତି ସଂଜ୍ଞା ପରିଦୃଷ୍ଟ ହୁଏ । ଭୌମବଂଶୀୟ ସମ୍ରାଟ୍ ପ୍ରଥମ ଶୁଭକର ଦେବଙ୍କ ଠାରୁ ଭୂମିଦାନ ଗ୍ରହଣ କରିଥିବା ଦୁଇଶତ ବ୍ରାହ୍ମଣଙ୍କ ମଧ୍ୟରେ **ଶୋଭନଦେବ** ନାମକ ଯଜୁର୍ବେଦୀ

ବ୍ରାହ୍ମଣଙ୍କ ନାମ ମିଳେ । (୪) ଭୌମବଂଶୀୟା ମହାରାଣୀ ଦଣ୍ଡୀ ମହାଦେବୀଙ୍କ ୧୮୭ ଭୌମାବ୍ଦ ବା ୮୯୧ ଖ୍ରୀଷ୍ଟାବ୍ଦରେ ଲିଖିତ କୁମାରାଙ୍ଗ ତାମ୍ରଶାସନ **ସର୍ବଦେବ** ନାମକ ଜନୈକ ଆଗ୍ରହାରିକଙ୍କୁ ପ୍ରଦତ୍ତ ହୋଇଥିଲା । (୫)

ପ୍ରାଚୀନ ଭାରତ ଇତିହାସ ଆଲୋଚନା କଲେ ଜୟ ଶବ୍ଦ ସହିତ କୌଳିକ ସଂଜ୍ଞାବାଚକ ଶବ୍ଦର ସଂଯୋଗ ଦ୍ୱାରା ବହୁତ ନରପତିଙ୍କ ନାମ ଗଠିତ ହୋଇଥିବାର ପ୍ରମାଣ ମିଳେ । (୬) ଯଥା— ପଶ୍ଚିମ ଭାରତର ଶକ ନରପତି ଜୟଦାମନ (୧୪୦ ଖ୍ରୀ: ଅ:), ମାଳବ ବଂଶୀୟ ଜୟସୋମ (୨୨୬ ଖ୍ରୀ: ଅ:), ମାଳବ ଅଧିପତି ଜୟବର୍ମାନ୍ (୪୦୩ ଖ୍ରୀଷ୍ଟାବ୍ଦର ପୂର୍ବବର୍ତ୍ତୀ), ବଲ୍ଲଭୀ (ଗୁଜୁରାଟ) ଅଧୀଶ୍ୱର ପ୍ରଥମ ଜୟଭଟ୍ଟ, ଦ୍ୱିତୀୟ ଜୟଭଟ୍ଟ ଓ ତୃତୀୟ ଜୟଭଟ୍ଟ (୭୦୬ ଖ୍ରୀଷ୍ଟାବ୍ଦ), ଗୌଡ଼ର ଅଧିପତି ଗୁପ୍ତ-ବଂଶୀୟ ବୁଦ୍ଧଗୁପ୍ତଙ୍କ ଦୁଇଜଣ ସାମନ୍ତରାଜା ଜୟଦତ୍ତ ଓ ଜୟନାଥ (୪୭୬ ଖ୍ରୀ: ଅ:); ନେପାଳର ଲିଚ୍ଛବୀ ବଂଶୀୟ ରାଜା ପ୍ରଥମ ଜୟଦେବ ଓ ଦ୍ୱିତୀୟ ଜୟଦେବ (୭୪୮ ଖ୍ରୀଷ୍ଟାବ୍ଦ) ଶଶାଙ୍କଙ୍କ ପୂର୍ବବର୍ତ୍ତୀ ବଙ୍ଗଳାର ରାଜା ଜୟନାଗ (୬୨୦ ଖ୍ରୀଷ୍ଟାବ୍ଦ ପୂର୍ବବର୍ତ୍ତୀ) ମେକଲର ପାଣ୍ଡବ ବଂଶୀୟ ପ୍ରଥମ ରାଜା ଜୟବଳ (ଷଷ୍ଠ ଶତାବ୍ଦୀ) ଶ୍ୱେତକ (ଟେକାଟି ଅଞ୍ଚଳର) ଗଙ୍ଗବଂଶୀୟ ସାମନ୍ତ ରାଜା ଜୟ ବର୍ମନ୍ (ଆ ୬୦୦ ଖ୍ରୀଷ୍ଟାବ୍ଦ), 'ରାମପାଳ ଚରିତମ୍' କାବ୍ୟରେ ବର୍ଣ୍ଣିତ ଦଣ୍ଡଭୁକ୍ତି ନରପତି ଜୟସିଂହ (ପ୍ରାୟ ୧୦୬୫ ଖ୍ରୀଷ୍ଟାବ୍ଦ) ସୁମ୍ଭୁପୁରର ରାଜା ଜୟଭଞ୍ଜ (ଦ୍ୱାଦଶ ଶତାବ୍ଦୀ), କନୌଜର • ପ୍ରସିଦ୍ଧ ଗହଡ଼ବାଲ ସମ୍ରାଟ୍ ଜୟଚନ୍ଦ୍ର (୧୧୯୦ ଖ୍ରୀଷ୍ଟାବ୍ଦ) । କୋଶଳର ସୋମବଂଶୀୟ ନରପତି ସୋମେଶ୍ୱର ଦେବଙ୍କ ଦୁଇଟି ତାମ୍ରଶାସନରେ (ଆ: ୧୧୦୦ ଖ୍ରୀଷ୍ଟାବ୍ଦ) କୁମାରହାଟିତ ସଗୋତ୍ର ପଞ୍ଚର୍ଷି ପ୍ରବର ମାଧ୍ୟନ୍ଦିନ ଶାଖାଧ୍ୟାୟୀ କମଳପୁର ବାସ୍ତବ୍ୟ **ଜୟାକରଙ୍କ** ପୌତ୍ର ବିଦ୍ୟାକରଙ୍କ ପୁତ୍ର ଉଦୟ କରଙ୍କ ଉଲ୍ଲେଖ ଦେଖାଯାଏ । (୭) ତେଣୁ ଅନ୍ୟ ବିରୁଦ୍ଧ ପ୍ରମାଣ ନ ପାଇବା ପର୍ଯ୍ୟନ୍ତ 'ଦେବ' ଶବ୍ଦକୁ ଶ୍ରୀ ଭୋଜଦେବ ଓ ତତ୍ପୁତ୍ର ପ୍ରସିଦ୍ଧ ଶ୍ରୀ ଜୟଦେବଙ୍କ ବ୍ରାହ୍ମଣ ବାଚକ କୁଳସଂଜ୍ଞା ରୂପେ ଗ୍ରହଣ କରିବା ସମୀଚୀନ ।

---

(୪) Neulpur Plate of Subharkara Deva.
Edited by R. D. Banerjee, E. I Vol XV pp 1-8

(୫) Kumarange plat of Dandi Mahadevi of the year 187
J. B. O R. Society Vol V. (pp564-577)

(୬) Early History of North India 200 BC—650 AD by Dr. Sudnakara Chattopadyhāya.
ଜୟଦାମନଙ୍କ ଠାରୁ ଜୟନାଗ ପର୍ଯ୍ୟନ୍ତ ବିବରଣ ଆହୃତ ।

(୭) Inscriptions of Orissa, Vol IV by Sri S. N. Rajaguru.
ପୃ ୨୨୧, ୨୨୨

**ପ୍ରିୟ ପତ୍ନୀ ପଦ୍ମାବତୀ :—**

ଶ୍ରୀ ଜୟଦେବ ସ୍ୱୀୟ ଅମର କୃତ 'ଶ୍ରୀ ଗୀତଗୋବିନ୍ଦମ୍'ର ପ୍ରଥମ ମଙ୍ଗଳାଚରଣ ଶ୍ଳୋକ ପରବର୍ତ୍ତୀ ଦ୍ୱିତୀୟ ଶ୍ଳୋକରେ ସ୍ୱୀୟ ପତ୍ନୀ ପଦ୍ମାବତୀଙ୍କ ଗଭୀର କୃଷ୍ଣଭକ୍ତି ଓ ଗୀତ-ଲୟ-ତାନ ନର୍ତ୍ତନ କଳା କୌଶଳ ଅତି ହୃଦୟସ୍ପର୍ଶୀ ଭାବରେ ପ୍ରଦର୍ଶନ କରିଛନ୍ତି ।

"ବାଗ୍‌ଦେବତା-ଚରିତ ଚିତ୍ରିତ-ଚିତ୍ତସଦ୍ମା
**ପଦ୍ମାବତୀ ଚରଣଚାରଣ ଚକ୍ରବର୍ତ୍ତୀ**
ଶ୍ରୀ ବାସୁଦେବ ରତିକେଳି କଥା ସମେତ
ମେତଂ କରୋତି ଜୟଦେବକବିଃ ପ୍ରବନ୍ଧମ୍" ॥୨ ॥

କିନ୍ତୁ ଶ୍ଳୋକୋକ୍ତ 'ପଦ୍ମାବତୀ' ପଦର ବ୍ୟାଖ୍ୟା ସମ୍ପର୍କରେ ଟୀକାକାରମାନଙ୍କ ମଧ୍ୟରେ ମତଦ୍ୱୈଧ ଦେଖାଯାଏ । ଚତୁର୍ଦ୍ଦଶ ଶତାବ୍ଦୀରେ ଆବିର୍ଭୂତ ଧୃତି ଦାସ ସ୍ୱୀୟ 'ସନ୍ଦର୍ଭ ଦୀପିକା' ଟୀକା'ରେ ପଦ୍ମାବତୀଙ୍କୁ ଜୟଦେବ କବିଙ୍କ ଭାର୍ଯ୍ୟା ରୂପେ ଗ୍ରହଣ କରିଛନ୍ତି ।

"ଅତ୍ର ଜୟଦେବ କବେଃ **ପଦ୍ମାବତୀ ଭାର୍ଯ୍ୟା**, ତଦୁପାଦାନାତ୍ କବେରନ୍ୟାଙ୍ଗନାବୈମୁଖ୍ୟଂ ଶୃଙ୍ଗାରିତ୍ୱଂ ଚ ସୂଚିତମ୍"

ତାଙ୍କର ପରବର୍ତ୍ତୀ ପ୍ରସିଦ୍ଧ ଉତ୍କଳୀୟ ଟୀକାକାର କବିରାଜ ନାରାୟଣ ଦାସ ସ୍ୱ କୃତ 'ସର୍ବାଙ୍ଗ ସୁନ୍ଦରୀ' ଟୀକାରେ ପଦ୍ମାବତୀ ପଦକୁ ଲକ୍ଷ୍ମୀ ଅର୍ଥରେ ଓ କବି ଜୟଦେବଙ୍କୁ ତାଙ୍କର ଶ୍ରେଷ୍ଠ ସେବକ ଅର୍ଥରେ ଗ୍ରହଣ କରି ଦାରିଦ୍ର୍ୟ ଅପନୋଦନ ନିମିତ୍ତ କବିମାନଙ୍କ ଦ୍ୱାରା ଲକ୍ଷ୍ମୀଙ୍କ ଆରାଧନା ଅବଶ୍ୟ କର୍ତ୍ତବ୍ୟ ବୋଲି ମତ ପ୍ରକାଶ କରିଛନ୍ତି ।

"**ପଦ୍ମାବତୀ ଲକ୍ଷ୍ମୀଃ** । ତସ୍ୟାଶ୍ଚରଣୟୋଃ ଚାରଣ ଚକ୍ରବର୍ତ୍ତୀ ନଟଶ୍ରେଷ୍ଠଃ ସେବକ ଶ୍ରେଷ୍ଠୋ ବା × × × ଅତ୍ର ବାଗ୍‌ଦେବତେତ୍ୟନେନ କବେଃ ପାଣ୍ଡିତ୍ୟଂ, ପଦ୍ମାବତୀ ଚରଣଚାରଣେତ୍ୟନେନ ଲକ୍ଷ୍ମ୍ୟାଭକ୍ତ୍ୟାତି ଶୟେନ ଦାରିଦ୍ର୍ୟାପଗମଃ । ଅବଶ୍ୟଂ କବିନା ଦାରିଦ୍ର୍ୟୋପଶମାୟ ଯତନୀୟମ୍"

'ସଙ୍ଗୀତ ଦୀପିକା' ନାମ୍ନୀ ଟୀକାର ପ୍ରଣେତା ଲେଖିଛନ୍ତି ଯେ ସଙ୍ଗୀତ ଓ ନୃତ୍ୟ ବିଶାରଦ ଭଗବଦ୍‌ଭକ୍ତିପରାୟଣ କବି ଜୟଦେବ ନୃତ୍ୟଗୀତ ନିପୁଣା ସ୍ୱକାନ୍ତା

ପଦ୍ମାବତୀଙ୍କର ନିଜର ଉପାସ୍ୟ ଦେବତା ଶ୍ରୀକୃଷ୍ଣଙ୍କ ସମ୍ମୁଖରେ ପ୍ରତିଦିନ ପୂଜାପରେ ବିଭିନ୍ନ ପ୍ରକାର ନୃତ୍ୟ ପ୍ରଦର୍ଶନ ପରିଚାଳନା କରୁଥିଲେ ।

"**ପଦ୍ମାବତୀ ନାମ ଜୟଦେବସ୍ୟ ନିଜ ନାୟିକା,** ତସ୍ୟାଶ୍ଚରଣୌ ପାଦୌ ତୟୋଶ୍ଚାରଣାନ୍ ନୃତ୍ୟବିଶେଷାଣି, ତେଷୁ ଚକ୍ରବର୍ତ୍ତୀ ସାର୍ବଭୌମଃ, ତଥାପି ନିପୁଣ ଇତ୍ୟର୍ଥଃ । ଜୟଦେବ ଭଗବଦ୍ଭକ୍ତାଗ୍ରଣୀ **ସ୍ୱକାନ୍ତାଂ ପଦ୍ମାବତୀମେବ** ନିଜୋପାସ୍ୟ-ଦେବତାୟାଃ ଶ୍ରୀକୃଷ୍ଣସ୍ୟାଗ୍ରେ ପ୍ରତିଦିନଂ ପୂଜାନ୍ତେ ନର୍ତ୍ତୟନ୍ତିତ୍ୟାନୁସନ୍ଧେୟମ୍"

ମିବାରର ପ୍ରସିଦ୍ଧ ରାଣା କୁମ୍ଭକର୍ଣ୍ଣ ନରେନ୍ଦ୍ର ସ୍ୱ ବହୁପ୍ରଚଳିତ 'ରସିକ-ପ୍ରିୟା' ଟୀକାରେ (ଆ ୧୪୫୦ ଖ୍ରୀଷ୍ଟାବ୍ଦ) ପଦ୍ମାବତୀଙ୍କୁ ପରମ ଭାଗବତ ଜୟଦେବଙ୍କ କଳତ୍ର ରୂପେ ଗ୍ରହଣ କରିଛନ୍ତି ।

"ଅତଃ **ପଦ୍ମାବତୀ ତସ୍ୟ କଳତ୍ରମିତି** ନାନ୍ୟଥା,
ପରମଭାଗବତସ୍ୟାସ୍ୟ ଜୟଦେବସ୍ୟ ଯୁଜ୍ୟତେ ॥"

ମେଥିଳ ପଣ୍ଡିତ ମହାମହୋପାଧ୍ୟାୟ ଶ୍ରୀ ଶଙ୍କର ମିଶ୍ର ସ୍ୱକୃତ ଲୋକପ୍ରିୟ 'ରସମଞ୍ଜରୀ' ଟୀକାରେ ଜୟଦେବଙ୍କୁ ସ୍ୱପତ୍ନୀ ପଦ୍ମାବତୀଙ୍କ 'ଚରଣଚାରଣ' ବା ନର୍ତ୍ତନର ଶ୍ରେଷ୍ଠ ଚାଳକ ବା ନଟ-ସାର୍ବଭୌମ ରୂପେ ପ୍ରତିପାଦନ କରି ଏହାଦ୍ୱାରା କବିଙ୍କ କୃଷ୍ଣ ଭକ୍ତ୍ୟାଧିକ୍ୟ ଓ ଶୃଙ୍ଗାରିତ୍ୱ ସୂଚିତ ହେଉଥିବା ମତ ପ୍ରକାଶ କରିଛନ୍ତି ।

"ପୁନଃ କୀଦୃଶ କବିଃ । **ପଦ୍ମାବତୀନାମ ଜୟଦେବ ପତ୍ନୀ** ତସ୍ୟା ଚରଣୟୋର୍ଯଚ୍ଚାରଣଂ ପରିଚରଣମ୍, ନର୍ତ୍ତନ ମିତି ଯାବତ୍ ॥ ତେନ ଚକ୍ରବର୍ତ୍ତୀ ନଟ ସାର୍ବଭୌମଃ ଇତ୍ୟର୍ଥଃ । ଏତେନ କବେଃ କୃଷ୍ଣଭକ୍ତ୍ୟାଧିକ୍ୟଂ ଶୃଙ୍ଗାରିତ୍ୱଂ ଚ ଧ୍ୱନିତମ୍" ।

ପୂଜାରୀ ଗୋସ୍ୱାମୀ ନାମରେ ପରିଚିତ ପ୍ରଖ୍ୟାତ ବଙ୍ଗୀୟ ଟୀକାକାର ଶ୍ରୀ ଚୈତନ୍ୟ ଭକ୍ତ ଶ୍ରୀ ଚୈତନ୍ୟ ଦାସ ଏହି ଶ୍ଳୋକର ପଦ୍ମାବତୀ ପଦକୁ ଶ୍ରୀ ରାଧା ଅର୍ଥରେ ବ୍ୟାଖ୍ୟା କରି ଲେଖିଛନ୍ତି— ଯେ ପଦ୍ମାବତୀଙ୍କର ବା ସର୍ବ ଲକ୍ଷ୍ମୀମୟୀ ଶ୍ରୀରାଧାଙ୍କ ଚରଣର ଶ୍ରେଷ୍ଠ ପରିଚାରକ, ସେହି ଜୟଦେବ କବି ଶ୍ରୀ ବାସୁଦେବ ରତିକେଳି କଥା ସମ୍ବଳିତ ଏହି ପ୍ରବନ୍ଧ (ଗୀତଗୋବିନ୍ଦ) ରଚନା କଲେ ।

"ଏତାବତାପି କଥଂ ତଚ୍ଚକ୍ରବର୍ତ୍ତୀ କାସ୍ମିକ ବୃତ୍ତେଃ ଶ୍ରୀରାଧିକାପରିତ୍ୱମାହ-**ପଦ୍ମଂ ବିଦ୍ୟତେ କରେ ଯସ୍ୟାଃ ସା ପଦ୍ମାବତୀ ଶ୍ରୀରାଧା !** ତସ୍ୟାଶ୍ଚରଣ-

ଯୌନମିତ ଭୂତସ୍ୟୋରେବ ଗୃହଣେତଜବର୍ତ୍ତୀ ନର୍ତ୍ତକଶ୍ରେଷ୍ଠଃ ନୃତ୍ୟାଦିନା ସଦା ତଦାରାଧନତତ୍ପର ଇତ୍ୟର୍ଥଃ ॥ ଅନେନ ତତ୍ର ପ୍ରାଧନୋପାସନାମ୍ନୋ ଦର୍ଶିତା ॥"

ଉକ୍ତ ଶ୍ଳୋକ ବର୍ଣ୍ଣିତ 'ପଦ୍ମାବତୀ'ଙ୍କୁ **ଭାରତର ବିଭିନ୍ନାଞ୍ଚଳରେ** ବିଭିନ୍ନ **ଯୁଗରେ** ଆବିର୍ଭୂତ ଅଧିକାଂଶ ପ୍ରସିଦ୍ଧ ଟୀକାକାର ଭକ୍ତକବି ଶ୍ରୀ ଜୟଦେବଙ୍କ ନୃତ୍ୟଗୀତ ନିପୁଣା ଶ୍ରୀକୃଷ୍ଣ ଭକ୍ତିପରାୟଣା ନାୟିକା, ପତ୍ନୀ, କଳତ୍ର ବା ଭାର୍ଯ୍ୟା ଅର୍ଥରେ ଗ୍ରହଣ କରିଛନ୍ତି । ଏହି ଅର୍ଥ ଯୁକ୍ତିସଂଗତ ଓ ଅନ୍ୟ ପ୍ରମାଣ ସମର୍ଥିତ ହୋଇଥିବାରୁ ସର୍ବଥା ଗ୍ରହଣୀୟ । ଏଠାରେ ଉକ୍ତ ପଦକୁ 'ଶ୍ରୀଲକ୍ଷ୍ମୀ' ବା 'ଶ୍ରୀରାଧା' ଅର୍ଥରେ ଗ୍ରହଣ କରିବା ପାଇଁ କୌଣସି ସନ୍ତୋଷଜନକ ପ୍ରମାଣ ମିଳୁନାହିଁ ।

ଶ୍ରୀ ଗୀତଗୋବିନ୍ଦର ଦଶମ ସର୍ଗର ଦଶମ ଶ୍ଳୋକରେ କବି ଜୟଦେବ ନିଜକୁ 'ପଦ୍ମାବତୀ-ରମଣ' ବୋଲି ପରିଚିତ କରାଇ ବିଶେଷ ଗର୍ବ ଅନୁଭବ କରିଛନ୍ତି ।

"ଜୟତି **ପଦ୍ମାବତୀ-ରମଣ-ଜୟଦେବ-କବି**
ଭାରତୀଭଣିତ ମତିଶାତମ୍ ॥
ଅର୍ଥ— ପଦ୍ମାବତୀରମଣଶ୍ଚାସୌ ଜୟଦେବ କବିଶ୍ଚେତି ବିଗ୍ରହଃ ।
ଏତେନାନ୍ୟାଙ୍ଗନାବୈମୁଖ୍ୟଂ ଜୟଦେବକବିନାମ୍ନଃ ପ୍ରତିପାଦିତମ୍"
(ସର୍ବାଙ୍ଗସୁନ୍ଦରୀ ଟୀକା)

ଏହାର ଏକାଦଶ ସର୍ଗର ଏକବିଂଶ ଶ୍ଳୋକରେ କବିରାଜ ରାଜ ଜୟଦେବ ନିଜ ପ୍ରେୟସୀ ପଦ୍ମାବତୀଙ୍କ ଆନନ୍ଦ ବର୍ଦ୍ଧନକାରୀ ଏବଂ ଜଗତର ଅଶେଷ କଲ୍ୟାଣ ବିଧାୟକ ଏହି ସଙ୍ଗୀତ ରଚନା କରିଥିବା ପ୍ରକାଶ କରିଛନ୍ତି ।

"ବିହିତ-ପଦ୍ମାବତୀ-ସୁଖ ସମାଜେ
କୁରୁ ମୁରାରେ ମଙ୍ଗଳ ଶତାନି
ଭଣତି ଜୟଦେବ କବିରାଜ-ରାଜେ"

ଅର୍ଥ—"ବିହିତଃ **ପଦ୍ମାବତ୍ୟାଃ ନିଜପ୍ରେୟସ୍ୟାଃ** ସୁଖ ସମାଜଃ ସୁଖରାଶ୍ୟୋ ଯେନେତି ବିଗ୍ରହଃ । ଏତେନ ଶୃଙ୍ଗାରତ୍ୱମାତ୍ମନଃ କବିନା ପ୍ରତିପାଦିତଃ ।
(ସର୍ବାଙ୍ଗସୁନ୍ଦରୀ ଟୀକା)

କବିରାଜ ରାଜ ଜୟଦେବଙ୍କ ରଚିତ ଉକ୍ତ କୋଟୀର ସଙ୍ଗୀତ ସମୂହର ନିଗୂଢ଼ ଭାବ ହୃଦୟଙ୍ଗମ କରିବା ସାମର୍ଥ୍ୟ ଦ୍ୱାରା ପଦ୍ମାବତୀଙ୍କ ପାଣ୍ଡିତ୍ୟ ମଧ୍ୟ ସୂଚିତ ହେଉଛି ।

## ଦେବଦାସୀ ପଦ୍ମାବତୀ —

ଭକ୍ତକବି ଶ୍ରୀ ଜୟଦେବ ସ୍ୱ କୃତ ଶ୍ରୀ ଗୀତଗୋବିନ୍ଦର ଆଦ୍ୟପଦ ଶ୍ଳୋକରେ ନିଜକୁ 'ପଦ୍ମାବତୀ-ଚରଣ-ଚାରଣ-ଚକ୍ରବର୍ତ୍ତୀ ରୂପେ ଗର୍ବ ଓ ଗୌରବ ସହକାରେ ଘୋଷଣା କରିବା ଦ୍ୱାରା ପ୍ରକାରାନ୍ତରରେ ତାଙ୍କର ନୃତ୍ୟଗୀତ ପ୍ରବୀଣା ପ୍ରେୟସୀ ପଦ୍ମାବତୀ ସ୍ୱ-ଘରମାରାଧ୍ୟ ଜଗଦୀଶ ବା ଜଗନ୍ନାଥଙ୍କ ସମ୍ମୁଖରେ ନୃତ୍ୟଗୀତ ପାଇଁ ଉତ୍ସୃଷ୍ଟ ହୋଇଥିବା ସ୍ୱୀକାର କରିଛନ୍ତି । ଏହାକୁ ଭିତ୍ତିକରି ପରବର୍ତ୍ତୀ କାଳରେ ଭାରତର ନାନା ପ୍ରାନ୍ତରେ କେତେକ କିମ୍ବଦନ୍ତୀର ଉଦ୍ଭବ ଘଟିଥିବାର ପ୍ରମାଣ ମିଳେ ।

(କ) ସଂତ ସର୍ବୋରୁହ ଷଂଡକୋ, **ପଦମାବତୀ ସୁଖଜନକ ରଚି**
ଜୟଦେବ କବି ନୃପଚକ୍କବୈ, ଖଂଡମଂଡଳେଶ୍ୱର ଆନ କବି ।
(ନାଭାଦାସ କୃତ ଭକ୍ତମାଳା, ଛପୟ ୩୯)

(ଖ) ଏକଦା ଜୟଦେବସ୍ତୁ ମନସ୍ୟେବମଚିନ୍ତୟତ୍
ସ୍ୱୟଂ କୃତେନ ଗୀତେନ ତୋଷୟିଷ୍ୟାମ୍ୟହଂ ହରିମ୍ ।
ଇତି ନିଶ୍ଚିତ୍ୟ ନିର୍ମାୟ ଗୀତଗୋବିନ୍ଦ ନାମକମ୍
ଗାୟଂସ୍ତୁ **ଦେବଦେବାଗ୍ରେ ପତ୍ନ୍ୟାସହ ନନର୍ତ୍ତହ ॥**
(ଚନ୍ଦ୍ରଦତ୍ତ କୃତ ଭକ୍ତମାଳା, ୩୯ ସର୍ଗ)

## ଉତ୍କଳରେ ଦେବଦାସୀ ପ୍ରଥା —

ପ୍ରାଚୀନ ଉତ୍କଳର ଲେଖମାଳା ଅନୁଧ୍ୟାନ କଲେ ସୋମବଂଶୀ ରାଜାଙ୍କ କାଳରୁ ଉତ୍କଳର ମନ୍ଦିରମାନଙ୍କରେ ଦେବଦାସୀ ନିୟୋଗ ପ୍ରଥାର ପ୍ରଚଳନ ଘଟିଥିବା ନିଶ୍ଚିତ ଭାବରେ ଜଣାଯାଏ । ସୋମବଂଶୀୟ ଏକ ଶ୍ରେଷ୍ଠ ନରପତି ପରମ ଭଟ୍ଟାରକ ମହାରାଜାଧିରାଜ ସୋମକୁଳତିଳକ ତ୍ରିକଳିଙ୍ଗାଧିପତି ଶ୍ରୀ ଉଦ୍ୟୋତ କେଶରୀ ରାଜଦେବଙ୍କ ମାତା ରାଣୀ କୋଳାବତୀ ସିଦ୍ଧକ୍ଷେତ୍ର ଏକାମ୍ର ବା ଭୁବନେଶ୍ୱରରେ ଚତୁଃ ଅମରକୁଳ ଓ ନାଟ୍ୟଶାଳା ସମେତ ବ୍ରହ୍ମେଶ୍ୱର ମନ୍ଦିର ନିର୍ମାଣ କରିଥିବା ଗତ ଶତାବ୍ଦୀରେ ଆବିଷ୍କୃତ ବ୍ରହ୍ମେଶ୍ୱର ମନ୍ଦିର ଶିଳାଲେଖରୁ ଜଣାଯାଏ । ମନ୍ଦିର ନିର୍ମାଣ ସମାପନାନ୍ତେ ରାଣୀ କୋଳାବତୀ ନାନା ରତ୍ନଖଚିତ ଅଳଙ୍କାର ମଣ୍ଡିତା ଦେଦୀପ୍ୟମାନ ଅଙ୍ଗସୁଷମା ଯୋଗୁଁ ସ୍ଥିର ତଡ଼ିଲ୍ଲତା ସଦୃଶ ପ୍ରତିଭାତା ଉଚ୍ଚ କୁଚ ଓ ନିତମ୍ବ ଶୋଭିତା, ଆକର୍ଣ୍ଣବିସ୍ତୃତ ଚଞ୍ଚଳନୟନା ସକଳଜନ ଚିତ୍ତହାରିଣୀ କେତେକ ସୁନ୍ଦରୀ ସ୍ତ୍ରୀ ବ୍ରହ୍ମେଶ୍ୱରଙ୍କ ସେବାରେ ନିଯୁକ୍ତ କରିଥିଲେ । (୮) ଏହି ଶିଳାଲେଖ ଶ୍ରୀ ଉଦ୍ୟୋତ କେଶରୀଙ୍କ

---

(୮) "ରତ୍ନାଳଂକୃତ ଭୂଷିତାଙ୍ଗସୁଷମା ଦେଦୀପ୍ୟମାନାଦ୍(ବଃ)
**କୀଡ଼ନ୍ତ୍ୟ ସ୍ତଡ଼ିତଃ ସ୍ଥିରା ଇବ କୁଚଶ୍ରୋଣୀଭରବ୍ୟାକୁଳାଃ**

ରାଜତ୍ୱର ବିଜୟ ରାଜ୍ୟ ସମ୍ବତ୍ ୧୮ ଫାଲ୍‌ଗୁନ ଶୁଦ୍ଧ ୩ ଦିନ ଉତ୍କୀର୍ଣ୍ଣ ହୋଇଥିଲା । ଗଣନା ଅନୁସାରେ ଏହା ହେଉଛି ୧୦୫୩ ଖ୍ରୀଷ୍ଟାବ୍ଦ ଫେବୃୟାରୀ ୨୪ ତାରିଖ ଫାଲ୍‌ଗୁନ ଶୁକ୍ଳ ତୃତୀୟା ବୁଧବାର । (୯)

ପ୍ରାଚୀ ତୀରବର୍ତ୍ତୀ ନିଆଳୀ ଶାସନରେ ଅବସ୍ଥିତ ଶୋଭନେଶ୍ୱର ମନ୍ଦିର ଶିଳାଲେଖରୁ ଜଣାଯାଏ ଯେ, ବ୍ରାହ୍ମଣ ବଂଶୀୟ ରାଜା ବୈଦ୍ୟନାଥ ଉକ୍ତ **ମନ୍ଦିର** ନିର୍ମାଣ କରିବା ପରେ ନାନା ଭୂଷଣ ଭୂଷିତା, ଅପୂର୍ବ ରୂପଲାବଣ୍ୟ ସଂପନ୍ନା, ଅମର-ପୁରୀ ଅପ୍‌ସରାମାନଙ୍କ ଠାରୁ ଅଧିକ ସୁନ୍ଦରୀ କେତେକ ସ୍ତ୍ରୀଲୋକଙ୍କୁ ଶିବଙ୍କ ସେବାରେ ନିଯୁକ୍ତ କରିଥିଲେ । (୧୦) ଏହି ପ୍ରଶସ୍ତି ପ୍ରସିଦ୍ଧ କବି ଉଦୟନ ଆଚାର୍ଯ୍ୟଙ୍କ ଦ୍ୱାରା ଆନୁ-ମାନିକ ୧୦୮୦ ଖ୍ରୀଷ୍ଟାବ୍ଦ ପୂର୍ବରୁ ପ୍ରଣୀତ ହୋଇଥିଲା । ଉକ୍ତ କବିଙ୍କ ଦ୍ୱାରା ରଚିତ ମେଘେଶ୍ୱର ମନ୍ଦିର ଶିଳାଲେଖରୁ ଜଣାଯାଏ ଯେ, ଗଙ୍ଗସମ୍ରାଟ୍ ରାଜରାଜ ଦେବଙ୍କ ଶ୍ୟାଳକ ଶ୍ରୀ ଅନୟଙ୍କ ସ୍ୱାମୀଙ୍କ ରାଜତ୍ୱ ଆରମ୍ଭରେ (୧୧୯୦ ଖ୍ରୀଷ୍ଟାବ୍ଦ) ଭୁବନେଶ୍ୱରରେ ମେଘେଶ୍ୱର ମନ୍ଦିର ନିର୍ମାଣ କରି ବହୁ ମୋହିନୀ ନୃତ୍ୟଗୀତ ନିପୁଣା କେତେକ ସ୍ତ୍ରୀ ଲୋକଙ୍କୁ ଶିବଙ୍କ ସେବା ପାଇଁ ଖଞ୍ଜିଦେଇଥିଲେ । (୧୧)

---

ସୁନ୍ଦର୍ଯ୍ୟକ୍ଷ କମାଳକା ମିବ ଦୃଶା ମନ୍ତ୍ରପ୍ରତିଷ୍ଠାନୃଶା-
ମଣ୍ଡୋ ଚଞ୍ଚଳକର୍ଣ୍ଣଜାହ୍ନନସୂନା ଦତ୍ତପ୍ରସ୍ଥା ଦାରକାଃ ।" (୧୫ ଶ୍ଳୋକ)
Studies in Orissan History, Archaeology and Archives by P Acharya p. 76.

(୯) An Indian Ephemeris, by Pillai. Vol III p. 108.

(୧୦) "ପୀୟୂଷଂ ମଧୁରାଧରେ ନୟନୟୋଃ ପ୍ରାନ୍ତେ ଚ ଯାସାଂ ସ୍ମରଃ
କର୍ମିତ୍ରମ୍ମନମୋହନାଦ ସୁଦୃଶାଂ ବକ୍ତ୍ରେ ନିତମ୍ବାଦଷୁ
ଉଦ୍ୟଦ୍‌ଭୂଷଣବସ୍ତ୍ରଜାତମଖିଳଂ ଭୂଷ୍ୟଂ ତଦଙ୍ଗାଶ୍ରିତଂ
ତାସ୍ତାସ୍ତେନ ବିଜିତ୍ୟ ତାମ୍ବରଚରୀ ରୂପାଃ ଶିବାୟାର୍ପିତାଃ ।" (୧୮ଶ ଶ୍ଳୋକ)
ଶ୍ରୀ ସୁଧାକର ପଟ୍ଟନାୟକଙ୍କ ଦ୍ୱାରା ପଠିତ ଓ ପ୍ରକାଶିତ
J. B. O. R. Society Vol XVII.

(୧୧) "ଯାସାଂ କେଶାଞ୍ଚଳତରଳମା ବଣ୍ଣୁନର୍ଣୈ୍ୟକ ମଲ୍ଲଃ
ପାଦନ୍ୟାସସ୍ତି ଭୁବନ ଗତପ୍ରମ୍ନନଂ ସଂବଧତେ
ନୃତ୍ୟାରମ୍ଭେ ବଳୟମଣିଭିର୍ନିର୍ମିତାଽଯନୃଦାପା
ଏତୈର୍ଦିଷ୍ଟ୍ୟା ସ୍ୱ ସ୍ମରଜୟିନେ ତେନ ତାସ୍ତା ମୃଗାକ୍ଷ୍ୟଃ ॥"
(ପଞ୍ଚବିଂଶତି ଶ୍ଳୋକ)
Inscriptions of Orissa, Vol III, Part II. p 335.

ବଂଶଧାର ନଦୀ ତୀରବର୍ତ୍ତୀ କଳଙ୍ଗ ନଗର ବା ମୁଖଲିଙ୍ଗସ୍ଥ ମଧୁକେଶ୍ୱର ମନ୍ଦିରରେ ଉତ୍କୀର୍ଣ୍ଣ ଏକ ଲେଖରୁ (୧୨) ଜଣାଯାଏ ଯେ, ଉତ୍କଳରେ ଗଙ୍ଗସାମ୍ରାଜ୍ୟର ପ୍ରତିଷ୍ଠାତା ଶ୍ରୀ ଚୋଡ଼ଗଙ୍ଗଦେବ ତ୍ରିକଳିଙ୍ଗ ଦେବ ନାମକ ଏକ ଭୋଗ ସମୟରେ ଦେବଙ୍କ ସମ୍ମୁଖରେ ନୃତ୍ୟ ପ୍ରଦର୍ଶନ, ବାଦ୍ୟ ବାଦନ ଓ ଗୀତଗାନ ପାଇଁ ଯାଜକ କୁଳ ସମ୍ଭୂତ ଭାର୍ଯ୍ୟା, କନ୍ୟା ଓ ଭଗିମାନଙ୍କୁ **ନର୍ତ୍ତକ ଦେବଗଣିକା (ଦେବଦାସୀ)** ବାଦ୍ୟକାର ଓ ଗାୟକ ରୂପେ ଆଚନ୍ଦ୍ରତାରକା ବା ଚିରସ୍ଥାୟୀ ଭାବରେ ନିଯୁକ୍ତ କରି-ଥିଲେ ।

ଉତ୍କଳରେ ସଂଗୀତ ଚର୍ଚ୍ଚାର ଇତିହାସ ପାଇଁ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ଏହି ଅଭିଲେଖର କେତେକ ପଂକ୍ତି ସୁପାଠ୍ୟ ନ ହେଲେ ମଧ୍ୟ ଏଥିରେ ନର୍ତ୍ତକ ଦେବ-ଗଣିକା, ବାଦ୍ୟକାର ଓ ଗାବ(ୟ)କ ପଦଗୁଡ଼ିକ ସ୍ପଷ୍ଟ ଭାବରେ ଖୋଦିତ ହୋଇଥିବାରୁ ମଧୁକେଶ୍ୱର ମନ୍ଦିରରେ ୧୧୦୫ ଖ୍ରୀଷ୍ଟାବ୍ଦ ପୂର୍ବରୁ ସଂଗୀତ ସେବା ପାଇଁ ସେମାନଙ୍କ ନିଯୋଗ ଅକାଟ୍ୟ ଭାବରେ ପ୍ରମାଣିତ ହୁଏ । ଚୋଡ଼ଗଙ୍ଗଦେବ ପୁରୀରେ ଶ୍ରୀଜଗନ୍ନାଥ ଦେବଙ୍କ ପାଇଁ ବର୍ତ୍ତମାନ ମନ୍ଦିର ନିର୍ମାଣ କଲା ପରେ (୧୧୧୨-୧୧୪୭ ଖ୍ରୀଷ୍ଟାବ୍ଦ ମଧ୍ୟରେ) ମଧୁକେଶ୍ୱର ମନ୍ଦିର ପରି ଏଠାରେ ମଧ୍ୟ ସ୍ଥାୟୀ ଭାବରେ ନୃତ୍ୟ, ବାଦ୍ୟ, ଗୀତ ପାଇଁ ଯଥାକ୍ରମେ ଦେବଗଣିକା(ଦେବଦାସୀ), ବାଦ୍ୟକାର ଓ ଗାୟକ ନିଯୁକ୍ତ କରିଥିବେ । ଏହି ଲେଖଲବ୍ଧ ଅକାଟ୍ୟ ପ୍ରମାଣ ଦ୍ୱାରା ଶ୍ରୀ ଜୟଦେବଙ୍କ ଆବିର୍ଭାବ ସମୟକୁ ଶ୍ରୀ ଜଗନ୍ନାଥ ମନ୍ଦିରରେ ଦେବଗଣିକା ବା ଦେବଦାସୀ ନିଯୋଗ ପ୍ରଥା ପ୍ରଚ-ଳିତ ହୋଇଥିବା ସ୍ଥିର କରାଯାଇପାରେ ।

## ପଦ୍ମାବତୀଙ୍କ ପିତା ଦେବଶର୍ମା —

ମୈଥିଳ ଚନ୍ଦ୍ରଦତ୍ତଙ୍କ ଦ୍ୱାରା ସଂଗୃହୀତ ଶ୍ରୀ ଜୟଦେବଙ୍କ ଜୀବନ ଚରିତରୁ ଜଣାଯାଏ ଯେ, ଦେବଶର୍ମା ନାମକ ଅନପତ୍ୟ ବିପ୍ର ଶ୍ରୀକ୍ଷେତ୍ରକୁ ଶ୍ରୀଜଗନ୍ନାଥଙ୍କ ଦର୍ଶନ

---

(୧୨) ସିଦ୍ଧଂ ସ୍ୱସ୍ତି ଶ୍ରୀମତ୍ତ କଳିଙ୍ଗ ନଗରାତ୍, ପରମ ମାହେଶ୍ୱର ପରମ ଭଟ୍ଟାରକ ମହାରାଜା-ଧିରାଜ ତ୍ରିକଳିଙ୍ଗାଧିପତିଃ ଶ୍ରୀ ମଦନନ୍ତବର୍ମା ମହାରାଜ ଶ୍ରୋଡ଼ଗଙ୍ଗ ଦେବଃ କୁଶଳୀ । ସମସ୍ତାମାତ୍ୟପ୍ରମୁଖ ଜାନପଦାନାହୂତ୍ୟ ସମାଜ୍ଞାପୟତ୍ୟ ବିଦିତମସ୍ତୁ ଭବତାଂ ପୂର୍ଣ୍ଣ-କୋଟି ସ୍ଥାନ ନିବାସୀ ଯାଜ୍ୟ(ଯାଜକ)କୁଳ ସମ୍ଭୂତ × × × ତ୍ରିକଳିଙ୍ଗଭୋଗ ନିବନ୍ଧ ନର୍ତ୍ତକ ଦେବଗଣିକାସ୍ୱା ×ଣ୍ଡସ୍ୟନ ଭାର୍ଯ୍ୟାଂ ପୂର୍ଣ୍ଣକୋଟି × × ଗୁରୋପ ପୁତ୍ରଭ୍ୟାଂ ଚ ଭର୍ତ୍ତୃଭ୍ୟାଂ ବାଦ୍ୟକାର ଗାବକାନା ମଧ୍ୟପତ୍ୟାଂ ଯାବଦା-ଚନ୍ଦ୍ରତାରର୍କ ମହାଭ୍ରଃ ଦତ୍ତ ମିତି ।"

Inscriptions of Orissa by S. N. Rajaguru, Vol III part I. p 246

ଗୀତଂ ବାଦ୍ୟଂ ତଥା ନୃତ୍ୟଂ ତ୍ରୟଂ ସଂଗୀତ ମୁଚ୍ୟତେ (ସଙ୍ଗୀତ ରତ୍ନାକର)

କରିବା ପାଇଁ ଆସିଥିଲେ । ସେ ମହାପ୍ରଭୁଙ୍କ ନିକଟରେ ସନ୍ତାନ ଲାଭ ପ୍ରାର୍ଥନା କରି ନିଜର ପ୍ରଥମ ଅପତ୍ୟକୁ ଶ୍ରୀଜଗନ୍ନାଥଙ୍କ ସେବା ପାଇଁ ଉତ୍ସର୍ଗ କରିବାକୁ ଶପଥ କରିଥିଲେ । କାଳକ୍ରମେ ଶ୍ରୀଜଗନ୍ନାଥଙ୍କ ପ୍ରସାଦରୁ ସେ ପ୍ରଥମେ ଏକ କନ୍ୟା ପରେ ସାଧୁବୃତ୍ତ ମନୋହର କେତେକ ପୁତ୍ରଲାଭ କରିଥିଲେ । କିଛିକାଳ ପରେ ଦେବଶର୍ମା ସପତ୍ନୀକ ଶ୍ରୀକ୍ଷେତ୍ରକୁ ଆଗମନ କରି ସ୍ୱୀୟ କନ୍ୟା ପଦ୍ମାବତୀଙ୍କୁ ଶ୍ରୀଜଗନ୍ନାଥଙ୍କ ସ୍ୱପ୍ନା-ଦେଶରେ ତାଙ୍କ ପ୍ରିୟ ଭକ୍ତ ଶ୍ରୀ ଜୟଦେବଙ୍କୁ ଅର୍ପଣ କରିବା ପାଇଁ ସ୍ଥିର କଲେ । ସେ ସମୟରେ ଦରିଦ୍ର, ନିରପେକ୍ଷ, ଶାସ୍ତ୍ରପାଠ ନିରତ ଜୟଦେବ ସ୍ୱାମୀ ଶ୍ରୀକ୍ଷେତ୍ରର ବହିର୍ଭାଗରେ ଏକ ପର୍ଣ୍ଣକୁଟୀରରେ ବାସ କରୁଥିଲେ । ସେ ଦେବଶର୍ମାଙ୍କ ଅନୁରୋଧରେ ପଦ୍ମାବତୀଙ୍କୁ ପତ୍ନୀ ରୂପେ ଗ୍ରହଣ କରିବାକୁ ଅନିଚ୍ଛା ପ୍ରକାଶ କଲେ । କିନ୍ତୁ ତାଙ୍କର ପିତାମାତା ଶ୍ରୀଜଗନ୍ନାଥଙ୍କ ନିର୍ଦ୍ଦେଶ ପାଳନ କରି ପଦ୍ମାବତୀଙ୍କୁ ଜୟଦେବଙ୍କ ନିକଟରେ ଛାଡ଼ିଦେଇ ସ୍ୱ ଆଶ୍ରମକୁ ଫେରିଗଲେ । ପଦ୍ମାବତୀ ଶ୍ରୀଜୟଦେବଙ୍କୁ ଅତିଶୟ ଭକ୍ତି ସହକାରେ ସେବା କରିବାରୁ ସେ ଅତ୍ୟନ୍ତ ପ୍ରୀତ ହୋଇ ତାଙ୍କର ପାଣିଗ୍ରହଣ କରିବାକୁ ସ୍ୱୀକୃତ ହେଲେ । ତତ୍ପରେ ଉଭୟେ ଦେବଶର୍ମାଙ୍କ ଗୃହକୁ ଯାଇ ପରିଣୟ ପାଶରେ ଆବଦ୍ଧ ହେଲେ । କ୍ରମେ ଏହି ଦମ୍ପତିଙ୍କ ମଧ୍ୟରେ ଏକପ୍ରାଣତା ଓ ଅଭେଦ ପ୍ରୀତି ଜାତ ହେଲା । ଉଭୟେ ଏକତ୍ର ନୃତ୍ୟ ଓ ଗୀତ ଗାନ ଦ୍ୱାରା ଶ୍ରୀକୃଷ୍ଣାର୍ଚ୍ଚନ କରି କାଳାତିପାତ କଲେ ।

ଏହାପରେ ଶ୍ରୀ ଜୟଦେବ ହରିଙ୍କ ସନ୍ତୋଷ ବିଧାନ ନିମିତ୍ତ ଶ୍ରୀଗୀତଗୋବିନ୍ଦ ରଚନାରେ ପ୍ରବୃତ୍ତ ହେଲେ । ପ୍ରତିଦିନ ସେ ପତ୍ନୀ ସହ ନୃତ୍ୟ କରି ଦେବଦେବଙ୍କ ସମ୍ମୁଖରେ ସ୍ୱ ରଚିତ ଗୀତ ଗାନ କରୁଥିଲେ । ଏହିପରି ଶ୍ରୀ ଗୀତଗୋବିନ୍ଦ ରଚନା ଚାଲିଥିବା ସମୟରେ ଦିନେ ସେ ଗୋଟିଏ ପାଦ ପୂରଣ ସଂପର୍କରେ ଦ୍ୱିଧାଗ୍ରସ୍ତ ହୋଇ ସ୍ନାନ କରିବାକୁ ବାହାରିଗଲେ । ଇତ୍ୟବସରରେ ଶ୍ରୀକୃଷ୍ଣ ଜୟଦେବ ବେଶରେ ହଠାତ୍ ଗୃହରେ ପ୍ରବେଶ କରି ପଦ୍ମାବତୀଙ୍କ ଠାରୁ ପୋଥି ମାଗିନେଇ ଉପ-ଯୁକ୍ତ ଶବ୍ଦବିନ୍ୟାସ ଦ୍ୱାରା ପାଦ ପୂରଣ କରି ଅନ୍ତର୍ହିତ ହେଲେ । ସ୍ନାନ ସମାପନାନ୍ତେ ଜୟଦେବ ଗୃହକୁ ଫେରି ପଦ୍ମାବତୀଙ୍କ ଠାରୁ ପୋଥି ମାଗିନେଲେ ଏବଂ ଛଦ୍ମବେଶୀ ଜୟଦେବଙ୍କ ଦ୍ୱାରା ସନ୍ତୋଷଜନକ ଭାବରେ ଅସମାପ୍ତ ପାଦ ପୂରଣ ବିଷୟ ଅବଗତ ହୋଇ ଅତ୍ୟନ୍ତ ବିସ୍ମିତ ହେଲେ । ସେଦିନ ରାତିର ଶେଷଭାଗରେ ଶ୍ରୀ ପୁରୁଷୋତ୍ତମ ତାଙ୍କୁ ସ୍ୱପ୍ନରେ ସମସ୍ତ ଘଟଣା ଜଣାଇ ଦେବାରୁ ସେ ପ୍ରତ୍ୟକ୍ଷରେ ଶ୍ରୀକୃଷ୍ଣ ଦର୍ଶନ ଲାଭ କରିଥିବା ସ୍ୱପତ୍ନୀ ପଦ୍ମାବତୀଙ୍କୁ ଅତ୍ୟନ୍ତ ଭାଗ୍ୟବତୀ ବୋଲି ମନେକଲେ । ସେହିଦିନ ଠାରୁ ସେ ଅତ୍ୟନ୍ତ ଭକ୍ତିସହକାରେ ସ୍ୱପତ୍ନୀ ସହ ଗୀତଗୋବିନ୍ଦ ଗାନ କରି କେଶବଙ୍କ ସନ୍ତୋଷ ବିଧାନ କରିଥିଲେ । ଶ୍ରୀ ପୁରୁଷୋତ୍ତମରେ ଗୀତଗୋବିନ୍ଦ ପୁସ୍ତକ ରଚନା ସମାପନାନ୍ତେ ସେ ଶ୍ରୀଜଗନ୍ନାଥଙ୍କୁ ଏହା ନୈବେଦ୍ୟ ରୂପେ ଅର୍ପଣ କରି ଅତ୍ୟନ୍ତ କୃତ-କୃତ୍ୟ ହୋଇଥିଲେ ।

ଏହି ଦେବଶର୍ମାଙ୍କ ସଂପର୍କରେ ଉପରୋକ୍ତ ବିବରଣ ବ୍ୟତୀତ ଅନ୍ୟ କୌଣସି ବିଶ୍ୱାସଯୋଗ୍ୟ ତଥ୍ୟ ଏପର୍ଯ୍ୟନ୍ତ ମିଳିନାହିଁ । କିନ୍ତୁ ଶ୍ରୀକାକୁଳମ୍ ଜିଲ୍ଲାର ଟିକାଲି ନିକଟବର୍ତ୍ତୀ ସନ୍ତାବୋମାଲି ନାମକ ଗ୍ରାମରୁ ପ୍ରାପ୍ତ ଏକ ଶିଳାଲେଖରେ **ବତ୍ସସ ଗୋନ୍ଦ ଶ୍ରୀଦେବଶର୍ମା** ନାମକ ବ୍ରାହ୍ମଣଙ୍କ ଉଲ୍ଲେଖ ଦେଖାଯାଏ । ୧୦୫୬ ଶକାବ୍ଦ ବା ୧୧୩୪ ଖ୍ରୀଷ୍ଟାବ୍ଦରେ ଉତ୍କୀର୍ଣ୍ଣ ଏହି ଶିଳାଲେଖଟି ଏପର୍ଯ୍ୟନ୍ତ ସଂପୂର୍ଣ୍ଣରୂପେ ପଠିତ ଓ ପ୍ରକାଶିତ ହୋଇନାହିଁ । ତଥାପି ଏହାର ଆଂଶିକ ପାଠରୁ ଜଣାଯାଏ ଯେ, ଦେବଶର୍ମାଙ୍କ ପୁତ୍ର ଶମ୍ଭୁଙ୍କ ଉଦ୍ଦେଶ୍ୟରେ ଏକ ଅଖଣ୍ଡ ଦୀପ ଦାନ କରାଯାଇଥିଲା । (୧୩) ଦେବଶର୍ମା ପୁତ୍ରଙ୍କ ଦାନ ସମୟ ୧୧୩୪ ଖ୍ରୀଷ୍ଟାବ୍ଦ ହୋଇଥିବାରୁ ସେ ଶତାବ୍ଦୀର ଦ୍ୱାଦଶ ପ୍ରଥମ ଦଶକରେ ଜୀବିତ ଥିଲେ । କିମ୍ବଦନ୍ତୀ ଅନୁସାରେ ଶ୍ରୀ ଜୟଦେବଙ୍କ ଶ୍ୱଶୁର ଦେବଶର୍ମା ଦକ୍ଷିଣ ଦେଶୀୟ ବ୍ରାହ୍ମଣ ଥିଲେ । ଲେଖବର୍ଣ୍ଣିତ ଦେବଶର୍ମା ମଧ୍ୟ ଶ୍ରୀକ୍ଷେତ୍ରର ଦକ୍ଷିଣରେ ଅବସ୍ଥିତ ଉତ୍କଳର ସୀମାନ୍ତ ଅଞ୍ଚଳର ଅଧିବାସୀ । ଶ୍ରୀ ଜୟଦେବ ଓ ଦେବଶର୍ମାଙ୍କ ମଧ୍ୟରେ ସମୟର ବ୍ୟବଧାନ ମଧ୍ୟ ଉଭୟଙ୍କ ମଧ୍ୟରେ ସଂପର୍କ ସ୍ଥାପନ ପାଇଁ କୌଣସି ବାଧା ସୃଷ୍ଟି କରୁନାହିଁ । ତେଣୁ ଅନ୍ୟ ବିରୁଦ୍ଧ ପ୍ରମାଣ ନ ପାଇବା ପର୍ଯ୍ୟନ୍ତ ଲେଖ ବର୍ଣ୍ଣିତ ଦେବଶର୍ମାଙ୍କୁ ଶ୍ରୀ ଜୟଦେବ ପ୍ରେୟସୀ ପଦ୍ମାବତୀଙ୍କ ପିତା ରୂପେ ଗ୍ରହଣ କରାଯାଇ ପାରେ ।

ଆଉମଧ୍ୟ ପଦ୍ମାବତୀ ନାମ ଦକ୍ଷିଣ ଓଡ଼ିଶାରେ ଲୋକପ୍ରିୟ ଥିବାର ବ୍ରାହ୍ମଣ ସେନାପତି ବନପତିଙ୍କ ୯୯୭ ଶକାବ୍ଦ ବା ୧୦୭୫ ଖ୍ରୀଷ୍ଟାବ୍ଦରେ ଲିଖିତ ଦାର୍ଘସୀ ଶିଳାଲିପି (୧୪) ଏବଂ ଗୋଦାବରୀ ଜିଲ୍ଲାର ଦ୍ରାକ୍ଷାରାମ ମନ୍ଦିରସ୍ଥ ୧୦୦୨ ଶକାବ୍ଦ ବା ୧୦୮୦ ଖ୍ରୀଷ୍ଟାବ୍ଦରେ ଉତ୍କୀର୍ଣ୍ଣ ଶିଳାଲିପି ଦ୍ୱୟରେ (୧୫) ବର୍ଣ୍ଣିତ ପଦ୍ମାବତୀଙ୍କ ବିବରଣ ପାଠରୁ ଜଣାଯାଏ । ତେଣୁ ଦକ୍ଷିଣ ଦେଶୀୟ ଦେବଶର୍ମାଙ୍କ କନ୍ୟାର ପଦ୍ମାବତୀ ନାମକରଣ ଯୁଗୋପଯୋଗୀ ମନେହୁଏ ।

---

(୧୩) I. O. by Sri S. N. Rajaguru, Vol III Part I p 168.

(୧୪) ,, ,, ,, ,, p. 20.

(୧୫) ,, ,, ,, ,, p. 24.



## ତୃତୀୟ ଅଧ୍ୟାୟ

# ଶ୍ରୀ ଜୟଦେବ ଓ ଶ୍ରୀ ଜଗନ୍ନାଥ

### ଚନ୍ଦ୍ରଦତ୍ତ କୃତସଂସ୍କୃତ 'ଭକ୍ତମାଳା'ରେ ଶ୍ରୀ ଜୟଦେବ ଚରିତ :—

ଶ୍ରୀକ୍ଷେତ୍ରବାସୀ ଭକ୍ତକବି ଶ୍ରୀ ଜୟଦେବ ଉତ୍କଳର ପ୍ରଭୁ ଶ୍ରୀ ଜଗନ୍ନାଥଙ୍କ ଜଣେ ପରମ ଭକ୍ତ ଥିବା ବିଷୟ ମୈଥିଳ ପଣ୍ଡିତ ଶ୍ରୀ ଚନ୍ଦ୍ରଦତ୍ତ କୃତ ପ୍ରସିଦ୍ଧ **ଭକ୍ତମାଳା** ଗ୍ରନ୍ଥରେ ସନ୍ନିବିଷ୍ଟ ଜନଶ୍ରୁତି ମୂଳକ ତାଙ୍କର ଜୀବନ ଚରିତରେ ବିସ୍ତୃତ ଭାବରେ ବର୍ଣ୍ଣିତ ହୋଇଅଛି (୧)। ସେଥିରେ ବିବୃତ ଭକ୍ତକବିଙ୍କ ଜୀବନର ନିମ୍ନୋକ୍ତ ଘଟଣାବଳୀ ଏଠାରେ ବର୍ଣ୍ଣନୀୟ।

ଉତ୍କଳ ଦେଶରେ ଜଗନ୍ନାଥପୁରୀ ପ୍ରାନ୍ତରେ ବ୍ରାହ୍ମଣସଙ୍କୁଳ କେନ୍ଦୁବିଲ୍ୱ ନାମକ ଗ୍ରାମରେ ଶ୍ରୀ ଜୟଦେବ ଜନ୍ମ ଗ୍ରହଣ କରିଥିଲେ। ସେ ଗୃହତ୍ୟାଗ କରି ସନ୍ନ୍ୟାସ ବ୍ରତ ଅବଲମ୍ବନ ପୂର୍ବକ ଶ୍ରୀକ୍ଷେତ୍ର ସୀମାରେ ନିର୍ମିତ ଏକ ପର୍ଣ୍ଣକୁଟୀରରେ ବାସ କରୁଥିଲେ। ଦେବଶର୍ମା ନାମକ ଜନୈକ ବିପ୍ର ଶ୍ରୀ ଜଗନ୍ନାଥଙ୍କ ବର ପ୍ରସାଦରୁ ଲାଭ କରିଥିବା ସ୍ୱୀୟ ପ୍ରଥମ ଅପତ୍ୟ ପଦ୍ମାବତୀଙ୍କୁ ଶ୍ରୀକ୍ଷେତ୍ର ଆଗମନ ପୂର୍ବକ ମହାପ୍ରଭୁଙ୍କ ନିକଟରେ କୃତ ପୂର୍ବ ଶପଥ ଅନୁଯାୟୀ ତାଙ୍କ ସେବାପାଇଁ ଉତ୍ସର୍ଗ କରିଥିଲେ। କିନ୍ତୁ ସେ ଶ୍ରୀ ଜଗନ୍ନାଥଙ୍କ ସ୍ୱପ୍ନାଦେଶ ପ୍ରାପ୍ତ ହୋଇ ତାଙ୍କର ପ୍ରିୟ ଭକ୍ତ ଶ୍ରୀ ଜୟଦେବଙ୍କୁ ସ୍ୱ କନ୍ୟାଙ୍କୁ ଅର୍ପଣ କରିଥିଲେ। ସନ୍ନ୍ୟାସୀ ଶ୍ରୀ ଜୟଦେବ ପ୍ରଥମେ ତାଙ୍କ ସହିତ ପରିଣୟ ପାଶରେ ଆବଦ୍ଧ ହେବା ପାଇଁ ଅନିଚ୍ଛା ପ୍ରକାଶ କରିଥିଲେ ମଧ୍ୟ ପରେ ଶ୍ରୀ ଜଗନ୍ନାଥଙ୍କ ଆଦେଶକୁ ଶିରୋଧାର୍ଯ୍ୟ କରି ଯଥାବିଧି ତାଙ୍କର ପାଣିଗ୍ରହଣ କରିଥିଲେ। ଗଭୀର ପ୍ରେମାବଦ୍ଧ ଉକ୍ତ ଦଂପତି ଏକ ପ୍ରାଣରେ ନୃତ୍ୟଗୀତାଦି ଦ୍ୱାରା ଶ୍ରୀକୃଷ୍ଣାର୍ଚ୍ଚନରେ କାଳାତିପାତ କଲେ।

ତଦନନ୍ତର ଶ୍ରୀ ଜୟଦେବ ସ୍ୱୀୟ ପରମାରାଧ୍ୟ ଶ୍ରୀ ଜଗନ୍ନାଥଙ୍କ ସନ୍ତୋଷ ବିଧାନ ନିମିତ୍ତ ଶ୍ରୀ ଗୀତଗୋବିନ୍ଦ ରଚନାରେ ପ୍ରବୃତ୍ତ ହେଲେ। ଏକଦା ସନ୍ଦେହାପନ୍ନ ହୋଇ ଉପଯୁକ୍ତ ଶବ୍ଦବିନ୍ୟାସ ଦ୍ୱାରା ଏକ ଗୀତର ପାଦ ପୂରଣ କରିବା ପାଇଁ ଅସମର୍ଥ

---

(୧) ଶ୍ରୀ କ୍ଷେମରାଜ ଶ୍ରୀ କୃଷ୍ଣ ଦାସଙ୍କ ଦ୍ୱାରା ବମ୍ବେ ଭେଙ୍କଟେଶ୍ୱର ପ୍ରେସରେ ମୁଦ୍ରିତ ୩୯, ୪୦ ଓ ୪୧ ପୃଷ୍ଠା।

ହେବାରୁ ଶ୍ରୀକୃଷ୍ଣ ତାଙ୍କ ଅନୁପସ୍ଥିତି ସମୟରେ ଶ୍ରୀ ଜୟଦେବ ବେଶରେ ପର୍ଣ୍ଣକୁଟୀରରେ ପ୍ରବେଶ କରି ଏହି ପାଦ ପୂରଣ କରି ଅନ୍ତର୍ହିତ ହୋଇଗଲେ । ସ୍ନାନ ପ୍ରତ୍ୟାବୃତ୍ତ କବି ଏହା ଦେଖି ଅତ୍ୟନ୍ତ ବିସ୍ମୟାଭିଭୂତ ହେବାରୁ ଶ୍ରୀ ପୁରୁଷୋତ୍ତମ ସେହିଦିନ ରାତ୍ରି ଶେଷରେ ସ୍ୱପ୍ନରେ ତାଙ୍କୁ ସମସ୍ତ ବୃତ୍ତାନ୍ତ ଜଣାଇ ଦେଲେ । ସ୍ୱ ଚକ୍ଷୁରେ ଶ୍ରୀକୃଷ୍ଣ ଦର୍ଶନ ଲାଭ ରୂପକ ପରମ ସୌଭାଗ୍ୟ ପ୍ରାପ୍ତ ହୋଇଥିବାରୁ ଭକ୍ତକବିଙ୍କର ସ୍ୱ ପତ୍ନୀ ପଦ୍ମାବତୀଙ୍କ ପ୍ରତି ଶ୍ରଦ୍ଧା ଓ ଭକ୍ତି ବିଶେଷ ବୃଦ୍ଧି ଲାଭ କଲା । ଏହା ପରେ ସେ ପ୍ରତ୍ୟହ ସ୍ୱ ପତ୍ନୀଙ୍କ ସହ ଶ୍ରୀ ଜଗନ୍ନାଥଙ୍କ ସମ୍ମୁଖରେ ତନ୍ମୟରେ ଶ୍ରୀ ଗୀତଗୋବିନ୍ଦ ଗାନ କରିବାକୁ ଲାଗିଲେ । ଶ୍ରୀକ୍ଷେତ୍ରବାସ କାଳରେ ଏହାର ରଚନା ସମାପନାନ୍ତେ ସେ ଏହାକୁ ଶ୍ରୀ ଜଗନ୍ନାଥଙ୍କୁ ନୈବେଦ୍ୟ ରୂପେ ଅର୍ପଣ କରି ନିଜ ଜୀବନକୁ ଧନ୍ୟ କରିଥିଲେ ।

ଶ୍ରୀ ଗୀତଗୋବିନ୍ଦର ମହତ୍ତ୍ୱ ଓ ଉତ୍କର୍ଷରେ ମୁଗ୍ଧ ହୋଇ ଉତ୍କଳାଧୀଶ ଏହାର ସମକକ୍ଷ ଅନ୍ୟ ଏକ 'ଗୀତଗୋବିନ୍ଦ' ରଚନା ପୂର୍ବକ ଶ୍ରୀ ଜଗନ୍ନାଥଙ୍କ ସମକ୍ଷରେ ଏହାର ଗାନ ବାଧ୍ୟତାମୂଳକ କରିଥିଲେ । ଦିନେ ରାଜା ଶ୍ରୀ ଜଗନ୍ନାଥଙ୍କ ଦର୍ଶନ କରିବା ସମୟରେ ଶ୍ରୀ ଜୟଦେବ ରାଜାଜ୍ଞା ଅମାନ୍ୟ କରି ସ୍ୱକୃତ ଗୀତଗୋବିନ୍ଦ ଗାନରେ ପ୍ରବୃତ୍ତଥିବା ଜାଣିପାରିଲେ । ଏଥିରେ ସେ ବିରକ୍ତ ହୋଇ ଶ୍ରୀ ଜୟଦେବଙ୍କୁ ଏହାର କାରଣ ଜିଜ୍ଞାସା କରିବାରୁ ସେ ତାଙ୍କର ଗ୍ରନ୍ଥ ଶ୍ରୀ ଜଗନ୍ନାଥଙ୍କ ଅଧିକ ସନ୍ତୋଷପ୍ରଦ ବୋଲି ମତ ପ୍ରକାଶ କରିଥିଲେ ।

ତଦନନ୍ତର ରୁଦ୍ଧଦ୍ୱାର ଗର୍ଭଗୃହ ମଧ୍ୟରେ ମହାପ୍ରଭୁଙ୍କ ସମକ୍ଷରେ ଉଭୟ ଗ୍ରନ୍ଥ ମହତ୍ତ୍ୱ ପରୀକ୍ଷା ପାଇଁ ରଖାଯାଇଥିଲା । କପାଟୋନ୍ମୋଚନ କାଳରେ ଶ୍ରୀଗୀତଗୋବିନ୍ଦ ରାଜରଚିତ ଗୀତଗୋବିନ୍ଦ ଉପରେ ରଖାଯାଇ ଥିବାର ଦେଖାଗଲା । ଏଥିରେ ରାଜା ଅତ୍ୟନ୍ତ କ୍ଷୁବ୍ଧ ଓ ନିରାଶ ହେବାରୁ ଶ୍ରୀ ଜଗନ୍ନାଥ ତାହାଙ୍କୁ ଶ୍ରୀଗୀତ-ଗୋବିନ୍ଦର ମହତ୍ତ୍ୱ ସ୍ୱୀକାର ପୂର୍ବକ ଏହାକୁ ଲୋକ ସମାଜରେ ପ୍ରଚାର କରିବା ପାଇଁ ସ୍ୱପ୍ନରେ ଆଦେଶ ପ୍ରଦାନ କରିଥିଲେ । ରାଜା ମହାପ୍ରଭୁଙ୍କୁ ସ୍ୱ ଅପରାଧ କ୍ଷମା ପାଇଁ ପ୍ରାର୍ଥନା କରି ସେହିଦିନଠୁ ଶ୍ରୀ ଜୟଦେବଙ୍କ ପ୍ରତି ବିଶେଷ ଭକ୍ତିମାନ ହେଲେ ଏବଂ ପ୍ରତ୍ୟହ କଳି-କଳୁଷ-ନାଶନ ଶ୍ରୀ ଗୀତଗୋବିନ୍ଦ ପାଠ କଲେ । ଏହା ପରେ ଶ୍ରୀ ଗୀତ-ଗୋବିନ୍ଦର ମାହାତ୍ମ୍ୟ ଚତୁର୍ଦ୍ଦିଗରେ ପ୍ରଚାରିତ ହେଲା ।

ଏକଦା ଶ୍ରୀକ୍ଷେତ୍ର ସମୀପବର୍ତ୍ତୀ ଏକ ଗ୍ରାମବାସିନୀ ଶାକ ବିକ୍ରୟକାରିଣୀ ନାରୀ ଶରତ୍ କାଳୀନ ଚନ୍ଦ୍ରିକା ବିଧୌତ ରଜନୀରେ ସ୍ୱ ଉଦ୍ୟାନରୁ ବାଇଗଣ ତୋଳିବା ସମୟରେ ଅତି ତନ୍ମୟ ଭାବରେ ଶ୍ରୀ ଗୀତଗୋବିନ୍ଦର ମଧୁର-କୋମଳ-ପଦାବଳୀ

ଉଚ୍ଚସ୍ୱରରେ ଗାନ କରୁଥିଲେ । ସର୍ବବ୍ୟାପୀ ଶ୍ରୀଜଗନ୍ନାଥ ନିଜର ଅତି ପ୍ରିୟ ଶ୍ରୀଗୀତଗୋବିନ୍ଦର ମଧୁର ଗାନରେ ଅତ୍ୟନ୍ତ ମୁଗ୍ଧ ହୋଇ ଅଲକ୍ଷିତରେ ତାହାର ପଛେ ପଛେ ବୁଲିବାକୁ ଲାଗିଲେ । ଏହା ଫଳରେ ତାଙ୍କ ଶ୍ରୀଅଙ୍ଗ କପଡ଼ା ବାଇଗଣ କଣ୍ଟାରେ ଛିନ୍ନଭିନ୍ନ ହୋଇଗଲା । କେତେସମୟ ପରେ ବାଇଗଣ ତୋଳା ସାରି ସ୍ତ୍ରୀ ଲୋକଟି ଘରକୁ ବୁଲିଯିବାରୁ ମହାପ୍ରଭୁ ଶ୍ରୀମନ୍ଦିରକୁ ଫେରିଆସିଲେ ।

ତତ୍ପରଦିନ ପ୍ରଭାତରେ ପୂଜକ କପାଟୋଦ୍‌ଘାଟନ ପୂର୍ବକ ଶ୍ରୀଅଙ୍ଗ ବସ୍ତ୍ର ଉଲଗି କରିବା ସମୟରେ ତାହା ବାଇଗଣ କଣ୍ଟାରେ ଛିନ୍ନଭିନ୍ନ ହୋଇଥିବାର ଦେଖି ବିସ୍ମୟାଭିଭୂତ ହୋଇଗଲେ । ପୂଜା ସମ୍ଭାର ନେଇ ମହାପ୍ରଭୁଙ୍କର ଦର୍ଶନ ପାଇଁ ଆଗତ ରାଜା ମଧ୍ୟ ଏହା ଲକ୍ଷ୍ୟକରି ଅତ୍ୟନ୍ତ ବିସ୍ମିତ ହେଲେ । ଏଥିରେ ରାଜା ଓ ପୂଜକ ଅଶୁଭ ଆଶଙ୍କାରେ ବିଶେଷ ଉଦ୍‌ବିଗ୍ନ ଓ ଚିନ୍ତାମଗ୍ନ ହୋଇ ପାନାହାର ତ୍ୟାଗ କଲେ । ଅନ୍ତର୍ଯ୍ୟାମୀ ମହାପ୍ରଭୁ ସେଦିନ ନିଶାବସାନ ସମୟରେ ଉଭୟଙ୍କୁ ଶ୍ରୀଅଙ୍ଗବସ୍ତ୍ର ଛିଣ୍ଡିଗୁଣ୍ଡି ଯାଇଥିବାର କାରଣ ଜଣାଇବାରୁ ରାଜା ତତ୍ପରଦିନ ଉକ୍ତ ଶାକବିକ୍ରୟିଣୀ ନାରୀଙ୍କୁ ଡକାଇଆଣି ତାଙ୍କୁ ମହାପ୍ରଭୁଙ୍କ ନିକଟରେ ନିତ୍ୟ ଶ୍ରୀଗୀତଗୋବିନ୍ଦ ଗାନ ପାଇଁ ନିଯୁକ୍ତ କଲେ । ରାଜା ଶ୍ରୀ ଜୟଦେବଙ୍କୁ ମହାପ୍ରଭୁଙ୍କ ପରମଭକ୍ତ ରୂପେ ସ୍ୱୀକାର କରି ତାଙ୍କୁ ସମ୍ମାନ ପ୍ରଦର୍ଶନ ନିମିତ୍ତ ତାଙ୍କ ବାସସ୍ଥାନକୁ ଯାଇଥିଲେ ।

ଏକଦା ରାଣୀ ପଦ୍ମାବତୀଙ୍କ ସତୀତ୍ୱ ଓ ପତିପ୍ରାଣତା ପରୀକ୍ଷା ଉଦ୍ଦେଶ୍ୟରେ ପଦ୍ମାବତୀଙ୍କୁ ରାଜାଙ୍କ ସହିତ ଦେବଦର୍ଶନ ପାଇଁ ଯାଇଥିବା ଭକ୍ତକବିଙ୍କ ମିଥ୍ୟା ଆକସ୍ମିକ ମୃତ୍ୟୁସମ୍ବାଦ ଛଳନାରେ କାନ୍ଦି କାନ୍ଦି ଜଣାଇଦେଲେ । ଏହା ଶ୍ରବଣ ମାତ୍ରକେ ପତିଗତପ୍ରାଣା ପଦ୍ମାବତୀଙ୍କ ପ୍ରାଣବାୟୁ ଉଡ଼ିଗଲା । ତାଙ୍କର ହଠାତ୍ ମୃତ୍ୟୁ ଘଟିବାରୁ ରାଣୀ ଘୋର ଦୁଃଖ ଓ ଭୟରେ ବିଳାପ କରିବାକୁ ଲାଗିଲେ । ଇତ୍ୟବସରରେ ରାଜା ଶ୍ରୀ ଜୟଦେବଙ୍କ ସହ ଦେବଦର୍ଶନରୁ ଫେରି କ୍ରନ୍ଦନ ଜନିତ କୋଳାହଳର କାରଣ ଜାଣିବା ପାଇଁ ଅନ୍ତଃପୁରକୁ ଗମନ କଲେ । ସେଠାରେ ଉଭୟେ ବିଗତପ୍ରାଣା ଶାୟିତା ପଦ୍ମାବତୀଙ୍କୁ ଦେଖି ଆଶ୍ଚର୍ଯ୍ୟାନ୍ୱିତ ହେଲେ । ରାଣୀଙ୍କ ଠାରୁ ପଦ୍ମାବତୀଙ୍କ ମୃତ୍ୟୁବୃତ୍ତାନ୍ତ ଜାଣି ରାଜା ତାଙ୍କ (ରାଣୀଙ୍କ) ଯୋଗୁଁ ସତୀଙ୍କ ପ୍ରାଣନାଶ ଘଟିଥିବାର ସ୍ଥିର କଲେ ଏବଂ ସ୍ତ୍ରୀ ବଧ ଜନିତ ଘୋର ପାପରେ ଦଣ୍ଡବିଧାନ ସ୍ୱରୂପ ତାଙ୍କୁ ଗୃହତ୍ୟାଗ କରିବା ପାଇଁ କ୍ରୋଧରେ ଆଦେଶ ଦେଲେ । ରାଣୀ କୌତୁକରେ ଏପରି କରିଥିବାରୁ ତାଙ୍କର ଅପରାଧ କ୍ଷମଣୀୟ ବୋଲି ଶ୍ରୀ ଜୟଦେବ ରାଜାଙ୍କୁ ସାନ୍ତ୍ୱନା ଦେଲେ । ତତ୍ପରେ ଭକ୍ତକବି ଶ୍ରୀଜଗନ୍ନାଥଙ୍କୁ ସ୍ମରଣ ପୂର୍ବକ ବାଦ୍ୟବାଦନ ସହ ସ୍ୱ ମୃତପତ୍ନୀଙ୍କ ପ୍ରିୟ ଗୀତ ତନ୍ମୟ ଚିତ୍ତରେ ଗାନ କରିବାକୁ ଲାଗିଲେ । ଭକ୍ତକବି କଣ୍ଠନିଃସୃତ ମଧୁର ସଂଗୀତର ମୃତସଂଜୀବନୀ ମୂର୍ଚ୍ଛନା ପଦ୍ମାବତୀଙ୍କ ପ୍ରାଣହୀନ ଶରୀରରେ ପୁନର୍ବାର ପ୍ରାଣସଂଚାର କରିବାରୁ ସେ ନିଦ୍ରୋତ୍ଥିତ ପରି ଉଠିବସିଲେ ।

ସକଳ ଅନ୍ତଃପୁରବାସୀ ବିସ୍ମୟୋତ୍ଫୁଲ୍ଲ ଲୋଚନରେ ଏହି ଜୀବନ୍ୟାସ କ୍ରିୟା ସନ୍ଦର୍ଶନରେ ଭକ୍ତକବିଙ୍କୁ ସାଧୁବାଦ ଅର୍ପଣ କରିଥିଲେ । ଏହା ପରେ ଶ୍ରୀ ଜୟଦେବ ହୃଷ୍ଟଚିତ୍ତରେ ପ୍ରାଣପ୍ରିୟା ପଦ୍ମାବତୀଙ୍କ ସହ ସ୍ୱଗୃହକୁ ଗମନ କଲେ ।

ଏକଦା ସାଧୁପ୍ରବର ଶ୍ରୀ ଜୟଦେବ ସ୍ୱ ଭକ୍ତମାନଙ୍କ ନିମନ୍ତ୍ରଣ ରକ୍ଷା ନିମିତ୍ତ ଶ୍ରୀକ୍ଷେତ୍ର ଛାଡ଼ି ଏକ ଦୂର ଗ୍ରାମକୁ ଯାତ୍ରା କରିଥିଲେ । ସେଠାରେ ସେ ବିଶେଷ ସମ୍ମାନିତ ଓ ବହୁ ବସ୍ତ୍ର, ଅଳଙ୍କାର ଓ ସୁବର୍ଣ୍ଣପ୍ରାପ୍ତ ହୋଇ ଅରଣ୍ୟ ମାର୍ଗରେ ପୁରୁଷୋତ୍ତମ ପୁରୀକୁ ପ୍ରତ୍ୟାବର୍ତ୍ତନ କଲେ । ପଥମଧ୍ୟରେ ନିଷ୍ଠୁର ଓ ଅତ୍ୟନ୍ତ ହିଂସାପରାୟଣ କେତେଜଣ ଦସ୍ୟୁଙ୍କ ହାବୁଡ଼ରେ ପଡ଼ିଯିବାରୁ ପ୍ରାଣରକ୍ଷା ଉଦ୍ଦେଶ୍ୟରେ ସେମାନଙ୍କୁ ସମସ୍ତ ଅଳଙ୍କାରାଦି ଧନରତ୍ନ ଅର୍ପଣ କରିଥିଲେ । ତଥାପି ନିର୍ଦ୍ଦୟ ମହାଦୁଷ୍ଟ ଦୁର୍ବୃତ୍ତଗଣ ସାଧୁଙ୍କୁ ସ୍ୱଗୃହକୁ ଫେରିବାକୁ ସୁଯୋଗ ନ ଦେଇ ତାଙ୍କ ହାତଗୋଡ଼ ଏକାଠି ବାନ୍ଧି, ହାତ ଓ ପାଦକୁ ଖଣ୍ଡାରେ ହାଣିଦେଲେ ଏବଂ ତାଙ୍କୁ ଜଙ୍ଗଲ ମଧ୍ୟରେ ଏକ ନିର୍ଜନ ସ୍ଥାନରେ ଏପରି କ୍ଷତବିକ୍ଷତ ଅବସ୍ଥାରେ ପକାଇଦେଇ ଚାଲିଗଲେ । କ୍ଷୁଧାତୃଷାର୍ତ୍ତ ସାଧୁ ଜୟଦେବ ନିଜର ଏହି ଘୋର ଦୁର୍ଦ୍ଦଶାରେ ବିଚଳିତ ନ ହୋଇ ଶ୍ରୀଜଗନ୍ନାଥଙ୍କୁ ସ୍ତୁତି କରିବାକୁ ଲାଗିଲେ ।

ଏକଦିନ ରାଜା ଅଶ୍ୱପୃଷ୍ଠରେ ଆରୋହଣ ପୂର୍ବକ ଉକ୍ତ ବନରେ ମୃଗୟା କରୁଥିବା ସମୟରେ ଦୁର୍ଦ୍ଦଶାଗ୍ରସ୍ତ ଓ ପରିତ୍ୟକ୍ତ ସାଧୁ ଜୟଦେବଙ୍କ ଉପରେ ତାଙ୍କର ଦୃଷ୍ଟି ପଡ଼ିଗଲା । ସେ ତତ୍କ୍ଷଣାତ୍ ତାଙ୍କୁ ଶିବିକା (ପାଲିଙ୍କି)ରେ ସ୍ୱଗୃହକୁ ଆଣାଇ ସାଧ୍ୱୀ ପଦ୍ମାବତୀଙ୍କ ତତ୍ତ୍ୱାବଧାନରେ ରଖିଦେଲେ । ଏହାର କିଛିଦିନ ପରେ ସାଧୁବେଶଧାରୀ ଉକ୍ତ ଦସ୍ୟୁଗଣ ଭକ୍ତକବିଙ୍କ ଗୃହରେ ଅତିଥି ହେବାରୁ ତାଙ୍କ ଆଦେଶରେ ସତୀ ପଦ୍ମାବତୀ ଅତି ଯତ୍ନ ଓ ଆଦର ସତ୍କାରେ ସେମାନଙ୍କ ପରିଚର୍ଯ୍ୟା କରିଥିଲେ । ତାଙ୍କ ଅନୁରୋଧରେ ରାଜା ମଧ୍ୟ ସେମାନଙ୍କୁ ବିବିଧ ରତ୍ନ, ବସ୍ତ୍ର ଓ ଆଭରଣାଦି ଦାନ କରିଥିଲେ ଏବଂ ନିରାପଦରେ ବନାଞ୍ଚଳ ଅତିକ୍ରମ ନିମିତ୍ତ ସେମାନଙ୍କ ସହିତ କେତେକ ସଶସ୍ତ୍ର ପଦାତି ପଠାଇଥିଲେ ।

ଏହା ପରେ ରାଜଭୃତ୍ୟମାନେ ସେମାନଙ୍କ ପ୍ରତି ସାଧୁ ଜୟଦେବଙ୍କର ଏପରି ଆତିଶଯ୍ୟ ଶ୍ରଦ୍ଧା ଓ ଭକ୍ତିପ୍ରଦର୍ଶନର କାରଣ ଜିଜ୍ଞାସା କରିବାରୁ ସେମାନେ ତାଙ୍କ ବିରୁଦ୍ଧରେ ସଂପୂର୍ଣ୍ଣ ଅସତ୍ୟାଶ୍ରିତ ଏକ ଘଟଣା ବର୍ଣ୍ଣନା କରିଥିଲେ । ଯଥା—ସେମାନେ କର୍ଣ୍ଣାଟାଧିପଙ୍କ ଦ୍ୱାରା ଅତିଥି ରୂପେ ସତ୍କୃତ ହେଉଥିବା ସମୟରେ ସେଠାରେ ଉପଗତ କବି ଜୟଦେବ ସେଠା ରାଜାଙ୍କ ଦ୍ୱାରା ଏକ ଚୌର୍ଯ୍ୟ ଅପରାଧରେ ଦଣ୍ଡିତ ହୋଇଥିଲେ । ରାଜାଦେଶରେ ତାଙ୍କ ଦଣ୍ଡବିଧାନ ପାଇଁ ପ୍ରେରିତ କତିପୟ ଚଣ୍ଡାଳ ତାଙ୍କୁ ରାଜ୍ୟରୁ ବହିଷ୍କାର କରି ହତ୍ୟା କରିବା ପାଇଁ ଉଦ୍ୟତ ହେଉଥିଲେ । କିନ୍ତୁ

ଶ୍ରୀ ଜୟଦେବ ସେମାନଙ୍କୁ ଧନରତ୍ନ ଦାନ ଦ୍ୱାରା ସନ୍ତୁଷ୍ଟ କରି ପ୍ରାଣଭିକ୍ଷା କରିବାରୁ ସେମାନେ ତାଙ୍କୁ ଜୀବନରେ ନ ମାରି ହାତଗୋଡ଼ କାଟି ଏକ ଜଙ୍ଗଲରେ ଛାଡ଼ିଦେଇ ଆସିଲେ । କାଳେ ସେମାନେ ତାଙ୍କ ଚୁକ୍ତି ଦ୍ୱାରା ଦସ୍ୟୁ ଜନିତ ଦଣ୍ଡବିଧାନ ବିଷୟ ପ୍ରକାଶ କରିଦେବେ, ଏହି ଆଶଙ୍କାରେ କପଟୀ ସାଧୁ ଶ୍ରୀ ଜୟଦେବ ସେମାନଙ୍କୁ ଏପରି ସାଦର ଅଭ୍ୟର୍ଥନା କରିଥିଲେ ।

ସାଧୁ ମହାତ୍ମାଙ୍କ ନାମରେ ଏପରି ଘୋର ମିଥ୍ୟାପବାଦ କରିବା ସମୟରେ ହଠାତ୍ ବଜ୍ରପାତ ଦ୍ୱାରା ସେମାନଙ୍କ ପ୍ରାଣନାଶ ଘଟିଥିଲା । ରାଜଭୃତ୍ୟଗଣ ରାଜାଙ୍କୁ ଦୁର୍ବୃତ୍ତମାନଙ୍କ ଆକସ୍ମିକ ମୃତ୍ୟୁ ସମ୍ବାଦ ଜଣାଇ ସେମାନଙ୍କୁ ପ୍ରଦତ୍ତ ଧନରତ୍ନ ସମୂହ ପ୍ରତ୍ୟର୍ପଣ କରିଥିଲେ । ସେମାନଙ୍କ ମୃତ୍ୟୁରେ ଶୋକରେ ଅଧୀର ହୋଇ ଉଦାର-ଚେତା ଶ୍ରୀ ଜୟଦେବ ନିଜର ଛିନ୍ନ ହସ୍ତପଦ ଭୂଇଁରେ ବାଡ଼େଇ କରୁଣ କାନ୍ଦିବାରୁ ପ୍ରଭୁ ଜଗନ୍ନାଥଙ୍କ କୃପାରୁ ପୁନର୍ବାର ତାଙ୍କ ହସ୍ତପଦର ଉଦ୍ଭବ ଘଟିଥିଲା । ଏତଦ୍ଦର୍ଶନରେ ବିସ୍ମୟାଭିଭୂତ ରାଜାଙ୍କ ଅନୁରୋଧରେ ମହାପ୍ରାଣ ଜୟଦେବ ତାଙ୍କ ପ୍ରତି ଉକ୍ତ ସାଧୁବେଶଧାରୀ ଦସ୍ୟୁମାନଙ୍କ ପୂର୍ବ ଅତ୍ୟାଚାର ବୃତ୍ତାନ୍ତ ବର୍ଣ୍ଣନା କରିଥିଲେ । ଏହି ପ୍ରାଣଘାତକ ନୃଶଂସମାନଙ୍କ ପ୍ରତି ତାଙ୍କର କ୍ଷମା ଓ ମମତା ପ୍ରଦର୍ଶନରେ ରାଜା ବିମୁଗ୍ଧ ହୋଇଥିଲେ ।

ଦିନେ ଜରାଗ୍ରସ୍ତ ସାଧୁ ଶ୍ରୀ ଜୟଦେବ ବହୁ କଷ୍ଟରେ ନିତ୍ୟସଂକଳ୍ପିତ ଗଙ୍ଗା-ସ୍ନାନ ସାରି ସ୍ୱଗୃହକୁ ଫେରିବା ସମୟରେ ଦୁର୍ବଳତା ଯୋଗୁଁ ବାଟରେ ପଡ଼ି ମୂର୍ଚ୍ଛିତ ହେଲେ । ଗଙ୍ଗାସ୍ନାନ ପାଇଁ ବହିର୍ଗତ ରାଜା ପଥମଧ୍ୟରେ ଭକ୍ତାଗ୍ରଣୀଙ୍କର ଏବମ୍ବିଧ ଦୁର୍ଦ୍ଦଶା ଅବଲୋକନ କରି ତାଙ୍କୁ ପାଲିଙ୍କିରେ ବସାଇ ନିଜ ଘରେ ଛାଡ଼ିଦେଲେ । ଜରା ଜନିତ ଅସାମର୍ଥ୍ୟ ଘଟିଥିବା ଯୋଗୁଁ ରାଜା ତାଙ୍କୁ ନିତ୍ୟ ଶିବିକାରୋହଣ ପୂର୍ବକ ଗଙ୍ଗାସ୍ନାନ ପାଇଁ ଯିବାକୁ ବିନୀତ ଅନୁରୋଧ କଲେ । କିନ୍ତୁ ପ୍ରତ୍ୟହ ପଦାଗ୍ରସରି ହୋଇ ଗଙ୍ଗାସ୍ନାନ କରିବା ତାଙ୍କର ବ୍ରତ ହୋଇଥିବାରୁ ସେ ଏହି ଅନୁରୋଧ ପ୍ରତ୍ୟାଖ୍ୟାନ କଲେ । ଏଥିରେ ରାଜା ବିଶେଷ ଚିନ୍ତିତ ହେଲେ ।

ସେହିଦିନ ରାତିରେ ରାଜା, ରାଜମାନ୍ୟ ପୁରୋହିତ, ରାଜାନୁଗତ ମହନ୍ତଗଣ, ଉକ୍ତ ଗ୍ରାମବାସୀ ଦ୍ୱିଜବୃନ୍ଦ ଏବଂ ସ୍ୱୟଂ ଭକ୍ତପ୍ରବର ଶ୍ରୀ ଜୟଦେବ ଶୁକ୍ଳାମ୍ବରଧରା, ମକରବାହନା, ପଦ୍ମହସ୍ତା, ଅରବିନ୍ଦାକ୍ଷୀ ଗଙ୍ଗାଦେବୀଙ୍କର ଶ୍ରୀ ଜୟଦେବଙ୍କ ବାଟୀରେ ଆବିର୍ଭାବ ସଂପର୍କରେ ଏକ ଅଦ୍ଭୁତ ସ୍ୱପ୍ନ ଦେଖିଥିଲେ । ତତ୍ପରଦିନ ରାଜା, ମନ୍ତ୍ରୀ ଓ ଗ୍ରାମ ବୃଦ୍ଧମାନେ ଶ୍ରୀ ଜୟଦେବଙ୍କ ନିବାସକୁ ଯାଇ ଏହି ସ୍ୱପ୍ନବୃତ୍ତାନ୍ତ ଜଣାଇବାରୁ ଭକ୍ତାଗ୍ରଣୀ ଶ୍ରୀ ଜୟଦେବ ମଧ୍ୟ ତାଙ୍କ ପ୍ରତି ଶ୍ରୀରୂପିଣୀ ଗଙ୍ଗାଦେବୀଙ୍କ ସ୍ୱପ୍ନାଦେଶ ବିଷୟ ପ୍ରକାଶ କରିଥିଲେ । ତହୁଁ ଶ୍ରୀ ଜୟଦେବ ଓ ପଦ୍ମାବତୀ ପୁରଃସର ସକଳଜନ ଉକ୍ତ

ବାପୀ ନିକଟରେ ସ୍ନାନ ପାଇଁ ଉପଗତ ହେଲେ । ମହାତ୍ମା ଜୟଦେବ ଭକ୍ତିପୂର୍ଣ୍ଣ ଚିତ୍ତରେ ମନ୍ତ୍ର ପାଠକରି ସ୍ନାନାରମ୍ଭ କରିବା ମାତ୍ରେ ଜଗନ୍ମାନ୍ୟା, ଜଗନ୍ମାତା, ଜଗଦୁଦ୍ଧାରକାରିଣୀ ଗଙ୍ଗାଦେବୀଙ୍କର ସେଠାରେ ଆବିର୍ଭାବ ଘଟିଥିଲା । ଏହା ଫଳରେ ଉକ୍ତ ବାପୀର ଜଳରାଶି ତରଙ୍ଗାୟିତ ହୋଇ ଦୁଗ୍ଧ, କୁନ୍ଦ, ଇନ୍ଦୁଙ୍କ ପରି ନିର୍ମଳ ଓ ଶୁଭ୍ରବର୍ଣ୍ଣ ଧାରଣ କଲା । ବହୁ ବିକଚ କମଳ ଦ୍ୱାରା ଏହାର ଶୋଭା ବର୍ଦ୍ଧିତ ହେଲା । ଗଙ୍ଗାଘାଟର ପରି ଏହାର ଚତୁର୍ଦ୍ଦିଗ ସିକତାଚ୍ଛାଦିତ ହୋଇଗଲା । ସେହିଦିନଠୁ ଏହା ଏକ ସର୍ବାଭୀଷ୍ଟପ୍ରଦାୟକ ମହାତୀର୍ଥ ରୂପେ ପରିଗଣିତ ହେଉଅଛି ।ଏହି ଅତ୍ୟାଶ୍ଚର୍ଯ୍ୟ ଘଟଣା ବର୍ଣ୍ଣନା ପରେ 'ଭକ୍ତମାଳା' ଗ୍ରନ୍ଥକାର ଶ୍ରୀ ଚନ୍ଦ୍ରଦତ୍ତ ଭକ୍ତାଗ୍ରଣୀ ଶ୍ରୀ ଜୟଦେବଙ୍କ ଜୀବନ ଚରିତ ବର୍ଣ୍ଣନା ସମାପ୍ତ କରିଛନ୍ତି ।

## ସଂସ୍କୃତ 'ଭକ୍ତମାଳା'ରେ ଶ୍ରୀଜୟଦେବଙ୍କ ବୃନ୍ଦାବନ ଯାତ୍ରାର ଅନୁଲ୍ଲେଖ —

ଏହି ଜନଶ୍ରୁତିମୂଳକ ଜୀବନ ଚରିତରେ କବିଙ୍କ କଳ୍ପନା ବିଳାସ ଓ ଭକ୍ତମାନଙ୍କ ଅଲୌକିକ ମହିମା ବର୍ଣ୍ଣନକୁ ଅଗ୍ରାହ୍ୟ କରିଗଲେ ମଧ୍ୟ ଭକ୍ତକବି ଶ୍ରୀ ଜୟଦେବଙ୍କର ସକଳଭୁବନୈକନାଥ ଶ୍ରୀଜଗନ୍ନାଥଙ୍କ ଠାରେ ଅଚଳ ଭକ୍ତି ଓ ଭକ୍ତାଗ୍ରଣୀଙ୍କ ପ୍ରତି ମହାପ୍ରଭୁଙ୍କ ଅସୀମ ଦୟା ବିଷୟ ଅବଶ୍ୟ ସ୍ୱୀକାର୍ଯ୍ୟ । ଆଉମଧ୍ୟ ପରମ କୃଷ୍ଣଭକ୍ତ ଶ୍ରୀ ଜୟଦେବ ଓ ତାପସ୍ୱ ପତିପ୍ରାଣା ପତ୍ନୀ ପଦ୍ମାବତୀଙ୍କ ସ୍ୱ ଆରାଧ୍ୟ ଦେବତା ଶ୍ରୀରାଧାମାଧବଙ୍କ ବିଗ୍ରହ ସହ ବୃନ୍ଦାବନ ଯାତ୍ରା ଏବଂ ଉକ୍ତ ଧାମରେ ଜୀବନର ଶେଷଭାଗ ଅତିବାହିତ କରି ସ୍ୱର୍ଗବାସ କରିଥିବା ବିଷୟର କୌଣସି ଉଲ୍ଲେଖ ନ ଥିବାରୁ ଚନ୍ଦ୍ରଦତ୍ତଙ୍କ ପରବର୍ତ୍ତୀ ଯୁଗରେ ଶ୍ରୀ ବୃନ୍ଦାବନ ଧାମର ମାହାତ୍ମ୍ୟ ବୃଦ୍ଧି ଉଦ୍ଦେଶ୍ୟରେ ଏପରି ଏକ ଗଳ୍ପର ସୃଷ୍ଟି ହୋଇଥିବା ସ୍ଥିର କରାଯାଇପାରେ । ପରନ୍ତୁ ତାଙ୍କ ଶେଷକାଳ ସମ୍ବନ୍ଧରେ ଉକ୍ତ ଗ୍ରନ୍ଥର ନୀରବତା ଯୋଗୁଁ ଉକ୍ତ ପଣ୍ଡିତଙ୍କ ସ୍ୱ ସମଗ୍ର ଜୀବନର କର୍ମକେନ୍ଦ୍ର ଶ୍ରୀକ୍ଷେତ୍ରରେ ମହାପ୍ରୟାଣ ଘଟିଥିବା ସର୍ବଥା ସମ୍ଭବପର ।

## ପ୍ରିୟା ଦାସ କୃତ ହିନ୍ଦୀ 'ଶ୍ରୀ ଭକ୍ତମାଳ ଟୀକା'ରେ ଶ୍ରୀ ଜୟଦେବଙ୍କ ଚରିତ—

ପ୍ରିୟା ଦାସ ନାମକ ଜଣେ ବୃନ୍ଦାବନବାସୀ ବିଦ୍ୱାନ ସନ୍ଥ ନାଭାଜୀ ଗୋସ୍ୱାମୀ କୃତ ଅତ୍ୟନ୍ତ ଲୋକପ୍ରିୟ 'ଶ୍ରୀଭକ୍ତମାଳ' ଗ୍ରନ୍ଥର ଏକ ଟୀକା ସମ୍ବତ୍ ୧୭୬୯ ବା ୧୭୧୨ ଖ୍ରୀଷ୍ଟାବ୍ଦରେ ରଚନା କରିଥିଲେ । ସେଥିରେ ଶ୍ରୀ ଜୟଦେବ ଚରିତ ନିମ୍ନୋକ୍ତ ପ୍ରକାରେ ବର୍ଣ୍ଣିତ ହୋଇଅଛି । (୨)

---

(୨) ଲକ୍ଷ୍ନୌ ସ୍ଥିତ ତେଜକୁମାର ପ୍ରେସ, ବୁକ୍‌ଡ଼ିପୋ ଦ୍ୱାରା ୧୯୬୧ ମସିହାରେ ପ୍ରକାଶିତ, ପଞ୍ଚମ ସଂସ୍କରଣ, ପୃଷ୍ଠା ୩୪୬-୩୬୪ ।

କନ୍ଦୁବିଲ୍ୱ ଗ୍ରାମବାସୀ 'କବିରାଜ' ଓ 'ରସରାଜ' ଶ୍ରୀ ଜୟଦେବ ଗୃହତ୍ୟାଗ କରି ସନ୍ନ୍ୟାସୀ ଭାବରେ ଜୀବନ ଯାପନ କରୁଥିଲେ । ତରୁତଳବାସୀ ଏହି ସନ୍ତଙ୍କର ଖଣ୍ଡିଏ କନ୍ଥା ଓ ଗୋଟିଏ କମଣ୍ଡଳୁ ମାତ୍ର ସମ୍ବଳ ଥିଲା ।

ଜନୈକ ବିପ୍ର ଶପଥ ପୂରଣ ନିମିତ୍ତ ନିଜର ପ୍ରାପ୍ତଯୌବନା ରୂପଲାବଣ୍ୟ-ସମ୍ପନ୍ନା ବିଦୁଷୀ କନ୍ୟା ପଦ୍ମାବତୀଙ୍କୁ ଶ୍ରୀ ଜଗନ୍ନାଥଙ୍କୁ ଅର୍ପଣ କରିଥିଲେ । ମହାପ୍ରଭୁ ଆଶ୍ଚର୍ଯ୍ୟରସିକ ଭକ୍ତ ଜୟଦେବଙ୍କୁ ଉକ୍ତ କନ୍ୟାଦାନ କରିବା ପାଇଁ ବ୍ରାହ୍ମଣଙ୍କୁ ଆଜ୍ଞା ପ୍ରଦାନ କଲେ । ବ୍ରାହ୍ମଣ କନ୍ୟା ଗ୍ରହଣ ପ୍ରସଙ୍ଗ ଶ୍ରୀ ଜୟଦେବଙ୍କୁ ଜଣାଇବାରୁ ସେ ପ୍ରଥମେ ଏଥିରେ ଘୋର ଅନିଚ୍ଛା ପ୍ରକାଶ କରିଥିଲେ । କିନ୍ତୁ ଶେଷରେ ତ୍ରୈଲୋକ୍ୟ ଶିରୋମଣି ଶ୍ରୀ ଜଗନ୍ନାଥଙ୍କ ଆଜ୍ଞା ଶିରୋଧାର୍ଯ୍ୟ କରି ପଦ୍ମାବତୀଙ୍କୁ ପତ୍ନୀରୂପେ ଗ୍ରହଣ କରିଥିଲେ । ତତ୍ପରେ ଭକ୍ତଦମ୍ପତି ଶ୍ରୀକ୍ଷେତ୍ରରେ ଏକ କୁଟୀର ନିର୍ମାଣ କରି ସେଥିରେ ଶ୍ରୀ ଶ୍ୟାମସୁନ୍ଦରଙ୍କ ବିଗ୍ରହ ପ୍ରତିଷ୍ଠା କରିଥିଲେ ଏବଂ ପଦ୍ମାବତୀ ତାଙ୍କ ସେବାରେ ସର୍ବଦା ନିଯୁକ୍ତ ରହିଲେ ।

କିଛୁକାଳ ପରେ ଶ୍ରୀ ଜୟଦେବ ମହାପ୍ରଭୁଙ୍କ ପ୍ରେରଣାରେ 'ଶ୍ରୀ ପ୍ରଭୁ ଚରିତାମୃତ' 'ଶ୍ରୀ ଗୀତଗୋବିନ୍ଦ' ରଚନାରେ ପ୍ରବୃତ୍ତ ହେଲେ । ଏହି ଗ୍ରନ୍ଥରେ ଶ୍ରୀରାଧାଙ୍କ ମାନଭଞ୍ଜନ ପ୍ରସଙ୍ଗ ବର୍ଣ୍ଣନା କରିବା ସମୟରେ ଶ୍ରୀ ଶ୍ୟାମସୁନ୍ଦରଙ୍କ ବିନୟ ପ୍ରକାଶ ପାଇଁ ଉପଯୁକ୍ତ ପଦବିନ୍ୟାସ ସମ୍ବନ୍ଧରେ ଚିନ୍ତାଗ୍ରସ୍ତ ହୋଇ ଶ୍ରୀ ଜୟଦେବ ସ୍ନାନାର୍ଥେ ବହିର୍ଗତ ହେଲେ । ଏହି ଅବସରରେ ଶ୍ରୀ ଶ୍ୟାମସୁନ୍ଦର ଶ୍ରୀ ଜୟଦେବ ସ୍ୱରୂପ ଧାରଣ କରି ପୋଥିରେ

"ସ୍ମରଗରଳଖଣ୍ଡନଂ ମମ ଶିରସି ମଣ୍ଡନଂ
ଦେହି ପଦପଲ୍ଲବମୁଦାରମ୍"

ପଦଗୁଡ଼ିକ ଲେଖି ଅନ୍ତର୍ହିତ ହୋଇଗଲେ । ସ୍ନାନାନ୍ତେ ସ୍ୱ କୁଟୀରକୁ ପ୍ରତ୍ୟାବୃତ୍ତ ଶ୍ରୀ ଜୟଦେବ ପୋଥିରେ ଉକ୍ତ ପଦଗୁଡ଼ିକର ଉଲ୍ଲେଖ ଦେଖି ବିସ୍ମୟାଭିଭୂତ ହୋଇପଡ଼ିଲେ । ପଦ୍ମାବତୀଙ୍କ ଠାରୁ ପାଦପୂରଣ ବିଷୟ ଶୁଣି ଏହା ଶ୍ରୀ ଶ୍ୟାମସୁନ୍ଦରଙ୍କ ସ୍ୱହସ୍ତଲିପି ବୋଲି ନିଶ୍ଚିତ କରି ଭକ୍ତିରସରେ ଆପ୍ଲୁତ ହୋଇଗଲେ ଏବଂ ପଦ୍ମାବତୀଙ୍କୁ ଶ୍ରୀ ଶ୍ୟାମସୁନ୍ଦରଙ୍କ ସାକ୍ଷାତ୍ ଦର୍ଶନଲାଭ ଯୋଗୁଁ ବିଶେଷ ଧନ୍ୟବାଦ ଅର୍ପଣ କରିଥିଲେ ।

ମହାପ୍ରଭୁଙ୍କ ଅନୁଗ୍ରହରୁ ସମ୍ପୂର୍ଣ୍ଣ ଶ୍ରୀ ଗୀତଗୋବିନ୍ଦର ପ୍ରଶଂସା ଲୋକମୁଖରେ ଚତୁର୍ଦ୍ଦିଗରେ ବ୍ୟାପିଗଲା ଏବଂ ସମସ୍ତେ ଏହାକୁ ଭକ୍ତିଗଦ୍‌ଗଦ୍ ଚିତ୍ତରେ ପାଠ

କରିବାକୁ ଲାଗିଲେ । ତହୁଁ ନୀଳାଚଳଧାମର ପଣ୍ଡିତ-ନୃପତି ଏହାର ସମକକ୍ଷ ଅନ୍ୟ ଏକ ଗୀତଗୋବିନ୍ଦ ରଚନା କରିଥିଲେ । କିନ୍ତୁ ଭକ୍ତ ଓ ପଣ୍ଡିତମାନେ ରାଜରଚିତ ଗୀତଗୋବିନ୍ଦକୁ ନିକୃଷ୍ଟ ବୋଲି ମତ ପ୍ରକାଶ କରିବାରୁ ଉଭୟ ଗ୍ରନ୍ଥ ପରୀକ୍ଷା ପାଇଁ ଶ୍ରୀ ଜଗନ୍ନାଥଙ୍କ ମନ୍ଦିର ମଧ୍ୟରେ ରଖାଯାଇଥିଲା । ମହାପ୍ରଭୁ 'ଶ୍ରୀ ଗୀତଗୋବିନ୍ଦ'କୁ ସ୍ୱହୃଦୟରେ ଧାରଣ କରି ରାଜ କୃତ ଗ୍ରନ୍ଥକୁ ଅଗ୍ରାହ୍ୟ କଲେ । ଜଗଦୀଶଙ୍କର ଏହି ନିଷ୍ପତ୍ତିରେ ବିଶେଷ ଅପମାନିତ ହୋଇ ରାଜା ସମୁଦ୍ରରେ ଝାସ ଦେଇ ପ୍ରାଣ ବିସର୍ଜନ କରିବାକୁ ଉଦ୍ୟତ ହେଲେ । ତହୁଁ ଭକ୍ତବତ୍ସଳ ଜଗନ୍ନାଥ ସ୍ୱାମୀଙ୍କ ପ୍ରାଣରକ୍ଷା ନିମିତ୍ତ ତତ୍କୃତ ଗୀତଗୋବିନ୍ଦର ବାରଟି ଶ୍ଳୋକ ଶ୍ରୀ ଗୀତଗୋବିନ୍ଦରେ ସନ୍ନିବିଷ୍ଟ ହେବ ବୋଲି ଆଜ୍ଞା ଦେବାରୁ ରାଜା ଆଶ୍ୱସ୍ତ ହୋଇ ଆତ୍ମହତ୍ୟାରୁ ନିବୃତ୍ତ ହେଲେ ।

ଦିନେ ଶ୍ରୀକ୍ଷେତ୍ରବାସିନୀ ଏକ ମାଳୀର କନ୍ୟା ବାଇଗଣ ବାଡ଼ିରେ ବାଇଗଣ ତୋଳିବା ସମୟରେ ଶ୍ରୀ ଗୀତଗୋବିନ୍ଦ ପଞ୍ଚମ ସର୍ଗର

"ନ କୁରୁ ନିତମ୍ବିନି ଗମନବିଳମ୍ବନମନୁସର ତଂ ହୃଦୟେଶମ୍
ଧୀରସମୀରେ ଯମୁନାତୀରେ ବସତି ବନେ ବନମାଳୀ"

ଗୀତଟିକୁ ହର୍ଷୋତ୍ଫୁଲ୍ଲ ଚିତ୍ତରେ ମଧୁର କଣ୍ଠରେ ଗାନ କରିବାକୁ ଲାଗିଲେ । ଏହି ଗୀତର ମଧୁର ମୂର୍ଚ୍ଛନାରେ ମୁଗ୍ଧ ହୋଇ ମହାପ୍ରଭୁ ଜଗନ୍ନାଥ ଅଲକ୍ଷିତ ଭାବରେ ଯୁବତୀ ପଛେ ପଛେ ତନ୍ମୟ ଭାବରେ ଗୀତ ଶୁଣୁ ଶୁଣୁ ତାଙ୍କର ପୀନବସନ ବାଇଗଣ କଣ୍ଟାରେ ଚିରିଗଲା । ମାଳିନୀ ବାଇଗଣ ତୋଳା ସାରି ଘରକୁ ଫେରିଯିବାରୁ ମହାପ୍ରଭୁ ଶ୍ରୀମନ୍ଦିରରେ ବିଜେ କଲେ । ରାଜା ଜଗନ୍ନାଥ ଦର୍ଶନକୁ ଆସି ମହାପ୍ରଭୁଙ୍କ ଶ୍ରୀଅଙ୍ଗ କପଡ଼ା ଚିରିଯିବାର କାରଣ ପଣ୍ଡାଙ୍କୁ ପଚାରିବାରୁ ସେ ନିଜର ଅଜ୍ଞତା ପ୍ରକାଶ କରିଥିଲେ । ଏଥିରେ ରାଜା ନିଜର ବିରକ୍ତି ଓ ଉଦ୍‌ବେଗ ପ୍ରକାଶ କରିଥିଲେ । ତହୁଁ ମହାପ୍ରଭୁ ସ୍ୱପ୍ନରେ ରାଜାଙ୍କୁ ସମସ୍ତ ବିଷୟ ଜଣାଇବାରୁ ସେହି ମାଳିନୀ କନ୍ୟାକୁ ମହାପ୍ରଭୁଙ୍କ ଶ୍ରୀମୁଖରେ ଶ୍ରୀ ଗୀତଗୋବିନ୍ଦ ଗାନ କରିବା ପାଇଁ ନିଯୁକ୍ତ କରାଗଲା ।

ଶ୍ରୀ ଗୀତଗୋବିନ୍ଦର ଏପରି ମାହାତ୍ମ୍ୟ ହୃଦୟଙ୍ଗମ କରି ରାଜା ରାଜ୍ୟରେ ଢେଙ୍ଗୁରା ପିଟି ନିର୍ଦ୍ଦିଷ୍ଟ ସମୟରେ, ଉତ୍ତମ ସ୍ଥାନରେ ଓ ଉପଯୁକ୍ତ ରାଗରେ ଶ୍ରୀଗୀତ-ଗୋବିନ୍ଦ ଗାନ କରିବା ପାଇଁ ଘୋଷଣା କରିଥିଲେ । କିନ୍ତୁ ଜଣେ ମୋଗଲ ଯବନ ଏହି ଘୋଷଣାକୁ ଅମାନ୍ୟ କରି ଘୋଡ଼ାରେ ଚଢ଼ି ଯାଉଥିବା ବେଳେ ମଧୁର କଣ୍ଠରେ ଶ୍ରୀ ଗୀତଗୋବିନ୍ଦ ଗାନରେ ପ୍ରବୃତ୍ତ ହେଲା । ଏହା ଶୁଣିବା ପାଇଁ ଶ୍ରୀ ଶ୍ୟାମସୁନ୍ଦରଙ୍କ ଆବିର୍ଭାବ ଯୋଗୁଁ ଯବନ ପ୍ରଭୁଙ୍କ ଦର୍ଶନରେ ମୁକ୍ତିଲାଭ କଲା ।

ପରେ କେତେକ ଠଗ ଶ୍ରୀ ଜୟଦେବଙ୍କ ଠାରୁ ସନ୍ଥ ସେବାପାଇଁ ସଂଗୃହୀତ ସକଳ ସାମଗ୍ରୀ ଲୁଟି ନେଇ ଚାଲିଗଲେ । ରାଜା ଶିକାରକୁ ଯିବା ସମୟରେ ହସ୍ତପଦ ବିହୀନ ଶ୍ରୀ ଜୟଦେବଙ୍କ ଶରୀରରୁ ତେଜପୁଞ୍ଜ ବହିର୍ଗତ ହେଉଥିବାର ଦେଖି ତାଙ୍କୁ ପାଲିଙ୍କିରେ ବସାଇ ରାଜ ନଅରକୁ ଘେନିଆସିଲେ । ଶ୍ରୀ ଜୟଦେବଙ୍କ ଉପଦେଶରେ ରାଜା ସନ୍ଥସେବା ଆରମ୍ଭ କରିଥିଲେ । ଏହି ସମ୍ବାଦ ଶୁଣି ସେହି ଦୁର୍ବୃତ୍ତ ଠଗ ଗୁଡ଼ିକ ମାଳାତିଳକ ଧାରଣ ପୂର୍ବକ ସାଧୁ ବେଶରେ ସେଠାରେ ପହଞ୍ଚିଲେ । ଶ୍ରୀ ଜୟଦେବଙ୍କ ଅନୁରୋଧରେ ସେମାନଙ୍କୁ ବହୁଦିନ ପର୍ଯ୍ୟନ୍ତ ଅତ୍ୟନ୍ତ ଆଦର ଓ ଯତ୍ନ ସହକାରେ ପାନ ଭୋଜନାଦି ଦିଆଗଲା । ବିଦାୟ ସମୟରେ ରାଜା ସେମାନଙ୍କୁ ବହୁ ଧନରତ୍ନ ଦେଇ ନିରାପଦ ଯାତ୍ରା ନିମିତ୍ତ ସେମାନଙ୍କ ସହିତ କେତେକ ସଶସ୍ତ୍ର ଭୃତ୍ୟ ପଠାଇଥିଲେ । ଭୃତ୍ୟଗଣ ବାଟରେ ଠଗମାନଙ୍କୁ ଶ୍ରୀ ଜୟଦେବଙ୍କର ସେମାନଙ୍କ ପ୍ରତି ଏପରି ଅତ୍ୟଧିକ ଆଦର ଓ ଭକ୍ତିର କାରଣ ପଚାରିବାରୁ ସେମାନେ କହିଲେ ଯେ, ପୂର୍ବେ ଗୁରୁତର ଅପରାଧ ଯୋଗୁଁ ପ୍ରାଣଦଣ୍ଡରେ ଦଣ୍ଡିତ ଶ୍ରୀ ଜୟଦେବଙ୍କୁ ସେମାନେ ପ୍ରାଣରେ ନ ମାରି ଦୟାପରବଶ ହୋଇ ତାଙ୍କ ହାତ ଗୋଡ଼ କାଟି ଛାଡ଼ିଦେଇଥିଲେ । ସନ୍ଥ ଶିରୋମଣିଙ୍କ ବିରୁଦ୍ଧରେ ଏପରି ଘୋର ମିଥ୍ୟା କଥା କହିବାରୁ ସେମାନେ ହଠାତ୍ ରସାତଳଗାମୀ ହେଲେ ।

ରାଜଭୃତ୍ୟମାନେ ଏହା ଦେଖି ଭୟ ଓ ବିସ୍ମୟରେ ଅଭିଭୂତ ହୋଇ ରାଜଦତ୍ତ ଧନରତ୍ନ ଘେନି ରାଜ ନଗରକୁ ଫେରି ଆସିଲେ । ତଦନନ୍ତର ରାଜା ଅତ୍ୟନ୍ତ ଭକ୍ତିବିହ୍ୱଳ ଚିତ୍ତରେ ଶ୍ରୀ ଜୟଦେବଙ୍କୁ ଏହାର କାରଣ ପଚାରିବାରୁ ସେ ଠଗମାନଙ୍କ ପୂର୍ବ ବୃତ୍ତାନ୍ତ ବର୍ଣ୍ଣନା କରିଥିଲେ । ଏହାପରେ ଶ୍ରୀ ଜୟଦେବଙ୍କର ଛିନ୍ନ ହସ୍ତ ପଦ ପୁଣି କଅଁଳି ଉଠିଥିଲା । ରାଜା ଏଥିରେ ବିସ୍ମିତ ହୋଇ ଶ୍ରୀ ଗୀତଗୋବିନ୍ଦକାର ସନ୍ଥ ଶିରୋମଣିଙ୍କୁ ଭକ୍ତିବିନମ୍ର ଚିତ୍ତରେ ପ୍ରଣିପାତ କରିଥିଲେ ଏବଂ ପଦ୍ମାବତୀଙ୍କୁ ତାଙ୍କ ନିକଟକୁ ଆଣାଇ ଭକ୍ତ ଦଂପତିଙ୍କୁ ସୁଖ ଶାନ୍ତିରେ ରଖାଇଥିଲେ ।

ପରେ ଜଣେ ଦୁଷ୍ଟା ରାଣୀ ପଦ୍ମାବତୀଙ୍କ ପତିପ୍ରାଣତା ପରୀକ୍ଷା କରିବା ପାଇଁ ଶ୍ରୀ ଜୟଦେବଙ୍କ ମିଥ୍ୟା ମୃତ୍ୟୁବାର୍ତ୍ତା ପ୍ରଚାର କରିଦେଲେ । ଏ ଦୁଃସମ୍ବାଦ ଶ୍ରବଣ କରି ପତିଗତପ୍ରାଣ ପଦ୍ମାବତୀଙ୍କ ପ୍ରାଣବାୟୁ ଉଡ଼ିଗଲା । ରାଣୀଙ୍କ କୁଚକ୍ରାନ୍ତ ଯୋଗୁଁ ଏପରି ଘଟିବାରୁ ରାଜା ତାଙ୍କୁ ହତ୍ୟା କରିବା ପାଇଁ ଉଦ୍ୟତ ହେଲେ । କିନ୍ତୁ ଶ୍ରୀ ଜୟଦେବ ତାଙ୍କୁ ଏଥିରୁ ନିବୃତ୍ତ କରି, ପଦ୍ମାବତୀଙ୍କ ଶବ ନିକଟରେ ଶ୍ରୀ ଗୀତ-ଗୋବିନ୍ଦର ଅଷ୍ଟପଦୀ ସୁମଧୁର ସ୍ୱରରେ ଗାନ କରିବାକୁ ଲାଗିଲେ । ଏହା ପଦ୍ମାବତୀଙ୍କ କର୍ଣ୍ଣ କୁହରରେ ପ୍ରବେଶ କଲାକ୍ଷଣି ସେ ନିଦ୍ରୋତ୍ଥିତାବତ୍ ସ୍ୱୀୟ ସ୍ୱାମୀଙ୍କ ସହିତ ସ୍ୱର ମିଳାଇ ଅଷ୍ଟପଦୀ ଗାନରେ ନିମଜ୍ଜିତ ହୋଇଗଲେ । ଏହାଦେଖି ସମବେତ ଜନତାର

ବସ୍ମୟର ସୀମା ରହିଲା ନାହିଁ । ରାଜା ଓ ଜନତା ଦ୍ୱାରା ସମ୍ମାନିତ ଶ୍ରୀ ଜୟଦେବ ସ୍ୱ ପତ୍ନୀଙ୍କ ସହ କେନ୍ଦୁବିଲ୍ୱ ଗ୍ରାମକୁ ଫେରି ଯାଇଥିଲେ ।

ଶ୍ରୀ ଜୟଦେବ ବାର୍ଦ୍ଧକ୍ୟବଶତଃ ତାଙ୍କ ଆଶ୍ରମ ଠାରୁ ୧୮ କ୍ରୋଶ ଦୂରବର୍ତ୍ତୀ ଗଙ୍ଗାରେ ସ୍ନାନ କରିବା ପାଇଁ ଯିବାକୁ ଅସମର୍ଥ ହେବାରୁ ଗଙ୍ଗାମାତା ତାଙ୍କ ଆଶ୍ରମ ପୁଷ୍କରିଣୀରେ ଆବିର୍ଭୂତ ହୋଇଥିବା ବିଷୟ ବର୍ଣ୍ଣନା କରି ଶ୍ରୀ ପ୍ରିୟାଦାସ ଶ୍ରୀ ଜୟଦେବ ଚରିତ ସମାପ୍ତ କରିଛନ୍ତି ।

ଶ୍ରୀ ପ୍ରିୟା ଦାସ ନିଜେ ଶ୍ରୀ ବୃନ୍ଦାବନ ଧାମର ଅଧିବାସୀ ହେଲେ ମଧ୍ୟ ଶ୍ରୀ ଜୟଦେବ ସ୍ୱାମୀଙ୍କ ବୃନ୍ଦାବନ ଯାତ୍ରା ସମ୍ବନ୍ଧରେ କୌଣସି ଉଲ୍ଲେଖ କରି ନ ଥିବାରୁ ସ୍ପଷ୍ଟ ପ୍ରମାଣିତ ହୁଏ ଯେ, ଅଷ୍ଟାଦଶ ଶତାବ୍ଦୀର ପ୍ରଥମ ଭାଗ ପର୍ଯ୍ୟନ୍ତ ଏପରି କାହାଣୀ ପ୍ରଚରିତ ହୋଇନଥିଲା । ପରନ୍ତୁ ତତ୍‌କୃତ ଶ୍ରୀ ଜୟଦେବ ଚରିତ ପାଠକଲେ ବର୍ଣ୍ଣିତ ଭକ୍ତଦଂପତିଙ୍କ ଜୀବନକାଳ କେନ୍ଦୁବିଲ୍ୱ ଶାସନ ଓ ଶ୍ରୀକ୍ଷେତ୍ର ବାସ ଦ୍ୱାରା ଅତିବାହିତ ହୋଇଥିବାର ଦୃଢ଼ ଧାରଣା ଜାତ ହୁଏ ।

## ମରହଟ୍ଟୀ 'ଭକ୍ତ ବିଜୟ' ଗ୍ରନ୍ଥରେ ଶ୍ରୀ ଜୟଦେବ ଚରିତ (୩) :—

ମହୀପତି ନାମକ ମହାରାଷ୍ଟ୍ରର ଜଣେ ପ୍ରାଚୀନ କବି ହିନ୍ଦୀଭାଷାରେ ନାଭାଜୀଙ୍କ ଦ୍ୱାରା ଲିଖିତ ଅତ୍ୟନ୍ତ ଲୋକପ୍ରିୟ 'ଭକ୍ତମାଳା' ଗ୍ରନ୍ଥ ପାଠରୁ ପ୍ରେରଣା ଲାଭକରି ସ୍ୱ ମାତୃଭାଷା ମରହଟ୍ଟୀରେ (୧୬୮୪ ଶକାବ୍ଦ, ଚିତ୍ରଭାନୁ ସମ୍ବତ୍ସରରେ ବା ୧୭୬୨ ଖ୍ରୀଷ୍ଟାବ୍ଦରେ) 'ଭକ୍ତ ବିଜୟ' ନାମକ ଏକ ଭକ୍ତଚରିତ ଗ୍ରନ୍ଥ ରଚନା କରିଥିଲେ । ସେଥିରେ ପ୍ରଦତ୍ତ ଶ୍ରୀ ଜୟଦେବ ବୃତ୍ତାନ୍ତର ସାରମର୍ମ ନିମ୍ନରେ ପ୍ରଦତ୍ତ ହେଲା ।

ନାନା ପୁରାଣ ପ୍ରଣେତା ମହର୍ଷି ବ୍ୟାସଦେବ କଳିଯୁଗରେ ଶ୍ରୀ ଜୟଦେବ ରୂପେ ଆବିର୍ଭୂତ ହୋଇଥିଲେ । ବେଦ ଓ ପୁରାଣରେ ତାଙ୍କର ଅସାଧାରଣ ପାଣ୍ଡିତ୍ୟ ଥିଲା । କଳିଯୁଗରେ ଲୋକମାନଙ୍କ ମୁକ୍ତି ନିମିତ୍ତ ସେ ପଦ୍ମପୁରାଣୋକ୍ତ ଶ୍ରୀରାଧାକୃଷ୍ଣଙ୍କ ରମଣୀୟ ରହସ୍ୟଲୀଳା ସ୍ୱ ଅମରକୃତି ଶ୍ରୀ ଗୀତଗୋବିନ୍ଦର ଲଳିତ-କୋମଳ-କାନ୍ତ ପଦାବଳୀ ସମନ୍ୱିତ ଗୀତ-ସମୂହରେ ବର୍ଣ୍ଣନା କରିଥିଲେ । ଅଳ୍ପକାଳ ମଧ୍ୟରେ ଏହି ଗ୍ରନ୍ଥର ଯଶ ଚତୁର୍ଦ୍ଦିଗରେ ପରିବ୍ୟାପ୍ତ ହେଲା । ବିଭିନ୍ନ ଦେଶର ଭକ୍ତ ଓ ପଣ୍ଡିତ-ମାନେ ଏହା ମୁଖସ୍ଥ କରି ଗାନ କରିବାକୁ ଲାଗିଲେ । ଏହାର ଲୋକପ୍ରିୟତା ଅନୁଭବ କରି ଜଗନ୍ନାଥ ପୁରୀର ରାଜା ସାତ୍ତ୍ୱିକ ତଦନୁରୂପ ଅନ୍ୟ ଏକ ଗୀତଗୋବିନ୍ଦ ରଚନା କରିଥିଲେ ଏବଂ ଏହା କଣ୍ଠସ୍ଥ କରି ସର୍ବତ୍ର ଗାନ କରିବା ପାଇଁ ଆଦେଶ

(୩) ବମ୍ବେସ୍ଥିତ 'ନିର୍ଣ୍ଣୟ ସାଗର ଛାପାଖାନା'ରେ ୧୯୨୮ ମସିହାରେ ମୁଦ୍ରିତ ।

ପ୍ରଚାର କରିଥିଲେ । ଏହି ଆଦେଶରେ ଶ୍ରୀକ୍ଷେତ୍ରର ପଣ୍ଡିତମାନେ କ୍ଷୁବ୍ଧ ହୋଇ ରାଜାଙ୍କ ନିକଟରେ ପ୍ରତିବାଦ କରିଥିଲେ । ତହୁଁ ଗ୍ରନ୍ଥଦ୍ୱୟର ମହତ୍ତ୍ୱ ଓ ଉତ୍କର୍ଷ ପରୀକ୍ଷାପାଇଁ ଉଭୟ ପୁସ୍ତକକୁ ରାତିରେ ଦେହେଡ଼ ପଡ଼ିବା ପୂର୍ବରୁ ଶ୍ରୀ ଜଗନ୍ନାଥଙ୍କ ସିଂହାସନ ଉପରେ ରଖାଗଲା । ତଦନନ୍ତର ପୂଜକମାନେ ମନ୍ଦିର ଦ୍ୱାର ବନ୍ଦ କରି ଯେ ଯାହା ଘରକୁ ଚାଲିଗଲେ ।

ତତ୍ପରଦିନ ପ୍ରଭାତରେ ମଙ୍ଗଳ ଆଳତି ପୂର୍ବରୁ ସମବେତ ପଣ୍ଡିତ ଓ ପୂଜକମାନଙ୍କ ଉପସ୍ଥିତିରେ ଶ୍ରୀଜୀଉଙ୍କ ଦ୍ୱାର ଉନ୍ମୋଚନ କରିବା ସମୟରେ ଦେଖାଗଲା ଯେ, ଶ୍ରୀ ଜୟଦେବକୃତ ଶ୍ରୀ ଗୀତଗୋବିନ୍ଦ ରତ୍ନସିଂହାସନ ଉପରେ ସଯତ୍ନରେ ରକ୍ଷିତ ଓ ନୃପରଚିତ ଗ୍ରନ୍ଥ ନିମ୍ନରେ ପତିତ ହୋଇଅଛି । ଏହି ଘଟଣାରେ ପୁରୀରାଜା ଅତ୍ୟନ୍ତ ଲଜ୍ଜିତ ଓ ମର୍ମାହତ ହୋଇ ଦୁଃଖ ନିବାରଣ ମହାପ୍ରଭୁଙ୍କୁ ସ୍ୱ ଅପମାନ ଭଞ୍ଜନ ପାଇଁ କାତର ଭାବରେ ସ୍ତୁତି କରିଥିଲେ । ଭକ୍ତ ରାଜାଙ୍କ ବିକଳ ପ୍ରାର୍ଥନାରେ ଶ୍ରୀ ଜଗନ୍ନାଥଙ୍କ ହୃଦୟ ଦୟାରେ ବିଗଳିତ ହେଲା । ସେ ରାଜରଚିତ ଗ୍ରନ୍ଥରୁ ୨୪ଟି ଶ୍ଳୋକ ନେଇ ଶ୍ରୀ ଜୟଦେବ ପ୍ରଣୀତ ଶ୍ରୀ ଗୀତଗୋବିନ୍ଦର ବିଭିନ୍ନ ସର୍ଗରେ ଅଙ୍ଗୀଭୂତ କରିବା ପାଇଁ ଆଦେଶ ଦେଇଥିଲେ । ଏଥିରେ ରାଜକବି ଆଶ୍ୱସ୍ତ ହୋଇଥିଲେ ।

ପବିତ୍ର ଜଗନ୍ନାଥ-ପୁରୀବାସୀ ଜନୈକ ପୁରୋହିତଙ୍କର ପଦ୍ମାବତୀ ନାମ୍ନୀ ଲକ୍ଷ୍ମୀ-ସ୍ୱରୂପା ପରମ ରୂପବତୀ ଏକ କନ୍ୟାରତ୍ନ ଥିଲା । ବ୍ରାହ୍ମଣ ଏହି କନ୍ୟାଟିକୁ ଶ୍ରୀ ଜଗନ୍ନାଥଙ୍କ ସେବା ପାଇଁ ଉତ୍ସର୍ଗ କରିଥିଲେ । ଦିନେ ରାତିରେ ମହାପ୍ରଭୁଙ୍କୁ ସ୍ୱପ୍ନରେ ଆଦେଶ ଦେଲେ— 'ମୁଁ କଳିଯୁଗରେ ବୁଦ୍ଧ ରୂପରେ ପ୍ରକଟ ହୋଇଅଛି, ତେଣୁ ମୋର ପରମ ଭକ୍ତ ଓ ଅବତାର ସ୍ୱରୂପ ଶ୍ରୀ ଜୟଦେବଙ୍କୁ ଉକ୍ତ କନ୍ୟାରତ୍ନ ଅର୍ପଣ କର' । ମହାପ୍ରଭୁଙ୍କ ସ୍ୱପ୍ନାଦେଶାନୁଯାୟୀ ଭକ୍ତ ଜୟଦେବଙ୍କର ଭାଗ୍ୟବତୀ ପଦ୍ମାବତୀ ସହ ପରିଣୟୋତ୍ସବ ମହାସମାରୋହରେ ସମ୍ପନ୍ନ ହୋଇଥିଲା । ଏହାପରେ ଶ୍ରୀ ଜୟଦେବ ପ୍ରତ୍ୟହ ସ୍ୱ ପତ୍ନୀ ସହ ଶ୍ରୀ ଜଗନ୍ନାଥଙ୍କ ମହିମା ଗାନ କରି କାଳାତିପାତ କରିବାକୁ ଲାଗିଲେ ।

ନିକଟବର୍ତ୍ତୀ ଏକ ଗ୍ରାମବାସୀ ଜଣେ ଧର୍ମପରାୟଣ, ଧନାଢ୍ୟ ଓ ବଦାନ୍ୟ ବଣିକ ଶ୍ରୀ ଜୟଦେବଙ୍କ ଶିଷ୍ୟତ୍ୱ ଗ୍ରହଣ କରିଥିଲେ । ଏକଦା ସେ ପୂଜ୍ୟଗୁରୁ ଶ୍ରୀ ଜୟଦେବଙ୍କୁ ଅଭ୍ୟର୍ଥନା କରିବା ଉଦ୍ଦେଶ୍ୟରେ ଗାଡ଼ିରେ ବସାଇ ସ୍ୱ ଗୃହକୁ ଆଣିଥିଲେ । ଭକ୍ତପ୍ରବର ସ୍ୱ ଶିଷ୍ୟ ଗୃହରେ ବିଶେଷ ସମ୍ମାନିତ ହୋଇ ଏକମାସାବଧି ଅବସ୍ଥାନ କରିଥିଲେ । ସେଠାରେ ଅବସ୍ଥାନ କାଳରେ ସେ ଲୋକମାନଙ୍କ ମଧ୍ୟରେ ଭଗବତ୍ ପ୍ରେମ ପ୍ରଚାର କରିଥିଲେ । ଏହାପରେ ଶ୍ରୀ ଜୟଦେବ ସ୍ୱ ଆଶ୍ରମକୁ ଫେରିବା

ପାଇଁ ଇଚ୍ଛାପ୍ରକାଶ କରିବାରୁ ବିଦାୟ ସମୟରେ ତାଙ୍କର କୃପାଭିଳାଷୀ ଧର୍ମ ବଣିକ ଭକ୍ତକବିଙ୍କ ପ୍ରେୟସୀ ପଦ୍ମାବତୀଙ୍କ ପାଇଁ ବସ୍ତ୍ର ହାର, ମାଳା, ମୋତି,ମାଣିକ୍ୟ ଓ ସ୍ୱର୍ଣ୍ଣାଳଙ୍କାର ଉପହାର ସ୍ୱରୂପ ଏକ ବିଶ୍ୱସ୍ତ ଶକଟବାହକ ହସ୍ତରେ ପଠାଇଥିଲେ ।

ଭକ୍ତାଗ୍ରଣୀ ଶ୍ରୀ ଜୟଦେବ ଶକଟାରୋହଣ ପୂର୍ବକ ସ୍ୱ ଗୃହକୁ ପ୍ରତ୍ୟାବର୍ତ୍ତନ କଲେ । ପଥମଧ୍ୟରେ ଶକଟ ବାହକ ଗୁରୁତର କାର୍ଯ୍ୟ ଉପଲକ୍ଷ୍ୟରେ ତାଙ୍କର ଅନୁମତି ନେଇ ଗୃହକୁ ଫେରିଆସିବାରୁ ସେ ନିଜେ ଶକଟ ଚାଳନ କରିବାକୁ ବାଧ୍ୟ ହେଲେ । ଏହି ସମୟରେ ଦୁଇଜଣ କ୍ରୂରକର୍ମା, ନୃଶଂସ ଦସ୍ୟୁ ଧନଲୁଣ୍ଠନ ଉଦ୍ଦେଶ୍ୟରେ ତାଙ୍କ ଗାଡ଼ି ପାଖେ ପାଖେ ଚାଲିବାକୁ ଲାଗିଲେ । ଶ୍ରୀ ଜୟଦେବ ସେମାନଙ୍କ ସନ୍ତୋଷ ବିଧାନ ନିମିତ୍ତ ମୂଲ୍ୟବାନ ଧନରତ୍ନପୂର୍ଣ୍ଣ ଶକଟଟିକୁ ସେମାନଙ୍କୁ ଅର୍ପଣ କରି ପଦବ୍ରଜୀ ହେଲେ । କିନ୍ତୁ ନିର୍ଦ୍ଦୟ ଦସ୍ୟୁଦ୍ୱୟ ଧରାପଡ଼ିଯିବା ଆଶଙ୍କାରେ ଭକ୍ତବରଙ୍କ ହସ୍ତଦୋହ ଛେଦନ ପୂର୍ବକ ତାଙ୍କୁ ଏକ ଗର୍ତ୍ତରେ ନିକ୍ଷେପ କରି ଶକଟ ଚଳାଇ ନେଲେ ।

ଏକଦା ନୃପତିଙ୍କର ଅଧିପତି ପ୍ରଦୋଷ ସମୟରେ ଉକ୍ତ ଅରଣ୍ୟରେ ମୃଗୟା କରିବା ସମୟରେ ଏକ ଗର୍ତ୍ତମଧ୍ୟରୁ ଦିବ୍ୟଜ୍ୟୋତିଃ ବିକୀର୍ଣ୍ଣ ହେଉଥିବାର ଦେଖି ସେଠାରେ ଛିନ୍ନ ହସ୍ତପଦବିହୀନ ପରମ ବୈଷ୍ଣବ ଶ୍ରୀ ଜୟଦେବଙ୍କୁ ଧ୍ୟାନମଗ୍ନ ଅବସ୍ଥାରେ ଦେଖି ଅତ୍ୟନ୍ତ ବିସ୍ମିତ ହେଲେ । ସେ ତାଙ୍କୁ ଶିବିକାରେ ବସାଇ ସ୍ୱ ଅନ୍ତଃପୁରକୁ ଆଣାଇଲେ ଏବଂ ସିଂହାସନରେ ବସାଇ ଭକ୍ତିପୂର୍ଣ୍ଣ ଚିତ୍ତରେ ତାଙ୍କ ସେବାରେ ନିରତ ହେଲେ । ତାଙ୍କ ଉପଦେଶ ଅନୁଯାୟୀ ରାଜା ପରମାର୍ଥ ଲାଭ ନିମିତ୍ତ ବୈଷ୍ଣବମାନଙ୍କ ସେବାଶୁଶ୍ରୂଷାରେ କାଳାତିପାତ କଲେ ।

ରାଜାଙ୍କ ଅତିଥି ପରିଚର୍ଯ୍ୟା ବିଷୟ ସର୍ବତ୍ର ପ୍ରଚାରିତ ହେବାରୁ ଉକ୍ତ ଦସ୍ୟୁଦ୍ୱୟ ଗୋପୀଚନ୍ଦନରେ ସର୍ବାଙ୍ଗରେ ଦ୍ୱାଦଶ ବୈଷ୍ଣବ ତିଳକ ମାରି ସାଧୁଙ୍କ ବେଶଭୂଷା ପରିଧାନ ପୂର୍ବକ ରାଜଦ୍ୱାରରେ ଉପଗତ ହେଲେ । ସିଂହାସନାରୂଢ଼ ଭକ୍ତ ଶ୍ରୀ ଜୟଦେବ ଏ ଦୁହିଁଙ୍କ ପ୍ରତି ହିଂସାପରାୟଣ ନ ହୋଇ ନିଜେ ସିଂହାସନରୁ ତଳକୁ ଆସି ସେମାନଙ୍କୁ ଆଲିଙ୍ଗନ କଲେ । ତାଙ୍କ ନିର୍ଦ୍ଦେଶରେ ଅଧିକ ଆଗ୍ରହ ଓ ତତ୍ପରତା ସହିତ ସେ ଦୁହିଁଙ୍କ ପରିଚର୍ଯ୍ୟା କରାଗଲା । କିନ୍ତୁ ଛଦ୍ମବେଶୀ ସାଧୁଦ୍ୱୟ ସେଠାରେ ଅବସ୍ଥାନ କାଳରେ ଧରାପଡ଼ିଯିବା ଆଶଙ୍କାରେ ସର୍ବଦା ଭୟ ଓ ଅଶାନ୍ତିରେ କାଳ କାଟିଲେ ।

ପରିଶେଷରେ ସେମାନେ ବିଦାୟ ନେଇ ଯିବାବେଳେ ରାଜା ଦୁଇଟି ଶଗଡ଼ରେ ମୂଲ୍ୟବାନ ବେଶଭୂଷା, ଅଳଙ୍କାର ଓ ଧନରତ୍ନ ଲଦି ଜଙ୍ଗଲ ମଧ୍ୟରେ ସେମାନଙ୍କ ନିରାପଦ ଯାତ୍ରା ନିମିତ୍ତ ଦୁଇଜଣ ସୈନିକ ପଠାଇଥିଲେ । ସେମାନଙ୍କ

ପ୍ରତି ଶ୍ରୀ ଜୟଦେବଙ୍କ ବିଶେଷ ଅନୁଗ୍ରହର କାରଣ ପଚାରିବାରୁ ସେମାନେ କହିଲେ ଯେ, ପୂର୍ବେ ସେମାନେ ଜଣେ ରାଜାଙ୍କ ଅଧୀନରେ ରାଜଭୃତ୍ୟ ଭାବରେ କାର୍ଯ୍ୟ କରୁଥିବା ସମୟରେ ଅପରାଧରେ ଅଭିଯୁକ୍ତ ମନ୍ତ୍ରୀ ଶ୍ରୀ ଜୟଦେବଙ୍କୁ ମୃତ୍ୟୁଦଣ୍ଡ ଦେବାପାଇଁ ରାଜାଦେଶ ପାଇଥିଲେ । କିନ୍ତୁ ସେମାନେ ଦୟାପରବଶ ହୋଇ ତାଙ୍କୁ ନ ମାରି ହାତଗୋଡ଼ କାଟି ଗୋଟିଏ ଗର୍ତ୍ତରେ ପକାଇଦେଇ ଚାଲିଗଲେ । ମହାତ୍ମା ଜୟଦେବଙ୍କ ନାମରେ ଏପରି ସଂପୂର୍ଣ୍ଣ ମିଥ୍ୟା ସଂବାଦ ଦେବାମାତ୍ରେ ଧରଣୀ ହଠାତ୍ ବିଦୀର୍ଣ୍ଣ ହୋଇ ଉକ୍ତ ମହାପାପୀ ଯୁଗଳଙ୍କୁ ଗ୍ରାସ କରିଦେଲେ ।

ଭୟ ଓ ବିସ୍ମୟାଭିଭୂତ ଦୁଇ ସୈନିକ ରାଜଗୃହକୁ ଫେରିଆସି ରାଜା ଓ ସାଧୁ ଜୟଦେବଙ୍କୁ ପାପୀଙ୍କ ନିଧନ ବୃତ୍ତାନ୍ତ ଜଣାଇଦେଲେ । ଏପରି ଆକସ୍ମିକ ମୃତ୍ୟୁ ସଂବାଦରେ ଶୋକରେ ଅଧୀର ହୋଇ ସାଧୁପ୍ରବର ସେ ଦୁହିଁଙ୍କ ମୁକ୍ତି ପାଇଁ ନାରାୟଣଙ୍କ ନିକଟରେ ପ୍ରାର୍ଥନା କଲେ । ତାଙ୍କର ପ୍ରାର୍ଥନାରେ ପରିତୁଷ୍ଟ ହୋଇ ନାରାୟଣ ଚତୁର୍ଭୁଜ ରୂପରେ ତାଙ୍କ ସମ୍ମୁଖରେ ଆବିର୍ଭୂତ ହୋଇଥିଲେ । ତାଙ୍କର ଦର୍ଶନରେ ଶ୍ରୀ ଜୟଦେବଙ୍କ ଛିନ୍ନ ହସ୍ତପଦ ପୁନର୍ବାର ଉଦ୍‌ଗତ ହେଲା । ଭକ୍ତଙ୍କ ପ୍ରତି ଭଗବାନଙ୍କ ଏପରି ଦୟା ପ୍ରଦର୍ଶନରେ ରାଜା ଓ ବୈଷ୍ଣବମାନେ ଭକ୍ତିରସାପ୍ଲୁତ ଚିତ୍ତରେ ଶ୍ରୀ ଜୟଦେବଙ୍କ ବନ୍ଦନା କରିଥିଲେ ।

ପରମ ବୈଷ୍ଣବ ଜୟଦେବଙ୍କୁ ଭଗବାନଙ୍କ ଏକ ଅବତାର ରୂପେ ଜ୍ଞାନକରି ରାଜା ତାଙ୍କର ପ୍ରେୟସୀ ପଦ୍ମାବତୀଙ୍କୁ ସମ୍ମାନ ପ୍ରଦର୍ଶନ ଉଦ୍ଦେଶ୍ୟରେ ସ୍ୱ ଅନ୍ତଃପୁରକୁ ଅଣାଇଥିଲେ । ରାଜାଙ୍କ ନିର୍ଦ୍ଦେଶରେ ରାଣୀମାନେ ତାଙ୍କୁ ଦେବତାଙ୍କ ପରି ପୂଜା କରିବାକୁ ଲାଗିଲେ । ଦିନେ ରାଜାଙ୍କ ଭାଇ ସ୍ୱଜନଙ୍କ ମୃତ୍ୟୁ ଘଟିବାରୁ ତାଙ୍କର ପତ୍ନୀ ମୃତ ପତିଙ୍କ ଚିତାରୋହଣ ଦ୍ୱାରା ପ୍ରାଣ ବିସର୍ଜନ କରିଥିଲେ । ଏହା ଶୁଣି ସତୀ ଶିରୋମଣି ପଦ୍ମାବତୀ ମତପ୍ରକାଶ କଲେ ଯେ, ସ୍ୱାମୀଙ୍କ ମୃତ୍ୟୁ ଦର୍ଶନରେ ଯେଉଁ ସ୍ତ୍ରୀର ପ୍ରାଣ ଚାଲିଯାଏ ସେ ପ୍ରକୃତରେ ସତୀ ପଦବାଚ୍ୟା ।

ତାଙ୍କର ଏହି ଉକ୍ତିର ସତ୍ୟତା ପରୀକ୍ଷା ପାଇଁ ରାଣୀ ଏକ ଉପାୟ ଚିନ୍ତା କଲେ । ତାଙ୍କ ନିର୍ଦ୍ଦେଶରେ ରାଜ୍ୟର ମନ୍ତ୍ରୀ ମୃଗୟା ବିହାରଗତ ରାଜାଙ୍କ ସହ ବନକୁ ଯାଇଥିବା ଜୟଦେବ ସ୍ୱାମୀଙ୍କୁ ବାଘ ମାରିପକାଇଲା ବୋଲି ଏକ ମିଥ୍ୟା ସଂବାଦ ଏକ ଦୂତ ହସ୍ତରେ ରାଣୀଙ୍କ ନିକଟକୁ ପଠାଇଥିଲେ । ଏହା ଶୁଣି ରାଣୀ କପଟରେ କାନ୍ଦି କାନ୍ଦି ଆସି ଏହି ଦୁଃସମ୍ବାଦ ପଦ୍ମାବତୀଙ୍କୁ ଜଣାଇଦେଲେ । ପ୍ରାଣାଧିକ ସ୍ୱାମୀଙ୍କ ମୃତ୍ୟୁସଂବାଦ ଶୁଣିବା ମାତ୍ରେ ପତିପ୍ରାଣା ପଦ୍ମାବତୀ ପ୍ରାଣ ହରାଇ ଭଳି ମୂର୍ଚ୍ଛିତା ହୋଇ ପଡ଼ିଗଲେ ।

ମୃଗୟା ପ୍ରତ୍ୟାବୃତ ରାଜା ମନ୍ତ୍ରୀଙ୍କ ଠାରୁ ଏହାର ତଥ୍ୟ ବୁଝି କ୍ରୋଧ ଓ ଶୋକରେ ଅଧୀର ହୋଇପଡ଼ିଲେ । ସେ ନାରୀବଧ ଜନିତ ମହାପାପରେ ପ୍ରାୟଶ୍ଚିତ ସ୍ୱରୂପ ନିଜ ଜୀବନୋତ୍ସର୍ଗ କରିବା ପାଇଁ ଉଦ୍ୟତ ହେବାରୁ ମହାପ୍ରାଣ ଅବିଚଳିତ-ମତି ଶ୍ରୀ ଜୟଦେବ ତାଙ୍କୁ ଏଥିରୁ ନିବୃତ୍ତ ହେବାପାଇଁ ଉପଦେଶ ଦେଲେ ।

ତଦନନ୍ତର ସେ ପଦ୍ମାବତୀଙ୍କ ପ୍ରାଣହୀନ ଶରୀର ନିକଟରେ ବସି ବୀଣା-ବାଦନ ପୂର୍ବକ ଶ୍ରୀ ଗୀତଗୋବିନ୍ଦର ଚବିଶଟି ଅଷ୍ଟପଦୀ ଗୀତ ମଧୁର କଣ୍ଠରେ ଗାନ କରିବାକୁ ଲାଗିଲେ । ତାଙ୍କର ପ୍ରାଣସ୍ପର୍ଶୀ ଅମୃତତ୍ତ୍ୱ ପ୍ରଦାୟିନୀ ଶ୍ରୀହରି କୀର୍ତ୍ତନ ଧ୍ୱନି ଶ୍ରବଣ କରି ପ୍ରଭୁ ନାରାୟଣଙ୍କ ସେଠାରେ ଅଦୃଶ୍ୟ ଭାବରେ ଆବିର୍ଭାବ ଘଟିଥିଲା । ଏହାଫଳରେ ବିଗତପ୍ରାଣ ପଦ୍ମାବତୀଙ୍କ ଶରୀରରେ ପୁନର୍ବାର ପ୍ରାଣସଂଚାର ଘଟିଥିଲା । ତାଙ୍କର ଜୀବନ୍ୟାସ ସମୟରେ ସ୍ୱର୍ଗରୁ ପୁଷ୍ପବୃଷ୍ଟି ହେଲା । ବୈଷ୍ଣବମାନେ ଆନନ୍ଦରେ ହରିଧ୍ୱନି କଲେ । ରାଜା ଭକ୍ତି ବିନମ୍ର ଚିତ୍ତରେ ଅସାଧ୍ୟସାଧନକାରୀ ମହାତ୍ମା ଜୟଦେବଙ୍କୁ ସାଷ୍ଟାଙ୍ଗ ପ୍ରଣିପାତ ପୂର୍ବକ ଅଭ୍ୟର୍ଥନା କରିଥିଲେ ।

ପ୍ରକାଶ ଥାଉକି, ମରହଟ୍ଟୀ 'ଭକ୍ତିବିଜୟ' ଗ୍ରନ୍ଥରେ ଶ୍ରୀ ଜୟଦେବଙ୍କ ଗଙ୍ଗାସ୍ନାନ ଓ ଶ୍ରୀବୃନ୍ଦାବନ ଧାମକୁ ଯାତ୍ରା ସମ୍ବନ୍ଧରେ କୌଣସି ଉଲ୍ଲେଖ ନ ଥିବାରୁ ଏହି ଦୁଇଟି ଅଲୌକିକ ଜନଶ୍ରୁତି ପରବର୍ତ୍ତୀ କାଳରେ ପ୍ରଚଳିତ ହୋଇଥିଲା ।

## ବଙ୍ଗଳା 'ଭକ୍ତମାଳ' ଗ୍ରନ୍ଥରେ ଶ୍ରୀ ଜୟଦେବ ଚରିତ —

ଶ୍ରୀକୃଷ୍ଣ ଦାସ ବାବାଜୀ ନାମକ ଜଣେ ବଙ୍ଗୀୟ ବୈଷ୍ଣବ କବି ବୃନ୍ଦାବନ-ବାସୀ ମହାମତି ପ୍ରିୟା ଦାସଙ୍କ ଦ୍ୱାରା ବ୍ରଜଭାଷାରେ ଲିଖିତ 'ଶ୍ରୀ ଭକ୍ତମାଳ' ଗ୍ରନ୍ଥ ଅବଲମ୍ବନରେ ବଙ୍ଗଳା ଭାଷାରେ 'ଭକ୍ତମାଳ' ଗ୍ରନ୍ଥ ରଚନା କରିଥିଲେ । (୪) ଏହାର ରଚନା ସମୟ ଗ୍ରନ୍ଥରେ ଦିଆଯାଇ ନ ଥିଲେ ମଧ୍ୟ ଏଥିରେ ସନ୍ନିବିଷ୍ଟ ନୂତନ ଜନଶ୍ରୁତି ଗୁଡ଼ିକ ବିଚାର କଲେ ଏହା ଅଷ୍ଟାଦଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ ରଚିତ ହୋଇଥିବାର ସ୍ଥିର କରାଯାଇ ପାରେ । ଗ୍ରନ୍ଥ ରଚନାର କାରଣ କବି ନିମ୍ନୋକ୍ତ ପଂକ୍ତିଚୟରେ ପ୍ରକାଶ କରିଛନ୍ତି । ଯଥା—

"ବନ୍ଦୋ ଶ୍ରୀ ଅଗର ଦାସ ଯାର ଶିଷ୍ୟ ନାଭା
ତେଁହୋ କୈଲା ଭକ୍ତମାଳ ସଜ୍ଜନେର ଲୋଭା ।

---

(୪) କଲିକତାର ବସୁମତୀ ସାହିତ୍ୟ ମନ୍ଦିର ଦ୍ୱାରା ୧୯୨୨ ଖ୍ରୀଷ୍ଟାବ୍ଦରେ ପ୍ରକାଶିତ ।

ଗୃହସ୍ଥେର ଭାଗବତଗଣେର ଚରିତ
‘ଭକ୍ତମାଳ’ ଗ୍ରନ୍ଥ କୈଲ ପରମ ପବିତ ॥

× × ×

ପ୍ରିୟା ଦାସେ ଆଜ୍ଞା ଦିଲ ଟୀକା ବିସ୍ତାରିତେ
ବୃନ୍ଦାବନବାସୀ ପ୍ରିୟା ଦାସ ମହାମତି,
ବିଚକ୍ଷଣ ବୁଦ୍ଧି ଶୁଦ୍ଧ ଭକ୍ତମତ ରତି ॥
ଅଳ୍ପାକ୍ଷରେ ବହୁଅର୍ଥ ଅନୁପ୍ରାସ ଯମକ
ଭକ୍ତଗଣେର ଗୀତ ବର୍ଣ୍ଣେ ସନ୍ଧାନ ପୂର୍ବକ ॥
ତାହାର ଚରଣ ବନ୍ଦୋ ଅଭୀଷ୍ଟ ଲାଗିୟା,
ଗ୍ରନ୍ଥ ପ୍ରକାଶିଲ ଯିନି ଟୀକା ବିସ୍ତାରିୟା ।
ଗ୍ରନ୍ଥ ହୟେ ବ୍ରଜଭାଷା ସବ ବୁଝେ ନାହିଁ ।
ସେ ହେତୁ ଗୌଡ଼ୀୟ ବାକ୍ୟେ ଶ୍ରେଣୀମତ କହି ॥

ପ୍ରିୟା ଦାସଙ୍କ ‘ଶ୍ରୀ ଭକ୍ତମାଳ’ ଗ୍ରନ୍ଥ ଅବଲମ୍ବନରେ ଏହି ଗ୍ରନ୍ଥ ରଚିତ ହୋଇଥିଲେ ମଧ୍ୟ ଏଥିରେ ଶ୍ରୀ କୃଷ୍ଣଦାସ ବାବାଜୀ କେତେକ ନୂତନ ଜନଶ୍ରୁତି ସନ୍ନିବେଶ କରିଛନ୍ତି । ଯଥା —

(କ) ଶ୍ରୀକୃଷ୍ଣ ଛଦ୍ମବେଶରେ ଶ୍ରୀ ଜୟଦେବଙ୍କ ଘର ଛପର କରିଥିଲେ ।

(ଖ) ଆଉ ଏକ ଦିନରେ ଶ୍ରୀହରି ଶ୍ରୀ ଜୟଦେବ ରୂପ ଧାରଣ କରି ପଦ୍ମା ହସ୍ତପାକ ଅନ୍ନ ଭୋଜନ କରିଥିଲେ ।

(ଗ) ଦସ୍ୟୁଗଣ ସାଧୁ ଜୟଦେବଙ୍କ ହାତପାଦ ହାଣିଦେଇ ତାଙ୍କୁ ଏକ କୂଅରେ ପକାଇ ଦେଇଥିଲେ ।

(ଘ) ଅଦ୍ୟାପି ମାଳାକାର କନ୍ୟାର ବଂଶଧରମାନେ ଶ୍ରୀଜଗନ୍ନାଥଙ୍କ ସମ୍ମୁଖରେ ଶ୍ରୀ ଗୀତଗୋବିନ୍ଦ ଗାନ କରୁଛନ୍ତି ।

“ଜଗନ୍ନାଥ ସମ୍ମୁଖେ ସେ ପରମ ଆନନ୍ଦେ
ଗାଇଲେ ଗୋବିନ୍ଦ ଗୀତ ପରମ ପ୍ରବନ୍ଧେ ॥
ଅଦ୍ୟାପିହ ତାହାର ସନ୍ତାନ ପ୍ରଭୁ ଆଗେ ।
ଶ୍ରୀ ଗୀତଗୋବିନ୍ଦ ଗାନ କରେ ସନ୍ଧ୍ୟାଭାଗେ ॥

## (୭) ଶ୍ରୀ ଜୟଦେବଙ୍କ ବୃନ୍ଦାବନ ଯାତ୍ରା —

ଶ୍ରୀ ଜୟଦେବ ବୃନ୍ଦାବନ ଯାତ୍ରା କରିବା ସମୟରେ ତାଙ୍କର ଇଷ୍ଟଦେବ ଶ୍ରୀ ରାଧାମାଧବ ବିଗ୍ରହ ଭକ୍ତ ପ୍ରତି ଅନୁଗ୍ରହ ପ୍ରଦର୍ଶନ ପୂର୍ବକ ଅତି କ୍ଷୁଦ୍ରାକାର ଧାରଣ କରିଥିଲେ । ତେଣୁ ସେ ଏହି କ୍ଷୁଦ୍ର ବିଗ୍ରହଙ୍କୁ ଅକ୍ଲେଶରେ ନିଜ ଝୁଲି ଭିତରେ ରଖି ବୃନ୍ଦାବନ ପ୍ରତି ଅଗ୍ରସର ହେଲେ । ସେଠାରେ ଜନୈକ ଭକ୍ତ ମହାଜନ ପୂର୍ବ ରୂପ ଧାରଣ କରିଥିବା ଶ୍ରୀ ରାଧାମାଧବ ବିଗ୍ରହଙ୍କ ପାଇଁ ଶ୍ରୀ ଜୟଦେବଙ୍କ ବାସସ୍ଥାନ କେଶୀ-ଘାଟ ନିକଟରେ ଏକ ମନ୍ଦିର ନିର୍ମାଣ କରିଥିଲେ । ସନ୍ଥପ୍ରବର ଶ୍ରୀ ଜୟଦେବ ଅପ୍ରକଟ ହେଲା ପରେ ଏହି ବିଗ୍ରହ ଜୟପୁର ରାଜ୍ୟର ଘାଟୀ ନାମକ ସ୍ଥାନରେ ପ୍ରତିଷ୍ଠିତ ହୋଇଥିଲେ । ଯଥା —

"କବିରାଜ ଅପ୍ରକଟେ ବହୁ କାଳ ପରେ
ଠାକୁର ଲଇଯା ରାଜା ଗେଲା ଜୟପୁରେ ॥
ଅଦ୍ୟାବଧି ତଥା ଘାଟୀ ନାମ ରମ୍ୟ ସ୍ଥାନେ,
ବିରାଜ କରଯେ ବୃଁଦ ଝୁଲିକେ ବନ୍ଦନେ ॥
ପରମ ସୁନ୍ଦର ରୂପ ଭୁବନ ମୋହନ ।
ବିଜୁରି ଚମକେ ଯେନ ଅଙ୍ଗେର କିରଣ ॥ (୫)

## ଓଡ଼ିଆ "ଦାର୍ଢ୍ୟତାଭକ୍ତି ରସାମୃତ" —

ଶ୍ରୀକୃଷ୍ଣ ଦାସ ବାବାଜୀ କୃତ ବଙ୍ଗଳା 'ଭକ୍ତମାଳ' ଗ୍ରନ୍ଥ ଅବଲମ୍ବନରେ ଶ୍ରୀରାମ ଦାସ ଓଡ଼ିଆରେ 'ଦାର୍ଢ୍ୟତାଭକ୍ତି ରସାମୃତ' ରଚନା କରିଥିବା ନିଃସନ୍ଦେହରେ ସ୍ଥିର କରାଯାଇ ପାରେ । କାରଣ ଶ୍ରୀ ଜୟଦେବଙ୍କ ବୃନ୍ଦାବନ ଯାତ୍ରା ପ୍ରସଙ୍ଗ ବୃନ୍ଦାବନ ବାସ ପ୍ରିୟା ଦାସ, ପ୍ରସିଦ୍ଧ ମୈଥିଳ ପଣ୍ଡିତ ଚନ୍ଦ୍ରଦତ୍ତ ଓ ମହାରାଷ୍ଟ୍ରୀୟ ସନ୍ଥ ମହୀପତିଙ୍କ ଦ୍ୱାରା ବର୍ଣ୍ଣିତ ହୋଇ ନ ଥିଲେ ମଧ୍ୟ ପ୍ରଥମେ ବଙ୍ଗୀୟ ବୈଷ୍ଣବ ଶ୍ରୀକୃଷ୍ଣ ଦାସ ବାବାଜୀଙ୍କ ଦ୍ୱାରା ବର୍ଣ୍ଣିତ ହୋଇଅଛି । ତାହାର ଅନୁକରଣରେ ଶ୍ରୀରାମ ଦାସ ଶ୍ରୀ ଜୟଦେବ ତାଙ୍କର ଇଷ୍ଟଦେବ ଶ୍ରୀ ରାଧାମାଧବ ଠାକୁରଙ୍କୁ ଝୁଲିରେ ପୂରାଇ ବୃନ୍ଦାବନ ନେବା ବିଷୟ ଲେଖିଛନ୍ତି । ଯଥା—

"ଏମନ୍ତ ଶୁଣି କବିବର । ଝୁଲିରେ ପୂରାଇ ଠାକୁର ॥
ଯାଇଁ ଦେଖିଲା ବୃନ୍ଦାବନ । ପୁଲକ ଉଠେ ଘନ ଘନ ॥
କେଶୀଘାଟର ସନ୍ନିଧାନେ । ରହିଲା ପ୍ରେମାନନ୍ଦ ମନେ ॥

---

(୫) 'ଭକ୍ତମାଳ' ଦ୍ୱାଦଶମାଳା, ପୃ ୧୩୬—୧୩୭

ରାଧାମାଧବ ରୂପ ଗୃହିଁ । ସେ ଧର୍ମ ଦ୍ରବୀଭୂତ ହୋଇ ॥
ତୋଳାଇ ଦେଲେକ ମନ୍ଦିର । ତହିଁରେ ରହିଲେ ଠାକୁର ॥
ହୁଅନ୍ତେ କବି ଅପ୍ରକଟ । ଠାକୁରେ ଜୟପୁର ରାଟ ॥
ଘେନାଇ ଗଲା ନିଜ ରାଜ୍ୟେ । ଅଦ୍ୟାପି ସେଠାରେ ବିରାଜେ ॥
ରାଧାମାଧବ ମନୋହର । ସ୍ୱରୂପ ତୈଲୋକ୍ୟ ଠାକୁର ॥
ଶ୍ରୀମୁଖ ଚନ୍ଦ୍ରୁ ଅଧିକ । ଶ୍ରୀଅଙ୍ଗେ ବିଜୁଳି ଝଟକ ॥" (୬)

ଖୋଦ ବୃନ୍ଦାବନ-ବାସୀ ପ୍ରିୟା ଦାସ ୧୭୧୨ ଖ୍ରୀଷ୍ଟାବ୍ଦରେ କେଶୀ-ଘାଟରେ ସନ୍ଥ ଶ୍ରୀ ଜୟଦେବ ପ୍ରତିଷ୍ଠିତ ରାଧାମାଧବ ବିଗ୍ରହ ସମ୍ବନ୍ଧରେ କୌଣସି ଉଲ୍ଲେଖ କରିନାହାନ୍ତି । କାରଣ ୧୭୨୮ ଖ୍ରୀଷ୍ଟାବ୍ଦରେ ଜୟପୁର ନଗର ପ୍ରତିଷ୍ଠା ଏବଂ ୧୭୪୦ ଖ୍ରୀଷ୍ଟାବ୍ଦରେ ଜୟପୁରରେ ଅନୁଷ୍ଠିତ ବୈଷ୍ଣବ ସମ୍ମିଳନୀରେ ଉତ୍କଳର ପ୍ରସିଦ୍ଧ ବୈଷ୍ଣବ ପଣ୍ଡିତ ଶ୍ରୀ ବଳଦେବ ବିଦ୍ୟାଭୂଷଣ ପ୍ରଣୀତ **'ଗୋବିନ୍ଦ ଭାଷ୍ୟ'ର** ସ୍ୱୀକୃତି ପୂର୍ବରୁ ଜୟପୁର ସହିତ ବୃନ୍ଦାବନ ଧାମର କୌଣସି ସଂପର୍କ ପ୍ରତିଷ୍ଠିତ ହୋଇ ନ ଥିଲା । ତେଣୁ ଜୟପୁର ରାଜବଂଶର ପ୍ରଶସ୍ତି ଗାନ ପାଇଁ ଏପରି ଏକ ଜନଶ୍ରୁତି ଅଷ୍ଟାଦଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ ସୃଷ୍ଟ ହୋଇଥିଲା । ମିଥିଳା, ବୃନ୍ଦା-ବନ, ମହାରାଷ୍ଟ୍ର, ଗୌଡ଼ ଓ ଉତ୍କଳ ପ୍ରଭୃତି ଭାରତର ବିଭିନ୍ନ ପ୍ରାନ୍ତରେ ଭିନ୍ନ ଭିନ୍ନ ସମୟରେ ଯଥାକ୍ରମେ ସଂସ୍କୃତ, ହିନ୍ଦୀ, ମରହଟ୍ଟୀ, ବଙ୍ଗଳା ଓ ଓଡ଼ିଆ ଭାଷାରେ ଲିଖିତ 'ଶ୍ରୀ ଜୟଦେବ ଚରିତରେ ନିମ୍ନୋକ୍ତ ଚାରୋଟି ମୁଖ୍ୟ ବିଷୟ ଯଥା (କ) ଶ୍ରୀକ୍ଷେତ୍ରରେ ରୂପଗୁଣସଂପନ୍ନା ଭକ୍ତିମତୀ ପଦ୍ମାବତୀଙ୍କ ସହ ଶ୍ରୀ ଜଗନ୍ନାଥଙ୍କ ପରମ ଭକ୍ତ ଶ୍ରୀକ୍ଷେତ୍ର-ବାସୀ ସନ୍ୟାସୀ ଶ୍ରୀ ଜୟଦେବଙ୍କ ଶୁଭପରିଣୟ (ଖ) ଶ୍ରୀକ୍ଷେତ୍ରରେ ଶ୍ରୀ ଜୟଦେବଙ୍କ ଦ୍ୱାରା ଶ୍ରୀ ଗୀତଗୋବିନ୍ଦ ରଚନା (ଗ) ଶ୍ରୀ ଜଗନ୍ନାଥଙ୍କ ମନ୍ଦିରରେ ନିତ୍ୟ ଗୀତଗୋବିନ୍ଦ ପାଠ ଏବଂ (ଘ) ଉତ୍କଳାଧୀଶଙ୍କ ଦ୍ୱାରା ଶ୍ରୀ ଗୀତଗୋବିନ୍ଦର ସମକକ୍ଷ ଅନ୍ୟ ଏକ ଗୀତଗୋବିନ୍ଦ ରଚନା ସଂପର୍କରେ ସଂପୂର୍ଣ୍ଣ ମତୈକ୍ୟ ପରିଦୃଷ୍ଟ ହୁଏ । ଏଥିମଧ୍ୟରୁ ପ୍ରଥମ ବିଷୟଟି ଉକ୍ତ ଗ୍ରନ୍ଥର ଦ୍ୱିତୀୟ ଅଧ୍ୟାୟରେ ଆଲୋଚିତ ହୋଇଥିବାରୁ ଅନ୍ୟ ତିନୋଟି ବିଷୟର ସତ୍ୟତା ବିଭିନ୍ନ ଲେଖ ଓ ଗ୍ରନ୍ଥରୁ ଉପଲବ୍ଧ ତଥ୍ୟ ସାହାଯ୍ୟରେ ଏବଂ ପ୍ରାଚୀନ ଭାରତରେ ପ୍ରଚଳିତ ପରଂପରା ପ୍ରତି ସମ୍ୟକ୍ ସମ୍ମାନ ପ୍ରଦର୍ଶନ ପୂର୍ବକ ଏଠାରେ ଆଲୋଚନା କରାଗଲା ।

**ଶ୍ରୀଜଗନ୍ନାଥ ମନ୍ଦିରରେ ଶ୍ରୀ ଗୀତଗୋବିନ୍ଦ ରଚନା —**

ପ୍ରାଚୀନ କାଳରେ ପ୍ରସିଦ୍ଧ ଧର୍ମପୀଠ ଗୁଡ଼ିକରେ ଅବସ୍ଥିତ ଲୋକବିଶ୍ରୁତ ଦେବାଳୟ ସମୂହରେ ବହୁ ପ୍ରଖ୍ୟାତନାମା କବି ପଣ୍ଡିତ ସ୍ୱ ସ୍ୱ ଗ୍ରନ୍ଥ ରଚନା କରି-

(୬) 'ହାର୍ଦ୍ଦିତା ଭକ୍ତ ରସାମୃତ' ପଞ୍ଚାଶତ୍ତମ ଅଧ୍ୟାୟ, ପୃ ୪୩୧

ଥିବାର ଜଣାଯାଏ । ଏ ସଂପର୍କରେ ସଂସ୍କୃତ ସାହିତ୍ୟରେ ମହାକବି କାଳିଦାସଙ୍କ ତୁଲ୍ୟ ଖ୍ୟାତିଲାଭ କରିଥିବା ମହାକବି ଭବଭୂତିଙ୍କ ନାମ ସର୍ବାଦୌ ଉଲ୍ଲେଖଯୋଗ୍ୟ । ତାଙ୍କ ଦ୍ୱାରା ରଚିତ 'ମହାବୀର ଚରିତମ୍' 'ଉତ୍ତର ରାମଚରିତମ୍' ଓ 'ମାଳତୀ ମାଧବମ୍' ନାମକ ପ୍ରସିଦ୍ଧ ନାଟକତ୍ରୟ ଭଗବାନ **କାଳପ୍ରିୟନାଥ**ଙ୍କ ଯାତ୍ରା ସମୟରେ ଅଭିନୀତ ହୋଇଥିବା ପ୍ରତ୍ୟେକ ନାଟକର ପ୍ରସ୍ତାବନାରେ ଥିବା ସୂତ୍ରଧାରଙ୍କ ଉକ୍ତିରୁ ଜଣାଯାଏ ।

(କ) **'ମହାବୀର ଚରିତମ୍'** — "(ନାନ୍ଦ୍ୟନ୍ତେ) ସୂତ୍ରଧାରଃ — **ଭଗବତଃ କାଳପ୍ରିୟନାଥସ୍ୟ ଯାତ୍ରାୟାଂ** ଆର୍ଯ୍ୟମିଶ୍ରାଃ ସମାଦିଶନ୍ତି ।"

(ଖ) **'ଉତ୍ତର ରାମଚରିତମ୍'** — "ନାନ୍ଦ୍ୟନ୍ତେ ସୂତ୍ରଧାରଃ-ଅଲମତିବିସ୍ତରେଣ । ଅଥ ଖଳୁ **ଭଗବତଃ କାଳପ୍ରିୟନାଥସ୍ୟ ଯାତ୍ରାୟାମ୍** ଆର୍ଯ୍ୟମିଶ୍ରାନ୍ ବିଜ୍ଞାପୟାମି" ।

(ଗ) **'ମାଳତୀ ମାଧବମ୍'** — (ନେପଥ୍ୟାଭିମୁଖ ମବଲୋକ୍ୟ) × × ସନ୍ନିପତିତଶ୍ଚ **ଭଗବତଃ କାଳପ୍ରିୟନାଥସ୍ୟ ଯାତ୍ରା ପ୍ରସଙ୍ଗେନ** ନାନାଦିଗନ୍ତବାସ୍ତବ୍ୟୋ ଜନଃ । (୭)

'କାବ୍ୟମୀମାଂସା' ଅଳଙ୍କାରର ସଂପାଦକ ଯଶୋବର୍ମାଙ୍କ ରାଜଧାନୀ ପ୍ରସିଦ୍ଧ କାନ୍ୟକୁବ୍ଜ ନଗରୀରେ 'କାଳପ୍ରିୟନାଥ'ଙ୍କ ମନ୍ଦିରର ଅବସ୍ଥିତି ନିର୍ଣ୍ଣୟ କରିଛନ୍ତି । (୮) କାଶ୍ମୀରର ପ୍ରସିଦ୍ଧ ଇତିହାସ **'ରାଜତରଙ୍ଗିଣୀ'** ଗ୍ରନ୍ଥ ଅନୁସାରେ କବିବାକ୍ପତି ରାଜ ଓ ମହାକବି ଭବଭୂତି କାନ୍ୟକୁବ୍ଜାଧିଶ ଯଶୋବର୍ମାଙ୍କ ସଭାମଣ୍ଡନ କରୁଥିଲେ । (୯) ଅତଏବ ମହାକବି ଭବଭୂତି ସ୍ୱୀୟ ପୃଷ୍ଠପୋଷକ କାନ୍ୟକୁବ୍ଜାଧିପ ଯଶୋବର୍ମାଙ୍କ ଇଷ୍ଟଦେବତା କାଳପ୍ରିୟ ନାଥଙ୍କ ମନ୍ଦିରରେ ତାଙ୍କ ଯାତ୍ରା ସମୟରେ ତାଙ୍କର ତିନୋଟିଯାକ ନାଟକ ଅଭିନୀତ କରାଇଥିଲେ ।

ମହାକବି ଭବଭୂତିଙ୍କ ପଦାଙ୍କ ଅନୁସରଣ କରି ମହାକବି ମୁରାରି ତାଙ୍କର ପ୍ରସିଦ୍ଧ ଅନର୍ଘ-ରାଘବ-ନାଟକ ମହୋଦଧି ବେଳାସ୍ଥିତ ତମାଳ ବନରେ ପୂଜିତ

---

(୭) ଏହି ଗ୍ରନ୍ଥତ୍ରୟ ଯଥାକ୍ରମେ 'ଚୌଖମ୍ବା ବିଦ୍ୟାଭବନ', ମୋତିଲାଲ ବନାରସୀ ଦାସଙ୍କ ଦ୍ୱାରା ଓ ଚୌଖମ୍ବା 'ସଂସ୍କୃତ ଗ୍ରନ୍ଥମାଳା' ରୂପେ ପ୍ରକାଶିତ ।

(୮) 'କାବ୍ୟମୀମାଂସା' ଗାଇକୋଓ୍ୱାଡ଼ ପ୍ରାଚ୍ୟ ଗ୍ରନ୍ଥମାଳା ପ୍ରଥମ ଖଣ୍ଡ ପୃ ୧୭୮

(୯) "କବିବାକ୍ପତିରାଜ-ଶ୍ରୀ ଭବଭୂତ୍ୟାଦି ସେବିତଃ
ଜିତୋ । ଯଯୌ ଯଶୋବର୍ମା ତଦ୍ଗୁଣସ୍ତୁତିବନ୍ଦିତାମ୍ ॥

ତ୍ରିଭୁବନନାଥ ମହାନୀଳମଣି ରମାରମଣ ଭଗବାନ ଶ୍ରୀ ପୁରୁଷୋତ୍ତମଙ୍କ ଯାତ୍ରା ସମ୍ପୃକ୍ତରେ ଅଭିନୀତ କରାଇଥିବା ପ୍ରସ୍ତାବନାରେ ସନ୍ନିବିଷ୍ଟ ସୂତ୍ରଧାରଙ୍କ ନିମ୍ନୋକ୍ତ ଉକ୍ତିରୁ ଜଣାଯାଏ ।

"ସୂତ୍ରଧାରଃ — ଅଲମତିବିସ୍ତରେଣ...... ଭୋଭୋ ଲବଣୋଦବେଳା-ବନାଳୀ ତମାଳତରୁକନ୍ଦଳସ୍ୟ ତ୍ରିଭୁବନମୌଳିମଣ୍ଡନ ମହାନୀଳମଣେଃ କମଳା-କୁଚ-କଳସ-କେଳି କସ୍ତୁରିକାପତ୍ରାଙ୍କୁରସ୍ୟ **ଭଗବତଃ ପୁରୁଷୋତ୍ତମସ୍ୟ ଯାତ୍ରାୟାମୁପସ୍ଥାନୀୟାଃ ସଭାସଦଃ**" × ×

ମହାକବି ମୁରାରିଙ୍କ ଉକ୍ତ ବାକ୍ୟରେ ଶ୍ରୀକ୍ଷେତ୍ରସ୍ଥ ଜଗତ୍ପ୍ରସିଦ୍ଧ ପୁରୁଷୋତ୍ତମ ବା ଜଗନ୍ନାଥଙ୍କ ରଥଯାତ୍ରା ଯେ ସୂଚିତ ହେଉଛି ଏଥିରେ କୌଣସି ସନ୍ଦେହ ନାହିଁ । ଏ ସମ୍ପର୍କରେ 'ଅନର୍ଘ ରାଘବ'ର ଦୁଇଜଣ ପ୍ରସିଦ୍ଧ ଟୀକାକାର ବିଷ୍ଣୁଭଟ୍ଟ ଓ ଉତ୍କଳୀୟ କବିରତ୍ନ ପୁରୁଷୋତ୍ତମ ମିଶ୍ରଙ୍କ ବ୍ୟାଖ୍ୟା ଏଠାରେ ଉଦ୍ଧାର କରାଯାଇ ପାରେ । ଉଭୟେ ମହାନୀଳମଣି ପୁରୁଷୋତ୍ତମଙ୍କୁ ଶ୍ରୀ ଜଗନ୍ନାଥ ଓ ତାଙ୍କ ଯାତ୍ରାକୁ ଗୁଣ୍ଡିଚା ବା ରଥଯାତ୍ରା ଅର୍ଥରେ ଗ୍ରହଣ କରିଛନ୍ତି ।

"ଶ୍ରୀ ପୁରୁଷୋତ୍ତମକ୍ଷେତ୍ର ସମ୍ବନ୍ଧିନୋ ଭଗବତୋ ଜଗନ୍ନାଥସ୍ୟ ଯାତ୍ରାୟାଂ ମହୋତ୍ସବେ, ଗୁଣ୍ଡିଚାଦୌ ତ୍ରିଭୁବନମୌଳିଃ ପୁରୁଷୋତ୍ତମାଖ୍ୟଂ ସ୍ଥାନଂ । ଇତି ବିଷ୍ଣୁଭଟ୍ଟଃ । ତ୍ରିଭୁବନସ୍ୟମୌଳିମୁକୁଟଂ ମସ୍ତକଂବା,ତସ୍ୟ ମଣ୍ଡନ ମାଭରଣଂ, ତଦ୍ରୂପ ମହାନୀଳମଣେଃ ଇନ୍ଦ୍ରନୀଳମଣିସ୍ୱରୂପସ୍ୟ । ଏତେନ ସୁରାସୁରମନୁଷ୍ୟବନ୍ଦ୍ୟତ୍ୱ ମୁକ୍ତଂ । ପରମେଶ୍ୱରସ୍ୟ ଇନ୍ଦ୍ରନୀଳମଣିମୟତ୍ୱଂ ଚ ପ୍ରକାରାନ୍ତରେଣୋପେକ୍ଷିତଂ । ଯଦୁକ୍ତଂ ବ୍ରହ୍ମପୁରାଣେ :—

ତସ୍ମିନ୍ନାୟତନେ ପୁଣ୍ୟେ ପ୍ରଖ୍ୟାତେ ପୁରୁଷୋତ୍ତମେ
ଇନ୍ଦ୍ରନୀଳମୟୀ ଶ୍ରେଷ୍ଠା ପ୍ରତିମା ସା କଥା ମିତି ?"

(ରାଜ୍ୟ ସଂଗ୍ରହାଳୟରେ ସଂରକ୍ଷିତ ଅପ୍ରକାଶିତ ଅନର୍ଘରାଘବ ଟୀକା ପୋଥିରୁ ଉଦ୍ଧୃତ ।)

ଇଂରେଜୀ ଭାଷାରେ ସଂସ୍କୃତ ସାହିତ୍ୟର ଇତିହାସ ଲେଖିଥିବା ଦୁଇଜଣ ପଣ୍ଡିତ ଡକ୍ଟର ଏସ୍. ଏନ୍. ଦାସଗୁପ୍ତ ଓ ଡକ୍ଟର ଏସ୍. କେ. ଦେ. ପୁରୀ ଜଗନ୍ନାଥଙ୍କ ମନ୍ଦିରର ନିର୍ମାଣକାଳ ସମ୍ବନ୍ଧରେ ଐତିହାସିକ ପ୍ରମାଣ ଅଭାବରୁ ଅନର୍ଘରାଘବ ନାଟକର 'ପୁରୁଷୋତ୍ତମ' ପଦଦ୍ୱାରା ଜଗନ୍ନାଥ ମହାପ୍ରଭୁ ଲକ୍ଷିତ ହୋଇଥିବା ବିଷୟରେ ସନ୍ଦେହ ପ୍ରକାଶ କରିଛନ୍ତି । କିନ୍ତୁ ଦୁଇଜଣ ପ୍ରସିଦ୍ଧ ପ୍ରାଚୀନ ଟୀକାକାରଙ୍କ ଉଦ୍ଧୃତ ବ୍ୟାଖ୍ୟାନ ଦୃଷ୍ଟେ ସେମାନଙ୍କ ସନ୍ଦେହ ଭିତ୍ତିହୀନ ଓ ପ୍ରାଦେଶିକତା ଦୋଷଦୁଷ୍ଟ ।

ଅଳ୍ପ କେତେଦିନ ପୂର୍ବେ ମଧ୍ୟପ୍ରଦେଶର ମଇହାର ନାମକ ସ୍ଥାନରୁ ଆବିଷ୍କୃତ ଏକ ବିସ୍ତୃତ ଶିଳାଲେଖରେ ଓଡ୍ରଦେଶର ସମୁଦ୍ର କୂଳରେ ଅବସ୍ଥିତ ପୁରୁଷୋତ୍ତମଙ୍କ ଦର୍ଶନ ଓ ଜଳଧିରେ ସ୍ନାନଦ୍ୱାରା ବ୍ରହ୍ମଲୋକ ପ୍ରାପ୍ତି ବିଷୟର ଉଲ୍ଲେଖ ଦେଖାଯାଏ । ଲିପିତତ୍ତ୍ୱ ଦୃଷ୍ଟିରୁ ଏହି ଶିଳାଲେଖଟିକୁ ଦଶମ ଶତାବ୍ଦୀରେ ଅବସ୍ଥାପିତ କରାଯାଇଛି ।

"ସମୁଦ୍ରମଜ୍ଜନାନ୍ନ ମୋଡ୍ରେଷୁ ପୁରୁଷୋତ୍ତମମ୍

ଦୃଷ୍ଟ୍ୱା ତଦାନ୍ତକେ ଭୂୟଃ ପୁରା ଗଚ୍ଛତ୍ୟୟଂ ଶିଶୁଃ (୩୭ ଶ୍ଳୋକ)

× × ×

ତତସ୍ତ ଗଣିତେ ରେବ ଦିବସୈ ର୍ଦୈବଦୁର୍ଲଭଃ

ପ୍ରାପ୍ତବାନ୍ ଜଳଧେସ୍ତୀରଂ ଦୃଷ୍ଟସ୍ତ ପୁରୁଷୋତ୍ତମଃ ॥ ୩୯

ତେନୈବ ଗଚ୍ଛତା ଭୂୟଃ ପରମଂ ବ୍ରହ୍ମଣଃ ପଦମ୍ । "※

× × ×

ତେଣୁ ଦଶମ ଶତାବ୍ଦୀ ପୂର୍ବରୁ ଓଡ୍ରଦେଶରେ ଜଳଧି ତୀରବର୍ତ୍ତୀ ପୁରୁଷୋତ୍ତମ (ଜଗନ୍ନାଥ) ଯେ ସମଗ୍ର ଭାରତବର୍ଷରେ ପ୍ରସିଦ୍ଧି ଲାଭ କରିଥିଲେ, ଏହା ନିଃସଂଶୟରେ ନିର୍ଦ୍ଧାରିତ ହୋଇପାରେ । ଉକ୍ତ ଶିଳାଲେଖ, ବ୍ରହ୍ମପୁରାଣ ଓ ଅନର୍ଘରାଘବ ନାଟକର ଦୁଇଟି ପ୍ରାଚୀନ ଟୀକାରୁ ଉପଲବ୍ଧ ତଥ୍ୟ ସାହାଯ୍ୟରେ ମହାକବି ମୁରାରି କୃତ ଅନର୍ଘରାଘବ ନାଟକ ଶ୍ରୀ ଜଗନ୍ନାଥଙ୍କ ମନ୍ଦିରରେ ମହାପ୍ରଭୁଙ୍କ ରଥଯାତ୍ରା ସମୟରେ ଉପସ୍ଥିତ ପଣ୍ଡିତ-ମଣ୍ଡଳୀ ସମ୍ମୁଖରେ ଅଭିନୀତ ହୋଇଥିବାର ସ୍ଥିର ସିଦ୍ଧାନ୍ତ କରାଯାଇପାରେ ।

ଉତ୍କଳୀୟ କବିରାଜ ଶ୍ରୀ ଜୟଦେବଙ୍କ ସମକାଳୀନ ବା କିଞ୍ଚିତ୍ ପୂର୍ବବର୍ତ୍ତୀ କବୀନ୍ଦ୍ର ଜୟଦେବଙ୍କ 'ପ୍ରସନ୍ନ-ରାଘବମ୍' ନାଟକ ଭଗବାନ୍ ଶଙ୍କରଙ୍କ ଯାତ୍ରା ସମୟରେ ଅଭିନୀତ ହୋଇଥିଲା । ଯଥା "ତ୍ରିଭୁବନ ନଳିନ ନିର୍ମାଣନୂତନବିସାଙ୍କୁରସ୍ୟ ଭଗବତଃ ଶଙ୍କରସ୍ୟ ଯାତ୍ରାୟାଂ ପରିମିଳିତା ଇବ ପାରିଷଦାଃ" (୧୦) । ଭବଭୂତି, ମୁରାରି, ଜୟଦେବ ପ୍ରଭୃତି ପ୍ରସିଦ୍ଧ ପୂର୍ବ ସୂରିମାନଙ୍କୁ ଅନୁସରଣ କରି କବିରାଜ ଶ୍ରୀ ଜୟଦେବ ନିଜର ପରମାରାଧ୍ୟ ଶ୍ରୀ ଜଗଦୀଶ ବା ଶ୍ରୀ ଜଗନ୍ନାଥଙ୍କ ମନ୍ଦିରରେ ସ୍ୱୀୟ

---

※ Inscription from Maihar, E I Vol. XXXV part IV edited by Dr. D. C. Sircar and V S. Subrahmanyam.

(୧୦) 'ଚୌଖମ୍ବା ବିଦ୍ୟାଭବନ ଦ୍ୱାରା ପ୍ରକାଶିତ 'ପ୍ରସନ୍ନରାଘବମ୍" ।

ଅମର କୃତି ଶ୍ରୀ ଗୀତଗୋବିନ୍ଦ ପ୍ରଣୟନ ଓ ଗାୟନ କରୁଥିବା ସମ୍ବନ୍ଧରେ ସମଗ୍ର ଭାରତରେ ପ୍ରଚଳିତ କମ୍ବଦନ୍ତୀରେ ଐତିହାସିକ ସତ୍ୟ ନିହିତ ରହିଛି ।

**ଶ୍ରୀକ୍ଷେତ୍ର ଦଶାବତାର କ୍ଷେତ୍ର :—**

ସଂସ୍କୃତ ଭାଷାରେ ଲିଖିତ ସ୍କନ୍ଦପୁରାଣାନ୍ତର୍ଗତ 'ଉତ୍କଳଖଣ୍ଡ' (୧୧)ଶ୍ରୀ ପୁରୁଷୋତ୍ତମ [illegible] ଇତିବୃତ୍ତ ଓ ପୌରାଣିକ ଗୌରବ ଓ ମାହାତ୍ମ୍ୟ ଜାଣିବାପାଇଁ ଏକାନ୍ତ [illegible] ଗ୍ରନ୍ଥ । ଏହି ଗ୍ରନ୍ଥଟି ଦ୍ୱାଦଶ ଶତାବ୍ଦୀର ପ୍ରଥମ ଭାଗରେ ବର୍ତ୍ତମାନ ରୂପରେ ସଂକଳିତ ହୋଇଥିଲା । ଏହି ଗ୍ରନ୍ଥରେ ଶ୍ରୀ ପୁରୁଷୋତ୍ତମ କ୍ଷେତ୍ରରେ ଦଶାବତାରଙ୍କ ଅବସ୍ଥିତି ଯୋଗୁଁ ଏହା **ଦଶାବତାର କ୍ଷେତ୍ର** ରୂପେ ବର୍ଣ୍ଣିତ ହୋଇଅଛି ।

"ଏତଦ୍ରହସ୍ୟଂ ପରମଂ ପୁର ତେ କଥିତଂ ମୟା
**ଦଶାବତାର କ୍ଷେତ୍ରସ୍ୟ** ମାହାତ୍ମ୍ୟଞ୍ଚ ସୁଗୋପିତମ୍ ।"
ଇତି ଉତ୍କଳଖଣ୍ଡେ ଚତୁଃପଞ୍ଚାଶୋଽଧ୍ୟାୟଃ ॥

ତେଣୁ ଶ୍ରୀକ୍ଷେତ୍ରବାସୀ ଭକ୍ତକବି ଜୟଦେବ ତାଙ୍କର ସର୍ବଜନପ୍ରିୟ ଦଶାବତାର ସ୍ତୁତିରେ 'ଦଶାବତାର କ୍ଷେତ୍ର' ରୂପେ ପ୍ରଖ୍ୟାତ ଶ୍ରୀକ୍ଷେତ୍ରର ପ୍ରଧାନ ଆରାଧ୍ୟ ଦେବତା ଜଗଦୀଶଙ୍କ ମାହାତ୍ମ୍ୟ କୀର୍ତ୍ତନ କରିଛନ୍ତି ।

**'ଜଗଦୀଶ' ବା ଜଗନ୍ନାଥ —**

ଉତ୍କଳ ଖଣ୍ଡର ବହୁ ସ୍ଥାନରେ ଶ୍ରୀଜଗନ୍ନାଥଙ୍କ ଅର୍ଥରେ କିପରି 'ଜଗଦୀଶ' ପଦର ବ୍ୟବହାର କରାଯାଇଛି ତାହାର କେତେକ ଉଦାହରଣ ନିମ୍ନରେ ଉଦ୍ଧୃତ ହେଲା ।

(୧) "**ଜଗଦୀଶ ପ୍ରସାଦାୟ** ପିତାମହ ନିଦେଶତଃ ।" (ପୃ ୧୦୨)

ଅର୍ଥାତ୍ ଜଗଦୀଶ ବା ଜଗନ୍ନାଥଙ୍କ ସନ୍ତୋଷ ବିଧାନ ନିମିତ୍ତ ଇନ୍ଦ୍ରଦ୍ୟୁମ୍ନ ବ୍ରହ୍ମାଙ୍କ ନିର୍ଦ୍ଦେଶାନୁରୂପ ଶ୍ରୀକ୍ଷେତ୍ରରେ ହୟମେଧ ଯଜ୍ଞ ସମ୍ପନ୍ନ କରିଥିଲେ ।

(୨) "ଅଷ୍ଟାଦଶଭ୍ୟୋ ଦ୍ୱୀପେଭ୍ୟୋ ଯନ୍ମୟା ପୁରୁଷାର୍ଜ୍ଜିତମ୍
ତତ୍ସର୍ବଂ **ଜଗଦୀଶସ୍ୟ ପ୍ରାସାଦାୟୋପବର୍ଜ୍ଜିତମ୍**" (୪୨) ପୃ ୧୧୮
ଅର୍ଥାତ୍ ମୁଁ (ଇନ୍ଦ୍ରଦ୍ୟୁମ୍ନ) ଅଷ୍ଟାଦଶ ଦ୍ୱୀପରୁ ନିଜର ପୁରୁଷକାର

---

(୧୧) ପଞ୍ଚାନନ ତର୍କରତ୍ନଙ୍କ ଦ୍ୱାରା ସମ୍ପାଦିତ ଓ ବଙ୍ଗାକ୍ଷରରେ ମୁଦ୍ରିତ 'ଉତ୍କଳ ଖଣ୍ଡ' ।

ଶକ୍ତି ଦ୍ୱାରା ଯେ ସକଳ ଦ୍ରବ୍ୟ ଉପାର୍ଜ୍ଜନ କରିଅଛି ସେଗୁଡ଼ିକ ଜଗଦୀଶ୍ୱରଙ୍କ ପ୍ରାସାଦ (ମନ୍ଦିର) ନିର୍ମାଣରେ ପରିବର୍ଜ୍ଜିତ ହେଉଅଛି ।

(୩) "ଜାମ୍ରିତ **ଜଗଦୀଶସ୍ୟ ପ୍ରାସାଦଂ** କାରିତଂ ମୟା
ଆର୍ବିବଭୂବ ଭଗବାନ୍ ଦାରୁରୂପ ବପୁଃ ସ୍ୱୟମ୍ ।" ୩୨ (ପୃ ୧୩୭)

ଅର୍ଥାତ୍ ମୋ ଦ୍ୱାରା ନିର୍ମିତ ଜଗନ୍ନାଥଙ୍କ ମନ୍ଦିରରେ ସ୍ୱୟଂ ଭଗବାନ ଦାରୁବ୍ରହ୍ମ ସ୍ୱରୂପରେ ଆବିର୍ଭୂତ ହୋଇଛନ୍ତି ।

(୪) "**ପୁରତୋ ଜଗଦୀଶସ୍ୟ** ପଶ୍ୟନ୍ ଶୁଦ୍ଧଂ ପିତାମହଂ
କୃତାଞ୍ଜଳିପୁଟୋ ବିପ୍ରା ମମଜ୍ଜାନନ୍ଦ ସାଗରେ ।" (୫୬) ପୃ ୧୪୮

ହେ ବିପ୍ରଗଣ, ଇନ୍ଦ୍ରଦ୍ୟୁମ୍ନ ଜଗଦୀଶ ବା ଜଗନ୍ନାଥଙ୍କ ସମ୍ମୁଖରେ କୃତା-ଞ୍ଜଳିପୁଟରେ ଦଣ୍ଡାୟମାନ ହୋଇ ଓ ନିକଟରେ ବ୍ରହ୍ମାଙ୍କୁ ନିରୀକ୍ଷଣ କରି (ସ୍ତୁତିଗାନ ଦ୍ୱାରା) ଆନନ୍ଦ ସାଗରରେ ନିମଗ୍ନ ହୋଇଥିଲେ ।

(୫) "ଯେନ ଦେବାଃ ସମାୟାନ୍ତି କ୍ଷେତ୍ରେଽସ୍ମିନ୍ ପୁରୁଷୋତ୍ତମେ
ଭୂସ୍ୱର୍ଗେ **ଜଗଦୀଶସ୍ୟ ଦର୍ଶନାୟ** ଦିନେ ଦିନେ ॥ (ପୃ ୧୭୧)

ଅର୍ଥାତ୍ ଦେବଗଣ ଜଗଦୀଶ ବା ଜଗନ୍ନାଥଙ୍କ ଦର୍ଶନାର୍ଥେ, ଭୂସ୍ୱର୍ଗ ନାମରେ ପ୍ରସିଦ୍ଧ ପୁରୁଷୋତ୍ତମ କ୍ଷେତ୍ରକୁ ପ୍ରତିଦିନ ସମାଗତ ହୁଅନ୍ତି ।

(୬) ବ୍ରାହ୍ମଣା **ଜଗଦୀଶସ୍ୟ** ଜଙ୍ଗମାସ୍ତନବଃ ସ୍ମୃତାଃ (ପୃ ୧୯୪)

ତିନ ରଥ ପ୍ରତିଷ୍ଠା ପ୍ରସଙ୍ଗରେ କୁହାଯାଇଛି ଯେ, ସେବକ ବ୍ରାହ୍ମଣମାନେ ଜଗଦୀଶ ବା ଜଗନ୍ନାଥଙ୍କର ଜଙ୍ଗମ ଦେହ ସ୍ୱରୂପ ॥

(୭) ଆଷାଢସ୍ୟ ସିତେ ପକ୍ଷେ ପଞ୍ଚମୀ ପିତୃଦୈବତମ୍
**ନକ୍ଷତ୍ରଂ ଜଗଦୀଶସ୍ୟ** ମହାବେଦୀ ସମାଗମମ୍ (୨୭) ପୃ ୨୦୩,

ଅର୍ଥାତ୍ ଆଷାଢ, ଶୁକ୍ଳପଞ୍ଚମୀ ମଘା ନକ୍ଷତ୍ରରେ ଜଗଦୀଶ (ଜଗନ୍ନାଥ)ଙ୍କ ମହାବେଦୀକୁ ସମାଗମ ହୁଏ ।

(୮) ନିର୍ମାଲ୍ୟଂ **ଜଗଦୀଶସ୍ୟ** ନାଶିତ୍ୱାସ୍ମି କଞ୍ଚନ (ପୃ ୨୧୮)

ଅର୍ଥାତ୍ ଜଗଦୀଶଙ୍କ ନିର୍ମାଲ୍ୟ ନ ଖାଇ ମୁଁ ଅନ୍ୟ କୌଣସି ଦ୍ରବ୍ୟ ଭୋଜନ କରିବି ନାହିଁ । ଇତ୍ୟାଦି ॥

(୯) ତତଃ ଶ୍ରୀ ର୍ଜଗଦୀଶସ୍ୟ କ୍ରୋଡେ ତଂ ବାସୟେ ଦ୍ୱିଜାଃ" (ପୃ ୨୩୨)

ସାକ୍ଷାତ୍ ଶ୍ରୀ ଲକ୍ଷ୍ମୀଦେବୀ ନିଷ୍ପାପ ଭକ୍ତଙ୍କୁ ସ୍ୱୟଂ ଜଗଦୀଶଙ୍କ କ୍ରୋଡ଼ରେ ସ୍ଥାପନ କରନ୍ତି ।

(୧୦) ନତ୍ୱେର **ଶ୍ରୀ ଜଗଦୀଶସ୍ୟ** ସମୀପଂ ଦ୍ୱିଜସତ୍ତମାଃ । (ପୃ ୨୫୧)
ଜଗଦୀଶଙ୍କ ମସ୍ତକରେ ଶୁଭ ଗନ୍ଧଦ୍ରବ୍ୟ ପ୍ରଦାନ କରଯାଏ ।

ଶ୍ରୀ ଗୀତଗୋବିନ୍ଦର ଅଳ୍ପକାଳ ପୂର୍ବରୁ ରଚିତ ଉତ୍କଳଖଣ୍ଡରେ ଶ୍ରୀ ଜଗନ୍ନାଥ ଅର୍ଥରେ ଶ୍ରୀ ଜଗଦୀଶ ପଦର ବହୁଳ ପ୍ରୟୋଗ ଦ୍ୱାରା ସ୍ପଷ୍ଟ ପ୍ରମାଣିତ ହୁଏ ଯେ, ଶ୍ରୀକ୍ଷେତ୍ରବାସୀ ଭକ୍ତପ୍ରବର ଶ୍ରୀ ଜୟଦେବ ସ୍ୱ ଗ୍ରନ୍ଥ ଆଦ୍ୟରେ ପାଠକ ଓ ଶ୍ରୋତାମାନଙ୍କ ହୃଦୟରେ ଭଗବଦ୍‌ଭକ୍ତି ଜାଗ୍ରତ କରିବା ଉଦ୍ଦେଶ୍ୟରେ ଭକ୍ତିତଦ୍‌ଗତ ହୃଦୟରେ ଶ୍ରୀ ଜଗଦୀଶ ବା ଶ୍ରୀ ଜଗନ୍ନାଥ ସ୍ତୁତିଗାନ କରିଛନ୍ତି ।

ମାନ୍ଦ୍ରାଜସ୍ଥ ପ୍ରାଚ୍ୟ ପାଣ୍ଡୁଲିପି ସଂଗ୍ରହାଳୟ (**Madras Oriental Manuscripts Library**)ରୁ ଆନୀତ ଶ୍ରୀ ଗୀତଗୋବିନ୍ଦର **'ସଂଗ୍ରହ ଦୀପିକା'** ନାମ୍ନୀ ଏକ ପ୍ରାଚୀନ ଟୀକାରେ ପ୍ରଥମ ଗୀତରେ ବ୍ୟବହୃତ 'ଜଗଦୀଶ' ଶବ୍ଦ ଜଗନ୍ନାଥ ଅର୍ଥରେ ବ୍ୟାଖ୍ୟାତ ହୋଇଅଛି । ଯଥା—

**ହେ ଜଗଦୀଶ, ହେ ଜଗନ୍ନାଥ,** ହେ ହରେ, ଜୟ, ଦୁଷ୍ଟ ନିଗ୍ରହଂ ଶିଷ୍ଟ ପରିପାଳନଂ କୁରୁ × × କ୍ଷମପ୍ରାପ୍ତ ମବତାରଂ ପ୍ରପ୍ରୈତି" । (୧୨)

ପ୍ରଥମ ଗୀତ ପରି ଦ୍ୱିତୀୟ ଗୀତର ପ୍ରତ୍ୟେକ ପଦପରେ 'ଜୟ ଜୟ ଦେବ ହରେ' ଭଣିତା ଦ୍ୱାରା କବି ହରି ବା ଶ୍ରୀଜଗନ୍ନାଥଙ୍କ ମହିମା କୀର୍ତ୍ତନ କରିଛନ୍ତି । ଗୀତ ଶେଷରେ କବି ଭକ୍ତିବିନମ୍ର ଚିତ୍ତରେ ଗାଇଛନ୍ତି, ହେ ଶ୍ରୀମୁଖଚନ୍ଦ୍ରଚକୋର ବା ଲକ୍ଷ୍ମୀଙ୍କ ମୁଖଚନ୍ଦ୍ର ପ୍ରତି ଚକୋର ତୁଲ୍ୟ ସଲାଳସ ଦୃଷ୍ଟିପାତକାରୀ ପ୍ରଭୁ ଜଗନ୍ନାଥ ! ଆମ୍ଭେମାନେ ତୁମ୍ଭର ଚରଣ ପଦ୍ମରେ ପ୍ରଣତ ହେଉଅଛୁ । ଆପଣ ଆମ୍ଭମାନଙ୍କ ମଙ୍ଗଳ ବିଧାନ କରନ୍ତୁ । ତତ୍ପରବର୍ତ୍ତୀ ଶ୍ଳୋକରେ ଭକ୍ତକବି ପୁନର୍ବାର ପ୍ରାର୍ଥନା କରିଛନ୍ତି ହେ ପ୍ରଭୁ ମୋ ଦ୍ୱାରା ବିରଚିତ ଏହି ଉଜ୍ଜ୍ୱଳ ବା ଶୃଙ୍ଗାର ରସାଶ୍ରିତ ଓ ମଙ୍ଗଳ ବା ମଙ୍ଗଳ ଦାୟିନୀ ଗୀତ ସକଳ ଶ୍ରୋତୃବର୍ଗଙ୍କର ଆନନ୍ଦ ବର୍ଦ୍ଧନ କରୁ ।

ମହାକବି ମୁରାରି ସ୍ୱ ନାଟକର ଅଭିନୟ ପ୍ରଦର୍ଶନ ଆରମ୍ଭରେ ରମାରମଣ ଶ୍ରୀ ପୁରୁଷୋତ୍ତମ ବା ଶ୍ରୀଜଗନ୍ନାଥଙ୍କ ସ୍ତୁତିଗାନ କଲାପରି କବିରାଜ ଶ୍ରୀ ଜୟଦେବ ସ୍ୱ କୃତ ମହାକାବ୍ୟର ଉପଜୀବ୍ୟ ବିଷୟ ରାଧା-ମୁରାରି ରମଣୀୟ ରହସ୍ୟ ଲୀଳାର ପରିବେଷଣ ପୂର୍ବରୁ ପ୍ରଗାଢ଼ ଆଲିଙ୍ଗନ ଫଳରେ ଲକ୍ଷ୍ମୀଙ୍କ ସ୍ତନତଟର କୁଙ୍କୁମ ଦ୍ୱାରା ଯାହାଙ୍କ ବକ୍ଷଃସ୍ଥଳ ଚର୍ଚ୍ଚିତ, ଏବଂବିଧ କୁଙ୍କୁମ ଚିହ୍ନ ଯାହାଙ୍କ ଅନ୍ତରର ଅନୁରାଗର

(୧୨) ଏହି ଉପାଦେୟ ପ୍ରାଚୀନ ଟୀକାର ନକଲ ରାଜ୍ୟ ପ୍ରତ୍ନତତ୍ତ୍ୱ ବିଭାଗର ପୁସ୍ତକାଗାରରେ ସଂରକ୍ଷିତ ।

ବହିଃପ୍ରକାଶ, ସେହି ମଧୁସୂଦନ ବା ଜଗନ୍ନାଥଙ୍କୁ ଶ୍ରୋତୃବର୍ଗଙ୍କୁ ଅନୁଗ୍ରହ ପ୍ରଦର୍ଶନ ପାଇଁ ପ୍ରାର୍ଥନା କରିଛନ୍ତି । ଯଥା—

(କ) "କମଳା-କୁଚ-କଳସ - କେଳି - କସ୍ତୁରିକାପତ୍ରାଙ୍କୁରସ୍ୟ ଭଗବତଃ **ଶ୍ରୀ ପୁରୁଷୋତ୍ତମସ୍ୟ**" —ମହାକବି ମୁରାରି

(ଖ) "ପଦ୍ମା - ପୟୋଧର - ତଟୀ ପରିରମ୍ଭଲଗ୍ନ - କାଶ୍ମୀରମୁଦ୍ରିତମୁରୋ **ମଧୁସୂଦନସ୍ୟ**" —କବିରାଜ ଜୟଦେବ

ତୃତୀୟ ଗୀତରେ ସରସ ବସନ୍ତ ସମୟରେ ବୃନ୍ଦାବନ ବିପିନର କାମବିକାରଜାତକାରୀ ଶୋଭା ଚିତ୍ରଣ ଦ୍ୱାରା ଭକ୍ତକବି ଶ୍ରୋତୃବର୍ଗଙ୍କ ହୃଦୟରେ ଏ ସଂସାରରେ ସାର ବା ଏକାନ୍ତ କାମ୍ୟ ଶ୍ରୀହରି ସ୍ମରଣ ବା ଶ୍ରୀଜଗନ୍ନାଥଙ୍କ (କୃଷ୍ଣ)ଙ୍କ ପ୍ରତି ଭକ୍ତି ଜାଗରିତ କରିବା ପାଇଁ ଉଦ୍ୟମ କରିଛନ୍ତି । (୧୩)

ଚତୁର୍ଥ ଗୀତରେ ସେ ବୃନ୍ଦାବନରେ ଅଦ୍ଭୁତ କେଶବ-କେଳି ରହସ୍ୟର ବର୍ଣ୍ଣନା ଶ୍ରୋତୃବୃନ୍ଦଙ୍କ ଯଶସ୍କର ଓ ମଙ୍ଗଳପ୍ରଦ ହେଉ ବୋଲି କାମନା କରିଛନ୍ତି । (୧୪)

ପଞ୍ଚମ ଗୀତରେ ସେ ଅତିସୁନ୍ଦର ମନମୋହନ ମଧୁରିପୁଙ୍କ ରୂପ ବର୍ଣ୍ଣନା ଅଧୁନା ଭକ୍ତମାନଙ୍କ ହୃଦୟରେ ହରି ସ୍ମରଣ ପ୍ରତି ଅନୁରାଗ ବର୍ଦ୍ଧନ କରିବ ବୋଲି ଆଶାପୋଷଣ କରିଛନ୍ତି । (୧୫)

ଷଷ୍ଠ ଗୀତରେ ଭଣିତ ମଧୁସୂଦନଙ୍କ ନିଧୁବନ କେଳି ବିଧାନ ଏବଂ ଉତ୍କଣ୍ଠିତା ଗୋପବଧୂଙ୍କ ବଚନ ଭକ୍ତମାନଙ୍କର ଅନାୟାସରେ ସୁଖବର୍ଦ୍ଧନ କରୁ ବୋଲି ଇଚ୍ଛାପ୍ରକାଶ କରିଛନ୍ତି । (୧୬)

---

(୧୩) "ଶ୍ରୀଜୟଦେବଭଣିତମିଦ ମୁଦୟତି ହରିଚରଣ ସ୍ମୃତିସାରମ୍
ସରସବସନ୍ତସମୟ ବନବର୍ଣ୍ଣନ ମନୁଗତ ମଦନବିକାରମ୍"
ଶ୍ରୀ ଗୀ: ଗୋ: ପ୍ରଥମ ସର୍ଗ, ତୃତୀୟ ଗୀତ ।

(୧୪) "ଶ୍ରୀ ଜୟଦେବ ଭଣିତ ମିଦମଦ୍ଭୁତକେଶବ କେଳିରହସ୍ୟମ୍ ।
ବୃନ୍ଦାବନ ବିପିନେ ଲଳିତଂ ବିତନୋ ତୁ ଶୁଭାନି ଯଶସ୍ୟମ୍ ।"

(୧୫) ' ଶ୍ରୀଜୟଦେବ ଭଣିତ ମତିସୁନ୍ଦରମୋହନମଧୁରିପୁରୂପମ୍
ହରିଚରଣ ସ୍ମରଣଂ ପ୍ରତି ସଂପ୍ରତି ପୁଣ୍ୟବତାମନୁରୂପମ୍ । ୯ ।"

(୧୬) "ଶ୍ରୀ ଜୟଦେବ ଭଣିତ ମିଦମତିଶୟ-ମଧୁରିପୁ-ନିଧୁବନଶୀଳମ୍
ସୁଖ ମୁତ୍କଣ୍ଠିତ-ଗୋପବଧୂ-କଥିତଂ ବିତନୋତୁ ସଲୀଳମ୍ । ୧୮ ।"

ସପ୍ତମ ଗୀତ ଶେଷରେ ଭକ୍ତବନମ୍ର ଜୟଦେବ ଶ୍ରୋତାମାନଙ୍କ ସମକ୍ଷରେ ନିଜକୁ କେନ୍ଦୁବିଲ୍ୱ ଶାସନ ରୂପକ ସାଗରରୁ ଜାତ ଚନ୍ଦ୍ର ବା କେନ୍ଦୁବିଲ୍ୱ ଶାସନ-ବାସୀ ବୋଲି ସଗର୍ବରେ ପରିଚିତ କରାଇଛନ୍ତି । (୧୭)

ଅଷ୍ଟମ ଗୀତ ଶେଷରେ କବି ଶ୍ରୋତାମାନଙ୍କୁ କହୁଛନ୍ତି—ଯଦି ଆପଣମାନେ ମନକୁ ଆନନ୍ଦରେ ମତାଇ ନଚାଇବାକୁ ଇଚ୍ଛା କରୁଛନ୍ତି ତେବେ ହରି ବିରହାକୁଳା ଶ୍ରୀରାଧାଙ୍କ ସଂପର୍କରେ ସଖୀଙ୍କ ବର୍ଣ୍ଣନା ପାଠକରନ୍ତୁ । (୧୮) ତାଙ୍କର ନବମ ଗୀତ ହରିଚରଣରେ ଅର୍ପିତ ଚିତ୍ତ ଭକ୍ତମାନଙ୍କ ସୁଖ ବୃଦ୍ଧି ପାଇଁ ଉଦ୍ଦିଷ୍ଟ । (୧୯) ହରି ବିରହ ବିଳସିତ ଦଶମ ଗୀତଟି ଅନୁରାଗୀ ପୁଣ୍ୟବାନ ବ୍ୟକ୍ତିମାନଙ୍କ ପ୍ରେମବୈଭବ-ଯୁକ୍ତ ମନରେ ହରିଭକ୍ତି ଉଦୟ ପାଇଁ ଲିଖିତ (୨୦) ଶ୍ରୀହରି ସେବକ ଜୟଦେବ ତାଙ୍କର ପରମ ରମଣୀୟ ଏକାଦଶ ଗୀତ ଶ୍ରବଣ କରି ଶ୍ରୋତାମାନଙ୍କୁ ଆହ୍ଲାଦିତ ହୃଦୟରେ ସୁକୃତ ବାଂଛିତ କରୁଣାମୟ ହରିଙ୍କୁ ବନ୍ଦନା କରିବାକୁ ଅନୁରୋଧ କରି-ଛନ୍ତି । (୨୧) ତାଙ୍କର ଦ୍ୱାଦଶ ଗୀତ ରସିକ ଜନମାନଙ୍କ ଅତିଶୟ ହର୍ଷ ଉଦ୍ରିକ୍ତ କରିବା ପାଇଁ ରଚିତ । (୨୨) ହରିଚରଣ ଶରଣ ଜୟଦେବଙ୍କର ତ୍ରୟୋଦଶ ଗୀତଟି କୋମଳା କଳାବତୀ ଯୁବତୀ ପରି ଭକ୍ତମାନଙ୍କ ହୃଦୟରେ ବାସ କରିବା ପାଇଁ ଅଭି-ପ୍ରେତ । (୨୩) ଶ୍ରୀହରିଙ୍କ ବିହାର ଲୀଳା ସମ୍ବଳିତ ତାଙ୍କର ଚତୁର୍ଦ୍ଦଶ ଗୀତଟି

---

(୧୭) "ବର୍ଣ୍ଣିତଂ ଜୟଦେବକେନ ହରେରିଦଂ ପ୍ରବଣେନ
କେନ୍ଦୁବିଲ୍ୱସମୁଦ୍ରସମ୍ଭବରୋହିଣୀରମଣେନ ।"

(୧୮) ଶ୍ରୀଜୟଦେବ ଭଣିତମିଦମଧିକଂ ଯଦି ମନସା ନଟନୀୟମ ।
ହରିବିରହାକୁଲବଲ୍ଲବ ଯୁବତି-ସଖୀ ବଚନଂ ପଠନୀୟମ୍ ।।

(୧୯) ଶ୍ରୀଜୟଦେବ ଭଣିତମିଦ ଗୀତମ୍
ସୁଖୟତୁ କେଶବପଦମୁପନୀତମ୍ ।

(୨୦) ଭଣତି କବି ଜୟଦେବେ ବିରହବିଲସିତେନ ।
ମନସି ରଭସ୍ ବିଭବେ ହରିରୁଦୟତୁ ସୁକୃତେନ ।

(୨୧ ଶ୍ରୀଜୟଦେବେ କୃତହରିସେବେ ଭଣତି ପରମରମଣୀୟମ ।
ପ୍ରମୁଦିତହୃଦୟଂ ହରିମତିସଦୟଂ ନମତ ସୁକୃତକମନୀୟମ୍ ।।

(୨୨) ଶ୍ରୀଜୟଦେବ କବେରିଦ ମୁଦିତମ୍ ।
ରସିକଜନଂ ତନୁତାମତିମୁଦିତମ୍ ।।

(୨୩) ହରିଚରଣଶରଣ ଜୟଦେବ କବି ଭାରତୀ ।
ବସତୁ ହୃଦି ଯୁବତିରିବ କୋମଳ କଳାବତୀ ।

କଳିକଳୁଷ ନାଶନ ବା କଳିଯୁଗର ପାପରାଶିର ବିନାଶ ସାଧକ । (୨୪) ମଧୁସୂଦନ ପଦସେବକ କବିରାଜ ଜୟଦେବ ଙ୍କକୃତ ଶ୍ରୀହରିଗୁଣାତ୍ମକ ପଞ୍ଚଦଶ ଗୀତ ଗାନ କଲେ ଭକ୍ତମାନଙ୍କୁ କଳିଯୁଗୋଚିତ ପାପରାଶି ସ୍ପର୍ଶ କରିପାରିବ ନାହିଁ ବୋଲି କହିଛନ୍ତି । (୨୫)

ଶ୍ରୀରାଧାଙ୍କ ବିଳାପ ବଚନଯୁକ୍ତ ତାଙ୍କର ଷୋଡ଼ଶ ଗୀତ ସମସ୍ତଙ୍କ ହୃଦୟରେ ହରିଭକ୍ତି ସଞ୍ଚାରକାରୀ । (୨୬) ସପ୍ତଦଶ ଗୀତ ଶେଷରେ କବି ଜୟଦେବ ଶ୍ରୀକୃଷ୍ଣଙ୍କ ମଧୁରଲୀଳାସ୍ୱାଦନାଭିଳାଷୀ ପଣ୍ଡିତମାନଙ୍କୁ ଅମୃତ ଠାରୁ ଅଧିକ ମଧୁର ଓ ସ୍ୱର୍ଗଠାରୁ ଅଧିକ ଦୁର୍ଲ୍ଲଭ ଖଣ୍ଡିତା ନାୟିକା ଶ୍ରୀରାଧାଙ୍କ ବିଳାପ ସଂଗୀତ ଶୁଣିବା ପାଇଁ ଅନୁରୋଧ କରିଛନ୍ତି । (୨୭)ତାଙ୍କର ଅତିଲଳିତ ଓ ମଧୁର ଅଷ୍ଟାଦଶ ଗୀତଟି ରସିକମାନଙ୍କ ସୁଖୋତ୍ପାଦନ କାରକ । (୨୮) ପଦ୍ମାବତୀ-ରମଣ ଜୟଦେବ କବିଙ୍କ ଦ୍ୱାରା ରଚିତ ରାଧିକାଙ୍କ ପ୍ରତି ମୁରାରିଙ୍କ ସୁନ୍ଦର ଅନୁରାଗ ବାକ୍ୟ ସମ୍ବଳିତ ଊନବିଂଶ ଗୀତଟି ପରମ ସୁଖପ୍ରଦ ଓ ଅତି ଉତ୍କୃଷ୍ଟ । (୨୯) ହାର ଅପେକ୍ଷା ଅଧିକ ମନୋହର ଓ ରମଣୀ ଅପେକ୍ଷା ଅଧିକ ମନମୋହନ ତାଙ୍କର ବିଂଶତିତମ ଗୀତଟି କୃଷ୍ଣାର୍ପିତ ଚିତ୍ତ ଭକ୍ତମାନଙ୍କର କଣ୍ଠତଟରେ ଅବିରାମ ଶୋଭାପାଇବା ପାଇଁ ଯୋଗ୍ୟ । (୩୦) କବିରାଜ-ରାଜ ଶ୍ରୀ ଜୟଦେବ ପଦ୍ମାବତୀଙ୍କର ଆନନ୍ଦ ବର୍ଦ୍ଧନକାରୀ ଏକବିଂଶ ଗୀତରେ ଜଗଦ୍ଗୁରୁ

---

(୨୪) ଶ୍ରୀଜୟଦେବ ଭଣିତ ହରିରମିତମ୍
କଳିକଳୁଷଂ ଜନୟତୁ ପରିଶମିତମ୍ ॥

(୨୫) ଇହ ରସଭଣନେ କୃତହରିଗୁଣନେ ମଧୁରିପୁପଦସେବକେ ।
କଳିଯୁଗଚରିତଂ ନ ବସତୁ ଦୁରିତଂ କବିନୃପଜୟଦେବକେ ।

(୨୬) "ଶ୍ରୀଜୟଦେବଭଣିତବଚନେନ ।
ପ୍ରବିଶତୁ ହରିରପି ହୃଦୟମନେନ ॥"

(୨୭) "ଶ୍ରୀଜୟଦେବଭଣିତ ରତିବଞ୍ଚିତ ଖଣ୍ଡିତଯୁବତିବିଲାପମ୍ ।
ଶୃଣୁତ ସୁଧାମଧୁରଂ ବିବୁଧା ବିବୁଧାଲୟତୋଽପି ଦୁରାପମ୍ ॥"

(୨୮) ଶ୍ରୀଜୟଦେବଭଣିତ ମତିଲଳିତମ୍
ସୁଖୟତୁ ରସିକଜନଂ ହରିଚରିତମ୍ । ୯ ।"

(୨୯) "ଜୟତି ପଦ୍ମାବତୀ-ରମଣ-ଜୟଦେବକବି-
ଭାରତୀ-ଭଣିତ ମତିଶାତମ୍ ॥"

(୩୦) "ଶ୍ରୀଜୟଦେବ-ଭଣିତ ମଧରୀକୃତ-ହାରମୁଦାସିତ-ବାମମ୍ ।
ହରିବିନିହିତ-ମନସା ମଧିତିଷ୍ଠତୁ କଣ୍ଠତଟୀମବିରାମମ୍ । ୯ ।"

ସର୍ବବିଧ ମଙ୍ଗଳ ବିଧାନ ପାଇଁ ମୁରାରିଙ୍କୁ ପ୍ରାର୍ଥନା କରିଛନ୍ତି । (୩୧) ଏହାର ପରବର୍ତ୍ତୀ ଗୀତରେ କବି ଜୟଦେବ ସ୍ୱକୀୟ ଉପମାଦିବାଗ୍ ବିଳାସ ଦ୍ୱାରା ଯାହାଙ୍କ ସୌନ୍ଦର୍ଯ୍ୟ-ବିଭବ ଦ୍ୱିଗୁଣ ବର୍ଦ୍ଧିତ ହୋଇଅଛି ଏବଂ ଯେ ସମସ୍ତ ପୁଣ୍ୟଫଳପ୍ରଦାୟକ ସେହି ହରିଙ୍କୁ ହୃଦୟରେ ଚିନ୍ତାକରି ପ୍ରଣାମ କରିବା ପାଇଁ ସାଧୁମାନଙ୍କୁ ନିବେଦନ କରିଛନ୍ତି । (୩୨) ପ୍ରତି ପଦରେ ମଧୁସୂଦନଙ୍କ ଆହ୍ଲାଦ ପ୍ରକାଶକ କବି ଜୟଦେବ ବିରଚିତ ଏହି (ସପ୍ତୋବିଂଶ) ଗୀତି ରସିକ ଜନଙ୍କ ଚିତ୍ତକୁ ଶ୍ରୀକୃଷ୍ଣଙ୍କ ମନୋହର ରତିରସାସ୍ୱାଦ ଜନିତ ଆନନ୍ଦରେ ବିନୋଦିତ କରିବା ପାଇଁ ଅଭିପ୍ରେତ । (୩୩) କଳିକଳୁଷଜ୍ୱର ବିନାଶକାରୀ ଶ୍ରୀହରି ଚରଣ ସ୍ମରଣ ରୂପକ ଅମୃତରେ ଅଭିସେଚିତ ଜୟଦାୟକ ତାଙ୍କର ଶେଷ ଗୀତିଟି ଭକ୍ତମାନଙ୍କ ହୃଦୟର ଅଳଙ୍କାର ସ୍ୱରୂପ । (୩୪)

ଭକ୍ତ କବିଙ୍କର ଅମୃତ-ନିସ୍ୟନ୍ଦୀ ଚତୁର୍ବିଂଶତି ଗୀତର ରଚନାସ୍ଥଳ ସମ୍ବନ୍ଧରେ ସମ୍ୟକ୍ ଧାରଣା ଲାଭ କରିବା ପାଇଁ ଗ୍ରନ୍ଥର ଉପକ୍ରମ ଓ ଉପସଂହାର ସ୍ୱରୂପ ପ୍ରଦତ୍ତ ବିଶେଷ ତାତ୍ପର୍ଯ୍ୟପୂର୍ଣ୍ଣ ଶ୍ଳୋକଦ୍ୱୟର ଆଲୋଚନା ଆବଶ୍ୟକ । ପ୍ରଥମ ଗୀତରେ ସେ ସ୍ୱ ଇଷ୍ଟଦେବ ଜଗନ୍ନାଥଙ୍କ ଉଦ୍ଦେଶ୍ୟରେ ଚିର ଅମର, ଚିର ଭାସ୍ୱର 'ଦଶାବତାର ସ୍ତୁତି' ଗାନ କରିବା ପୂର୍ବରୁ ପଣ୍ଡିତ ଓ ଭକ୍ତମାନଙ୍କୁ ସମ୍ବୋଧନ କରି କହିଛନ୍ତି "ହେ ସଜ୍ଜନବୃନ୍ଦ, ଯଦି ଆପଣମାନଙ୍କର ହରିସ୍ମରଣ ଦ୍ୱାରା ମନକୁ ସରସ କରିବାର ବାସନା ଥାଏ, ଯଦି ବାସୁଦେବଙ୍କ ବାସନ୍ତୀ ରାସଲୀଳାର ବିଳାସ କଳା ବା ରସ ଚାତୁର୍ଯ୍ୟ ସମ୍ବନ୍ଧରେ ଜାଣିବାକୁ କୌତୂହଳ ଥାଏ, ତେବେ ମୋର ଏହି ମଧୁର-କୋମଳ-କାନ୍ତ ପଦାବଳୀ ମଣ୍ଡିତ ରଚନାବଳୀ ଶ୍ରବଣ କରନ୍ତୁ"। (୩୫) ପରିଶେଷରେ

---

(୩୧) ବିହିତ-ପଦ୍ମାବତୀ-ସୁଖସମାଜେ ।
କୁରୁ ମୁରାରେ ମଙ୍ଗଳଶତାନି
ଭଣତି ଜୟଦେବ-କବିରାଜରାଜେ ॥"

(୩୨) "ଶ୍ରୀ ଜୟଦେବଭଣିତ ବିଭବଦ୍ୱିଗୁଣୀକୃତ-ଭୂଷଣ ଭାରମ୍ ।
ପ୍ରଣମତ ହୃଦି ବିନିଧାୟ ହରିଂ ସୁଚିରଂ ସୁକୃତୋଦୟସାରମ୍ ॥"

(୩୩) ଶ୍ରୀ ଜୟଦେବ-ଭଣିତମିଦମନୁପଦନିଗଦିତମଧୁରିପୁମୋଦମ୍ ।
ଜନୟତୁ ରସିକଜନେଷୁ ମନୋରମ ରତିରସଭାବବିନୋଦମ୍ ।"

(୩୪) "ଶ୍ରୀ ଜୟଦେବବଚସି ରୁଚିରେ ହୃଦୟଂ ସଦୟଂ କୁରୁ ମଣ୍ଡନେ ।
ହରିଚରଣ-ସ୍ମରଣାମୃତ ନିର୍ମିତ-କଳି-କଳୁଷଜ୍ୱରଖଣ୍ଡନେ ॥"

(୩୫) ଯଦି ହରିସ୍ମରଣେ ସରସଂ ମନୋ
ଯଦି ବିଳାସକଳାସୁ କୁତୂହଳମ୍ ।
ମଧୁର-କୋମଳ-କାନ୍ତ-ପଦାବଳୀମ୍
ଶୃଣୁ ତଦା ଜୟଦେବସରସ୍ୱତୀମ୍ ॥"

ଶ୍ରୀକୃଷ୍ଣଙ୍କ ଏକାନ୍ତ ଭକ୍ତ କବି-ପଣ୍ଡିତ ଶ୍ରୀ ଜୟଦେବ ସଙ୍ଗୀତଶାସ୍ତ୍ରୋକ୍ତ ରାଗତାଳାଦିରେ ଜ୍ଞାନାର୍ଜନ, ବୈଷ୍ଣବ ତତ୍ତ୍ୱର ଅନୁଧ୍ୟାନ ଏବଂ ଶୃଙ୍ଗାର ରସାଶ୍ରିତ କାବ୍ୟ ଧର୍ମୀ ଚର୍ଚ୍ଚାରେ ନୈପୁଣ୍ୟଲାଭ ନିମିତ୍ତ ତତ୍କୃତ ଶ୍ରୀ ଗୀତଗୋବିନ୍ଦକୁ ଆନନ୍ଦ ଚିତ୍ତରେ ଅନୁଶୀଳନ କରିବା ପାଇଁ ଅନୁରୋଧ କରିଛନ୍ତି । (୩୬)

ତତ୍କୃତ ଚତୁର୍ବିଂଶତି ଗୀତର ଭଣିତା ଓ ଶ୍ରୀ ଗୀତଗୋବିନ୍ଦର ଉତ୍କର୍ଷ ଓ ମହତ୍ତ୍ୱ ଜ୍ଞାପକ ଶ୍ଳୋକଦ୍ୱୟ ସୂକ୍ଷ୍ମଭାବରେ ବିଚାର କଲେ ସ୍ପଷ୍ଟ ଜଣାଯାଏ ଯେ, ସଙ୍ଗୀତଜ୍ଞ ପଣ୍ଡିତ-ମଣ୍ଡଳୀ, ଶ୍ରୀକୃଷ୍ଣଗତ ପ୍ରାଣ ଭକ୍ତବୃନ୍ଦ, ଶୃଙ୍ଗାରରସାମୋଦୀ ରସିକମାନଙ୍କ ଚିତ୍ତବିନୋଦନ ଏବଂ କଳିକଳୁଷରାଶି ନାଶନ ପାଇଁ ସତତ ଶ୍ରୀ ହରି ସ୍ମରଣ ଓ ଶ୍ରୀ ହରି ଭକ୍ତିବିବର୍ଦ୍ଧନ ନିମିତ୍ତ କେନ୍ଦୁବିଲ୍ୱ ଶାସନାଗତ 'ପଦ୍ମାବତୀରମଣ' ଶ୍ରୀକୃଷ୍ଣ ଭକ୍ତାଗ୍ରଣୀ 'କବି-ପଣ୍ଡିତ' ଶ୍ରୀ ଜୟଦେବ ଶ୍ରୀ ଗୀତଗୋବିନ୍ଦ ରଚନା କରିଥିଲେ । ସଙ୍ଗୀତ ସାହିତ୍ୟରସାଭିଜ୍ଞ ପଣ୍ଡିତ-ମଣ୍ଡଳୀ, ଶ୍ରୀ ହରି-ପଦ-ପଙ୍କଜାଶ୍ରିତ ଭକ୍ତଗଣ ଓ ଶୃଙ୍ଗାର ରସପ୍ରେମୀ ରସିକମାନଙ୍କ ମଧୁର ସମାବେଶ କୌଣସି ରାଜସଭାରେ ସମ୍ଭବପର ନ ଥିଲା । ଏହା କେବଳ ସମ୍ଭବ ଥିଲା ସର୍ବ ପୁରାଣ କୀର୍ତ୍ତିତ ସକଳ ବୈଷ୍ଣବ ସମ୍ପ୍ରଦାୟର ପ୍ରାଣକେନ୍ଦ୍ର ସ୍ୱରୂପ ମର୍ତ୍ତ୍ୟବୈକୁଣ୍ଠ ଶ୍ରୀକ୍ଷେତ୍ରସ୍ଥ ପ୍ରସିଦ୍ଧ ଜଗନ୍ନାଥ ମନ୍ଦିରରେ । **ଶ୍ରୀ ଗୋବିନ୍ଦ ବା ଶ୍ରୀଜଗନ୍ନାଥଙ୍କ** ନିକଟରେ ଗୀତ ହେବା ପାଇଁ ଏହା ରଚିତ ହୋଇଥିବାରୁ 'ଶ୍ରୀ ହରିପ୍ରବଣ' 'ଶ୍ରୀ ହରିସେବକ' 'ଶ୍ରୀ ହରିଚରଣ ଶରଣ', 'ଶ୍ରୀ ହରି ବିନିହିତଚିତ୍ତ' ପ୍ରଭୃତି ବିଶେଷଣ ମଣ୍ଡିତ ଭକ୍ତକବି ଶ୍ରୀ ଜୟଦେବ ଯଥାର୍ଥରେ ଏହାର ନାମକରଣ କରିଥିଲେ **ଶ୍ରୀ ଗୀତଗୋବିନ୍ଦ** । ଏହି ଅମରକୃତି ରଚନାରେ ତାଙ୍କୁ ସର୍ବଦା ଉତ୍ସାହ ଓ ପ୍ରେରଣା ଦେଇଥିଲେ ଶ୍ରୀ ଜଗନ୍ନାଥଙ୍କ ସେବାପାଇଁ ସ୍ୱ ଜୀବନ ଉତ୍ସର୍ଗକାରିଣୀ 'ଗୀତଜ୍ଞା' 'ଲୟ-ତାନ-ନର୍ତ୍ତନ-କଳା-କୁଶଳିନୀ' ତାଙ୍କର ପ୍ରାଣପ୍ରିୟା ପ୍ରେୟସୀ ପଦ୍ମାବତୀ । ତେଣୁ କବି ନିଜକୁ 'ପଦ୍ମାବତୀ-ଚରଣ-ଚାରଣ-ଚକ୍ରବର୍ତ୍ତୀ' ବୋଲି ଅଭିହିତ କରି ଗର୍ବ ଓ ଗୌରବ ଅନୁଭବ କରିଥିଲେ । ସେ ମୁକ୍ତ କଣ୍ଠରେ ସ୍ୱୀକାର କରିଥିଲେ ଯେ, ତାଙ୍କ ଗୀତ 'ବିହିତ-ପଦ୍ମାବତୀ-ସୁଖ-ସମାଜ' ବା ପଦ୍ମାବତୀଙ୍କ ଆନନ୍ଦ ବର୍ଦ୍ଧନକାରୀ ।

ଅତଏବ ନାନାସୂତ୍ରରୁ ଉପଲବ୍ଧ ବହୁ ପ୍ରମାଣ ଦ୍ୱାରା ସମର୍ଥିତ ହେଉଥିବାରୁ ଶ୍ରୀକ୍ଷେତ୍ର ପୂଜିତ ଶ୍ରୀ ଜଗନ୍ନାଥଙ୍କ ମନ୍ଦିରରେ ଗୀତ ହେବା ପାଇଁ ଭକ୍ତ ପ୍ରବର

---

(୩୬) "ଯଦଗାନ୍ଧର୍ବକଳାସୁ କୌଶଳମନୁଧ୍ୟାନଞ୍ଚ ଯଦ୍‌ବୈଷ୍ଣବଂ
ଯଚ୍ଛୃଙ୍ଗାରବିବେକତତ୍ତ୍ୱମପି ଯତ୍ କାବ୍ୟେଷୁ ଲୀଳାୟିତମ୍ ।
ତତ୍ସର୍ବଂ ଜୟଦେବପଣ୍ଡିତକବେଃ କୃଷ୍ଣୈକତାନାତ୍ମନଃ
ସାନନ୍ଦାଃ ପରିଶୋଧୟନ୍ତୁ ସୁଧିୟଃ ଶ୍ରୀ ଗୀତଗୋବିନ୍ଦତଃ ॥"

ଶ୍ରୀ ଜୟଦେବଙ୍କ ଦ୍ୱାରା ଶ୍ରୀ ଗୀତଗୋବିନ୍ଦ ରଚିତ ହୋଇଥିବା ସମ୍ପର୍କୀୟ ପ୍ରାଚୀନକାଳରୁ ପ୍ରଚଳିତ କମ୍ବଦନ୍ତୀ ଐତିହାସିକ ସତ୍ୟର ସୁଦୃଢ଼ ଭିତ୍ତି ଉପରେ ପ୍ରତିଷ୍ଠିତ ଏକ ସିଦ୍ଧାନ୍ତ ରୂପେ ସର୍ବଥା ଗ୍ରହଣୀୟ ।

## ଶ୍ରୀ ଜଗନ୍ନାଥ ମହାପ୍ରଭୁଙ୍କ ମନ୍ଦିରରେ ଦେବଦାସୀ :—

ଶ୍ରୀ ଜଗନ୍ନାଥ ମହାପ୍ରଭୁଙ୍କ ମନ୍ଦିରରେ ନୃତ୍ୟରତ ଦେବଦାସୀଙ୍କ ଦ୍ୱାରା ଶ୍ରୀଗୀତଗୋବିନ୍ଦ ଗାନ ପ୍ରଚଳନର କାଳ ନିର୍ଣ୍ଣୟ କରିବା ପୂର୍ବରୁ ଏହାର ଐତିହାସିକ ଭିତ୍ତି ସମ୍ପର୍କରେ ଆଲୋଚନା ଆବଶ୍ୟକ । ଭୁବନେଶ୍ୱରସ୍ଥ ପ୍ରସିଦ୍ଧ ବ୍ରହ୍ମେଶ୍ୱର ମନ୍ଦିରରେ ଖଚିତ ଶିଳାଲେଖ (ବର୍ତ୍ତମାନ ଲୁପ୍ତ)ରୁ ଜଣାଯାଏ ସୋମବଂଶୀୟ ପ୍ରସିଦ୍ଧ ନରପତି ଉଦ୍ୟୋତକେଶରୀଙ୍କ ବିଧବା ମାତା କୋଳାବତୀ ତାଙ୍କ ରାଜତ୍ୱର ଅଷ୍ଟାଦଶ ସମ୍ବତ୍ସର (୧୦୬୩ ଖ୍ରୀଷ୍ଟାବ୍ଦ)ରେ ବ୍ରହ୍ମେଶ୍ୱର ମନ୍ଦିର ନିର୍ମାଣ କରି ସେଠାରେ ନୃତ୍ୟ ଗୀତପାଇଁ ସଙ୍ଗୀତପ୍ରବୀଣା ସୁନ୍ଦରୀ ସ୍ତ୍ରୀମାନଙ୍କୁ ନିଯୁକ୍ତ କରିଥିଲେ । ପ୍ରାଚୀ କୂଳବର୍ତ୍ତୀ ନିଆଳୀ ଶାସନର ଶୋଭନେଶ୍ୱର ମନ୍ଦିର (ପ୍ରାୟ ୧୦୭୦ ଖ୍ରୀଷ୍ଟାବ୍ଦ) ଏବଂ ଏକାମ୍ର କ୍ଷେତ୍ର (ଭୁବନେଶ୍ୱର)ସ୍ଥ ମେଘେଶ୍ୱର ମନ୍ଦିରରେ ଦୁଇ ମନ୍ଦିର ନିର୍ମାତା ଯଥା ବ୍ରାହ୍ମଣ ବଂଶୀୟ ସାମନ୍ତ ରାଜା ବୈଦ୍ୟନାଥ ଏବଂ ଗଙ୍ଗବଂଶୀୟ ସମ୍ରାଟ ରାଜ ରାଜ ଦେବଙ୍କ ଶାଳକ ସ୍ୱପ୍ନେଶ୍ୱରଦେବଙ୍କ ଦ୍ୱାରା ରୂପଯୌବନ-ସମ୍ପନ୍ନା ନାନା ଭୂଷଣ ମଣ୍ଡିତା ଗୀତଜ୍ଞା ନର୍ତ୍ତକୀ ନିୟୋଗ ବିଷୟ ଉଭୟ ମନ୍ଦିରରେ ଥିବା ଶିଳାଲେଖରୁ ଜଣାଯାଏ ।(୩୭)

ନରେନ୍ଦ୍ରେଶ୍ୱର ନାମକ ଶିବମନ୍ଦିରରେ ନୈବେଦ୍ୟ, ନୃତ୍ୟଗୀତ, ବାଦ୍ୟକରଣ ଓ ଦେବସ୍ଥାନର ଜୀର୍ଣ୍ଣସଂସ୍କାର ପାଇଁ ଉତ୍କଳର ପ୍ରଥମ ଗଙ୍ଗସମ୍ରାଟ୍ ଚୋଳଗଙ୍ଗଦେବ ଭୂତ (୫) ଗଗନ (୦) ବିୟତ୍ (୦) ଓ ଶଶୀ (୧) ବା ୧୦୦୫ ଶକାବ୍ଦ ବା ୧୦୮୩ ଖ୍ରୀଷ୍ଟାବ୍ଦରେ ମୂରୁପାକ ନାମକ ଗ୍ରାମ ଦାନ କରିଥିବା ତାମ୍ର ଶିଳାଲେଖରୁ ଜଣାଯାଏ । (୩୮) ଚୋଳଗଙ୍ଗ ଦେବଙ୍କ ଅନ୍ୟ ଏକ ଶିଳାଲେଖରେ ଉଲ୍ଲେଖ ଅଛି ଯେ, ସେ ମୁଖଲିଙ୍ଗମ୍ (ପ୍ରାଚୀନ କଳିଙ୍ଗ ନଗର)ରେ ଅବସ୍ଥିତ ପ୍ରସିଦ୍ଧ ମଧୁକେଶ୍ୱରଙ୍କ ମନ୍ଦିରରେ ନୃତ୍ୟପାଇଁ **ଦେବଗଣିକା** (ଦେବଦାସୀ) ଗାୟକ ଓ ବାଦକ ନିଯୁକ୍ତ କରି ସେମାନଙ୍କ ପାଇଁ ଜମିବାଡ଼ ଖଞ୍ଜିଥିଲେ । (୩୯) ଏହି ଲେଖଟି ତାଙ୍କ ରାଜତ୍ୱର ଶେଷଆଡ଼କୁ (୧୦୪୫ ଖ୍ରୀଷ୍ଟାବ୍ଦ) ଖୋଦିତ ହୋଇଥିଲା ।

---

(୩୭) ଏହି ତିନୋଟି ଶିଳାଲେଖ ସମ୍ବନ୍ଧରେ ଦ୍ୱିତୀୟ ଅଧ୍ୟାୟରେ ଆଲୋଚିତ ହୋଇଅଛି ।

(୩୮) Inscriptions of Orissa by Rajaguru, Vol III Part I p. 32

(୩୯) " " " " p. 246

ଉକ୍ତ ଲେଖରେ **'ଦେବଗଣିକା'** ବା ଦେବଦାସୀ ନିଯୋଗର ଅକାଟ୍ୟ ପ୍ରମାଣ ମିଳୁଥିବାରୁ ଗଙ୍ଗସମ୍ରାଟ ଚୋଳଗଙ୍ଗଦେବ ଶ୍ରୀକ୍ଷେତ୍ରସ୍ଥ ବର୍ତ୍ତମାନ ଉତ୍ତୁଙ୍ଗ ମନ୍ଦିର ନିର୍ମାଣ କରିବା ପରେ 'ମଧୁକେଶ୍ୱର' ଦେବଙ୍କ ପରି ଶ୍ରୀ ଜଗନ୍ନାଥଙ୍କ ସେବାରେ 'ଦେବଗଣିକା' ନିଯୋଗ ପ୍ରଥା ପ୍ରଚଳନ କରିଥିବା ସ୍ଥିର କରାଯାଇ ପାରେ ।

## ଧର୍ମଗ୍ରନ୍ଥ ଶ୍ରୀ ଗୀତଗୋବିନ୍ଦ —

ବିଭିନ୍ନ ବୃତ୍ତରେ ରଚିତ ୭୨ଟି ଶ୍ଳୋକ ଓ ବିଭିନ୍ନ ରାଗରେ ନିବଦ୍ଧ ୨୪ଟି ଗୀତର ସମାବେଶରେ ଦ୍ୱାଦଶ ସର୍ଗ ବିଶିଷ୍ଟ ମୂଳ ଶ୍ରୀ ଗୀତଗୋବିନ୍ଦ ମହାକାବ୍ୟ ଶ୍ରୀ ପୁରୁଷୋତ୍ତମ (ଜଗନ୍ନାଥ)ଙ୍କ ପ୍ରୀତିବିଧାନ ନିମିତ୍ତ ପଣ୍ଡିତ ପ୍ରବର ଶ୍ରୀ ଜୟଦେବଙ୍କ ଦ୍ୱାରା ରଚିତ ହୋଇଥିଲା । ଯଥା —

"ସର୍ଗୈ ର୍ଦ୍ୱାଦଶଭିଷ୍ଟ ଚର୍ଦ୍ଧି ଗୁଣିତୈର୍ଗୀଥାମୃ ସର୍ଗାଂଶକୈଃ
ଶ୍ଳୋକୈଃ ଷଡ୍ ଗୁଣିତୈଃ ସୁବୃତ୍ତଭଣିତୈ ରାନନ୍ଦସନ୍ଦୋହଦଂ ।
ପ୍ରୀତ୍ୟୈ ଶ୍ରୀପୁରୁଷୋତ୍ତମସ୍ୟ ରଚିତଂ ଶ୍ରୀଗୀତଗୋବିନ୍ଦକଂ
ଜୀୟାଚ୍ଛ୍ରୀ ଜୟଦେବ ପଣ୍ଡିତବରେଣେଦଂ ସମନ୍ତାତ୍ପୁରମ୍ ॥" (୪୦)

ଶ୍ରୀ ଜୟଦେବଙ୍କର 'ଶ୍ରୀ ଗୀତଗୋବିନ୍ଦ'କୁ ଏକ ଧର୍ମଗ୍ରନ୍ଥ ରୂପେ ପ୍ରତିଷ୍ଠିତ କରିବା ମୁଖ୍ୟ ଲକ୍ଷ୍ୟ ଥିଲା । ତେଣୁ ସେ ଏହାର ଗୀତଗୁଡ଼ିକ 'ଶୁଭପ୍ରଦ' 'ଯଶସ୍କର' 'ସୁକୃତୋଦୟ କାରକ' 'ଶତମଙ୍ଗଳ ବିଧାୟକ' 'କଳିକଳୁଷ ନାଶକ' 'କଳିଯୁଗ ଚରିତ ଦୁରିତ ନାଶୀ' 'ହରିଚରଣ ସ୍ମରଣାମୃତନିର୍ମିତକଳିକଳୁଷଜ୍ୱରଖଣ୍ଡନ' 'ଶ୍ରୀହରି ଭକ୍ତି ବର୍ଦ୍ଧକ' ବୋଲି ଘୋଷଣା କରିଛନ୍ତି । କଳିକଳୁଷ ନାଶକ ଶ୍ରୀ ଗୀତଗୋବିନ୍ଦକୁ ଶ୍ରୀଜଗନ୍ନାଥ ମନ୍ଦିରରେ ନୃତ୍ୟ ଗାନକରି ସେ ଏହାର ଉପଜୀବ୍ୟ ବିଷୟ ଶ୍ରୀରାଧାକୃଷ୍ଣ ଉପାସନାକୁ ଲୋକପ୍ରିୟ କରିବା ପାଇଁ ପୂର୍ଣ୍ଣପ୍ରାଣରେ ଉଦ୍ୟମ କରିଥିଲେ ।

ସେ ଯୁଗରେ ଶ୍ରୀକ୍ଷେତ୍ରର ଧର୍ମଜଗତରେ ଏପରି ପ୍ରାଧାନ୍ୟ ଥିଲା ଯେ, ସେଠାର ପ୍ରଖ୍ୟାତ ପଣ୍ଡିତମଣ୍ଡଳୀ ଦ୍ୱାରା କୌଣସି ନୂତନ ଧର୍ମମତ ବା ଧର୍ମଗ୍ରନ୍ଥ ସ୍ୱୀକୃତ ବା ଆଦୃତ ହେଲେ ତାହା ସର୍ବଭାରତୀୟ ସ୍ତରରେ ପ୍ରଚଳିତ ହୋଇପାରୁଥିଲା । ତେଣୁ ଦ୍ୱାଦଶ ଶତାବ୍ଦୀରେ ଆବିର୍ଭୂତ ଶ୍ରୀବିଷ୍ଣୁ ସ୍ୱାମୀ, ଶ୍ରୀ ରାମାନୁଜାଚାର୍ଯ୍ୟ, ଆଚାର୍ଯ୍ୟ ନିମ୍ବାର୍କ ଓ ଶ୍ରୀ ମାଧ୍ୱାଚାର୍ଯ୍ୟ ଦକ୍ଷିଣ ଭାରତର ଏହି ଚାରିଜଣ ବୈଷ୍ଣବ ସଂପ୍ରଦାୟ ପ୍ରବର୍ତ୍ତକ ମହାତ୍ମା

---

(୪୦) 'ନବଜୀବନ' ଏକାଦଶ ଭାଗ, ଏକାଦଶ ସଂଖ୍ୟାରେ ପ୍ରକାଶିତ ଶ୍ରୀ ରତ୍ନାକର ମହାପାତ୍ରଙ୍କ 'ଗୀତଗୋବିନ୍ଦ ଓ ଜୟଦେବ' ପ୍ରବନ୍ଧ ଦ୍ରଷ୍ଟବ୍ୟ ।

ସ୍ୱ ସ୍ୱ ଧର୍ମମତ ପ୍ରଚାର ପାଇଁ ଉତ୍କଳାଧୀଶଙ୍କ ଆନୁକୂଲ୍ୟରେ ଶ୍ରୀପୁରୁଷୋତ୍ତମ କ୍ଷେତ୍ରରେ ସ୍ୱ ସ୍ୱ ସଂପ୍ରଦାୟର ମଠ ପ୍ରତିଷ୍ଠା କରିଥିଲେ ।

"ଶ୍ରୀ ବ୍ରହ୍ମରୁଦ୍ରସନକାଃ ବୈଷ୍ଣବାଃ କ୍ଷିତିପାବନାଃ
ଚତ୍ୱାରସ୍ତେ କଳୌ ଭାବ୍ୟାଃ ସଂପ୍ରଦାୟ ପ୍ରବର୍ତ୍ତକାଃ ॥
ଶ୍ରୀ ବିଷ୍ଣୁସ୍ୱାମୀ-ନିମ୍ବାର୍କ-ମାଧ୍ୱ-ରମାନୁଜାଖ୍ୟସ୍ତୁ ।
ଭବିଷ୍ୟନ୍ତି ପ୍ରସିଦ୍ଧାସ୍ତେ **ହ୍ୟୁତ୍କଳେ ପୁରୁଷୋତ୍ତମାତ୍** ॥ (୪୧)

ଏହି ଚାରି ଆଚାର୍ଯ୍ୟଙ୍କ ମଧ୍ୟରେ ଶ୍ରୀ ଜୟଦେବଙ୍କ ଆବିର୍ଭାବ ସମୟକୁ ଶ୍ରୀ ରମାନୁଜାଚାର୍ଯ୍ୟଙ୍କ ଧର୍ମମତ ଉତ୍କଳରେ ବିଶେଷ ପ୍ରସାର ଲାଭ କରିଥିବାର ଜଣାଯାଏ । ପ୍ରସିଦ୍ଧ ଗଙ୍ଗସମ୍ରାଟ ଚୋଡ଼ଗଙ୍ଗଦେବ ତାଙ୍କର ପ୍ରଭାବରେ ତାଙ୍କ ପୂର୍ବପୁରୁଷ ମାନଙ୍କ ଦ୍ୱାରା ବ୍ୟବହୃତ 'ପରମ ମାହେଶ୍ୱର' ପଦବୀ ତ୍ୟାଗ କରି ନିଜକୁ ପରମ ବୈଷ୍ଣବ ରୂପେ ଘୋଷିତ କରିଥିଲେ । ଶ୍ରୀକ୍ଷେତ୍ରରେ ଜଗନ୍ନାଥ ମନ୍ଦିର ଓ ବ୍ରହ୍ମଗିରି ନିକଟରେ ଶ୍ରୀ ଅଲଉଆରନାଥ (ନାରାୟଣ) ମନ୍ଦିର ନିର୍ମାଣ ଏବଂ ଶ୍ରୀ କୂର୍ମନାଥଙ୍କ ପାଇଁ ଶ୍ରୀ ବୈଷ୍ଣବ ସଂପ୍ରଦାୟର ସେବକ ନିଯୁକ୍ତ ଦ୍ୱାରା ଚୋଡ଼ଗଙ୍ଗ ଦେବଙ୍କ ଉପରେ ଶ୍ରୀ ରମାନୁଜଙ୍କ ପ୍ରଭାବ ସ୍ପଷ୍ଟ ପରିଲକ୍ଷିତ ହୁଏ । ପୂର୍ବରୁ ଶ୍ରୀ ଶଙ୍କରଙ୍କ ଠାରେ ଭକ୍ତିମାନ୍ ଥିବା ଘୁମୁସରର ଭଞ୍ଜବଂଶୀୟ ରାଜା ଶ୍ରୀ ଜୟଭଞ୍ଜ ଦେବ ଶ୍ରୀବୈଷ୍ଣବମତ ଗ୍ରହଣ କରିଥିଲେ । ଯଥା—

"ଶ୍ରୀ ଶଙ୍କରେ ଭକ୍ତିମାନ୍, ହରୌବୈ ପିତୃମାତୃ ପାଦଯୁଗଳେ **ଶ୍ରୀ ବୈଷ୍ଣବଃ ସାଂପ୍ରତମ୍** । (୪୨)

ଶ୍ରୀ ବୈଷ୍ଣବମାନେ ଶ୍ରୀ ଲକ୍ଷ୍ମୀ-ନାରାୟଣ ଉପାସନା କରୁଥିଲେ । ଶ୍ରୀକୃଷ୍ଣ ଭକ୍ତାଗ୍ରଣୀ ଦୂରଦର୍ଶୀ କବିପଣ୍ଡିତ ଶ୍ରୀ ଜୟଦେବ ଉତ୍କଳରେ ଭୌମରାଜତ୍ୱ କାଳରୁ ଆଦି ଦେବତା ରୂପେ ସୁପ୍ରତିଷ୍ଠିତା କମଳା ବା ଲକ୍ଷ୍ମୀ ଏବଂ ତାଙ୍କ ଦ୍ୱାରା ଆରାଧିତା ଶ୍ରୀ କୃଷ୍ଣ-ବଲ୍ଲଭା ରାଧାଙ୍କ ମଧ୍ୟରେ ସମନ୍ୱୟ ପ୍ରତିଷ୍ଠା ପାଇଁ ସ୍ୱୀୟ ଅମର କୃତିର ଆଦ୍ୟରେ ପ୍ରଥମେ ଜଗଦୀଶ ବା ଜଗନ୍ନାଥଙ୍କୁ ସ୍ତୁତି କରି ପରେ ତାଙ୍କର ପରମାରାଧ୍ୟ ଶ୍ରୀ କୃଷ୍ଣଙ୍କୁ **ଶ୍ରିତକମଳାକୁଚମଣ୍ଡଳ, ଶ୍ରୀମୁଖଚନ୍ଦ୍ରଚକୋର, ପଦ୍ମାପୟୋ-ଧରତଟୀପରିରମ୍ଭଲଗ୍ନ କାଶ୍ମୀର-ମୁଦ୍ରିତ - ମୁର-ମଧୁସୂଦନ** ରୂପେ

---

(୪୧) Proceedings of the Seventh All India Oriental Conference, p. 449.

(୪୨) E.I, Vol XIX, Antirigram plates of Jayabhanja Deva

ବର୍ଣ୍ଣନା କରିଛନ୍ତି । ଏହି ଉଦ୍ଧୃତ ଗୁଡ଼ିକ ଦ୍ୱାରା ଶ୍ରୀ ଜୟଦେବ ଶ୍ରୀଜଗନ୍ନାଥଙ୍କ ପତ୍ନୀ ରୂପେ ବେଢ଼ା ମଧ୍ୟରେ ପୂଜିତ ହେଉଥିବା ଲକ୍ଷ୍ମୀଦେବୀଙ୍କୁ ସ୍ୱ ଗ୍ରନ୍ଥରେ ଯଥୋଚିତ ପ୍ରାଧାନ୍ୟ ପ୍ରଦାନ କରିଛନ୍ତି ।

ଶ୍ରୀମଦ୍ ଭାଗବତର ବହୁଳ ପ୍ରଚାର ଫଳରେ ଦ୍ୱାଦଶ ଶତାବ୍ଦୀ ବେଳକୁ ଉତ୍କଳରେ ଶ୍ରୀକୃଷ୍ଣ ଉପାସନା ଲୋକପ୍ରିୟତା ଅର୍ଜନ କରି ସାରିଥିଲା । ତେଣୁ ୧୦୬୩ ଖ୍ରୀଷ୍ଟାବ୍ଦରେ ନିର୍ମିତ ଭୁବନେଶ୍ୱରସ୍ଥ କୃଷ୍ଣେଶ୍ୱର ମନ୍ଦିର ଗାତ୍ରରେ ଶ୍ରୀକୃଷ୍ଣ ବିଗ୍ରହ ପରିଦୃଷ୍ଟ ହୁଏ । ଆଚାର୍ଯ୍ୟ ନିମ୍ବାର୍କ ଶ୍ରୀକୃଷ୍ଣଙ୍କୁ 'ରମାପତି' 'ଶ୍ରୀପତି' ଓ 'ରମା-ମାନସ ହଂସ' ରୂପେ ବିଶେଷିତ କଲେ ମଧ୍ୟ ଶ୍ରୀରାଧାଙ୍କୁ ଶ୍ରୀକୃଷ୍ଣଙ୍କ ବାମାଙ୍ଗ ବିହାରିଣୀ ଓ ପ୍ରେମ ପ୍ରଦାୟିନୀ ରୂପେ ସ୍ଥାନ ଦେଇଥିଲେ । ତାଙ୍କର ପ୍ରସିଦ୍ଧ 'ଦଶ ଶ୍ଳୋକୀ'ର ପଞ୍ଚମ ଶ୍ଳୋକରେ ଏହି ତଥ୍ୟ ପ୍ରକାଶିତ ।

"ଅଙ୍ଗେ ତୁ ବାମେ ବୃଷଭାନୁଜାଂ ମୁଦା
ବିରାଜମାନାମନୁରୂପସୌଭଗାମ୍ ॥
ସଖୀସହସ୍ରୈଃ ପରିସେବିତାଂ ସଦା
ସ୍ମରେମ ଦେବୀଂ ସକଳେଷ୍ଟକାମଦାମ୍ ॥

ଅର୍ଥାତ୍ ଯେଉଁ ବୃଷଭାନୁନନ୍ଦିନୀ ରାଧା ଲକ୍ଷ୍ମୀ ଅନୁରୂପ ସୌଭାଗ୍ୟରୂପେ ଶ୍ରୀକୃଷ୍ଣଙ୍କ ବାମ ଅଙ୍ଗରେ ବିରାଜମାନା, ଯେ ସହସ୍ର ସଖୀ ଦ୍ୱାରା ସର୍ବଦା ପରିସେବିତା, ଯେ ସକଳ ମଙ୍ଗଳ ଓ ଅଭୀଷ୍ଟପ୍ରଦା ତାଙ୍କୁ ମୁଁ ସ୍ମରଣ କରୁଅଛି । ଆଚାର୍ଯ୍ୟ ନିମ୍ବାର୍କ ସ୍ୱ ଧର୍ମମତ ପ୍ରଚାର କରିବା ପାଇଁ ଶ୍ରୀକ୍ଷେତ୍ରରେ ମଠ ପ୍ରତିଷ୍ଠା କରିଥିଲେ । ବର୍ତ୍ତମାନ ଏହି ସମ୍ପ୍ରଦାୟର ଗୃରିଟି ମଠ ଯଥା ଶ୍ରୀ ରାଧାବଲ୍ଲଭ, ଶ୍ରୀରାମଜୀ, ଟକଟି ମଠ ଓ ଦୁଃଖିଶ୍ୟାମ ଛଡା ମଠ ମଧ୍ୟରେ ସିଂହଦ୍ୱାରର ଠିକ ସମ୍ମୁଖରେ ବଡଦାଣ୍ଡ ଉପରେ ଥିବା ଶ୍ରୀ ରାଧାବଲ୍ଲଭ ମଠଟି ପ୍ରାଚୀନତମ । ଶ୍ରୀ ଜୟଦେବ ଆଚାର୍ଯ୍ୟ ନିମ୍ବାର୍କଙ୍କ ମତାବଲମ୍ବୀ ରୂପେ ଗୃହୀତ ହୁଅନ୍ତି । ଶ୍ରୀ ଜୟଦେବଙ୍କ ପୂର୍ବରୁ ଉତ୍କଳର ଗଙ୍ଗ ସମ୍ରାଟଙ୍କ ସହିତ ଘନିଷ୍ଠ ଭାବରେ ସମ୍ପୃକ୍ତ କବି-ପଣ୍ଡିତ ଶ୍ରୀ ଗୋବର୍ଦ୍ଧନ ଆଚାର୍ଯ୍ୟ ସ୍ୱକୃତ 'ଆର୍ଯ୍ୟା ସପ୍ତଶତୀ' ଗ୍ରନ୍ଥରେ ଶ୍ରୀ ରାଧାକୃଷ୍ଣଙ୍କ ପ୍ରେମ ବର୍ଣ୍ଣନାତ୍ମକ ପାଞ୍ଚଟି ଶ୍ଳୋକ ସନ୍ନିବିଷ୍ଟ କରିଥିଲେ । ଏପରି ଅନୁକୂଳ ବାତାବରଣ ମଧ୍ୟରେ ପରମ ଶ୍ରୀକୃଷ୍ଣ ଭକ୍ତ ଶ୍ରୀ ଜୟଦେବ ସ୍ୱ ଅମରକୃତି ମାଧ୍ୟମରେ ଶ୍ରୀରାଧା-କୃଷ୍ଣ ରତିକେଳି କଥାକୁ ଲୋକପ୍ରିୟ ଧର୍ମମତ ରୂପେ ପ୍ରତିପାଦନ କରିବା ପାଇଁ ଉଦ୍ୟମ କରିଥିଲେ ।

## ଶ୍ରୀ ଜୟଦେବ ଓ କାମାର୍ଣ୍ଣବ :—

ଶ୍ରୀ ଜୟଦେବ ସ୍ୱ ଅମରକୃତିରେ କୌଣସି ରାଜାଙ୍କ ନାମ ଉଲ୍ଲେଖ କରି ନାହାନ୍ତି । ସ୍ୱର୍ଗତଃ ଐତିହାସିକ ଜଗବନ୍ଧୁ ସିଂହ ଏକଜଟା କାମଦେବ ଶ୍ରୀ ଗୀତଗୋବିନ୍ଦ

ନ ଶ୍ରୁତି ଜଳ ଗ୍ରହଣ କରୁନଥିବା ସମ୍ପର୍କରେ ଉଲ୍ଲେଖ କରିଛନ୍ତି । (୪୩) କାମାର୍ଣ୍ଣବଙ୍କ ଅପର ନାମ ଜଟେଶ୍ୱର ଥିବା ମୁଖଲିଙ୍ଗସ୍ଥ ମଧୁକେଶ୍ୱର ମନ୍ଦିର ଅଭିଲେଖ (୪୪) ଓ ହୈହୟବଂଶୀ ରତ୍ନଦେବଙ୍କ 'ଖାରୋଦ' ଶିଳାଲେଖରୁ ଜଣାଯାଏ ।

"ସ୍ୱସ୍ତି ଶକ ବର୍ତ୍ତମଂବୁଲୁ ୧୦୭୦ ନେଣ୍ଟି ଶ୍ରୀମତ୍ **ଜଟେଶ୍ୱରଦେବର** ପ୍ରବର୍ଦ୍ଧମାନ ବିଜୟ ରାଜ୍ୟ ସମ୍ବତ୍ସରଂବୁଲୁ ୩ଶ୍ରାଦ୍ଧ" ମଧୁକେଶ୍ୱର ମନ୍ଦିର ଲେଖ" ।

ଶିଳାଲେଖର ଜଟେଶ୍ୱର କାମାର୍ଣ୍ଣବ ଜନଶ୍ରୁତି ଓ ମାଦଳା ପାଞ୍ଜିରେ 'ଏକଜଟା କାମଦେବ' ନାମ ଧାରଣ କରିଥିଲେ । କାମାର୍ଣ୍ଣବଦେବ ୧୧୪୭ରୁ ୧୧୫୬ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ରାଜତ୍ୱ କରିଥିଲେ । ଏହି କିମ୍ବଦନ୍ତୀ ଦ୍ୱାରା ଶ୍ରୀ ଜୟଦେବ କାମାର୍ଣ୍ଣବଙ୍କ ସମସାମୟିକ ହେଉଥିବାରୁ ୧୧୫୬ ଖ୍ରୀଷ୍ଟାବ୍ଦ ପୂର୍ବରୁ ଶ୍ରୀ ଗୀତଗୋବିନ୍ଦ ରଚିତ ହେଉଥିବାର ସ୍ଥିର କରାଯାଇ ପାରେ । ଗଙ୍ଗ ସମ୍ରାଟ ରାଜରାଜ ଦେବ (୧୧୭୦—୧୧୯୦ ଖ୍ରୀଷ୍ଟାବ୍ଦ) ଦେବଙ୍କ ସମକାଳୀନ କବୀନ୍ଦ୍ର ଉଦୟନାଚାର୍ଯ୍ୟ ଶ୍ରୀ ଗୀତଗୋବିନ୍ଦର 'ଭାବ ବିଭାବିନୀ' ନାମ୍ନୀ ପ୍ରଥମା ଟୀକା ରଚନା କରିଥିବାରୁ ଏହି କିମ୍ବଦନ୍ତୀ ସତ୍ୟାଶ୍ରିତ ରୂପେ ଗୃହୀତ ହୋଇପାରେ ।

## ଶ୍ରୀ ଜଗନ୍ନାଥ ମନ୍ଦିରରେ ଶ୍ରୀ ଗୀତଗୋବିନ୍ଦ ଗାନ ସେବା :—

ଉତ୍କଳର ରକ୍ଷଣଶୀଳ ପଣ୍ଡିତ ମଣ୍ଡଳୀ ଶ୍ରୀ ଗୀତଗୋବିନ୍ଦ ମହାକାବ୍ୟର ମାଧୁର୍ଯ୍ୟ, ଶବ୍ଦବୈଭବ ଓ ଅର୍ଥଗୌରବରେ ମୁଗ୍ଧ ହୋଇ ଏହାକୁ ଏକ ଉତ୍କୃଷ୍ଟ ରଚନା ରୂପେ ଗ୍ରହଣ କରିଥିଲେ ମଧ୍ୟ ଏହାକୁ ଶ୍ରୀ ଜଗନ୍ନାଥ ସେବାରେ ନିତ୍ୟ ପାଠ୍ୟ ଧର୍ମଗ୍ରନ୍ଥ ରୂପେ ଗ୍ରହଣ କରିବା ପାଇଁ କୁଣ୍ଠିତ ହୋଇଥିଲେ । କିନ୍ତୁ ବ୍ୟକ୍ତିଗତ ଭାବରେ ଏହା ଶ୍ରୀ ଜଗନ୍ନାଥଙ୍କ ଶ୍ରୀମୁଖରେ ଗାନ କରିବା ପାଇଁ କୌଣସି ନିଷେଧ ନ ଥିଲା । ତେଣୁ କାମାର୍ଣ୍ଣବଙ୍କର ଶ୍ରୀ ଗୀତଗୋବିନ୍ଦ ପାଠ ପାଇଁ ପ୍ରବଳ ଅନୁରାଗଥିଲେ ମଧ୍ୟ ସେ ବୋଧହୁଏ ଏହାର ପାଠକୁ ଜଗନ୍ନାଥଙ୍କର ସେବାର ଅନ୍ତର୍ଭୁକ୍ତ କରି ପାରି ନ.ଥିଲେ ।

ଶ୍ରୀ ଗୀତଗୋବିନ୍ଦର ପ୍ରସାର ଫଳରେ ଶ୍ରୀକୃଷ୍ଣ ଆରାଧନା ଉତ୍କଳରେ କ୍ରମଶଃ ପ୍ରସାର ଲାଭକଲା । ଗଙ୍ଗ ସମ୍ରାଟ ତୃତୀୟ ରାଜରାଜ ଦେବ ପରମ ଶ୍ରୀକୃଷ୍ଣ ଭକ୍ତଥିଲେ ।

---

(୪୩) ଓଡ଼ିଶା ସାହିତ୍ୟ ଏକାଡେମୀ ଦ୍ୱାରା ପ୍ରକାଶିତ 'ପ୍ରାଚୀନ ଉତ୍କଳ' ପୃ ୫୬ ।

(୪୪) Inscriptions of Orissa, Rajaguru, Vol. III, pt. I. p. 251.

ତେଣୁ ତାଙ୍କ ଦାସଗୋବା ତାମ୍ରଶାସନର ପ୍ରଥମ ମଙ୍ଗଳାଚରଣ ଶ୍ଳୋକରେ ଶ୍ରୀକୃଷ୍ଣଙ୍କ ସ୍ତୁତି ଦୃଷ୍ଟିଗୋଚର ହୁଏ । (୪୫) ଗଙ୍ଗଦାନପତ୍ରର ମଙ୍ଗଳାଚରଣରେ ଏହାହିଁ ଶ୍ରୀକୃଷ୍ଣଙ୍କ ପ୍ରଥମ ଉଲ୍ଲେଖ । ତେଣୁ ଏହି ଶ୍ଳୋକଟି ନିମ୍ନରେ ଉଦ୍ଧାର କରାଗଲା । ଏହି ଦାନପତ୍ର ସମୟ ହେଉଛି ୧୧୨୦ ଶକାବ୍ଦ ବା ୧୧୯୮ ଖ୍ରୀଷ୍ଟାବ୍ଦ ।

"ଲକ୍ଷ୍ମୀପାଦସରୋରୁହମଦଃ ଶ୍ରେୟାଂସିଦାସୀଷ୍ଟବଃ
ପ୍ରତ୍ୟୁଜ୍ଜ୍ୱଳନଖରଶ୍ମିକେସରଶତୈଃ ଭ୍ରସ୍ୱନଖାଳ ଦଳଂ ।
ବଦ୍ଧ୍ୱାଂ ପ୍ରତିବର୍ମ୍ମିତଃ ପ୍ରଣେମନ୍ତେଃ ଲୀଡ଼ାପରାଧୋଦ୍ଭବୈଃ
**କୃଷ୍ଣୋ** ଯନ୍ନଖଧାର୍ପିଷୁ ଭ୍ରମରତାଂଧତ୍ତେ ସ **ଲକ୍ଷ୍ମୀପ୍ରିୟଃ**॥

ଏଥିରେ ଲକ୍ଷ୍ମୀପ୍ରିୟ କୃଷ୍ଣଙ୍କୁ ସ୍ତୁତି କରାଯାଇଛି । ସ୍ମାର୍ତ୍ତମାନେ ୧୧୯୮ ପୂର୍ବରୁ ଜଗନ୍ନାଥଙ୍କୁ ଶ୍ରୀକୃଷ୍ଣ ରୂପରେ ଗ୍ରହଣ କରିଥିଲେ ମଧ୍ୟ ଶ୍ରୀରାଧାଙ୍କୁ ମହାଲକ୍ଷ୍ମୀଙ୍କ ସ୍ୱରୂପ ରୂପେ ଗ୍ରହଣ କରି ନ ଥିଲେ ।

ପ୍ରଖ୍ୟାତ ଗଙ୍ଗସମ୍ରାଟ ଅନଙ୍ଗଭୀମଦେବଙ୍କ ବିଧବା କନ୍ୟା ଚନ୍ଦ୍ରିକାଦେବୀ ଶୈବ ଧର୍ମର ପ୍ରଧାନ କେନ୍ଦ୍ର 'ଏକାମ୍ର କ୍ଷେତ୍ର' ବା ଭୁବନେଶ୍ୱରରେ ବୈଷ୍ଣବ ଧର୍ମର ପ୍ରତିଷ୍ଠା ପାଇଁ ଏକ ମନ୍ଦିର ନିର୍ମାଣ କରି ସେଥିରେ "ବଳ, କୃଷ୍ଣ ଓ ସୁଭଦ୍ରାଙ୍କ ମୂର୍ତ୍ତି ସ୍ଥାପନ କରିଥିଲେ । ଏହି ବିଷୟ ୧୨୦୦ ଶକାବ୍ଦ ବା ୧୨୭୮ ଖ୍ରୀଷ୍ଟାବ୍ଦରେ ଉତ୍କୀର୍ଣ୍ଣ ଏକ ଦୀର୍ଘ ଶିଳାଲେଖରେ ବର୍ଣ୍ଣିତ ହୋଇଥିଲା । (୪୬) ଏଥିରେ ଶ୍ରୀ ଜଗନ୍ନାଥ ଓ ଶ୍ରୀକୃଷ୍ଣଙ୍କ ମଧ୍ୟରେ ଅଭେଦତ୍ୱ ପ୍ରତିପାଦିତ ହୋଇଛି । ଯଥା—

(କ) **କୃଷ୍ଣେନ** ତୃଷ୍ଣାବତୀ (୭ମ ଶ୍ଳୋକ)

(ଖ) ତତ୍ତୀର୍ଥମଣ୍ଡନାସ୍ୟାସ୍ୟ ଗୃହରେ ନାନାବର୍ଣ୍ଣନେ
**ଶ୍ରୀକୃଷ୍ଣ** ଶ୍ରୀବଳରାମ ବାସିତେ ନନ୍ଦନାସ୍ପିତେ । (୧୩ଶ ଶ୍ଳୋକ)

(ଗ) ମୁକୁଟାଦ୍ୟୈରଳଙ୍କାରୈଃ ଶକ୍ତ୍ୟା ଭକ୍ତ୍ୟା ମୁଦାନ୍ୱିତା
**ବଳକୃଷ୍ଣୌ ସୁଭଦ୍ରାଞ୍ଚ** ଶ୍ରେୟସେସା ବଭୂଷୟତ୍ ।"
(୨୩ଶ ଶ୍ଳୋକ)

---

(୪୫) E. I. Vol. XXXI p. 249.

(୪୬) ଏହି ଅଦ୍ୱିତୀୟ ଶିଳାଲେଖଟି ଗତ ଶତାବ୍ଦୀରେ ଅପସାରିତ ହୋଇ ବର୍ତ୍ତମାନ ଲଣ୍ଡନର ଏକ ମିଉଜିୟମରେ ସୁରକ୍ଷିତ । ସ୍ୱର୍ଗତଃ ପରମାନନ୍ଦ ଆଚାର୍ଯ୍ୟ ଏହାର ଏକ ଅବିକଳ ପ୍ରତିଲିପି ଆଣି ଭୁବନେଶ୍ୱରସ୍ଥ ରାଜ୍ୟ ମିଉଜିୟମରେ ରଖାଇଛନ୍ତି । ଏହାର ପାଠ ପାଇଁ ତାଙ୍କ ଗ୍ରନ୍ଥ Studies in Orissan History, Archaeology & Archives ଦ୍ରଷ୍ଟବ୍ୟ ।

## ଶ୍ରୀ ଗୀତଗୋବିନ୍ଦ ସେବାର ପ୍ରଚଳନ —

ଶ୍ରୀକ୍ଷେତ୍ର ତଥା ସମଗ୍ର ଉତ୍କଳରେ ଶ୍ରୀ ଗୀତଗୋବିନ୍ଦର କ୍ରମବର୍ଦ୍ଧମାନ ଲୋକ-ପ୍ରିୟତାକୁ ଯଥୋଚିତ ସମ୍ମାନ ପ୍ରଦର୍ଶନ ନିମିତ୍ତ ଗଙ୍ଗବଂଶୀୟ ସମ୍ରାଟ କବି ନରସିଂହ ଶ୍ରୀ ଜଗନ୍ନାଥଙ୍କ ନିକଟରେ ନିତ୍ୟ ଶ୍ରୀ ଗୀତଗୋବିନ୍ଦ ଗାନ ଏକ ସେବା ରୂପେ ପ୍ରଚଳନ କରିଥିବା ମାଦଳା ପାଞ୍ଜିରୁ ଜଣାଯାଏ । ଯଥା —

"ଏ ଉତ୍ତାରୁ କବି ନରସିଂହଦେବ ରାଜା ହୋଇଲେ । ଗୀତଗୋବିନ୍ଦ ଶିଲୋଉ କଲେ (ଶୁଭ ଦେଲେ)" (୪୭) । ଗଙ୍ଗ ସମ୍ରାଟ ଦ୍ୱିତୀୟ ନରସିଂହ ଦେବଙ୍କୁ (୧୨୭୮—୧୩୦୭ ଖ୍ରୀଷ୍ଟାବ୍ଦ) କବି ନରସିଂହଙ୍କ ସହିତ ଚିହ୍ନିତ କରା-ଯାଇଛି । ଏ ଅତ୍ୟନ୍ତ ଶ୍ରୀକୃଷ୍ଣ ଭକ୍ତ ଥିଲେ । ତାଙ୍କର ଉତ୍ସାହରେ ମୁଗୁନି ପଥରରେ ଖୋଦିତ କେତେକ କମନୀୟ ତ୍ରିଭଙ୍ଗ ଠାଣିରେ ଦଣ୍ଡାୟମାନ ବଂଶୀଧାରୀ ଶ୍ରୀକୃଷ୍ଣ ବିଗ୍ରହ ଅଦ୍ୟାପି ଭୁବନେଶ୍ୱର ନିକଟବର୍ତ୍ତୀ ହୀରପୁର, ସରକଣା ଶାସନ, ବାଲିଅନ୍ତା ଓ ବାଲେଶ୍ୱର ଜିଲାର ରେମୁଣା ପ୍ରଭୃତି ସ୍ଥାନରେ ପରିଦୃଷ୍ଟ ହୁଏ । ତେଣୁ ଏପରି ପରମ କୃଷ୍ଣ ଭକ୍ତ ସମ୍ରାଟଙ୍କ ପକ୍ଷରେ ଶ୍ରୀ ମନ୍ଦିରରେ ନିତ୍ୟ ଶ୍ରୀ ଗୀତଗୋବିନ୍ଦ ଗାନର ପ୍ରଚଳନ ସର୍ବଥା ସମ୍ଭବପର ।

## ଗଙ୍ଗବଂଶୀ ପୁରୁଷୋତ୍ତମଙ୍କ ଦ୍ୱାରା ଏକ ଗୀତଗୋବିନ୍ଦ ରଚନା :—

ଜନୈକ ଗଙ୍ଗବଂଶୀୟ ରାଜା ପୁରୁଷୋତ୍ତମ ଦେବ ଶ୍ରୀ ଗୀତଗୋବିନ୍ଦ ଅନୁକରଣରେ ଏକ ଗୀତଗୋବିନ୍ଦ ଲେଖିଥିବା ବିଷୟ ସ୍ୱର୍ଗତଃ ଜଗବନ୍ଧୁ ସିଂହ ପ୍ରଥମେ ଉଲ୍ଲେଖ କରିଥିଲେ । ଗଙ୍ଗବଂଶରେ ପୁରୁଷୋତ୍ତମଦେବ ନାମକ କୌଣସି ରାଜା ନ ଥିଲେ । କେବଳ ଗଙ୍ଗବଂଶୀୟ ଦ୍ୱିତୀୟ ଭାନୁ ଶ୍ରୀ ଜଗନ୍ନାଥଙ୍କ ପରମ ଭକ୍ତ ଥିବାରୁ ପୁରୁଷୋତ୍ତମଙ୍କ ନାମରେ ରାଜ୍ୟ ଶାସନ ଚଳାଇ ତାଙ୍କ ନାମରେ ଅଙ୍କ ଗଣନା କରିଥିବା କେତେକ ଲେଖରୁ ଜଣାଯାଏ (୪୮) । ତେଣୁ ଲୋକ-ମୁଖରେ ସେ ପୁରୁଷୋତ୍ତମ ନାମରେ ଆଖ୍ୟାତ ହୋଇଥିଲେ । ପୁରୀର ପଞ୍ଜାବୀ ମଠରୁ ପ୍ରାପ୍ତ ତାମ୍ରଶାସନରେ ସେ ଗୋବିନ୍ଦ ଓ ଶ୍ରୀପତିଙ୍କ ପରମଭକ୍ତ ଭାବରେ ବର୍ଣ୍ଣିତ ହୋଇଛନ୍ତି । "**ଗୋବିନ୍ଦସ୍ୟ** ପଦାରବିନ୍ଦରଜସା ସାନ୍ଦ୍ରୀକୃତାନନ୍ଦନାନ୍ ରାଜନୋ" "ଭକ୍ତ୍ୟାଯୁତୋ **ଶ୍ରୀପତେ୍ୌ** ବିଶ୍ୱରୂପେ" । ସେ ନିଜେ ଜଣେ ପଣ୍ଡିତ ଏବଂ ତାଙ୍କ ରାଜସଭା ପାଣ୍ଡିତ୍ୟମଣ୍ଡିତ ମହାକବି ମାନଙ୍କ ଦ୍ୱାରା ମଣ୍ଡିତ ହୋଇଥିଲା । ଯଥା —

---

(୪୭) ମାଦଳା ପାଞ୍ଜି (ପ୍ରାଚୀ), ପୃ ୩୬

(୪୮) South Indian Inscriptions, Vol. VI, Nos. 714, 938.

"ପାଣ୍ଡିତ୍ୟମଣ୍ଡିତ ମହାକବିମଣ୍ଡଳସ୍ୟ
କଣ୍ଠୁକ୍ ସହସ୍ର ବିପଦ୍ୟେ କୁଶଳଙ୍ଗମସ୍ୟ ।
ବୀର ଶ୍ରୀ ଶ୍ରବଣଗତା ସ ମହିମା **ବାଗ୍‌ଦେବତାଭୂଷଣଃ**" (୪୯)

ଏପରି ଜଣେ ଗୋବିନ୍ଦଭକ୍ତ ପଣ୍ଡିତ ନରପତିଙ୍କ ଦ୍ୱାରା ତାଙ୍କ ପିତାଙ୍କ ଦ୍ୱାରା ଶ୍ରୀ ଜଗନ୍ନାଥଙ୍କ ସେବାରେ ପ୍ରଚଳିତ ଶ୍ରୀ ଗୀତଗୋବିନ୍ଦ ପରିବର୍ତ୍ତରେ ନିଜର ପାଣ୍ଡିତ୍ୟ ପ୍ରଦର୍ଶକ ଅନ୍ୟ ଏକ ଗୀତଗୋବିନ୍ଦ ପାଇଁ ଉଦ୍ୟମ କରାଯାଇଥିବା ସମ୍ପୂର୍ଣ୍ଣ ସମ୍ଭବପର । କିନ୍ତୁ ଏକ ଆଦରଣୀୟ ଧର୍ମଗ୍ରନ୍ଥ ଭାବରେ ଶ୍ରୀଗୀତଗୋବିନ୍ଦର ସମ୍ମାନ ଓ ଗୌରବ ଭକ୍ତ ଓ ବିବୁଧମାନଙ୍କ ହୃଦୟରେ ଏପରି ବଦ୍ଧମୂଳ ହୋଇଯାଇଥିଲା ଯେ ସେମାନେ ରାଜା ପ୍ରଚଳିତ ଗ୍ରନ୍ଥକୁ ଶ୍ରୀଜଗନ୍ନାଥଙ୍କ ସେବାରେ ପ୍ରଚଳନ ବିରୁଦ୍ଧରେ ଆପଣ ପ୍ରତିବାଧ କରିଥିଲେ । ତହୁଁ ଉଭୟ ଗ୍ରନ୍ଥର ପରୀକ୍ଷା ଭାର ଶ୍ରୀଜଗନ୍ନାଥଙ୍କ ଉପରେ ଅର୍ପିତ ହେଲା ।

## ଶ୍ରୀ ଗୀତଗୋବିନ୍ଦର ରାଜ-ସଂସ୍କରଣ —

ମହାପ୍ରଭୁ ଶ୍ରୀ ଗୀତଗୋବିନ୍ଦର ଉତ୍କର୍ଷକୁ ସମର୍ଥନ କଲେ . ମଧ୍ୟ ନୈରାଶ୍ୟ ଜର୍ଜ୍ଜରିତ ରାଜକବିଙ୍କ ସନ୍ତୋଷ ବିଧାନ ନିମିତ୍ତ ତତ୍‌କୃତ ଗ୍ରନ୍ଥର କେତୋଟି ଶ୍ଳୋକ ଶ୍ରୀଜୟଦେବ ବିରଚିତ ଶ୍ରୀଗୀତଗୋବିନ୍ଦର ପ୍ରତ୍ୟେକ ସର୍ଗରେ ସନ୍ନିବେଶ କରିବା ପାଇଁ ଆଜ୍ଞା ପ୍ରଦାନ କରିଥିଲେ । ମହାରାଷ୍ଟ୍ରରେ ପ୍ରଚଳିତ କିମ୍ବଦନ୍ତୀ ଅନୁଯାୟୀ ରାଜରଚିତ ଚତୁର୍ବିଂଶତି ଶ୍ଳୋକ ଧର୍ମଗ୍ରନ୍ଥ ଶ୍ରୀଗୀତଗୋବିନ୍ଦରେ ସ୍ଥାନ ଲାଭ କରିଥିଲା । ଶ୍ରୀକ୍ଷେତ୍ରର ପଣ୍ଡିତମାନଙ୍କ ଦ୍ୱାରା ଶ୍ରୀ ଗୀତଗୋବିନ୍ଦର ଏହି ରାଜସଂସ୍କରଣ ଅନୁମୋଦିତ ହେବା ପରେ ଏହା କ୍ରମଶଃ ସମଗ୍ର ଭାରତବର୍ଷରେ ପ୍ରସାରଲାଭ କରିଥିଲା । ଚତୁର୍ଦ୍ଦଶ ଶତାବ୍ଦୀର ପ୍ରଥମ ଭାଗରେ ମିଥିଳାରେ ଆବିର୍ଭୂତ ପ୍ରସିଦ୍ଧ ପଣ୍ଡିତ ଶ୍ରୀ ଜଗଦ୍ଧର କୃତ ଶ୍ରୀ ଗୀତଗୋବିନ୍ଦର **ସାରଦୀପିକା** ନାମ୍ନୀ ଟୀକାରେ ଏପରି ୧୮ଟି ପ୍ରକ୍ଷିପ୍ତ ଶ୍ଳୋକର ବ୍ୟାଖ୍ୟା ପ୍ରଦାନ କରିଥିବାରୁ ଶ୍ରୀଗୀତଗୋବିନ୍ଦର ରାଜସଂସ୍କରଣ ଏହା ପୂର୍ବରୁ ରଚିତ ହୋଇଥିବା ସୁନିଶ୍ଚିତ । କିନ୍ତୁ ନୈଷ୍ଠିକ ବୈଷ୍ଣବମାନେ ଶ୍ରୀ ଗୀତଗୋବିନ୍ଦର ଏହି ରାଜସଂସ୍କରଣକୁ ଗ୍ରହଣ କରି ନ ଥିଲେ । ତେଣୁ ଜଗଦ୍ଧରଙ୍କ ବହୁ ପରବର୍ତ୍ତୀ ହେଲେ ମଧ୍ୟ ପ୍ରସିଦ୍ଧ ଉତ୍କଳୀୟ ପଣ୍ଡିତ କବିରାଜ ଶ୍ରୀ ନାରାୟଣ ଦାସ ଶ୍ରୀ ଗୀତଗୋବିନ୍ଦର ରାଜସଂସ୍କରଣରେ ପ୍ରକ୍ଷିପ୍ତ ଶ୍ଳୋକ ଗୁଡ଼ିକର ଟୀକା ଲେଖିନାହାନ୍ତି । (୫୦)

---

(୪୯) ପଣ୍ଡିତ ଶ୍ରୀ ସତ୍ୟନାରାୟଣ ରାଜଗୁରୁଙ୍କ ଦ୍ୱାରା ସଂପାଦିତ ଦ୍ୱିତୀୟ ଭାନୁଦେବଙ୍କ ପଣ୍ଡାରୀ ମଠ ତାମ୍ରଶାସନ ।
O.H.R J Vol IX Nos. 1 & 2 pp 22-24

(୫୦) ଏ ସଂପର୍କରେ ସବିଶେଷ ଆଲୋଚନା ପରବର୍ତ୍ତୀ 'ଶ୍ରୀଗୀତଗୋବିନ୍ଦ'ରେ ପ୍ରକ୍ଷେପ ଅଧ୍ୟାୟରେ କରାଯାଇଛି ।

## ଗଜପତି ଶ୍ରୀ ପୁରୁଷୋତ୍ତମଦେବ ରଚିତ 'ଅଭିନବ ଗୀତଗୋବିନ୍ଦ'—

ସୂର୍ଯ୍ୟବଂଶୀୟ କାଞ୍ଚୀବିଜେତା ଗଜପତି ଶ୍ରୀ ପୁରୁଷୋତ୍ତମଦେବ ଯେପରି ଅମିତ ପରାକ୍ରମ ମହାବୀର ସେହିପରି ପ୍ରତିଭାଶାଳୀ ପଣ୍ଡିତ ଥିଲେ ଏବଂ ତାଙ୍କ ରାଜସଭା କବିଚନ୍ଦ୍ର ରାୟ ଦିବାକର ମିଶ୍ର ଓ କବିଡିଣ୍ଡିମ ଜୀବଦେବାଚାର୍ଯ୍ୟ ପ୍ରମୁଖ ଭାରତ ବିଖ୍ୟାତ କବିପଣ୍ଡିତମାନଙ୍କ ଦ୍ୱାରା ମଣ୍ଡିତ ହୋଇଥିଲା । ଶ୍ରୀଜଗନ୍ନାଥଙ୍କ କୃପାରୁ ସେ ସିଂହାସନଲାଭ କରିଥିବାରୁ ମହାପ୍ରଭୁଙ୍କଠାରେ ତାଙ୍କର ଅଚଳା ଭକ୍ତି ଥିଲା ଏବଂ ତାଙ୍କ ସେବାରେ ସେ ନିଜ ଜୀବନ ଉତ୍ସର୍ଗ କରିଥିଲେ । ତାଙ୍କ ଦ୍ୱାରା ଶ୍ରୀକ୍ଷେତ୍ରର ମାହାତ୍ମ୍ୟ ପ୍ରଖ୍ୟାପନ ପାଇଁ 'ମୁକ୍ତିଚିନ୍ତାମଣି' ନାମକ ଏକ ଉପାଦେୟ ଗ୍ରନ୍ଥ ସଂକଳିତ ହୋଇଥିଲା । ଶ୍ରୀକୃଷ୍ଣ, ଗୋବିନ୍ଦ ଓ ଗୋପୀଜନ ବଲ୍ଲଭ ଭାବରେ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ସେବାପୂଜାକୁ ଶୃଙ୍ଖଳିତ ଓ ଲିପିବଦ୍ଧ କରିବା ପାଇଁ ସେ 'ଗୋପାଳାର୍ଚ୍ଚନବିଧି' ବା 'ଗୋପାଳାର୍ଚ୍ଚନ ପଦ୍ଧତି' ନାମକ ଧର୍ମଶାସ୍ତ୍ର ସଂକଳନ କରିଥିଲେ । ତାହା ଅଦ୍ୟାବଧି ଶ୍ରୀମନ୍ଦିରରେ ଅନୁସୃତ ହେଉଅଛି ।

ମହାପ୍ରଭୁଙ୍କ ଠାରେ ନିତ୍ୟ ଗୀତ ଓ ସମଗ୍ର ଭାରତରେ ଆଦୃତ 'ଶ୍ରୀଗୀତଗୋବିନ୍ଦ'ର ଅନୁକରଣରେ ସେ ତାଙ୍କ ସଭାପଣ୍ଡିତ 'କବିଚନ୍ଦ୍ର' ରାୟ ଦିବାକର ମିଶ୍ରଙ୍କ ଦ୍ୱାରା ରଚିତ **ଅଭିନବ ଗୀତଗୋବିନ୍ଦମ୍** ସ୍ୱ ନାମରେ ଭଣିତ କରାଇଥିଲେ । ଶ୍ରୀଜଗନ୍ନାଥଙ୍କ ଭକ୍ତମାନଙ୍କ ଭକ୍ତି ଓ ପ୍ରୀତି ଆକର୍ଷଣ ନିମିତ୍ତ ଏହାର ଆଦ୍ୟସର୍ଗସ୍ଥ 'ଦଶାବତାର ସ୍ତୁତି'ରେ '**ଜନନପାଳନନାଶକାରଣ ନୀଳଗିରିପତି ଅଚ୍ୟୁତ**ଙ୍କ ମାହାତ୍ମ୍ୟ କୀର୍ତ୍ତିତ ହୋଇଥିଲା । (୫୧) ସେ ନିଜର କ୍ଷମତା ଓ ପାଣ୍ଡିତ୍ୟ ବଳରେ ଶ୍ରୀ ଗୀତଗୋବିନ୍ଦମ୍ ପରିବର୍ତ୍ତେ ଏହାର ପାଠ ମହାପ୍ରଭୁଙ୍କ ନିତ୍ୟସେବାର ଅଙ୍ଗୀଭୂତ କରିଥିଲେ । କିନ୍ତୁ ନିତ୍ୟ ପାଠ୍ୟ ଧର୍ମଗ୍ରନ୍ଥ ରୂପେ ଶ୍ରୀମନ୍ଦିରରେ ବହୁପୂର୍ବରୁ ପ୍ରଚଳିତ ଶ୍ରୀ ଗୀତଗୋବିନ୍ଦମ୍‌ର ଆସ୍ଥାନ ଦୃଢ଼ମୂଳ ହୋଇଥିବାରୁ ଗଜପତି ପୁରୁଷୋତ୍ତମ ଦେବଙ୍କ ମୃତ୍ୟୁ ପରେ ଏହାର ମାହାତ୍ମ୍ୟମୁଗ୍ଧ ଭକ୍ତ ଓ ପଣ୍ଡିତମାନେ ଏହାର ପୁନଃପ୍ରଚଳନ ପାଇଁ ଆପତ୍ତି କରିଥିଲେ ।

## ପ୍ରତାପରୁଦ୍ରଙ୍କ ଦ୍ୱାରା ଶ୍ରୀଗୀତଗୋବିନ୍ଦର ପୁନଃପ୍ରଚଳନ—

ବୈଷ୍ଣବ ଜନମାନଙ୍କ ସନ୍ତୋଷ ବିଧାନ ନିମିତ୍ତ ଶ୍ରୀ ପୁରୁଷୋତ୍ତମ ଦେବଙ୍କ ପୁତ୍ର ଓ ଉତ୍ତରାଧିକାରୀ ଗଜପତିପ୍ରତାପରୁଦ୍ର ଦେବ ସ୍ୱ ରାଜତ୍ୱର ତୃତୀୟ ବର୍ଷରେ ଏକ ରାଜକୀୟ ଘୋଷଣା ଦ୍ୱାରା ଶ୍ରୀମନ୍ଦିରରେ ଶ୍ରୀ ଜୟଦେବ କୃତ ଶ୍ରୀଗୀତଗୋବିନ୍ଦ ପାଠ

---

(୫୧) 'ଅଭିନବ ଗୀତଗୋବିନ୍ଦମ୍' ସଂପର୍କରେ ବିଶେଷ ବିବରଣ ଜାଣିବା ପାଇଁ ଇଚ୍ଛୁକ ସୁଧୀଗଣଙ୍କୁ ଇଂରେଜୀରେ ପ୍ରକାଶିତ ଏତଦ୍ ସମ୍ବନ୍ଧୀୟ ମୋର ପ୍ରବନ୍ଧ ପାଠ ପାଇଁ ଅନୁରୋଧ ।
The O.H.R. Journal, Vol IX pts 3 & 4 pp. 52-68

ବାଧ୍ୟତାମୂଳକ କରିଥିଲେ । ଏହି ଘୋଷଣାଟି ଶ୍ରୀଜଗନ୍ନାଥଙ୍କ ଜୟବିଜୟ ଦ୍ୱାରରେ ଲିପିବଦ୍ଧ ହୋଇଅଛି । (୫୨) ଶ୍ରୀମନ୍ଦିରରେ ଶ୍ରୀଗୀତଗୋବିନ୍ଦ ଗାନ ଆଲୋଚନା ସଂପର୍କରେ ଏହାର ବିଶେଷ ଗୁରୁତ୍ୱ ଥିବାରୁ ମନମୋହନ ଚକ୍ରବର୍ତ୍ତୀ କରିଥିବା ସମଗ୍ର ଲେଖର ପାଠ ଉଦ୍ଧାର କରାଗଲା ।

"ବୀରଶ୍ରୀ ଗଜପତି ଗଉଡ଼େଶ୍ୱର ନବକୋଟି କର୍ଣ୍ଣାଟ କଲବରଗେସର ବିରବର ଶ୍ରୀ ପ୍ରତାପରୁଦ୍ର ମହାରାଜାଙ୍କର ସମସ୍ତ ଅ ୪ଙ୍କ ଶ୍ରାହ୍ମ କକଡ଼ା ସୁ ୧୦ ବୁଧବାରେ ଅବଧାରିତ ଆଜ୍ଞାର ପ୍ରମାଣେ ବଡ଼ଠାକୁରଙ୍କ ଶ୍ରୀ ଗୀତଗୋବିନ୍ଦ ଠାକୁରଙ୍କ ଭୋଗ ବେଳେ ଏ ନାଟ ହୋଇବ । ସନ୍ଧ୍ୟାଧୂପ ସରିବା ଠାରୁ ଏ ନାଟ ହୋଇବ । ବଡ଼ଠାକୁରଙ୍କ ସଂପରଦା କପିଳେଶ୍ୱର ଠାକୁରଙ୍କ ବନ୍ଦା ନାଚଣୀମାନ ପୁରୁଣା ସଂପରଦା ତେଲଂଗୀ ସଂପରଦା ଏମାନେ ସବର୍ହେଁ ବଡ଼ଠାକୁରଙ୍କ ଗୀତଗୋବିନ୍ଦହିଁ ଆନ ଗୀତ ନ ସିଖିବେ । ଆନ ଗୀତ ନ ଗାଇବେ ଆନ ଗୀତ ହୋଇ ପରମେଶ୍ୱରଙ୍କ ଛାମୁରେ ନ ହବ । ଏ ନାଟ ଭିତରକେ ବଇଷ୍ଣବ ଚାରିଅଣ ବୃଦ୍ଧାଜଣ ଅଛନ୍ତି, ଏମାନେ ଗୀତଗୋବିନ୍ଦ ଗୀତହିଁ ସେ ଗାଇବେ । ଏହାଙ୍କ ଠାରୁ ଅଶିକ୍ଷିତମାନେ ଏକଚିତ୍ତରେ ଶୁଣି ଗୀତଗୋବିନ୍ଦ ଗୀତ ହିଁ ସେ ଶିଖିବେ, ଆନ ଗୀତ ନ ଶିଖିବେ । ଏହା ଜେ ପରୀକ୍ଷା ଆନ ଗୀତ ନାଟ କରାଇଲେ ଜାଣି ସେ ଜଗନ୍ନାଥଙ୍କ ଦ୍ରୋହ କରଇ । (୫୩)

ଏହି ଘୋଷଣାର ସମୟ ହେଉଛି ଗଜପତି ପ୍ରତାପରୁଦ୍ର ଦେବଙ୍କ ୪ଅଙ୍କ କକଡ଼ା ଶୁକ୍ଳ ଦଶମୀ ବୁଧବାର । ଗଣନା ଅନୁସାରେ (୫୪) ୧୫୦୦ ଖ୍ରୀଷ୍ଟାବ୍ଦ ଜୁଲାଇ ମାସ ୮ ତାରିଖ ଆଷାଢ଼, ଶୁକ୍ଳ ଦଶମୀ ଦିନ ପଡ଼ୁଛି । ସେଦିନ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ବାହୁଡ଼ା ଉତ୍ସବ ଅନୁଷ୍ଠିତ ହେଉଥିବାରୁ ସମଗ୍ର ଭାରତର ବିଭିନ୍ନ ପ୍ରାନ୍ତରୁ ଆଗତ ସହସ୍ର ସହସ୍ର ଯାତ୍ରୀଙ୍କ ମଧ୍ୟରେ ମହାରାଜାଙ୍କ ଏହି ଘୋଷଣା ବିଦ୍ୟୁତ୍ ବେଗରେ ପ୍ରଚାରିତ ହୋଇଥିଲା । ଏହି ଘୋଷଣା ଅନୁଯାୟୀ ବଳଭଦ୍ର, ବଡ଼ଠାକୁର ଏବଂ ଜଗନ୍ନାଥ ମହାପ୍ରଭୁ ଗୀତଗୋବିନ୍ଦ ଠାକୁର ବା ଶ୍ରୀ ଗୀତଗୋବିନ୍ଦରେ ସ୍ତୁତ ବା ବନ୍ଦିତ ଦେବତା ରୂପେ ବର୍ଣ୍ଣିତ ହୋଇଛନ୍ତି । ଏଥିରେ ଗଜପତି ମହାରାଜା ମନ୍ଦିର ପରୀକ୍ଷା (ପରିଚ୍ଛା)ଙ୍କୁ ଆଜ୍ଞାଦେଲେ—

---

(୫୨) ପ୍ରଥମେ ଏହା ରାଜେନ୍ଦ୍ର ଲାଲ ମିତ୍ର ପାଠକରିଥିଲେ
Antiquities of Orissa, Vol II, pp 165. Appendix

(୫୩) ରାଜେନ୍ଦ୍ର ଲାଲ ମିତ୍ରଙ୍କ ପାଠରେ ଅଶୁଦ୍ଧ ଥିବାରୁ ମନମୋହନ ଚକ୍ରବର୍ତ୍ତୀ ଏହାର ଶୁଦ୍ଧ ପାଠ ୧୮୯୩ରେ ପ୍ରକାଶ କରିଥିଲେ ।
Journal Asiatic Society of Bengal, Vol LXII 1893 pp 96-97

(୫୪) An Indian Ephemeris by Pillai Vol III P.

(କ) ପ୍ରତ୍ୟେକ ଭୋଗ ସମୟରେ ଏବଂ ସନ୍ଧ୍ୟାଧୂପ ସରିଲେ ଠାରୁ ବଡ଼ଶିଙ୍ଗାର ପର୍ଯ୍ୟନ୍ତ କେବଳ ଶ୍ରୀ ଗୀତଗୋବିନ୍ଦ ବୋଲାଯାଇ ନୃତ୍ୟ ହେବ ।

(ଖ) ବଳଭଦ୍ର ଠାକୁରଙ୍କ ସମ୍ପ୍ରଦାୟ, କପିଳେଶ୍ୱର ଠାକୁରଙ୍କ ବନ୍ଧା (ପୂରୁଷାନୁକ୍ରମିକ ଭୂମିବାଡ଼ ଭୋଗକରି ସେବାକୁ ଖଟଣି କୁହାଯାଏ ।) ନର୍ତ୍ତକୀଗଣ, ପୁରୁଣା ସଂପ୍ରଦାୟ ଏବଂ ତେଲେଙ୍ଗା ସଂପ୍ରଦାୟ ଶ୍ରୀ ଗୀତଗୋବିନ୍ଦ ବ୍ୟତୀତ ଅନ୍ୟ ଗୀତ ଶିଖିବେ ନାହିଁ, ଅନ୍ୟ ଗୀତ ଗାଇବେ ନାହିଁ, ମହାପ୍ରଭୁଙ୍କ ସମ୍ମୁଖରେ ନୃତ୍ୟ ସମୟରେ ଶ୍ରୀ ଗୀତଗୋବିନ୍ଦ ବ୍ୟତୀତ ଅନ୍ୟ ଗୀତ ବୋଲାଯିବ ନାହିଁ ।

ଗ) ଏହି ଦୁଇ ସମ୍ପ୍ରଦାୟ ବ୍ୟତୀତ ସ୍ୱତନ୍ତ୍ର ଭାବରେ ନିଯୁକ୍ତ ହୋଇଥିବା ଗୁରୁଜଣ ବୈଷ୍ଣବ ଗାୟକ କେବଳ ଶ୍ରୀ ଗୀତଗୋବିନ୍ଦ ଗୀତ ଗାନ କରିବେ । ସେମାନେ ଅଶିକ୍ଷିତ ଲୋକମାନଙ୍କୁ କେବଳ ଶ୍ରୀ ଗୀତଗୋବିନ୍ଦ ଗୀତ ଶିଖାଇବେ, ଅନ୍ୟ ଗୀତ ଶିକ୍ଷା ଦେବେ ନାହିଁ ।

ଯେଉଁ ମନ୍ଦିର ପରିଚ୍ଛା ରାଜାଜ୍ଞା ଅମାନ୍ୟ କରି ଶ୍ରୀ ଗୀତଗୋବିନ୍ଦ ବ୍ୟତୀତ ଅନ୍ୟ ଗୀତ ବୋଲିବା ପାଇଁ ବା ବୋଲି ନୃତ୍ୟ କରିବା ପାଇଁ ଅନୁମତି ଦେବ ସେ ଜଗନ୍ନାଥଙ୍କ ଠାରେ ଦ୍ରୋହୀ ହେବ ।

ସେ ଯୁଗରେ ସମଗ୍ର ଭାରତରେ ହିନ୍ଦୁଧର୍ମର ରକ୍ଷକ ରୂପେ ବିବେଚିତ ଲକ୍ଷେ ରାଜାଙ୍କ ମଉଡ଼ମଣି ପରମ ବୈଷ୍ଣବ ଗଜପତି ପ୍ରତାପରୁଦ୍ରଙ୍କର ଏହି ଆଦେଶ ଭାରତବର୍ଷର ଏକ ଶ୍ରେଷ୍ଠ ଯାତ୍ରା ଗୁଣ୍ଡିଚା ମହୋତ୍ସବ ସମୟରେ ପ୍ରଚାରିତ ହେବାରୁ ସମସାମୟିକ ସମାଜରେ ଶ୍ରୀଗୀତଗୋବିନ୍ଦର ଆଦର ଓ ସମ୍ମାନ ଯଥେଷ୍ଟ ବୃଦ୍ଧିଲାଭ କରିଥିଲା । ଦେବଙ୍କପ୍ରିୟ ପ୍ରିୟଦର୍ଶୀ ମୌର୍ଯ୍ୟସମ୍ରାଟ ଅଶୋକଙ୍କ ଧର୍ମାନୁଶାସନର ପ୍ରଚାର ଯୋଗୁଁ ସମଗ୍ର ପୃଥିବୀରେ ମହାମାନବ ଗୌତମ ବୁଦ୍ଧଙ୍କ ଅହିଂସା, ଶାନ୍ତି ଓ ମୈତ୍ରୀର ବାଣୀ ପ୍ରସାରଲାଭ କଲାପରି ଏହି ରାଜକୀୟ ଘୋଷଣା ଦ୍ୱାରା ଶ୍ରୀଜଗନ୍ନାଥଙ୍କ ପରମଭକ୍ତ ଶ୍ରୀ ଜୟଦେବଙ୍କ ଅକ୍ଷର କୀର୍ତ୍ତିର ଯଶଃ ଚତୁର୍ଦ୍ଦିଗରେ ପରିବ୍ୟାପ୍ତ ହୋଇଥିଲା ।



# ଚତୁର୍ଥ ଅଧ୍ୟାୟ

## ଶ୍ରୀଗୀତଗୋବିନ୍ଦର ଦଶାବତାର ସ୍ତୁତି

ଉତ୍କଳୀୟ କବିରାଜ ଶ୍ରୀ ଜୟଦେବଙ୍କ ଅମର କୃତି 'ଶ୍ରୀଗୀତଗୋବିନ୍ଦ' ଅନ୍ତର୍ଗତ ଦଶାବତାର ସ୍ତୁତି ଏକ ହୃଦୟସ୍ପର୍ଶୀ, ଭାବଗର୍ଭକ ଓ ଲୋକପ୍ରିୟ ଗୀତ ଭାବରେ ଏ ଦେଶର ଶିକ୍ଷିତ ତଥା ଅଶିକ୍ଷିତ ଲୋକମାନଙ୍କ ଦ୍ୱାରା ଆଦୃତ ହୁଏ । ଅତି ପ୍ରାଚୀନ କାଳରୁ ବିଷ୍ଣୁଙ୍କ ବିଭିନ୍ନ ଅବତାର ଭାରତୀୟ ସମାଜରେ ବିଶେଷ ଲୋକପ୍ରିୟତା ଅର୍ଜନ କରିଥିବା ବୈଦିକ ସାହିତ୍ୟ, ମହାଭାରତ, ଗୀତା, ବିଭିନ୍ନ ପୁରାଣ, କେତେ ପ୍ରାଚୀନ ଅଭିଲେଖ ଓ କାବ୍ୟ, ଅନେକ ପ୍ରାଚୀନ ମନ୍ଦିର ଓ ବିଷ୍ଣୁ ବିଗ୍ରହ ଚତୁଃପାର୍ଶ୍ୱରେ ଖୋଦିତ ଦଶାବତାର ବିଗ୍ରହ ସମୂହର ପରୀକ୍ଷା ଦ୍ୱାରା ଜଣାଯାଏ । ତେଣୁ ଶ୍ରୀଗୀତଗୋବିନ୍ଦସ୍ଥ 'ଦଶାବତାର ସ୍ତୁତି'ର ବୈଶିଷ୍ଟ୍ୟ ଓ ସମାଦର ସମ୍ବନ୍ଧରେ ଧାରଣା କରିବା ପାଇଁ ଏହାର ପରଂପରା ଓ ଐତିହ୍ୟ ସମ୍ବନ୍ଧରେ ସଂକ୍ଷେପରେ ଆଲୋଚନା କରାଗଲା ।

ଭାରତର ପ୍ରାଚୀନତମ ଧର୍ମଗ୍ରନ୍ଥ ଋକ୍‌ବେଦୋକ୍ତ **ତ୍ରୀଣିପଦା** ବି ଚକ୍ରମେ **ବିଷ୍ଣୁର୍ଗୋପା** ଅଦାଭ୍ୟଃ" ବାକ୍ୟ ଦ୍ୱାରା ବିଷ୍ଣୁଙ୍କ ବାମନ ଅବତାରରେ ତ୍ରିବିକ୍ରମତ୍ୱ ପ୍ରତିପାଦିତ ହୋଇଅଛି । ଐତରେୟ ବ୍ରାହ୍ମଣ ଓ ତୈତ୍ତିରୀୟ ସଂହିତାରେ 'ବାମନ ଅବତାରଙ୍କ ବୃତ୍ତାନ୍ତ ବର୍ଣ୍ଣିତ ହୋଇଅଛି । କେତେକ ବ୍ରାହ୍ମଣ ଓ ଆରଣ୍ୟକରେ ବରାହ, ମତ୍ସ୍ୟ, କୂର୍ମ ଓ ନୃସିଂହ ଅବତାରଙ୍କ ଉଲ୍ଲେଖ ଦେଖାଯାଏ । ଶତପଥ ବ୍ରାହ୍ମଣରେ ମତ୍ସ୍ୟ ଓ କୂର୍ମ ଅବତାରଙ୍କ ବର୍ଣ୍ଣନା ମିଳେ । ମହାଭାରତରେ ଲେଖା ଅଛି—

"ହଂସ, କୂର୍ମଶ୍ଚ, ମତ୍ସ୍ୟଶ୍ଚ ପ୍ରାଦୁର୍ଭାବ ଦ୍ୱିଜୋତ୍ତମ
ବରାହ, ନରସିଂହଶ୍ଚ ବାମନ ରାମଏବ ଚ
ରାମ ଦାଶରଥିଶ୍ଚୈ ବ ସାତ୍ୱତଃ କଲ୍କିରେବ ଚ ।"

ମହାଭାରତରେ କଲ୍କି ଅବତାରଙ୍କ ଉଲ୍ଲେଖ ଥିଲେ ମଧ୍ୟ ମହାପୁରୁଷ ବୁଦ୍ଧ ବିଷ୍ଣୁଙ୍କ ଅବତାର ରୂପେ ଗୃହୀତ ହୋଇନାହାନ୍ତି । ଶ୍ରୀମଦ୍‌ଭଗବଦ୍‌ଗୀତାର ନିମ୍ନୋଦ୍ଧୃତ ପ୍ରସିଦ୍ଧ ଶ୍ଲୋକରେ ବିଷ୍ଣୁଙ୍କ ଅବତାରବାଦ ସ୍ପଷ୍ଟ ଭାବରେ ଘୋଷିତ ହୋଇଅଛି ।

"ଯଦା ଯଦାହି ଧର୍ମସ୍ୟ ଗ୍ଲାନିର୍ଭବତି ଭାରତ
ଅଭ୍ୟୁତ୍ଥାନଂ ଅଧର୍ମସ୍ୟ ତଦାତ୍ମାନଂ ସୃଜାମ୍ୟହଂ ।
ପରିତ୍ରାଣାୟ ସାଧୁନାଂ ବିନାଶାୟ ଚ ଦୁଷ୍କୃତାମ୍
ଧର୍ମସଂସ୍ଥାପନାର୍ଥାୟ ସମ୍ଭବାମି ଯୁଗେ ଯୁଗେ ।"

ପ୍ରସିଦ୍ଧ ବୈଷ୍ଣବ ଗ୍ରନ୍ଥ **ହରିବଂଶରେ** ହଂସ, କୂର୍ମ, ମତ୍ସ୍ୟ, ବରାହ, ନରସିଂହ, ବାମନ, ରାମ, କୃଷ୍ଣ, କଲ୍କି ଓ ବୁଦ୍ଧ ଅବତାରଙ୍କ ବିବରଣ ମିଳେ । ଭାଗବତ ପୁରାଣରେ ଅନେକ ଅବତାରଙ୍କ ବିଷୟ ବର୍ଣ୍ଣିତ ହୋଇଅଛି । କିନ୍ତୁ **ବରାହ ପୁରାଣ** ଓ **ଅଗ୍ନିପୁରାଣରେ** ପ୍ରଦତ୍ତ ଦଶଅବତାର ଯଥା—ମତ୍ସ୍ୟ, କୂର୍ମ, ବରାହ, ନରସିଂହ ବାମନ, ପରଶୁରାମ, ରାମ, କୃଷ୍ଣ, ବୁଦ୍ଧ, କଲ୍କୀଙ୍କ ନାମ ଓ କ୍ରମ ଭଗବାନ୍ ଶଙ୍କରାଚାର୍ଯ୍ୟ କୃତ ପ୍ରସିଦ୍ଧ ଦଶାବତାର ସ୍ତୋତ୍ରରେ ଗୃହୀତ ହୋଇଥିଲା ।

## ପ୍ରାଚୀନ ଅଭିଲେଖ ଓ ଗ୍ରନ୍ଥସମୂହରେ ଦଶାବତାର ବର୍ଣ୍ଣନା—

ବିଭିନ୍ନ ପୁରାଣର ରଚନାକାଳ ଓ ତହିଁରେ ସନ୍ନିବିଷ୍ଟ ମୌଳିକ ରଚନା ଓ ପ୍ରକ୍ଷିପ୍ତାଂଶ ସମ୍ବନ୍ଧରେ ପ୍ରତ୍ନତତ୍ତ୍ୱବିତ୍‌ମାନଙ୍କ ମଧ୍ୟରେ ମତଦ୍ୱୈଧ ଦେଖାଯାଏ । ତେଣୁ ଲେଖଗତ ଓ ପ୍ରତିଷ୍ଠିତ ଗ୍ରନ୍ଥଲବ୍‌ଧ ପ୍ରମାଣ ସମୂହ ଅଭ୍ରାନ୍ତ ଓ ନିର୍ଦ୍ଦିଷ୍ଟ କାଳ ଜ୍ଞାପକ ରୂପେ ଗୃହୀତ ହେଉଥିବାରୁ ସେଥିରୁ କେତେକ ନିମ୍ନରେ ଉପସ୍ଥାପିତ କରାଗଲା ।

ଉତ୍କଳଖଣ୍ଡରେ ବହୁ ପ୍ରାଚୀନ କୀର୍ତ୍ତି ମଣ୍ଡିତ ଭୁବନେଶ୍ୱର ପରି ତାମିଲନାଡୁ (ମାନ୍ଦ୍ରାଜ) ରାଜ୍ୟସ୍ଥ ମହାବଳୀପୁରମ୍ ଏକ ପୁରାତନ ମନ୍ଦିରଶୋଭିତ ଇତିହାସ ପ୍ରସିଦ୍ଧ ସ୍ଥାନ । ସେଠାରେ ପାହାଡ଼ କଟାଯାଇ ନିର୍ମିତ ହୋଇଥିବା ବରାହ ପେରୁମାଲ୍ଲ ମନ୍ଦିର ବାରଣ୍ଡାର ଏକ ପାଟପଥର (Lintel) ଦେହରେ ବିଷ୍ଣୁଙ୍କ ଦଶାବତାର ସୂଚକ ନିମ୍ନୋକ୍ତ ଗୁରୁତ୍ୱପୂର୍ଣ୍ଣ ଶ୍ଳୋକ ଖୋଦିତ ହୋଇଥିବାର ଦେଖାଯାଏ । ଯଥା—

"ମତ୍ସ୍ୟ, କୂର୍ମ, ବରାହଶ୍ଚ ନରସିଂହଶ୍ଚ ବାମନଃ
ରାମୋ ରାମଶ୍ଚ ରାମଶ୍ଚ ବୁଦ୍ଧଃ କଲ୍‌କୀ ଚ ତେ ଦଶ ।"

ଏଠାରେ ପ୍ରଥମ ରାମ ପରଶୁରାମ, ଦ୍ୱିତୀୟ ରାମ ଦାଶରଥିରାମ ଓ ତୃତୀୟ ରାମ ବଳରାମ ଅର୍ଥ-ଦ୍ୟୋତକ । ଏପର୍ଯ୍ୟନ୍ତ ଆବିଷ୍କୃତ ଦଶାବତାରଙ୍କ ଉଲ୍ଲେଖ ଥିବା ଅଭିଲେଖ ଗୁଡ଼ିକ ମଧ୍ୟରେ ଏହା ପ୍ରାଚୀନତମ । ଖୋଦିତ ଗୁମ୍ଫାର ଇତିହାସ ଓ ଲେଖର ଲିପିତତ୍ତ୍ୱ ବିଚାରରେ ଏହା ଖ୍ରୀଷ୍ଟୀୟ ଅଷ୍ଟମ ଶତାବ୍ଦୀରେ ଅବସ୍ଥାପିତ କରାଯାଇଅଛି ।

"This Avatara verse in question in Varaha Perumal temple, written also in the characters of about the 8th century A. D. supports the view that the inclusion of Buddha in the Avatars of Vishnu must have already become familiar in the 8th century. (୧)

ଉକ୍ତଲେଖକ ପଣ୍ଡିତ ଏଚ୍ କୃଷ୍ଣଶାସ୍ତ୍ରୀଙ୍କ ମତରେ ବିଶ୍ୱକସେନ ସଂହିତା, ବିଷ୍ଣୁସହସ୍ରନାମ, ଅଗ୍ନି, ବିଷ୍ଣୁ, ବରାହ ଓ ଭାଗବତ ପୁରାଣରେ ବୁଦ୍ଧ ବିଷ୍ଣୁଙ୍କ ଅବତାର ରୂପେ ବର୍ଣ୍ଣିତ ହୋଇଛନ୍ତି । ଏହି ଅଭିଲେଖ ଦ୍ୱାରା ଅଷ୍ଟମ ଶତାବ୍ଦୀ ପୂର୍ବରୁ ବୁଦ୍ଧ ବିଷ୍ଣୁଙ୍କ ଦଶାବତାର ମଧ୍ୟରୁ ଏକତମ ରୂପେ ପ୍ରତିଷ୍ଠା ଲାଭ କରିଥିବା ନିଃସନ୍ଦେହରେ ପ୍ରମାଣିତ ହୁଏ ।

ପ୍ରାଚୀନ ଭାରତର ପ୍ରଖ୍ୟାତ ଓ ପ୍ରାତଃସ୍ମରଣୀୟ କବିପଣ୍ଡିତ ଓ ଧର୍ମ-ପ୍ରଚାରକ ପରିବ୍ରାଜକାଚାର୍ଯ୍ୟ ଭଗବାନ ଶ୍ରୀ ଶଙ୍କରାଚାର୍ଯ୍ୟ ବୌଦ୍ଧମତର ବିଲୋପକାରୀ ହେଲେମଧ୍ୟ ଏହାର ପ୍ରତିଷ୍ଠାତା ବୁଦ୍ଧଙ୍କୁ 'ପଦ୍ମାସନସ୍ଥ' 'ନ୍ୟସ୍ତନାସାଗ୍ରଦୃଷ୍ଟି' 'ଯୋଗୀ-ଚକ୍ରବର୍ତ୍ତୀ' 'ପ୍ରବୁଦ୍ଧ' ରୂପେ ଅତି ଭକ୍ତି ସହକାରେ ସ୍ୱକୃତ 'ଦଶାବତାରସ୍ତୋତ୍ରମ୍'ରେ ବର୍ଣ୍ଣନା କରିଛନ୍ତି । ଭଗବାନ ଶଙ୍କର ବ୍ରାହ୍ମଣ୍ୟଧର୍ମର ଅଭ୍ୟୁତ୍ଥାନକାରୀ ଏକ ଯୁଗପ୍ରବର୍ତ୍ତକ ମହାତ୍ମା ରୂପେ ବିବେଚିତ ହେଉଥିବାରୁ ତାଙ୍କର 'ଦଶାବତାର ସ୍ତୋତ୍ରର ସମଗ୍ର ଭାରତରେ ପ୍ରଚଳନ ଦ୍ୱାରା ହିନ୍ଦୁସମାଜରେ ଦଶାବତାର ଉପାସନା ଲୋକ-ପ୍ରିୟତା ଅର୍ଜନ କରିଥିଲା । ତେଣୁ ଏହା ନିମ୍ନରେ ଉଦ୍ଧାର କରାଗଲା ।

**ଶ୍ରୀଶଙ୍କରାଚାର୍ଯ୍ୟକୃତ ଦଶାବତାର ସ୍ତୋତ୍ରମ୍—**

ଚଲଲ୍ଲୋଲ କଲ୍ଲୋଲ-କଲ୍ଲୋଲମାଳା-
ସ୍ଫୁରନ୍ନକ୍ରଚକ୍ରାନ୍ତିବକ୍ସାମ୍ବୁଲୀନଃ
ହତୋ ଯେନ **ମୀନାବତାରେଣ** ଶଙ୍ଖଃ
ସ ପାୟାଦପାୟାଜ୍ଜଗଦ୍ ବାସୁଦେବଃ । ୧

ଧରା ନିର୍ଜ୍ଜରାରାତିଭାରାଦପାରା
ଦକୂପାରମାରାଦ୍ଭୁରାଧଃ ପତନ୍ତୀ

---

(୧) Memoir of the Archaeological Survey of India, No. 26 Two statues of Pallava Kings and five Pallava inscriptions in a Rock-cut temple at Mahabalipuram by H. Krishna Sastri.

ଧୃତୋ **କୂର୍ମରୂପେଣ** ପୃଷ୍ଟୋପରିଷ୍ଟେ
ସ ଦେବୋ ମୁଦେ ବୋଽସ୍ତୁ ଶେଷାଙ୍କଶାୟୀ । ୨ ।

ଉଦଗ୍ରେ ରଦାଗ୍ରେ ସ ଗୋବାପି ଗୋବା
ସ୍ଥିତା ତସ୍ଥୁଷଃ କେତକାଗ୍ରେ ଷଡ଼ଂଘ୍ରେ
ତନୋତିଶ୍ରିୟଂ ସ ଶ୍ରିୟଂ ନସ୍ତନୋତୁ
ପ୍ରଭୁଃ **ଶ୍ରୀବରାହାବତାରୋ** ମୁରାରିଃ । ୩ ।

ଉଦେବାର ଆରମ୍ଭ ସଂରମ୍ଭିଣୋଽସୌ
ରମାସମ୍ଭ୍ରମାଭଙ୍ଗୁରୈର୍ନଖାଗ୍ରୈଃ
ସ୍ୱଭକ୍ତ୍ୟାତିଭକ୍ତ୍ୟା ପ୍ରକାଶେନ ଦାରୁ-
ଣ୍ୟଘୌଘଂ ସଦ ବଃ ସନ୍ଧଂସ୍ୟାନ୍**ନୃସିଂହଃ** ॥ ୪

ଛଳାଦାକଳଯ୍ୟ ତ୍ରିଲୋକ୍ୟାଂ ବଳୀୟାନ୍
ବଳଂ ସ ବବନ୍ଧ ତ୍ରିଲୋକୀବଳୀୟଃ
ତନୁତ୍ୱଂ ଦଧାନା ତନୁସନ୍ଧାନୋ
ଦମୋହଂ ମନୋ **ବାମନୋ** ବଃ ସ କୃଣ୍ଡାତୁ । ୫ ।

ହୃତକ୍ଷତ୍ରିୟାସୃକ୍ ପ୍ରପାନପ୍ରମତ୍ତ
ପ୍ରନୃତ୍ୟତ୍ପିଶାଚପ୍ରଗୀତ-ପ୍ରତାପଃ
ଧରାକାର ଯେନାଗ୍ରଜନ୍ମାଗ୍ରହାରଂ
ସହାରଂସ୍ତ୍ରିୟାନ୍ମାନସେ ବଃ ସ **ରାମଃ** ॥ ୬ ।

ନତଗ୍ରୀବ-ସୁଗ୍ରୀବ-ସାମ୍ରାଜ୍ୟ-ହେତୁ
ର୍ଦଶଗ୍ରୀବ-ସନ୍ତାନ-ସଂହାରକେତୁଃ ।
ଧନୁର୍ଯ୍ୟେନଭଗ୍ନଂ ମହତ୍ଵକାମହେତୁଃ
ସ ମେ **ଜାନକୀକାନ୍ତ** ରେନାଂ ସିହନ୍ତୁ । ୭ ॥

ଘନାଦ୍ ଗୋଧନଂ ଯେନ ଗୋବର୍ଦ୍ଧନେନ
ବ୍ୟରକ୍ଷି ପ୍ରତାପେନ ଗୋବର୍ଦ୍ଧନେନ
ହତାରାତିଚକ୍ରୀ ରଣଧ୍ୱସ୍ତଚକ୍ରୀ
ଚକ୍ରଧ୍ୱସ୍ତଚକ୍ରୀ ସନଃ ପାତୁ **ଚକ୍ରୀ** ॥ ୮

ଧରାବଦ୍ଧପଦ୍ମାସନାସ୍ଥାଙ୍ଘ୍ରିଯଷ୍ଟି
ର୍ନିୟମ୍ୟାନିଳଂ ନ୍ୟସ୍ତନାସାଗ୍ରଦୃଷ୍ଟିଃ
ଯ ଆସ୍ତେ କଲୌ ଯୋଗିନାଂ ଚକ୍ରବର୍ତ୍ତୀ
ସ **ବୁଦ୍ଧଃ** ପ୍ରବୁଦ୍ଧୋଽସ୍ତୁ ନଶ୍ଚିତ୍ତବର୍ତ୍ତୀ ॥୯॥

ଦୁରପାରସଂସାରସଂହାରକାରୀ
ଭବନ୍ତଶ୍ଛୁରଃ କୃପାଣପ୍ରହାରୀ
ମୁରାରେର୍ଦଶାକାରଧାରୀହ କଲ୍କୀ
କରୋତୁ ଦ୍ୱିଷାଂ ଧ୍ୱଂସନଂ ବଃ ସ କଲ୍କୀ ॥୧୦॥"(୨)

ଇତିଶ୍ରୀମଚ୍ଛଙ୍କରାଚାର୍ଯ୍ୟ ବିରଚିତଂ ଦଶାବତାର ସ୍ତୋତ୍ରମ୍ ।

ଭଗବାନ୍ ଶଙ୍କରକୃତ 'ଦଶାବତାରସ୍ତୋତ୍ରମ୍'ରେ ବଳରାମଙ୍କ ପରିବର୍ତ୍ତରେ ଗୋବର୍ଦ୍ଧନଗିରିଧାରୀ ଗୋବର୍ଦ୍ଧନ ଶ୍ରୀକୃଷ୍ଣ ଅଷ୍ଟମ ଅବତାର ରୂପେ ବର୍ଣ୍ଣିତ ହୋଇଛନ୍ତି । ତାଙ୍କର ପଦାଙ୍କ ଅନୁସରଣ କରି କାଶ୍ମୀରଦେଶୀୟ ମହାକବି କ୍ଷେମେନ୍ଦ୍ର (୧୦୩୦—୧୦୮୦ ଖ୍ରୀଷ୍ଟାବ୍ଦ) ମଧ୍ୟ ୧୦୬୬ ଖ୍ରୀଷ୍ଟାବ୍ଦରେ ରଚିତ ସ୍ୱୀୟ 'ଦଶାବତାର ଚରିତ' କାବ୍ୟରେ ସନ୍ନିବିଷ୍ଟ 'ଦଶାବତାର ସ୍ତୁତି'ରେ କଂସନିସୂଦନ ଶ୍ରୀକୃଷ୍ଣଙ୍କୁ ବଳରାମଙ୍କ ପରିବର୍ତ୍ତରେ ଅଷ୍ଟମ ଅବତାର ରୂପେ ଗ୍ରହଣ କରିଛନ୍ତି । ସେ ପ୍ରଥମ ମଙ୍ଗଳାଚରଣ ଶ୍ଳୋକର ପରବର୍ତ୍ତୀ ଶ୍ଳୋକରେ ସମସ୍ତ ଦଶଅବତାରଙ୍କ ନାମୋଲ୍ଲେଖ କରି ପରବର୍ତ୍ତୀ ଦଶଟି ଶ୍ଳୋକରେ ବିଭିନ୍ନ ଅବତାରଙ୍କ ବର୍ଣ୍ଣନା କରିଛନ୍ତି । ଏହି 'ଦଶାବତାର ସ୍ତୁତି'ର ପ୍ରଭାବ ଶ୍ରୀଗୀତଗୋବିନ୍ଦ ଉପରେ ପଡ଼ିଥିବାରୁ ଏହା ନିମ୍ନରେ ଉଦ୍ଧାର କରାଗଲା ।

## ମହାକବି କ୍ଷେମେନ୍ଦ୍ରକୃତ ଦଶାବତାର ସ୍ତୁତି—

"ଅଶେଷବିଶ୍ୱବୈଚିତ୍ର୍ୟରଚନାରୁଚୟେ ନମଃ
ମାୟାଗହନଗୂଢ଼ାୟ ନାନାରୂପାୟ ବିଷ୍ଣବେ ॥୧॥

ଦେବଃ ପାୟାଦପାୟାନ୍ନିଭୁବନଭବନସମ୍ଭୂତଃ ସ ଯୁଷ୍ମା-
ନାଘୂର୍ଣ୍ଣାନ୍ ଯସ୍ୟଭକ୍ତ୍ୟା ପ୍ରଭବତି ପୁରୁଷଃ ସ୍ୱର୍ଗମାର୍ଗେଽପବର୍ଗେ ।
ମତ୍ସ୍ୟଃକୂର୍ମୋବରାହଃ ପୁରୁଷହରିବପୁର୍ବାମନୋ ଜାମଦଗ୍ନ୍ୟଃ
କାକୁତ୍ସ୍ଥଃ କଂସହନ୍ତା ସ ଚ ସୁଗତମୁନିଃ କଲ୍କିନାମାଚ ବିଷ୍ଣୁଃ ॥୨॥

ଆଦି ମତ୍ସ୍ୟଃ ସ ଜୟତାଦ୍ୟଃ ଶ୍ୱାସୋଚ୍ଛ୍ୱାସିତୈର୍ଜଲୈଃ
ଗଗନେ ବିଦଧେଽମ୍ଭୋଧିଂ ଗଗନଂ ଚ ମହୋଦଧୌ ॥୩॥

ତଂ ନମସ୍କୁର୍ମହେ କୂର୍ମଂ ଯଃ କବାଟମସଙ୍କଟମ୍
ଅଖିଳସର୍ବବ୍ରହ୍ମାଣ୍ଡମବିଶେଷମିବାବହନ୍ ॥୪॥

୨ । ଶଙ୍କରାଚାର୍ଯ୍ୟ ଗ୍ରନ୍ଥାବଳୀ (ପୃ ୪-୬)
ଧର୍ମଜ୍ଞାନ ପ୍ରଚାର ମନ୍ଦିର ଦ୍ୱାରା ପ୍ରକାଶିତ ।

ବରାହଂ ନୌମି ସାନନ୍ଦା ଯେନୋତ୍କ୍ଷିପ୍ତା କ୍ଷିତିଃ ପରମ୍
ଅଧୋ ଧୃତାର୍ଦ୍ଧଛନ୍ନେବ ଚଲସ୍ଥାକତପାସହା ॥୫॥

ଜୟାୟ ନୃହରେର୍ବୋଽସ୍ତୁ ଦୈତ୍ୟୋରଃଶୋଣିତାର୍ଣ୍ଣବେ
ହାରମୌକ୍ତିକଗର୍ଭସ୍ଥା ଶ୍ବେତରୁଚିର୍ନଖଶୁକ୍ତୟଃ ॥୬॥

ସଂ ବାମନୋଽସ୍ତୁ ଭୂତ୍ୟୈ ବଃ ପ୍ରାଗ୍ଲଘ୍ୱୀମଧମାଗତଃ
ଯସ୍ୟ ପଶ୍ଚାଦନନ୍ତାଭୂତ୍ ସହସ୍ରାଂଶୁରିବାକୃତିଃ ॥୭॥

ଅଭଗ୍ନଂ ଜାମଦଗ୍ନ୍ୟୋ ବଃ ପ୍ରୟଚ୍ଛତୁ ଜୟୋଦୟମ୍
ଯତ୍କୁଠାର କଠୋରାଗ୍ନି ଭୂପାଲୈଃ ଶଲଭାୟିତମ୍ ॥୮॥

ନୌମି ରାମଂ ଶପୋଷ୍ଟନ୍ଧେ ଯଃ କାଞ୍ଚନନଦୈଃ ଶରୈଃ
ହୋମାନଳଶିଖାରୂଢ଼ମିବ ବକ୍ତ୍ରବନଂ ପୁନଃ ॥୯॥

ଶୌରି ଜୟତ୍ବ କଂସସ୍ୟ ଜୀବିତପ୍ରଥମାର୍ତ୍ତିଥିଃ
ଯସ୍ତସ୍ତେ ବକ୍ତ୍ରଦାନେନ ବାଣବାହୁ ପ୍ରତିଗ୍ରହମ୍ ॥୧୦॥

ଯସ୍ୟ ସଭ୍ରୂଭ୍ରମାକମ୍ପା ମାରରାମାଃ ସସୈନ୍ୟକାଃ
ଚକ୍ରୁର୍ନରାଗଂ ନଦ୍ୱେଷଂ ସ ଶାନ୍ତ୍ୟେ ସୁଗତୋଽସ୍ତୁ ବଃ ॥୧୧॥

ସ୍ୱଚ୍ଛନ୍ଦପ୍ରୋଚ୍ଛଳନ୍ମ୍ଲେଚ୍ଛତମିରୋଚ୍ଛେଦ ସଚ୍ଛବିଃ
କଳ୍କିବିଷ୍ଣୁଃ ପ୍ରକାଶାୟ ପ୍ରଭାତାର୍କ ଇବାସ୍ତୁ ବଃ ॥୧୨॥

ଅବତାରକଥାଯୁକ୍ତ୍ୟା ଭକ୍ତ୍ୟା ଭଗବତୋ ହରେଃ
ଶ୍ରୀବ୍ୟାସଦାସଃ କ୍ଷେମେନ୍ଦ୍ରଃ କୁରୁତେ ସରସାଂସ୍ତୁତିମ୍ ॥୧୩॥

ଇତି ଶ୍ରୀମହାକବି କ୍ଷେମେନ୍ଦ୍ର ବିରଚିତ ଦଶାବତାରସ୍ତୁତିଃ ସମାପ୍ତା । (୩)

## ମହାକବି ଶ୍ରୀହର୍ଷଙ୍କୃତ ଦଶାବତାର ସ୍ତୁତି—

ଦ୍ୱାଦଶ ଶତାବ୍ଦୀର ପ୍ରଥମାର୍ଦ୍ଧରେ ଉତ୍କଳ ଖଣ୍ଡରେ ଆବିର୍ଭୂତ ମହାକବି ଶ୍ରୀହର୍ଷ ସ୍ୱୀୟ 'ନୈଷଧୀୟ ଚରିତମ୍' ମହାକାବ୍ୟର ଏକବିଂଶ ସର୍ଗରେ କାବ୍ୟର ନାୟକ ନଳରାଜାଙ୍କ ମୁଖରେ ୪୦ଟି ଶ୍ଳୋକରେ ଦଶାବତାରଙ୍କ ସ୍ତୁତି ଗାନ କରାଇଛନ୍ତି । ସେଥିରେ ଏକ ଏକ ଶ୍ଳୋକରେ ମୀନ ଓ କମଠ, ଦୁଇଦୁଇଟି ଶ୍ଳୋକରେ ବରାହ ଓ ନରସିଂହ, ଚାରୋଟି ଶ୍ଳୋକରେ ବାମନ, ତିନୋଟି ଶ୍ଳୋକରେ ପରଶୁରାମ, ନଅଟି ଶ୍ଳୋକରେ ରାମ, ବାରଟି ଶ୍ଳୋକରେ କୃଷ୍ଣ ଓ ବଳରାମ, ଚାରୋଟି ଶ୍ଳୋକରେ

---

୩ । କ୍ଷେମେନ୍ଦ୍ର ଲଘୁକାବ୍ୟ ସଂଗ୍ରହ
Published by the Osmania University, P, 6•

ବୁଦ୍ଧ ଓ ଦୁଇଟି ଶ୍ଳୋକରେ କଳ୍କି ଅବତାରଙ୍କ ମହିମା କୀର୍ତ୍ତିତ ହୋଇଅଛି । ୯୧ ସଂଖ୍ୟକ ଶ୍ଳୋକରେ କଳ୍କି ସ୍ପଷ୍ଟ ଭାଷାରେ ଦଶମ ଅବତାର ରୂପେ ବର୍ଣ୍ଣିତ ହୋଇଥିବାରୁ ମହାକବି ଶ୍ରୀହର୍ଷ ଶ୍ରୀକୃଷ୍ଣ ଓ ଶ୍ରୀବଳରାମଙ୍କ ଅଭେଦତ୍ୱ ପ୍ରତିପାଦନ ପୂର୍ବକ ଉଭୟଙ୍କୁ ଏକ ଅବତାର ରୂପେ ଉପସ୍ଥାପିତ କରନ୍ତି । ଯଥା :—

"ଧୂମବତ୍ କଳୟିତା ଯୁଧି କାଳଂ
ମ୍ଳେଚ୍ଛକଲ୍ପଶିଖିନା କରବାଳମ୍
କଳ୍କିନା ଦଶତୟଂ ମମ କଲ୍କଂ
... ବ୍ୟୂଂଦସ୍ୟ ଦଶମାବତାରେଣ ॥" ।୯୧।

ନୈଷଧର ପ୍ରସିଦ୍ଧ ନାରାୟଣୀୟ ଟୀକାରେ ଏହାର ନିମ୍ନଲିଖିତ ବ୍ୟାଖ୍ୟା ଦିଆଯାଇଛି । ଯଥା— 'ଏବଂଭୂତେନ **କଲ୍କିସଂଜ୍ଞେନଦଶମାବତାରେଣ** କୃତ୍ୱା ମମ ଦଶତୟଂ ଦଶାବସ୍ଥଂ କଲ୍କଂ ପାପଂ ବ୍ୟୂଦସ୍ୟ ନଶ୍ୟକୁରୁ' (୪) ମହାକବି ଶ୍ରୀହର୍ଷକୃତ 'ଦଶାବତାରସ୍ତୁତି' ପ୍ରାଚୀନ ସଂସ୍କୃତ ସାହିତ୍ୟରେ ସର୍ବପ୍ରଥମ । ଏହାଦ୍ୱାରା ଶ୍ରୀଜୟଦେବକୃତ ଦଶାବତାର ସ୍ତୁତି ବିଶେଷ ଭାବରେ ପ୍ରଭାବିତ ହୋଇଥିବାର ଜଣାଯାଏ । ଗୋଟିଏ ଉଦାହରଣ ଏଠାରେ ବିଚାର କରାଯାଉ :—

"**ଧୂମବତ୍ କଳୟିତା** ଯୁଧିକାଳଂ
ମ୍ଳେଚ୍ଛକଲ୍ପଶିଖିନା **କରବାଳମ୍**" —(ଶ୍ରୀହର୍ଷ)
"ମ୍ଳେଚ୍ଛନିବହ ନିଧନେ **କଳୟସି କରବାଳଂ**
**ଧୂମକେତୁ** ମିବ କମପି କରାଳମ୍ ॥" (ଶ୍ରୀଜୟଦେବ)

## ଆଜମୀର ଶିଳାଲେଖରେ ଦଶାବତାର ସ୍ତୁତି—

ରାଜସ୍ଥାନ ଅନ୍ତର୍ଗତ ଆଜମୀର ନାମକ ସ୍ଥାନରେ ଦ୍ୱାଦଶ ଶତାବ୍ଦୀରେ ଖୋଦିତ ଏକ ଶିଳାଲେଖର ନିମ୍ନୋଦ୍ଧୃତ ଦଶଟି ଶ୍ଳୋକରେ (୧୨—୨୧) ବିଷ୍ଣୁଙ୍କ ଦଶାବତାର ଅତି ଚମତ୍କାର ଭାବରେ ବର୍ଣ୍ଣିତ ହୋଇଅଛି । ଏହା ଏକ କାବ୍ୟର ପ୍ରଥମ

(୪) ବମ୍ବେ ନିର୍ଣ୍ଣୟ ସାଗର ମୁଦ୍ରଣାଳୟ ଦ୍ୱାରା ନାରାୟଣ, ମଲ୍ଲିନାଥ, ବିଦ୍ୟାଧର, ଜିନରାଜ ଗୁଣବିବର୍ଦ୍ଧନ ଓ ନରହରି ପ୍ରଭୃତି ବିଭିନ୍ନ ଟୀକାକାରଙ୍କ ବ୍ୟାଖ୍ୟା ସାହାଯ୍ୟରେ ପ୍ରକାଶିତ 'ନୈଷଧୀୟ ଚରିତମ୍'ରେ ଦଶାବତାର ସଂକ୍ରାନ୍ତ ଏ ସମସ୍ତ ଶ୍ଳୋକ ମିଳେ । କିନ୍ତୁ ବଙ୍ଗୀୟ ହରିଦାସ ସିଦ୍ଧାନ୍ତବାଗୀଶ କୃତ ଆଧୁନିକ ଟୀକାରେ ବୁଦ୍ଧ ଓ କଳ୍କି ବର୍ଣ୍ଣନାତ୍ମକ ଶ୍ଳୋକ ଗୁଡ଼ିକ ମିଳେ ନାହିଁ । ଏହାଦ୍ୱାରା ଏହି ମହାକାବ୍ୟର ଗୁରୁତ୍ୱ ଓ ଗୌରବହାନି ଘଟିଥିବାରୁ ଏହି ଟୀକା ସର୍ବଥା ବର୍ଜନୀୟ । ପୃ—୯୧୪

ଅଧ୍ୟାୟରେ ଲିପିବଦ୍ଧ ହୋଇଥିବାର ମଧ୍ୟ ଜଣାଯାଏ । ଶ୍ରୀଜୟଦେବ ଏହାର ଆଦର୍ଶ ଅନୁସରଣ କରି ସ୍ୱକୃତିର ପ୍ରଥମ ସର୍ଗରେ ଦଶାବତାରସ୍ତୁତି ସନ୍ନିବିଷ୍ଟ କରିଥିଲେ । ତୁଳନାତ୍ମକ ଆଲୋଚନା ପାଇଁ ଏହା ନିମ୍ନରେ ଉଦ୍ଧାର କରାଗଲା ।

ଉଦ୍‌ବର୍ତ୍ତନ ପ୍ରତନପାତବଶାତ୍ ପୟୋଧୌ
ଦ୍ୱେଧାବିଦୀର୍ଣ୍ଣସଲିଲେ ଜଲଶାୟିନୋ ଯଃ ।
ସ୍ୱସ୍ୟୈ ବ ମୂର୍ତ୍ତିରପରା ହତଯୋଗନିଦ୍ରା-
ମାଲୋକିତୋ ବିଜୟତେ ସ **ମୁରାରିମୀନଃ** । ୧୨

ଯସ୍ୟ ନିସର୍ଗିରବନୀଧରତ ଉନେଭ୍ୟୋ
ଯାଦୋଗଣୈ ରୁଦରି ପାଦତଳେ ନିଲୀନୈଃ
ପୀୟୂଷମନ୍ଥନ ବିପନ୍ନ ରଥା ସଦାଗୌ
**କୂର୍ମାତ୍ମକଃ** ସ ହରିରସ୍ତୁ ବିଭୂତୟେ ବଃ । ୧୩

ସୃଷ୍ଟ୍ୟାଧିସ୍ଥିତ ଦକ୍ଷିଣାକ୍ଷିକିରଣୋଃ ସଂବର୍ତ୍ତବାତୋଲ୍ଵଣୈଃ
ସଂଶୋଷଂ ମୁଖମାରୁତୈସ୍ତୁ ସୁତରାମେକାର୍ଣ୍ଣବେ ଗଚ୍ଛତି ।
ପୃଥ୍ୱୀଂ ଫେଣକୃତାସ୍ପଦାମିବ ଦଧଦ୍‌ଦ୍ରଂଷ୍ଟ୍ରାଂଶୁଲଗ୍ନାଂ ହରିଃ
**କୋଲାତ୍ମା** ବିତରତ୍ୱପୂର୍ଣ୍ଣସଲିଳକ୍ରୀଡ଼ାସ୍ପୃହୋ ବଃ ଶିବମ୍ । ୧୪

ବିଷ୍ଟ୍ରାର୍ଦ୍ଧାରିପୁତ ସଦା କବଚିତ ସ୍କନ୍ଧାଂ **ନୃସିଂହାର୍ଦ୍ଧ ତାମ୍**
ଦେୟାସୁଃ କରପଦ୍ମସଂହନନିଗିତାଃ ଶଶ୍ୱତ୍ ସୁଖଂ ବୋ ନଖାଃ ।
ଯୈ ବକ୍ଷଃ ଖନତା ହିରଣ୍ୟକଶିପୋର୍ଦେବେନ ଦତ୍ତା-ଶ୍ରିୟା
ମୁକ୍ତଖାତଃ ସୁଚିରେରିତ୍‌ଥିତୋ ହୃଦ ମହାନ୍ ଦୁଃଖଦ୍ରୁମୋ ନାକିନାମ୍ । ୧୫

ଯାଚଞ୍ଚାଂ ଚେତସି ମହାବାଦବିରହିତସ୍ୟୈବ ଶ୍ରିୟା ବିଭ୍ରତଃ
ତ୍ରୈଲୋକ୍ୟଂ ଲଙ୍ଘୟତାଂଚ **ବାମନହରେଃ** ପାଦଦ୍ୱୟଂ ପାତୁ ବଃ
ହସ୍ତାନାଂ ବିବିଧାୟୁଧ ପ୍ରମଥିତାମର୍ତ୍ତ୍ୟଦ୍ୱିଷାମୀର୍ଷ୍ୟୟା
ନୂନଂ ଯେନ ରସାତଳଂ ପ୍ରଗମିତୋ ବିକ୍ରମ୍ୟବୈରୋଚନଃ । ୧୬

ତ୍ରିଭୁବନ ଗୁରୁଶିଷ୍ୟଃ ଗୃପବେଦେମଣାକ୍ଷୀ
ନିଶିତ-ପରଶୁ-ଲୂନାଶେଷରାଜନ୍ୟବଂଶଃ ।
ଜୟତି ମୁନି ସମଜ୍ୟା ରଜ୍ୟଦାତ୍ମା ସହସ୍ରା-
ର୍ଜୁନ ଭୁଜବନ ଷଣ୍ଡାଙ୍ଗାରକୃତ୍ **ଜାମଦଗ୍ନ୍ୟଃ** । ୧୭

ମାୟାଶ୍ୱସ୍ୟ ତୟୈବଦର୍ପିତମିତି ପ୍ରହ୍ୱାତ୍ମନା
ଜାନକୀଚୂଡ଼ାରତ୍ନମୁପାହୃତଂ ଚରଣୟୋ ମୂର୍ଲେ ମରୁତ୍‌ସୂନୁନା
ଗୃହ୍ଣନ୍ ସପ୍ରଣୟଂ ସସାନ୍ଦ୍ର କରୁଣଂ ସାକୃତ୍ରିମପ୍ରତ୍ୟୟମ୍
ଯୋଽସାବଂ ସବହୁତପଂ ବିଜୟତେ ଦେବୋ **ଦଶାସ୍ୟାନ୍ତକୃତ୍** । ୧୮

ସ୍ତ୍ରାବୈର୍ଧାତ୍ତୁରସାକ୍ତମୁଦ୍ୟଦୁପଳାସଂଗାସୃଗା ଶଂକୟା
ହା କଂ ଜାତଇତ ପ୍ରମୃଙ୍ଖ୍ୟ ପରେତଃ ସ୍ତୋତ୍ରସପ୍ଲାଂଜଳୈଃ
ଯଂ ବ୍ରେମାନ୍ବିତ ମକ୍ଷତାଂଗମପିଚ ବ୍ୟାଳୋକ୍ୟ ଗୋପ୍ୟା ମୁଦା ।
ବଲ୍ଗନ୍ତ ସ୍ମ **ସହେଲମୁଦ୍ଧୃତଗିରିଃ କୃଷ୍ଣଃ** ସ ପୁଷ୍ଣାତୁ ବଃ । ୧୯

ବେଦନିଷ୍ଠାନୁରକ୍ତଂ କରୁଣାତ୍ତୃଣୌଘ-
ଛନ୍ନାନନଂ ସୁଗତଦର୍ଶନ-ନମ୍ରକୂପମ୍
ପାତୟ୍ୟ ଯଃ କଳଯୁଗୈକ ସୁହୃଚ୍ଚକାର
**ଲୋକସ୍ୟ ବୁଦ୍ଧ** ଇତି ରକ୍ଷତୁ ବଃ ସ ବସ୍ତୁଃ । ୨୦

ତାର୍କ୍ଷ୍ୟାରୋହଣନେଷ୍ଟହୃଦସ୍ୟ ଭୁରଗେନୋଢସ୍ୟ ବର୍ଦ୍ଧଂବନ୍ଧଂ ?
ବନାକାଲୋ ଯସ୍ୟ କରେସ୍ଥିତଃ କଳିସମୁଚ୍ଛେଦଂ କରିଷ୍ୟନ୍ତୋ ଽଃ
ଗୋ ସଯୁକ୍ତବୃଷାଂ ବଧାସ୍ୟତକୃତମ୍ ସୃଷ୍ଟ୍ୱା ପ୍ରକୃଷ୍ଟଂଯୁଗମ୍
ମ୍ଳେଚ୍ଛନାମବସାନକୃତ୍ **ସ ଭଗବାନ୍ କଲ୍‌କୀହରି** ପାତୁବଃ। ୨୧ (*)

ଏଠାରେ ଉଦ୍ଧୃତ ଦଶାବତାର ସ୍ତୁତି ଗୁଡ଼ିକର ସମୀକ୍ଷା ଦ୍ୱାରା ଜଣାଯାଏ ଯେ, ଭଗବାନ୍ ଶଙ୍କର, ମହାକବି କ୍ଷେମେନ୍ଦ୍ର ଓ ଆଜମୀର ପ୍ରଶସ୍ତିର ଲେଖକ ବରାହ ପୁରାଣ,ଅଗ୍ନି ପୁରାଣ ଓ ହରିବଂଶ ପ୍ରଭୃତିର ମତ ଗ୍ରହଣ କରି ଭଗବାନ୍ ଶ୍ରୀକୃଷ୍ଣଙ୍କୁ ଅଷ୍ଟମ ଅବତାର ରୂପେ ସ୍ତୁତି କରିଛନ୍ତି । କିନ୍ତୁ ଉତ୍କଳୀୟ ମହାକବି ଶ୍ରୀହର୍ଷ ପୂର୍ବ ସୂରିମାନଙ୍କ ଦ୍ୱାରା ଅନୁସୃତ ଉପରୋକ୍ତ ଦଶାବତାର ପର୍ଯ୍ୟାୟ ଏବଂ ତାଙ୍କ ସମୟକୁ ଭାରତୀୟ ଭାଗବତର୍ଧରେ ବଳରାମଙ୍କୁ ଅଷ୍ଟମ ଅବତାର ରୂପେ ପ୍ରକଟନ ରୂପକ ସୁପ୍ରତିଷ୍ଠିତ ପରମ୍ପରା ମଧ୍ୟରେ ସମନ୍ୱୟ ସ୍ଥାପନ ଉଦ୍ଦେଶ୍ୟରେ ସ୍ୱୀୟ ଚର୍ଚ୍ଚା ଦଶାବତାର ସ୍ତୁତିରେ ଶ୍ରୀକୃଷ୍ଣ ଓ ଶ୍ରୀ ବଳରାମଙ୍କ ମଧ୍ୟରେ ଅଭେଦତ୍ୱ ପ୍ରତିପାଦନ କରିଛନ୍ତି । ଶ୍ରୀ ଗୀତଗୋବିନ୍ଦ ଓ ବରାହ ପେରୁମଲ ମନ୍ଦିର ଅଭିଲେଖ ବର୍ଣ୍ଣିତ ଦଶାବତାରଙ୍କ ନାମ ଓ କ୍ରମରେ ସାମଞ୍ଜସ୍ୟ ଲକ୍ଷିତ ହେଉଥିବାରୁ ଶ୍ରୀ ଜୟଦେବଙ୍କ ଅନ୍ତତଃ ଗ୍ୟରଶତ ବର୍ଷ ପୂର୍ବରୁ ତାଙ୍କ ଅନୁସୃତ ଦଶାବତାର ପର୍ଯ୍ୟାୟ ପ୍ରଚଳିତ ହୋଇଥିବା ପ୍ରତିପନ୍ନ ହେଉଅଛି । ପୁନଶ୍ଚ ପରମ କୃଷ୍ଣଭକ୍ତ ଶ୍ରୀ ଜୟଦେବ ତାଙ୍କ ସମୟକୁ ସୁପ୍ରତିଷ୍ଠିତ ଶ୍ରୀମଦ୍ ଭାଗବତର "କୃଷ୍ଣସ୍ତୁ ଭଗବାନ୍ ସ୍ୱୟଂ" ବା ଶ୍ରୀକୃଷ୍ଣ ସ୍ୱୟଂ ଭଗବାନ, ଏହି ମତ ଗ୍ରହଣ କରି ତାଙ୍କୁ ଅବତାରୀ ବା **ଦଶାକୃତିକୃତ୍** ରୂପେ ପ୍ରତିପାଦନ କରିବା ଲକ୍ଷ୍ୟରେ ଶ୍ରୀ ବଳରାମଙ୍କୁ ପ୍ରଚଳିତ ଭାଗବତର୍ଧ ପରଂପରା ଅନୁଯାୟୀ ଅଷ୍ଟମ ଅବତାର ରୂପେ ସ୍ତୁତି କରିଛନ୍ତି ।

---

(*) Ajmer Stone Inscription—E.I. Vol. XXIX, pp. 179

ବିହାର ଓ ବଙ୍ଗଦେଶରେ ରାଜତ୍ୱ କରୁଥିବା ଗୁପ୍ତ, ପାଳ ଓ ସେନବଂଶୀୟ ନରପତିମାନଙ୍କ କେତେକ ଅଭିଲେଖରେ ବିଷ୍ଣୁଙ୍କ ବିଭିନ୍ନ ଅବତାରର ଉଲ୍ଲେଖ ଏବଂ ଅବିଭକ୍ତ ବଙ୍ଗପ୍ରଦେଶର ନାନାସ୍ଥାନରୁ ମୁସଲମାନ ରାଜତ୍ୱ (୧୨୦୦ ଖ୍ରୀଷ୍ଟାବ୍ଦ) ପୂର୍ବ ପ୍ରଚଳିତ ବହୁ ଅବତାର ବିଗ୍ରହ ଓ 'ବିଷ୍ଣୁପଟ୍ଟ'ର ଆବିଷ୍କାରକୁ ଭିତ୍ତି ସ୍ୱରୂପ ଗ୍ରହଣ କରି ସ୍ୱର୍ଗତ ପ୍ରବୋଧଚନ୍ଦ୍ର ବାଗ୍‌ଚି ନାମକ ଜନୈକ ପ୍ରସିଦ୍ଧ ବଙ୍ଗୀୟ ଐତିହାସିକ ପ୍ରାମାଣ୍ୟ ଗ୍ରନ୍ଥରୂପେ ପ୍ରକାଶିତ 'ବଙ୍ଗଳାର ଇତିହାସ'ରେ ନିମ୍ନୋକ୍ତ ମତ ଖ୍ୟାପନ କରିଛନ୍ତି । ଯଥା—

"Vaishnavism in Bengal probably made a contribution to the systematisation of the theory of Avatara." (୬)

ସମ୍ଭବତଃ (ଶ୍ରୀ ଜୟଦେବଙ୍କ ପୂର୍ବରୁ) ବଙ୍ଗଦେଶରେ ପ୍ରଚଳିତ ବୈଷ୍ଣବଧର୍ମ ଦଶାବତାର-ବାଦର ପରଂପରା ଓ ପର୍ଯ୍ୟାୟର ସୁପ୍ରତିଷ୍ଠା ପାଇଁ ବିଶେଷ ସାହାଯ୍ୟ କରିଥିଲା । କିନ୍ତୁ ଡକ୍ଟର ବାଗ୍‌ଚିଙ୍କ ଉକ୍ତ ପ୍ରାଦେଶିକତା-ଦୋଷଦୁଷ୍ଟ ମତ ଗ୍ରହଣୀୟ ନୁହେଁ ।

## ପ୍ରାଚୀନ ଉତ୍କଳ ଲେଖମାଳାରେ ଅବତାରମାନଙ୍କ ଉଲ୍ଲେଖ —

ଉତ୍କଳର କେତେକ ପ୍ରାଚୀନ ଅଭିଲେଖରେ ଅବତାର ବିଶେଷଙ୍କ ଉଲ୍ଲେଖ ଏହାର ନାନାଞ୍ଚଳରୁ ଏକକ ତଥା ସମୂହ ଭାବରେ ଖୋଦିତ ଦଶାବତାର ବିଗ୍ରହାବଳିର ଆବିଷ୍କାର, ଦ୍ୱାଦଶ ଶତାବ୍ଦୀର ପୂର୍ବବର୍ତ୍ତୀ କେତେକ ମନ୍ଦିର ଗାତ୍ରରେ ଅବତାର ପ୍ରତିମାରାଜିର ସ୍ଥାପନ ବିଷୟ ବିଚାର କଲେ ଶ୍ରୀ ଜୟଦେବଙ୍କ ପୂର୍ବରୁ ବଙ୍ଗଦେଶ ଅପେକ୍ଷା ଉତ୍କଳରେ ଦଶାବତାର ଉପାସନା ଅଧିକ ଲୋକପ୍ରିୟତା ଲାଭ କରିଥିବା ନିଃସନ୍ଦେହରେ ଅବଧାରିତ ହୋଇପାରେ । ତେଣୁ ସେ ସମ୍ପର୍କରେ ଆଲୋକପାତ ଆବଶ୍ୟକ ।

ଶ୍ରୀ ଲୋକବିଗ୍ରହ ନାମକ ସାମନ୍ତ ନରପତିଙ୍କ ୨୮୨ ଗୁପ୍ତାବ୍ଦ ବା ୬୦୨ ଖ୍ରୀଷ୍ଟାବ୍ଦରେ ଲିଖିତ ଏକ ତାମ୍ରଶାସନରେ ସେ **ଜୟବରାହଙ୍କୁ** ପୂଜା କରି ଭୂମିଦାନ କରିଥିବା ଉଲ୍ଲେଖ ଦେଖାଯାଏ । (୭) ଯଥା—

ଓଁ ସ୍ୱସ୍ତି ପ୍ରବର୍ତ୍ତମାନେ ଗୁପ୍ତକାଳେ ଅ(ସୀ)ତ୍ୟୁତ୍ତର ଶତଦ୍ୱୟେ
ତୋଷାଲ୍ୟା × × ଶ୍ରୀ ଲୋକବିଗ୍ରହଭଟ୍ଟାରକେ ପ୍ରଶାସତି
× × × **ଜୟବରାହଂ** ସଂପୂଜ୍ୟ ବିଜ୍ଞାପୟତି ॥

(୬) ଢାକା ବିଶ୍ୱବିଦ୍ୟାଳୟ ଦ୍ୱାରା ଇଂରେଜୀ ଭାଷାରେ ପ୍ରକାଶିତ 'ବଙ୍ଗଳାର ଇତିହାସ' ପ୍ରଥମଭାଗ, ପୃ ୪୦୩

(୭) Kanas Plates of Sri Lokavigraha, I.O., Rajguru, Vol I, Part II, p. 121.

ଖ୍ରୀଷ୍ଟୀୟ ସପ୍ତମ ଶତାବ୍ଦୀରେ ଉତ୍କଳ ସନ୍ନିହିତ ଦଣ୍ଡଭୁକ୍ତିକୁ ଶାସନ କରୁଥିବା ସୋମଦତ୍ତଙ୍କ ତାମ୍ରଶାସନର ମଙ୍ଗଳାଚରଣ ଶ୍ଳୋକରେ ବରାହ ଅବତାର ବିଷ୍ଣୁଙ୍କ ଦ୍ୱାରା ପୃଥିବୀ ଉତ୍ତୋଳନର ଉଲ୍ଲେଖ ଦେଖାଯାଏ । ଯଥା—

"**ବିଷ୍ଣୋଃପୋତ୍ରାଗ୍ରବିକ୍ଷେପ** କ୍ଷଣୋଦ୍ଧୃତସାଧ୍ୱସାଂ"(୮)

କୋରାପୁଟ ଜିଲ୍ଲାର ପୋଡ଼ାଗଡ଼ଠାରେ ଅବସ୍ଥିତ ଏକ ପ୍ରସ୍ତରଲେଖ ପାଠରୁ ଜଣାଯାଏ ଯେ, ନଳବଂଶୀୟ ନରପତି ସ୍କନ୍ଦବର୍ମନ୍ ସେଠାରେ ବାସୁଦେବ (କୃଷ୍ଣ)ଙ୍କ ପାଇଁ ଏକ ମନ୍ଦିର ନିର୍ମାଣ କରିଥିଲେ । ଯଥା—

"ପାଦମୂଳଂ କୃତଂ ବିଷ୍ଣୋରାଜ୍ଞା ଶ୍ରୀ ସ୍କନ୍ଦବର୍ମଣା"

'ପାଦମୂଳ' ଶବ୍ଦ ଦ୍ୱାରା ଏଠାରେ ଗୃହ ବା ଆଳୟ ଅର୍ଥ ସୂଚିତ ହୋଇଛି ।

"ସମନ୍ୱୟାଦ୍ ଯସ୍ଯ ନରେନ୍ଦ୍ର ସନ୍ତତେଃ
ସ **ବାସୁଦେବାଶ୍ରୟ** ମାପ୍ନୁୟାଚ୍ଚିରମ୍ ।" (୯)

ବାଣପୁରରୁ ଉପଲବ୍ଧ ଶୈଳୋଦ୍ଭବ ବଂଶୀୟ ପ୍ରସିଦ୍ଧ ନରପତି ଧର୍ମରାଜଙ୍କ ତାମ୍ରଶାସନରେ ତ୍ରିବିକ୍ରମ ଅବତାରଙ୍କ ବର୍ଣ୍ଣନା ମିଳେ । ଯଥା—

"ତସ୍ୟାତି ନିର୍ମଳ ଯଶଃ ପରିବର୍ଦ୍ଧମାନଂ
ପାଦୌ ହରେରିବ ନିରସ୍ତତମାସ୍ତ୍ରିଲୋକ୍ୟାଃ" (୧୦)

ଧର୍ମରାଜଙ୍କ ବଂଶଧର ମଧ୍ୟମରାଜଙ୍କ ତିକାଳିରୁ ପ୍ରାପ୍ତ ତାମ୍ରଶାସନରେ ବଳୀଧ୍ୱଂସୀ (ତ୍ରିବିକ୍ରମ)ଙ୍କ ଉଲ୍ଲେଖ ରହିଛି । ଯଥା—

"ଦର୍ପୋଦ୍ଧତାନ୍ ବଳୀରିପୂନ୍ ସମରାତ୍ରୁ (ଦସ୍ୟୁ),
ସଂଯମ୍ୟ ପୌରୁଷଧନଃ ନିଜବିକ୍ରମେଣ" (୧୧)

ମହାନଦୀ ତୀରବର୍ତ୍ତୀ ଶ୍ରୀପୁର (ବର୍ତ୍ତମାନ ମଧ୍ୟପ୍ରଦେଶର ରାୟପୁର ଜିଲ୍ଲାରେ ଅବସ୍ଥିତ) ଠାରେ ରାଜତ୍ୱ କରୁଥିବା ସୋମବଂଶୀୟ ପ୍ରଥମ କ୍ଷମତାଶାଳୀ ନରପତି ମହାଶିବଗୁପ୍ତ ବାଳାର୍ଜ୍ଜୁନଙ୍କ ଶ୍ରୀପୁରସ୍ଥ ଲକ୍ଷ୍ମଣ ମନ୍ଦିର ଲେଖରେ ନୃସିଂହ, କଂସନିସୂଦନ କୃଷ୍ଣ, ବଳରାମ, କଳ୍କୀ ଅବତାରଙ୍କ ପ୍ରଶସ୍ତି ସନ୍ନିବିଷ୍ଟ । (୧୨) ଯଥା—

(୮) I. O., Vol. I, Hart II by Rajaguru p 141.
(୯) ,, ,, ,, p 95
(୧୦) ,, ,, ,, p 237.
(୧୧) ,, ,, ,, p 244.
(୧୨) I. O. Rajaguru Vol III, pp 70-71.

"ଓଁ ନମୋ ପୁରୁଷୋତ୍ତମାୟ—
ଅନ୍ୟୋନ୍ୟ ପ୍ରାନ୍ତଗନ୍ତବିଂଚଂନ୍ତମରୁତ୍ପୁଞ୍ଜଗୁଞ୍ଜାରବୋଗ୍ରୈ
ରଙ୍ଗୁଲ୍ୟଗ୍ରୈ ରୁଦଞ୍ଚ ନଖକରଣଶିଖାହ୍ରଷ୍ଟଦ୍ରଂଷ୍ଟ୍ରାକରାଳୈଃ ॥ (୧ମ ଶ୍ଳୋକ)

× × ×

ହୋଧାଚିକ୍ଷେପ ଚକ୍ରଂ ମଳମିବଦନୁଜଂ ଯଃ ସ ବୋବ୍ୟା **ନୃସିଂହଃ** ॥
(୨ୟ ଶ୍ଳୋକ)

× × ×

**ସୀରାୟୁଧଃ** ସ ଇବ କଂସନିଷୂଦନସ୍ୟ (୭ମ ଶ୍ଳୋକ)
ସୀରାୟୁଧ (ବଳରାମ) କଂସନିଷୂଦନ (କୃଷ୍ଣ)

× × ×

ଯଃ ପ୍ରଦ୍ୱେଷବତାଂ ବଧାୟ ବକୁଣ୍ଠରାଜ୍ୟାୟ ମାୟାମୟୋଃ
**କୃଷ୍ଣୋ** (ଯୋବ) ଚର୍ନ୍ନଭୂଦ୍ଦର ସ ଖଲ୍ୱବ୍ୟାଜଲୁନ୍ଦ୍ୱିଷଃ ।
ନାସୀଦେବସମୋ ହରଧବଳତା ମାତ୍ୟନ୍ତଲୀଂ ବଭ୍ରତେ ।
ଯସ୍ୟାକଲ୍‌କମଚେର୍ନ ଗୃପି ଭବତା **କଲ୍‌କୀ** ଭବିଷ୍ୟନ୍ ପୁନଃ ॥"

ଏହି ଅଭିଲେଖରେ ଥିବା ଇଷ୍ଟକନିର୍ମିତ ଲକ୍ଷ୍ମଣ ମନ୍ଦିର ଗାତ୍ରରେ ଦଶାବତାର ବିଗ୍ରହ ଉତ୍କୀର୍ଣ୍ଣ ହୋଇଥିବାର ଦେଖାଯାଏ । ସମଗ୍ର କୋଶଳ, ଉତ୍କଳ ଓ କଳିଙ୍ଗ ରାଜ୍ୟ-ଶୟକୁ ଏକଛତ୍ରାଧୀନ କରିଥିବା ସୋମବଂଶୀୟ ପ୍ରସିଦ୍ଧ ନରପତି ଯଯାତି (ପ୍ରଥମ)ଙ୍କ ବମାତପୁର ବାଣ୍ଡଙ୍କା ଠାରେ ପ୍ରଦତ୍ତ ତାମ୍ରଶାସନରେ ଆସେତୁହିମଗିରି ରାମଚନ୍ଦ୍ରଙ୍କ ଉଲ୍ଲେଖ ମିଳେ —

"ସ ଲକ୍ଷ୍ମଣୋ **ରାମ** ଇବାପ୍ତ ସେତୁଃ" (୧୩)

ସୋମବଂଶୀୟ ଶ୍ରେଷ୍ଠ ସମ୍ରାଟ ଉଦ୍ୟୋତ କେଶରୀଙ୍କ ବ୍ରହ୍ମେଶ୍ୱର ମନ୍ଦିର ଶିଳାଲେଖରେ ତାଙ୍କ ପୂର୍ବପୁରୁଷ ଧର୍ମରଥ ଦ୍ୱିତୀୟ ପରଶୁରାମ ରୂପେ ବର୍ଣ୍ଣିତ ହୋଇଛନ୍ତି । ଯଥା—

"ତସ୍ମାଦଜଜ୍ୟ ଭୁଜବଜ୍ରବନିର୍ଜିତାରି
ରୁର୍ଜସ୍ୱଲଃ **ପରଶୁରାମ** ଇବ ଦ୍ୱିତୀୟଃ ।
ମଧ୍ୟନ୍ଦିନାର୍କ ଇବ ତୀବ୍ରତରପ୍ରତାପୋ
ରାଜା ବଭୂବ ଭୁବି ଧର୍ମରଥୋ ପ୍ରତୀତଃ" (୧୪)

---

(୧୩) I. O. Vol. IV, by Rajaguru p 170.
(୧୪) I. O. Vol IV p 246

ପ୍ରବଳପରାକ୍ରମ ଉଦ୍ୟୋତ କେଶରୀଙ୍କ ଅକ୍ଷୌହିଣୀ ସଂଖ୍ୟକ ସେନାର ଦେହଭାରରେ ପୃଥ୍ୱୀର ଭାର ବଢ଼ିଯିବାରୁ କୂର୍ମ ପକ୍ଷେ ଏହାକୁ ବହନ କରିବା କଷ୍ଟକର ହୋଇଥିଲା । ଯଥା—

"ଜନ୍ତୁସ୍ତାକ୍ଷୌହିଣୀ ପଦଗୁରୁଭରଭଗ୍ନମଦ୍‌ଭୂଭରଃକାନ୍ତକୂର୍ମେ । (୧୫)

ଉତ୍କଳରେ ଗଙ୍ଗସାମ୍ରାଜ୍ୟର ପ୍ରତିଷ୍ଠାତା ଚୋଡ଼ଗଙ୍ଗ ଦେବଙ୍କ ରାଜତ୍ୱ କାଳର ଦୁଇଟି ଲେଖରେ ଶ୍ରୀ କୂର୍ମଅବତାରଙ୍କ ନାମାନୁସାରେ ପ୍ରତିଷ୍ଠିତ **ଶ୍ରୀକୂର୍ମନାଥ** ଓ ଶ୍ରୀ ନରସିଂହ ଅବତାରଙ୍କ ପୂଜାପାଇଁ ନିର୍ମିତ **ଶ୍ରୀ ନରସିଂହନାଥ**ଙ୍କ ଉଲ୍ଲେଖ ଦେଖାଯାଏ । ଉଭୟ ଲେଖର ସମୟ ହେଉଛି ୧୦୩୫ ଶକାବ୍ଦ ବା ୧୧୧୩ ଖ୍ରୀଷ୍ଟାବ୍ଦ । ଶ୍ରୀନରସିଂହନାଥଙ୍କ ସେବାରେ ଶ୍ରୀ ରାମାନୁଜ ମତାବଲମ୍ବୀ ଶ୍ରୀ ବୈଷ୍ଣବମାନେ ନିଯୁକ୍ତ ଥିଲେ ।

(କ) **ଶ୍ରୀକୂର୍ମନାଥ** ଦେବରକୁ ଆଚନ୍ଦ୍ରାର୍କସ୍ଥାୟି × ×
ଅଖଣ୍ଡଦୀପମ୍ (୧୬)

(ଖ) **ଶ୍ରୀନରସିଂହନାଥ**ନକ × × × ଇଧର୍ମ
ଶ୍ରୀ ବୈଷ୍ଣବ ରକ୍ଷ ଶ୍ରୀ ଶ୍ରୀ ଶ୍ରୀ (୧୭)

ଶ୍ରୀ ଜୟଦେବଙ୍କ ଶ୍ରୀଗୀତଗୋବିନ୍ଦ ରଚିତ ହେବା ପୂର୍ବରୁ ଶ୍ରୀକ୍ଷେତ୍ରର ବିଭିନ୍ନ ସ୍ଥାନରେ ଦଶାବତାର ମୂର୍ତ୍ତି ପ୍ରତିଷ୍ଠିତ ହୋଇଥିବାରୁ ଏହା 'ଦଶାବତାର କ୍ଷେତ୍ର' ନାମରେ ପରିଚିତ ଥିଲା ।

ଏତଦ୍ଵୁରସ୍ୟଂ ପରମଂ ପୂର୍ବତେ କଥିତଂମୟା
**ଦଶାବତାରକ୍ଷେତ୍ରସ୍ୟ** ମାହାତ୍ମ୍ୟଞ୍ଚ ସୁଗୋପିତମ୍ ॥ ୫୭
ଇତି ଉତ୍କଳଖଣ୍ଡେ ଚତୁଃପଞ୍ଚାଶୋଽଧ୍ୟାୟଃ (୧୮)

ଶ୍ରୀକ୍ଷେତ୍ରରେ ଅବସ୍ଥିତ ମତ୍ସ୍ୟାବତାର ସମ୍ବନ୍ଧରେ ଉତ୍କଳଖଣ୍ଡରେ ଅନେକସ୍ଥାନରେ ଉଲ୍ଲେଖ ମିଳେ । ସେଥିରୁ ଜଣାଯାଏ ଯେ, ଆଦ୍ୟାବତାର ମତ୍ସ୍ୟମୂର୍ତ୍ତି ପୁରୁଷୋତ୍ତମ କ୍ଷେତ୍ରର ପୂର୍ବମୁଖରେ ଏବଂ ଶ୍ୱେତରାଜ କର୍ତ୍ତୃକ ପ୍ରସାଦିତ ଶ୍ୱେତ ମାଧବମୂର୍ତ୍ତି ପଶ୍ଚିମରେ ଅବସ୍ଥିତ ଥିଲେ ।

---

(୧୫) I. O. Vol. IV., p 247
(୧୬) ,, Vol. III, pt I, p 69
(୧୭) ,, ,, p 70
'(୧୮) ଉତ୍କଳଖଣ୍ଡମ୍' ଶ୍ରୀ ପଞ୍ଚାନନ ତର୍କରତ୍ନଙ୍କ ଦ୍ୱାରା ବଙ୍ଗାକ୍ଷରରେ ସଂପାଦିତ ପୃ ୨୧୩

**"ଅଦ୍ୟୋ ମତ୍ସ୍ୟାବତାରୋ ହି ପ୍ରାଙ୍ମୁଖସ୍ତତ୍ର ବର୍ତ୍ତତେ**
ଶ୍ୱେତାଖ୍ୟୋ ମାଧବଃ ପ୍ରତ୍ୟକ୍ ଶ୍ୱେତଭୂପ ପ୍ରସାଦତଃ" (୧୯)

'ଉତ୍କଳଖଣ୍ଡମ୍' ପାଠକଲେ ଜଣାଯାଏ ଯେ, ଶ୍ରୀଜଗନ୍ନାଥଙ୍କ ମନ୍ଦିର ନିର୍ମାଣ ପୂର୍ବରୁ ଏଠାରେ ପ୍ରଥମେ ନରସିଂହଙ୍କ ମନ୍ଦିର ପଶ୍ଚିମମୁଖ ହୋଇ ବୃହଦନ ମଧ୍ୟରେ ନିର୍ମିତ ହୋଇଥିଲା । (୨୦) ଯଥା—

"ତଦାଶୁ ଘଟୟେଃ ସାଧୁ ସପ୍ରାକାରଂ ସତୋରଣମ୍ । ୧୯
ପ୍ରାସାଦଂ ନରସିଂହସ୍ୟ ପ୍ରତୀଚୀବଦନଂ ଶୁଭମ୍ ॥
ଚତୁଃପୂଜସ୍ୟୂତ୍ୱା ବଧିବତ୍ର ନ୍ୟୋଜ୍ୟ ଘଟନେ ନୃପଃ । ୨୦
ଶିଳାସଞ୍ଚାରକାନ୍ ଭୃତ୍ୟାନ୍ ବହୁବର୍ତ୍ତୈରୟୋଜୟତ୍
ଚତୁର୍ଥ ଦିବସେ ବପ୍ରାଃ ପ୍ରାସାଦୋଽଭୂଦନୁତ୍ତମଃ" । ୨୧

୧୧୩୩ ଖ୍ରୀଷ୍ଟାବ୍ଦରେ ଚୋଡ଼ଗଙ୍ଗଦେବ ଏଠାରେ ଏକ ଲେଖ ଉତ୍କୀର୍ଣ୍ଣ କରିଥିବାରୁ (୨୧) ଏହି ମନ୍ଦିର ତତ୍ପୂର୍ବରୁ ନିର୍ମିତ ହୋଇଥିବା ସୁନିଶ୍ଚିତ । ଅତଏବ ଶ୍ରୀ ଜୟଦେବଙ୍କ ଆବିର୍ଭାବ ବେଳକୁ ବଙ୍ଗଦେଶ ଅପେକ୍ଷା ଉତ୍କଳରେ ବିଶେଷତଃ 'ଦଶାବତାର କ୍ଷେତ୍ର' ନାମରେ ପ୍ରଖ୍ୟାତ ଶ୍ରୀ ପୁରୁଷୋତ୍ତମ କ୍ଷେତ୍ରରେ ଦଶାବତାର ପୂଜା ସୁପ୍ରତିଷ୍ଠିତ ଥିଲା ।

## ପ୍ରାଚୀନ ଉତ୍କଳୀୟ ସ୍ଥାପତ୍ୟରେ ଦଶାବତାର—

ଉତ୍କଳର ପଶ୍ଚିମଭାଗ ବା ବର୍ତ୍ତମାନ ସମ୍ବଲପୁର, ସୋନପୁର, ବଲାଙ୍ଗୀର ଓ କଳାହାଣ୍ଡି ଅଞ୍ଚଳରେ ସୋମବଂଶର ଆଧିପତ୍ୟ ପ୍ରତିଷ୍ଠା କରିଥିବା ମହାଶିବଗୁପ୍ତ ବାଳାର୍ଜୁନଙ୍କ ରାଜଧାନୀ ମହାନଦୀ ତୀରବର୍ତ୍ତୀ ଶ୍ରୀପୁରରେ ଅବସ୍ଥିତ ଥିଲା । ତାଙ୍କର ଅନ୍ୟୂନ ୫୭ ବର୍ଷ ବ୍ୟାପୀ ଦୀର୍ଘ ରାଜତ୍ୱକାଳ (୭୫୦—୮୦୭ ଖ୍ରୀଷ୍ଟାବ୍ଦ) ମଧ୍ୟରେ ଶ୍ରୀପୁରରେ ଲକ୍ଷ୍ମଣେଶ୍ୱର ନାମକ ବିଷ୍ଣୁମନ୍ଦିର ଓ ଗନ୍ଧେଶ୍ୱର ନାମକ ଶିବମନ୍ଦିର ନିର୍ମିତ ହୋଇଥିଲା । ଦ୍ୱାରବନ୍ଧ ବ୍ୟତୀତ ସମଗ୍ର ଲକ୍ଷ୍ମଣେଶ୍ୱର ମନ୍ଦିର ବଡ଼ ଆକାରର ଇଟାରେ ତିଆରି । ପଥରରେ ନିର୍ମିତ ଦ୍ୱାରବନ୍ଧର ଦୁଇପାଖରେ ଦଶାବତାର ବିଗ୍ରହ ଖୋଦିତ ହୋଇଥିବାର ଦେଖାଯାଏ । (୨୨)

---

(୧୯) ଉତ୍କଳଖଣ୍ଡମ୍, ପୃ ୨୨୭
(୨୦) ,, ପୃ ୧୨
(୨୧) O. H. R. J Vol IX pt II, pp. 47-50
(୨୨) "Archaeological Survey of India' by A. Cunningham, Vol. XVII, p 25.

## ସଇନ୍ତଲା ବିଷ୍ଣୁମୂର୍ତ୍ତିରେ ଦଶାବତାର ଖୋଦନ —

ବଲାଙ୍ଗୀର ଜିଲାର ଟେଲେନଗା ଉପତ୍ୟକାରେ ଅବସ୍ଥିତ ସଇନ୍ତଲା ନାମକ ସ୍ଥାନରେ କେତେକ ଇଷ୍ଟକ ନିର୍ମିତ ପ୍ରାଚୀନ ମନ୍ଦିରର ଧ୍ୱଂସାବଶେଷ ଦୃଷ୍ଟିଗୋଚର ହୁଏ । ସେଥିମଧ୍ୟରୁ ଗୋଟିଏ ପ୍ରାଚୀନ ଇଷ୍ଟକ ସ୍ତୂପ ଉପରେ ଅଷ୍ଟଭୂଜା ମହିଷାସୁର ମର୍ଦ୍ଦିନୀ ଦୁର୍ଗାମୂର୍ତ୍ତି, ଅଳ୍ପଦୂରରେ ଥିବା ଇଟାଗଦା ମଧ୍ୟରେ ଶକ୍ତିଯୁକ୍ତ ଲିଙ୍ଗ ଏବଂ ଅନ୍ୟତ୍ର ଦୁଇଟି ଇଟାତିଆରି ପ୍ରାଚୀନ ବିଷ୍ଣୁମନ୍ଦିରର ଅବଶେଷ ବିଦ୍ୟମାନ । ସେ ଦୁଇଟିରେ ଅଧିଷ୍ଠିତ ବିଷ୍ଣୁବିଗ୍ରହଦ୍ୱୟ ଖଣ୍ଡବିଖଣ୍ଡିତ ହୋଇଥିଲେ ମଧ୍ୟ ଦଶାବତାର ବିଗ୍ରହରାଜିର ପ୍ରକଟନ ଯୋଗୁଁ ଏହି ଦୁଇଟିର ବିଶେଷ ଐତିହାସିକ ଗୁରୁତ୍ୱ ରହିଛି । ତେଣୁ ଏ ସଂପର୍କରେ କିଞ୍ଚିତ୍ ଧାରଣା କରିବା ପାଇଁ ମୋର ବନ୍ଧୁ ସ୍ୱର୍ଗତଃ ଗବେଷକ ପୂର୍ଣ୍ଣଚନ୍ଦ୍ର ରଥଙ୍କ ପ୍ରଦତ୍ତ ଇଂରେଜୀ ବିବରଣର ସାରମର୍ମ ଓଡ଼ିଆରେ ପ୍ରକାଶ କରାଗଲା । (୨୩)

ଏ ଦୁଇଟି ଭଗ୍ନ ବିଷ୍ଣୁବିଗ୍ରହର ଆକାର, ପରିମାପ ଓ ଭାସ୍କର୍ଯ୍ୟ ଶୈଳୀରେ ବିଶେଷ ସାମଞ୍ଜସ୍ୟ ପରିଲକ୍ଷିତ ହୁଏ । ପ୍ରତ୍ୟେକ ମୂର୍ତ୍ତି ଦ୍ୱିହସ୍ତ ଓ ପଦ୍ମପୀଠୋପରେ ଦଣ୍ଡାୟମାନ । ହସ୍ତ ଦୁଇଟି ଭଗ୍ନ ହୋଇଥିବାରୁ କରଧୃତ ଆୟୁଧ ଜଣାପଡ଼ୁ ନାହିଁ । ପାଦପୀଠରେ ମତ୍ସ୍ୟ ଓ କୂର୍ମାବତାରଙ୍କ ପ୍ରତୀକ ସ୍ୱରୂପ ମତ୍ସ୍ୟ ଓ କୂର୍ମଙ୍କ ମୂର୍ତ୍ତି ଖୋଦିତ ହୋଇଅଛି । ଏହା ତଳକୁ କେତେକ ପୂଜକ ବିଦ୍ୟମାନ । ପାଦପୀଠର ଦକ୍ଷିଣ ପାର୍ଶ୍ୱରେ ଗରୁଡ଼ ଓ ବାମପାର୍ଶ୍ୱରେ ନାରଦ ଆସୀନ । ଗରୁଡ଼ର ପଶ୍ଚାତ୍ ଭାଗରେ ବିକଚ-ପଦ୍ମପୁଷ୍ପ-ଧାରିଣୀ ଲକ୍ଷ୍ମୀ ସହର୍ଷରେ ଦଣ୍ଡାୟମାନା । ନାରଦଙ୍କ ପଛରେ ବୀଣା-ବାଦନୀ ସରସ୍ୱତୀ । ଲକ୍ଷ୍ମୀ ଓ ସରସ୍ୱତୀ ପ୍ରତିମା ଦୁଇଟି ଅତ୍ୟନ୍ତ ଜୀବନ୍ତ, ରୂପଲାବଣ୍ୟମଣ୍ଡିତ ଓ ଚିତ୍ତାକର୍ଷକ । ବିଷ୍ଣୁବିଗ୍ରହ ଉପରେ ପରବର୍ତ୍ତୀ କାଳରେ ପ୍ରଚଳିତ ତ୍ରିଭଙ୍ଗ ତୋରଣ ପରିବର୍ତ୍ତରେ ଗୋଲାକୃତି ପ୍ରଭାମଣ୍ଡଳ ଶୋଭମାନ । ପ୍ରଭାମଣ୍ଡଳ ମଧ୍ୟରେ ବହୁଦଳ-ଯୁକ୍ତ ବିକଚ-କମଳ । ଏହା ଉପରେ କୀର୍ତ୍ତିମୁଖ । ବିଷ୍ଣୁବିଗ୍ରହର ଦକ୍ଷିଣପାଖ ଖମ୍ବ ଦେହରେ ତଳୁ ଉପରକୁ ଯଥାକ୍ରମେ ବରାହ, ନରସିଂହ, ବାମନ ଓ ପରଶୁରାମ ଅବତାର ବିରାଜମାନ । ବାମପାଖ ଖମ୍ବରେ ଯଥାକ୍ରମେ ଉପରୁ ତଳକୁ ପ୍ରଦର୍ଶିତ ହୋଇଛନ୍ତି ଶ୍ରୀରାମ, ହଳଧାରୀ ବଳରାମ, ଧ୍ୟାନରତ ବୁଦ୍ଧ ଓ ଅଶ୍ୱାରୋହୀ କଳ୍କୀ । ରାମବିଗ୍ରହ ଭଗ୍ନ ଓ ଅନ୍ୟ ତିନିବିଗ୍ରହ ଅକ୍ଷୁର୍ଣ୍ଣ ରହିଛି । ପ୍ରଭାମଣ୍ଡଳ ଉପରକୁ ଏକପାଖେ ଦେବଗଣ ଓ ଅନ୍ୟ ପାଖରେ ଅସୁରଗଣ ଦ୍ୱାରା

---

(୨୩) "Saintala—Ruins of a town on river Sungad, a tributary of the Tel." J. K. H. R. Society, Vol. II, Nos 2 & 3, pp 123-125

ରଜ୍ଜୁ କୃତ ବାସୁକୀ ଦ୍ୱାରା ବନ୍ଧା ହୋଇଥିବା ମନ୍ଦର ପର୍ବତ ସାହାଯ୍ୟରେ ସମୁଦ୍ର ମନ୍ଥନ ଦୃଶ୍ୟ ଅତି ସୁନ୍ଦର ଭାବରେ ପ୍ରସ୍ଫୁଟିତ ହୋଇଛି । ପୂର୍ବ ମନ୍ଦିର ଦୁଇଟିର ଏକତ୍ର ଅବସ୍ଥିତି ଏବଂ ବଜ୍ରହସ୍ତପୁରର ଆକୃତି, ପ୍ରକୃତି, ପରିମାନ ଓ ଖୋଦନ ଶୈଳୀରେ ସାମ୍ୟ ବିଚାର କଲେ ଉକ୍ତ ଦଶାବତାର ମଣ୍ଡିତ ବିଷ୍ଣୁ ପ୍ରତିମା ଦୁଇଟି ଜନୈକ ରାଜପୁରୁଷଙ୍କ ପୃଷ୍ଟପୋଷକତାରେ ନିର୍ମିତ ହୋଇଥିବା ସ୍ଥିର କରାଯାଇପାରେ ।

ଏ ସଂପର୍କରେ ସୋମବଂଶୀୟ ଦୁଇଜଣ ନରପତିଙ୍କ ବିଷୟ ବର୍ଣ୍ଣନୀୟ । ପ୍ରଥମ ହେଉଛନ୍ତି, ଶ୍ରୀପୁରରେ ୫୭ ବର୍ଷରୁ ଅଧିକକାଳ ରାଜତ୍ୱ କରିଥିବା ବିକ୍ରମଶାଳୀ ନରପତି ମହାଶିବଗୁପ୍ତ ବାଳାର୍ଜ୍ଜୁନ । ତାଙ୍କ ରାଜତ୍ୱ କାଳରେ ତାଙ୍କ ମାତା ବାସଟା ଶ୍ରୀପୁରରେ ବଡ଼ ବଡ଼ ଇଟାରେ ଏକ ସୁନ୍ଦର କାରୁକାର୍ଯ୍ୟ ଖଚିତ ବିଷ୍ଣୁ ମନ୍ଦିର ନିର୍ମାଣ କରିଥିଲେ । ତେଲନଦୀ କୂଳବର୍ତ୍ତୀ କଳାହାଣ୍ଡି ଜିଲ୍ଲା ଅନ୍ତର୍ଗତ ରାଜପଦର ବା ବେଲଖଣ୍ଡିସ୍ଥ ଶିବମନ୍ଦିରର ଲକ୍ଷ୍ମଣ ମନ୍ଦିର ସହିତ ଗଠନ ଶୈଳୀରେ ବିଶେଷ ସାମଞ୍ଜସ୍ୟ ଥିବାରୁ ଏହା ବାଳାର୍ଜ୍ଜୁନଙ୍କ କୀର୍ତ୍ତି ବୋଲି ମୋ ଦ୍ୱାରା ନିର୍ଣ୍ଣିତ ହୋଇଅଛି । (୨୪)

ତେଲନଦୀ ପର୍ଯ୍ୟନ୍ତ ମହାଶିବଗୁପ୍ତ ବାଳାର୍ଜ୍ଜୁନଙ୍କ ଆଧିପତ୍ୟ ବିସ୍ତୃତ ହୋଇଥିବାରୁ ଏହି ନଦୀର ଉତ୍ତରକୁ ପ୍ରାୟ ୧୦ ମାଇଲ ଦୂରରେ ଅବସ୍ଥିତ ସଇନ୍ତଲାର ବିଷ୍ଣୁ ମନ୍ଦିରଦ୍ୱୟ ତାଙ୍କ ଦୀର୍ଘ ରାଜତ୍ୱ କାଳରେ ନିର୍ମିତ ହୋଇଥିବା ସର୍ବଥା ସମ୍ଭବପର ।

ନତୁବା ଏଗୁଡ଼ିକୁ ତାଙ୍କର ପରବର୍ତ୍ତୀ ମହାପରାକ୍ରମଶାଳୀ ରାଜା, ଉତ୍କଳରେ ସୋମବଂଶୀ ରାଜତ୍ୱର ପ୍ରତିଷ୍ଠାତା ଏବଂ 'କୋଶଳେନ୍ଦ୍ର' ଓ 'ତ୍ରିକଳିଙ୍ଗାଧିପତି' ପଦବୀ ମଣ୍ଡିତ ଜନମେଜୟଙ୍କ ରାଜତ୍ୱରେ ଅବସ୍ଥାପିତ କରାଯାଇପାରେ । ତାଙ୍କ ରାଜତ୍ୱର ଷଷ୍ଠବର୍ଷରେ ଲିଖିତ ଡିମୋଟି ଏବଂ ଅଷ୍ଟମ ସମ୍ବତ୍ସରରେ ଉତ୍କୀର୍ଣ୍ଣ ଗୋଟିଏ ତାମ୍ରଶାସନ ସଇନ୍ତଲା ନିକଟବର୍ତ୍ତୀ **ମୁରସୀମପତ୍ତନ** (ବର୍ତ୍ତମାନ ମୁରସିମ) ନାମକ ସ୍ଥାନରେ ପ୍ରତିଷ୍ଠିତ ରାଜଧାନୀରୁ ପ୍ରଦତ୍ତ ହୋଇଥିଲା । ଏଠାରେ ଅତି ସୁନ୍ଦର ସୁନ୍ଦର ବହୁ ପ୍ରାସାଦ, ଅଟ୍ଟାଳିକା, ବିହାର, ଆରାମ, ଦେବକୁଳ, ଉଦ୍ୟାନ, ବାପୀ, କୂପ ତଡ଼ାଗ ପ୍ରଭୃତିର ଅବସ୍ଥିତି ଯୋଗୁଁ ଏହା ଇନ୍ଦ୍ରଙ୍କ ଅମରାବତୀ ପୁରର ସମକକ୍ଷ ଥିଲା ।

"ବିବିଧ ବର୍ଣ୍ଣ୍ୟ,ସଂସ୍କୃତ-ବିହଙ୍ଗନଜନିତ-ବିବିଧକାବ୍ୟାଳାପସୂଚିତ
ଧନଦପତିବିଭବସ୍ପର୍ଦ୍ଧିତବିପଣିଜନପରସ୍ୟ

(୨୪) J. K. H. R. S. Vol I, pp 265-270

ସନ୍ଦର୍ଭ ରଚିତ ବିଚିତ୍ରପ୍ରାସାଦାଟ୍ଟାଳିକା ବିହାରାରାମ **ଦେବକୁଲୋ**ଦ୍ୟାନ ବାପୀ-କୂପ-ତଡ଼ାଗୋପନର୍ଜିତ ସୁରସଦନମନ୍ୱମ୍ନଃ **ଶ୍ରୀମତୋ ମୁରସୀମପତ୍ତନବରାତ୍** ।"

ଜନ୍ମେଜୟଙ୍କ ଷଷ୍ଠ ସମ୍ବତ୍ସରରେ ପ୍ରଦତ୍ତ ଦାନପତ୍ରଦ୍ୱୟରେ ବ୍ୟବହୃତ ମାସ, ପକ୍ଷ, ତିଥି ପ୍ରଭୃତି ଜ୍ୟୋତିଷ ଗଣନା ଅନୁସାରେ ୮୭୭ ଖ୍ରୀଷ୍ଟାବ୍ଦରେ ପଡ଼ୁଥିବାରୁ ୮୭୦ରୁ ୮୭୭ ଖ୍ରୀଷ୍ଟାବ୍ଦ ମଧ୍ୟରେ ମୁରସୀମ ନିକଟବର୍ତ୍ତୀ ସଇଲାର ଦେବକୁଳ (ଦେଉଳ) ଗୁଡ଼ିକ ନିର୍ମିତ ହୋଇଥିବା ସିଦ୍ଧାନ୍ତ କରାଯାଇପାରେ ।

ବଲାଙ୍ଗୀର ଜିଲାର ଚଉଷଠି ଯୋଗିନୀ ମନ୍ଦିରପରି ବହୁ ପ୍ରସିଦ୍ଧ ପ୍ରାଚୀନ କୀର୍ତ୍ତି ମଣ୍ଡିତ ରାଣୀପୁର-ଝରିଆଲ ନାମକ ସ୍ଥାନରେ ପୁରୁଣା କାଳିଆ ଇଟାରେ ତିଆରି ଏକ ବିଷ୍ଣୁମନ୍ଦିରର ଭଗ୍ନାବଶେଷ ଦେଖାଯାଏ । ୧୮୭୪-୭୫ ଖ୍ରୀଷ୍ଟାବ୍ଦରେ ଏହାକୁ ପରିଦର୍ଶନ କରିଥିବା ପ୍ରସିଦ୍ଧ ପ୍ରତ୍ନତତ୍ତ୍ୱବିତ୍ ବେଗଲାରଙ୍କ ବର୍ଣ୍ଣନାରୁ ଜଣାଯାଏ ଯେ, ତାଙ୍କ ସମୟକୁ କନ୍ଦାପଥରରେ ତିଆରି (୯୦ × ୩୭ ଫୁଟ) ପୀଠ ଉପରେ ଇଷ୍ଟକ ନିର୍ମିତ ପୂର୍ବ-ଗର୍ଭଗୃହ ବା ବିମାନ ପ୍ରାୟ ୬୦ ଫୁଟ ପର୍ଯ୍ୟନ୍ତ ଥିଲା । କିନ୍ତୁ ଏହା ସମ୍ମୁଖରେ ଥିବା ମହାମଣ୍ଡପ ବା ଜଗମୋହନ ଏକାବେଳକେ ଲୋପପାଇଥିଲା । ଏହାର ଗଠନ ଶୈଳୀ ଏବଂ ଶ୍ରୀପୁରସ୍ଥ ଇଷ୍ଟକ ନିର୍ମିତ ବିଷ୍ଣୁମନ୍ଦିରର ନିର୍ମାଣଶୈଳୀ ମଧ୍ୟରେ ବିଶେଷ ସାମଞ୍ଜସ୍ୟ ଥିବାରୁ ସେଗୁଡ଼ିକ ସମକାଳୀନ ବୋଲି ସେ ମତପ୍ରକାଶ କରିଥିଲେ । (୨୫)

ଏହି ସ୍ଥାନର ପ୍ରାଚୀନ କୀର୍ତ୍ତି ସମ୍ବନ୍ଧରେ ମୋ ଦ୍ୱାରା ହୋଇଥିବା ବିଶେଷ ଗବେଷଣା ଦ୍ୱାରା ଜଣାଯାଏ ଯେ, ଏହି ମନ୍ଦିରରେ ଗୋପାଳ ବିଗ୍ରହ ପୂଜିତ ହେଉଥିଲେ । ଏହି ବିଗ୍ରହ ବର୍ତ୍ତମାନ ବିନଷ୍ଟ, ଅପହୃତ ବା ଅପସାରିତ । ଏହି ମନ୍ଦିର ଗାତ୍ରରେ ବିଷ୍ଣୁଙ୍କ ଦଶାବତାର ବିଗ୍ରହ ଖୋଦିତ ହୋଇଥିଲା । କିନ୍ତୁ ଏ ଅଞ୍ଚଳର ଲୋକେ ଭଗ୍ନମନ୍ଦିର ଦେହରୁ ଇଟାଗୁଡ଼ିକ କାଢ଼ି ନେଉଥିବାରୁ ସେଥିରୁ ଅଧିକାଂଶ ଲୋପ ପାଇଗଲାଣି । କେବଳ ବରାହ ଅବତାର, ହିରଣ୍ୟକଶିପୁ ବିଦାରଣ ନୃସିଂହ ଏବଂ ଗନ୍ଧମାର୍ଦନ ପର୍ବତଧାରୀ ରାମଭକ୍ତ ହନୁମାନ ବିଗ୍ରହ ଅଦ୍ୟାପି ଦେଖାଯାଏ । ଏଠାରେ ସୋମେଶ୍ୱର ନାମକ ପ୍ରସିଦ୍ଧ ଶିବଙ୍କ ମନ୍ଦିରର ଦ୍ୱାରବନ୍ଧରେ ବୁଦ୍ଧବିଗ୍ରହ ଖୋଦିତ ହୋଇଛି । ଏଠାରେ ଥିବା ସୋମତୀର୍ଥ ନାମକ ବିରାଟ ଜଳାଶୟର ଚତୁର୍ଦ୍ଦିଗରେ ବହୁ ଭଗ୍ନଦଶାପନ୍ନ ମନ୍ଦିର ବିଦ୍ୟମାନ । ବାମନ ପୁରାଣର ରଚନା ସମୟକୁ

(୨୫) So that taken altogether the temple is a specimen of the Sirpur style of brick temples."
Arch Survey of India, Vol. XIII, pp 136-137.

ଏଠାର ଶମ୍ଭୁ (ସୋମେଶ୍ୱର), ଗୋପାଳ ଓ ସୋମତୀର୍ଥ ବିଶେଷ ଖ୍ୟାତିଲାଭ କରିଥିବା ୧୧୧୦ ଖ୍ରୀଷ୍ଟାବ୍ଦରେ ରଚିତ **କୃତ୍ୟକଳ୍ପତରୁ** ନାମକ ଧର୍ମଶାସ୍ତ୍ରରେ 'ବାମନ ପୁରାଣ'ରୁ ଉଦ୍ଧୃତ ପଂକ୍ତିଗୁଡ଼ିକରୁ ଜଣାଯାଏ । (୨୭)

ମହାନଦୀ କୂଳବର୍ତ୍ତୀ ଗନ୍ଧଗଡ଼ (ପ୍ରାଚୀନ ଗନ୍ଧାଟପାଟି) ନାମକ ସ୍ଥାନରେ ନବମ ଶତାବ୍ଦୀରେ 'ପରମ ବୈଷ୍ଣବ' 'ଉଜ୍ଜ୍ୱଳକୁଳତିଳକ' ଶତ୍ରୁଭଞ୍ଜ ନୀଳମାଧବ ଓ 'ସିଦ୍ଧେଶ୍ୱର' ନାମକ ସମାକୃତି ବିଶିଷ୍ଟ ଅନ୍ଲୋଟ ମନ୍ଦିରଦ୍ୱୟ କନ୍ଦାପଥରରେ ନିର୍ମାଣ କରିଥିବା ପୂର୍ବେ ବର୍ଣ୍ଣିତ ହୋଇଅଛି । ନୀଳମାଧବ ମନ୍ଦିର ଗାତ୍ରରେ ବିଭିନ୍ନ ସ୍ଥାନରେ ଦଶାବତାର ବିଗ୍ରହ ଖଚିତ ହୋଇଥିଲା । ସେଥିମଧ୍ୟରୁ ଅଧିକାଂଶ ଏବେ ଅପସାରିତ ହୋଇଅଛି ।

ଭୁବନେଶ୍ୱରସ୍ଥ କପାଳୀ 'ବୈତାଳ' ମନ୍ଦିରର ଉତ୍ତରକୁ ଅବସ୍ଥିତ ଏକ ଭଗ୍ନ ପ୍ରାଚୀନ ମନ୍ଦିର ଗାତ୍ରରେ ଦଶାବତାର ବିଗ୍ରହ ଖୋଦିତ ହୋଇଥିଲା । ସେଥି-ମଧ୍ୟରୁ ସାତଟି ଅବତାର ଅଦ୍ୟାପି ବିଦ୍ୟମାନ ।

କଟକ ଜିଲ୍ଲାର ସମୁଦ୍ର କୂଳବର୍ତ୍ତୀ ଏରସମା ଥାନା ଅନ୍ତର୍ଗତ ତୀର୍ଥମଠ ନାମକ ସ୍ଥାନରେ ଏକ ଧ୍ୱଂସସ୍ତୂପ ନିକଟରେ ଅଷ୍ଟମ ଶତାବ୍ଦୀରେ ନିର୍ମିତ ବହୁ ଦେବ-ଦେବୀ ବିଗ୍ରହ ମଧ୍ୟରେ ପରଶୁରାମ, ରାମ, ଓ ହଳରାମ ବିଗ୍ରହର ସଂରକ୍ଷଣ ବିଶେଷ ଗୁରୁତ୍ୱପୂର୍ଣ୍ଣ । ଏହି ଧ୍ୱଂସସ୍ତୂପ ଖନନ କଲେ ଅନ୍ୟ ଅବତାର ପ୍ରତିମା ଗୁଡ଼ିକ ମିଳିବାର ସମ୍ଭାବନା ରହିଛି ।

## ପ୍ରାଚୀଉପତ୍ୟକାରେ ବିଭିନ୍ନ ଦଶାବତାର ମୂର୍ତ୍ତି—

ପ୍ରାଚୀ ଉପତ୍ୟକାରେ ନିର୍ମିତ ବହୁ ମାଧବ ମନ୍ଦିର ଓ ଶିବାଳୟର ଧ୍ୱଂସ-ସ୍ତୂପ ନିକଟରେ ବା ଭଗ୍ନ ମନ୍ଦିର ମଧ୍ୟରେ କେତେକ ଅବତାର ବିଗ୍ରହ ଅଯତ୍ନରେ ରକ୍ଷିତ ହୋଇଥିବାର ଦେଖାଯାଏ । ଯଥା— ହିଞ୍ଜିପୁର ଶମ୍ଭୁ ଗୋକର୍ଣ୍ଣେଶ୍ୱର ମନ୍ଦିର ନିକଟରେ ବାମନ, ଶୋଭନେଶ୍ୱର ମନ୍ଦିର ବେଢ଼ାରେ ମୁଗୁନି ପଥରରେ ଖୋଦିତ ବିଗ୍ରହ (୧ ଫୁ: ୮ ଇ: × ୧୦ ଇ:), କୃଷ୍ଣପ୍ରସାଦ ଗ୍ରାମର ଏକ ପ୍ରାଚୀନ ଇଷ୍ଟକ

---

(୨୭) "ଦୃଷ୍ଟ୍ୱା ସଂପୂଜ୍ୟଚ ପିତୃନ୍ ମହେନ୍ଦ୍ରଂ ସ୍ୱୋତ୍ତରଂଗତଃ
ତତ୍ର ଦେବବରଂ ଶମ୍ଭୁଂ ଗୋପାଳଂ ସୋମଶୀତଲଂ
ଦୃଷ୍ଟ୍ୱା ସ୍ନାତ୍ୱା ସୋମତୀର୍ଥେ ସନ୍ଧ୍ୟାଚଳମୁପାଗତଃ" । ୧୭
(ବାମନ ପୁରାଣ)
ଏ ତୀର୍ଥର ବିସ୍ତୃତ ବିବରଣ ପାଇଁ ମୋର ଇଂରେଜୀ ପ୍ରବନ୍ଧ ଦ୍ରଷ୍ଟବ୍ୟ
O. H. R. J. Vol. III, Sept 1954, No. 2, pp 65-75

ପ୍ରାକାର (ଫୁ: ୮୪ × ଫୁ: ୫୪) ମଧ୍ୟରେ ବରାହ, ଅମରେଶ୍ୱର ଗ୍ରାମର ଲକ୍ଷ୍ମୀନୃସିଂହ ମନ୍ଦିରରେ ତ୍ରିବିକ୍ରମ, ନୃସିଂହ, ବାମନ, କାକଟପୁରସ୍ଥ ପ୍ରସିଦ୍ଧ ମଙ୍ଗଳାଙ୍କ ନବନିର୍ମିତ ମନ୍ଦିରରେ ଅନ୍ୟ ସ୍ଥାନରୁ ଆଣିତ ଏକ ବରାହ (ଫୁ: ୨ × ଫୁ: ୧) ଦୁଇଟି ତ୍ରିବିକ୍ରମ, ଦୁଇଟି ନୃସିଂହ, କାକଟପୁରର ଅଦୂରରେ ପ୍ରାଚୀତଟବର୍ତ୍ତୀ ବିଶ୍ୱାମିତ୍ର ଆଶ୍ରମର ଧ୍ୱଂସସ୍ତୁପ ଉପରେ ଚତୁର୍ହସ୍ତ ତ୍ରିବିକ୍ରମ (୨ଫୁ: ୮ ଇ: × ୧ ଫୁ: ୪ ଇ:) ଚତୁର୍ଭୁଜ ବରାହ (୨ ଫୁ: ୮ ଇ: × ୧ଫୁ: ୪ ଇ:), ଲତାହରଣ ଗ୍ରାମସ୍ଥ ଗ୍ରାମେଶ୍ୱର ମନ୍ଦିର ଜଗମୋହନ ମଧ୍ୟରେ ତ୍ରିବିକ୍ରମ (୨ ଫୁ: ୧ଇ: × ୧ ଫୁ: ½ଇ:) ବରାହ (୨ଫୁ: ୧ଇ: × ୧ ଫୁ: ½ଇ:) ଓ କ୍ଷୁଦ୍ରବରାହ (୧ଫୁ: ୪ ଇ: × ୮ଇ:), ନରୁଆ ଗ୍ରାମର ଶଙ୍କରେଶ୍ୱର ମନ୍ଦିରର ଜଗମୋହନରେ ହିରଣ୍ୟକଶିପୁ ବିଦାରଣ ନୃସିଂହ ବିଗ୍ରହ (୧ଫୁ: ୧୦ଇ: × ୧୧ ଇ:)।

କାକଟପୁର ଠାରୁ ଅଳ୍ପ ଦୂରବର୍ତ୍ତୀ ସୋମେଶ୍ୱରଙ୍କ ନବନିର୍ମିତ ମନ୍ଦିର ଓ ବେଢା ପ୍ରାଚୀର ଦେହରେ ଇତସ୍ତତଃ ଭାବରେ ଖଚିତ ଓ ଧ୍ୱଂସସ୍ତୁପ ମଧ୍ୟରୁ ସଂଗୃହୀତ ପ୍ରାପ୍ତ ଅର୍ଦ୍ଧଶତ ଚମତ୍କାର ବିଗ୍ରହ ମଧ୍ୟରେ ଚତୁର୍ଭୁଜ ତ୍ରିବିକ୍ରମ (୨ଫୁ: × ୧ ଫୁ:), ଚତୁର୍ହସ୍ତ ବଳରାମ, ବରାହ, (୧ଫୁ: ୮ଇ: × ୧୧ଇ:) ନୃସିଂହ (୧.୮ ଇ: × ୧୧ ଇ:) ଅନନ୍ତଶାୟୀ ବିଷ୍ଣୁମୂର୍ତ୍ତି ଉଲ୍ଲେଖଯୋଗ୍ୟ । ସୋମବଂଶୀ ରାଜତ୍ୱ କାଳରେ ମୁଗୁନି ପଥରରେ ଖୋଦିତ ଓ ଚମତ୍କାର ଭାସ୍କର୍ଯ୍ୟ ପ୍ରକଟିତ ଏହି ବିଗ୍ରହଗୁଡ଼ିକ ଏଠାରେ କୌଣସି ଅଧୁନାଲୁପ୍ତ ମାଧବ ମନ୍ଦିରରେ ସମସ୍ତ ଦଶାବତାର ପ୍ରତିମା ଖଚିତ ହୋଇଥିବାର ସ୍ପଷ୍ଟ ସଂକେତ ପ୍ରଦାନ କରେ ।

ଉତ୍କଳରେ ଗଙ୍ଗସାମ୍ରାଜ୍ୟର ପ୍ରତିଷ୍ଠାତା ଚୋଡ଼ଗଙ୍ଗଦେବଙ୍କ ରାଜତ୍ୱକାଳ (୧୧୧୨—୧୧୪୭) ଖ୍ରୀଷ୍ଟାବ୍ଦ ମଧ୍ୟରେ ନିର୍ମିତ ଶ୍ରୀକ୍ଷେତ୍ରର ଭୁବନବିଦିତ ଶ୍ରୀଜଗନ୍ନାଥଙ୍କ ମନ୍ଦିର ଗାତ୍ରରେ ବିଭିନ୍ନ ସ୍ଥାନରେ ଦଶାବତାର ପ୍ରତିମା ପ୍ରକଟିତ ହୋଇଥିଲା । ଶ୍ରୀଜଗନ୍ନାଥ ଦେବଙ୍କ ପୂର୍ବାଭିମୁଖ ସିଂହଦ୍ୱାରରେ ପାଟପଥର ଦେହରେ ମଧ୍ୟ ଦଶାବତାର ଖୋଦିତ ହୋଇଥିବାର ଦେଖାଯାଏ । କିନ୍ତୁ ଏଠାରେ ନବମାବତାର ବୁଦ୍ଧଙ୍କ ପରିବର୍ତ୍ତରେ ବୁଦ୍ଧରୂପଧାରୀ ଶ୍ରୀଜଗନ୍ନାଥଙ୍କ ମୂର୍ତ୍ତି ପ୍ରଦର୍ଶିତ ହୋଇଅଛି । ଏହି ବିଶେଷତ୍ୱ ବିଶେଷ ଗୁରୁତ୍ୱପୂର୍ଣ୍ଣ ।

ପ୍ରତ୍ନତାତ୍ତ୍ୱିକ ପରିକ୍ରମା (**Archeological Survey**) ଫଳରେ ଉତ୍କଳର ଅନ୍ୟାନ୍ୟ ଅଞ୍ଚଳରେ ପ୍ରାଚୀନ ଅବତାର ବିଗ୍ରହର ଅବସ୍ଥିତି ସମ୍ବନ୍ଧରେ ସଂବାଦ ମିଳୁଅଛି । କିନ୍ତୁ ସେଗୁଡ଼ିକର ସମୀକ୍ଷା ନ ହୋଇଥିବାରୁ ଏ ଆଲୋଚନାରେ ଅନ୍ତର୍ଭୁକ୍ତ କରାଗଲା ନାହିଁ । ତଥାପି ଏହି ନିବନ୍ଧରେ ଉପସ୍ଥାପିତ ତଥ୍ୟ ସମୂହକୁ ଭିତ୍ତି କରି ଶ୍ରୀ ଜୟଦେବଙ୍କ ଆବିର୍ଭାବର ବହୁ ପୂର୍ବରେ ତାଙ୍କ ଦ୍ୱାରା ଅନୁସୃତ ଦଶାବତାର କ୍ରମ ଓ ଉପାସନା ଉତ୍କଳରେ ପ୍ରଚଳିତ ଥିବା ନିଃସନ୍ଦେହରେ ନିର୍ଦ୍ଧାରିତ ହୋଇପାରେ ।

ଭକ୍ତକବି ଶ୍ରୀ ଜୟଦେବ ଉକ୍ତ ପରଂପରା ପ୍ରତି ସମ୍ମାନ ପ୍ରଦର୍ଶନ କରି ନିଜର ଅମୃତ ନିସ୍ୟନ୍ଦିନୀ ଦଶାବତାର ସ୍ତୁତି ଗାନ କରିଥିଲେ । କିନ୍ତୁ ପରମ କୃଷ୍ଣଭକ୍ତ (କୃଷ୍ଣୈକତାନାତ୍ମ) ଶ୍ରୀ ଜୟଦେବଙ୍କ ବିଶେଷତ୍ୱ ହେଉଛି, ସେ ତାଙ୍କର ପରମାରାଧ୍ୟ ଶ୍ରୀକୃଷ୍ଣଙ୍କୁ ଭଗବାନ୍ ଶଙ୍କର ବା ମହାକବି କ୍ଷେମେନ୍ଦ୍ରଙ୍କ ପରି ଏକ ଅବତାର ସ୍ୱରୂପରେ ବର୍ଣ୍ଣନା ନ କରି ଦଶାବତାରର ସ୍ରଷ୍ଟା (ଦଶାକୃତିକୃତ୍) ବା ଅବତାରୀ ରୂପେ ପ୍ରତିଷ୍ଠିତ କରିଥିଲେ । ତେଣୁ ସେ ସ୍ୱୀୟ ଦଶାବତାର ସ୍ତୁତି ଶେଷରେ ଭକ୍ତିତନ୍ମୟଚିତ୍ତରେ ଗାନ କରିଥିଲେ—

"ବେଦାନୁଦ୍ଧରତେ ଜଗନ୍ତି ବହତେ ଭୂଗୋଳମୁଦ୍‌ବିଭ୍ରତେ
ଦୈତ୍ୟଂ ଦାରୟତେ ବଳିଂ ଛଳୟତେ କ୍ଷତ୍ରକ୍ଷୟଂ କୁର୍ବତେ ।
ପୌଲସ୍ତ୍ୟଂ ଜୟତେ ହଳଂ କଳୟତେ କାରୁଣ୍ୟମାତନ୍ୱତେ
ମ୍ଳେଚ୍ଛାନ୍ ମୂର୍ଚ୍ଛୟତେ **ଦଶାକୃତିକୃତେ କୃଷ୍ଣାୟ ତୁଭ୍ୟଂ ନମଃ**"

ଭକ୍ତକବିଙ୍କ ଅତ୍ୟନ୍ତ ଲୋକପ୍ରିୟ ଓ ହୃଦୟସ୍ପର୍ଶୀ ଉକ୍ତ ଶ୍ଳୋକ ମାଧ୍ୟମରେ ଶ୍ରୀମଦ୍‌ଭାଗବତର 'କୃଷ୍ଣସ୍ତୁ ଭଗବାନ୍ ସ୍ୱୟଂ' ଏହି ମହାବାଣୀ ବିଶେଷ ଆଦର ଓ ଗୌରବ ଲାଭ କରି ଧର୍ମରାଜ୍ୟରେ ଏକ ନବଯୁଗର ସୃଷ୍ଟି କରିଥିଲା । ଏହି ସ୍ତୁତିର ବହୁଳ ପ୍ରଚାର ଫଳରେ ବିଷ୍ଣୁ (ମାଧବ)ଙ୍କ ପରିବର୍ତ୍ତରେ ଶ୍ରୀକୃଷ୍ଣ ଉପାସନା ସମାଜରେ କ୍ରମଶଃ ଲୋକପ୍ରିୟତା ଓ ପ୍ରାଧାନ୍ୟ ଲାଭ କରିଥିଲା ।



## ପଞ୍ଚମ ଅଧ୍ୟାୟ

# ମାଧବଭକ୍ତ ଶ୍ରୀ ଜୟଦେବ

ପ୍ରାଚୀନ ଭାରତରେ ସଂସ୍କୃତ ଭାଷାରେ ଲିଖିତ ଶତ ଶତ ଗ୍ରନ୍ଥ ଓ ଅଭିଲେଖ ଆଲୋଚନା କଲେ ସେଗୁଡ଼ିକର ମଙ୍ଗଳାଚରଣ ଶ୍ଳୋକ ବା ଶ୍ଳୋକାବଳି ଦ୍ୱାରା ତତ୍ ତତ୍ ଗ୍ରନ୍ଥକର୍ତ୍ତା ଓ ଲେଖ ପ୍ରସ୍ତୁତ ବ୍ୟକ୍ତିମାନଙ୍କ ଧର୍ମମତର ସ୍ପଷ୍ଟ ଆଭାସ ମିଳେ। କବି ସମ୍ରାଟ କାଳିଦାସ ପରମ ମାହେଶ୍ୱର ଥିବାରୁ ସ୍ୱ ପ୍ରସିଦ୍ଧ 'ରଘୁବଂଶମ୍' ମହାକାବ୍ୟରେ ବିଷ୍ଣୁଙ୍କ ଅବତାର ବିଶେଷ ଶ୍ରୀରାମଙ୍କ ଚରିତ ବର୍ଣ୍ଣନା କଲେ ମଧ୍ୟ ଏହାର ମଙ୍ଗଳାଚରଣ ଶ୍ଳୋକରେ ସ୍ୱ ଇଷ୍ଟଦେବତା ଜଗତର ମାତା ପିତା ପାର୍ବତୀ ପରମେଶ୍ୱରଙ୍କୁ ବନ୍ଦନା କରିଛନ୍ତି। ଯଥା :—

"ବାଗର୍ଥାବିବସଂପୃକ୍ତୌ ବାଗର୍ଥପ୍ରତିପତ୍ତୟେ
**ଜଗତଃପିତରୌ** ବନ୍ଦେ **ପାର୍ବତୀପରମେଶ୍ୱରୌ** ॥" (୧)

ଏହି ପ୍ରାଚୀନ କବି ପରଂପରାକୁ ଅନୁସରଣ କରି ଭକ୍ତକବି ଜୟଦେବ ମଙ୍ଗଳାଚରଣ ଶ୍ଳୋକରେ ସ୍ୱ ଆରାଧ୍ୟ ଦେବତା ଶ୍ରୀ ରାଧାମାଧବଙ୍କ ସ୍ତୁତିଗାନ ପୂର୍ବକ ସ୍ୱୀୟ ଅମରକୃତି 'ଶ୍ରୀ ଗୀତଗୋବିନ୍ଦମ୍' ରଚନାରେ ପ୍ରବୃତ୍ତ ହୋଇଛନ୍ତି।

"ମେଘୈର୍ମେଦୁର……
**ରାଧାମାଧବୟୋ** ର୍ଜୟନ୍ତି ଯମୁନାକୂଳେରହଃ କେଳୟଃ" (୨)

କିନ୍ତୁ ସେ ଶ୍ରୀ ରାଧାକୃଷ୍ଣଙ୍କ ଭକ୍ତିମାର୍ଗ ଅବଲମ୍ବନ କରିବା ପୂର୍ବରୁ ମାଧବଭକ୍ତ ଥିବାରୁ ତାଙ୍କର ମାଧବ ଭକ୍ତି ସମ୍ବନ୍ଧରେ ଆଲୋଚନା କରାଯାଇଛି।

**ଆଦ୍ୟ ଜୀବନରେ ସ୍ମାର୍ତ୍ତ :—** କିମ୍ବଦନ୍ତୀ ଅନୁଯାୟୀ ଶ୍ରୀ ଜୟଦେବ ଶ୍ରୀ ରାଧାମାଧବ (କୃଷ୍ଣ) ଭକ୍ତି ମୂଳକ ବୈଷ୍ଣବ ମତରେ ଦୀକ୍ଷିତ ହେବା ପୂର୍ବରୁ ପ୍ରଥମ ଜୀବନରେ ସ୍ୱ ପୂର୍ବପୁରୁଷ ମାନଙ୍କ ପରି ସ୍ମାର୍ତ୍ତ ଥିଲେ। ସ୍ୱ ଜନ୍ମଭୂମି କେନ୍ଦୁବିଲ୍ୱ (କେନ୍ଦୁଲୀ ଶାସନ)ରେ ଚଣ୍ଡୀ ମନ୍ଦିରର ଅଦୂରରେ ଅବସ୍ଥିତ ଓ ଅଦ୍ୟାପି ଲୋକ ସମାଜରେ ସମ୍ମାନିତ ଦୁଇଟି ଭଗ୍ନ ଯୂପସ୍ତମ୍ଭ ତାଙ୍କ ଦ୍ୱାରା ଅନୁଷ୍ଠିତ ଯଜ୍ଞପାଇଁ ନିର୍ମିତ

---

୧। ରଘୁବଂଶମ୍, ପ୍ରଥମ ସର୍ଗ, ପ୍ରଥମ ଶ୍ଳୋକ।
୨। ଶ୍ରୀ ଗୀତଗୋବିନ୍ଦମ୍, ପ୍ରଥମ ଶ୍ଳୋକ।

ହୋଇଥିବା ଜନଶ୍ରୁତି ଅଦ୍ୟାପି ବଳବତ୍ତର । ଏଥିରେ ଐତିହାସିକ ସତ୍ୟ ନିହିତ ଥିବାର ମନେହୁଏ । କାରଣ ତାଙ୍କର ଅନ୍ତରଙ୍ଗବନ୍ଧୁ କବୀନ୍ଦ୍ର ଉଦୟନାଚାର୍ଯ୍ୟଙ୍କ ପୃଷ୍ଠପୋଷକ ବ୍ରାହ୍ମଣ ବଂଶୀୟ ସାମନ୍ତରାଜା ଶ୍ରୀ ବୈଦ୍ୟନାଥ ପରେ ବୈଷ୍ଣବ ହେଲେ ମଧ୍ୟ ସାତଟି ଯଜ୍ଞାନୁଷ୍ଠାନ କରିଥିଲେ (ସପ୍ତାଧ୍ୱରୀ ଦୀକ୍ଷିତଃ) । ଉକ୍ତ ରାଜା ବୈଦ୍ୟନାଥ ନିଆଳୀ ଶାସନରେ ନିର୍ମାଣ କରିଥିବା ଶୋଭନେଶ୍ୱର ଶିବ ମନ୍ଦିରକୁ ନିଜର ବୈଷ୍ଣବଧର୍ମ ପ୍ରତି ବିଶେଷ ଅନୁରାଗ ଯୋଗୁ ସେଥିରେ ପ୍ରକୃତ ଭବାନୀପତିଙ୍କ ଠାରେ ବିଷ୍ଣୁତ୍ୱ ଆରୋପ କରିଥିଲେ (ବିଷ୍ଣୋର୍ଭବାନୀପତେଃ) । ଏହାଦ୍ୱାରା ବିଷ୍ଣୁ ଓ ଶିବଙ୍କ ମଧ୍ୟରେ ଅଭେଦତ୍ୱ ପ୍ରତିପାଦିତ ହୋଇଅଛି । ଯଥା :—

"ଆମ୍ନାୟେ ପରମେଷ୍ଠିବତ୍ କବିସମୋ ମାର୍ଗେ ତ ଶୈବାଗମେ
ନନ୍ଦୀବତ୍ ଶ୍ରୁତିମାର୍ଗତୋ ଗୁରୁରିବ ଃ **ସପ୍ତାଧ୍ୱରୀଦୀକ୍ଷିତଃ ॥**
ସାକ୍ଷାତ୍ ବ୍ୟାକରଣେ ସ ପାଣିନିମୁନି ନ୍ୟାୟେଽକ୍ଷପାଦୋପମଃ,
ପ୍ରତିଷ୍ଠି ଦ୍ଭବନଂ କୃତଂ ସୁକୃତିନା **ବିଷ୍ଣୋର୍ଭବାନୀପତେଃ** ॥"

(ଦ୍ୱାବିଂଶତି ଶ୍ଳୋକ) (୩)

ତେଣୁ ଶ୍ରୀ ଜୟଦେବ ପରମ ବୈଷ୍ଣବ ହେବା ପୂର୍ବରୁ ଶ୍ରୋତ୍ରିୟ ଯାଜ୍ଞିକ ବ୍ରାହ୍ମଣ ଭାବରେ ଜୀବନଯାପନ କରୁଥିବା ସମୟରେ ଯଜ୍ଞାନୁଷ୍ଠାନ କରିଥିବା ସମ୍ପର୍କୀୟ ଜନଶ୍ରୁତି ସତ୍ୟାଶ୍ରିତ ଓ ଗ୍ରହଣ ଯୋଗ୍ୟ ।

## ଶ୍ରୀ ଜୟଦେବଙ୍କ ପୂର୍ବରୁ ଉତ୍କଳରେ ମାଧବ ଉପାସନାର ପ୍ରଚଳନ :—

ଶ୍ରୀ ଜୟଦେବଙ୍କ ଗଭୀର ମାଧବ ଭକ୍ତିର କାରଣ ନିର୍ଣ୍ଣୟ କରିବା ପାଇଁ ପ୍ରାଚୀନ କାଳରୁ ଉତ୍କଳରେ ପ୍ରଚଳିତ ମାଧବ ଉପାସନା କ୍ରମଶଃ ବିକାଶ ଲାଭକରି ତାଙ୍କ ସମୟକୁ କିପରି ଲୋକପ୍ରିୟତା ଅର୍ଜନ କରିଥିଲା, ତାହାର ସଂକ୍ଷିପ୍ତ ଆଲୋଚନା ଆବଶ୍ୟକ । ଏପର୍ଯ୍ୟନ୍ତ ମୁଦ୍ରିତ ଓ ପ୍ରକାଶିତ ପ୍ରାଚୀନ ଉତ୍କଳର ଅଭିଲେଖ ସମୂହର ପରୀକ୍ଷା ଦ୍ୱାରା ଜଣାଯାଏ ଯେ, ସପ୍ତମ ଶତାବ୍ଦୀର ପ୍ରଥମ ଭାଗରେ କୋଙ୍ଗଦ ମଣ୍ଡଳ ବା ବର୍ତ୍ତମାନ ଗଞ୍ଜାମ ଜିଲାର ଉତ୍ତରାଂଶ ଓ ପୁରୀ ଜିଲାର ଅଧିକାଂଶକୁ ନେଇ ଗଠିତ ଭୂଖଣ୍ଡରେ ରାଜତ୍ୱ କରୁଥିବା ଶୈଳୋଦ୍ଭବବଂଶୀୟ ପ୍ରଥମ ପ୍ରସିଦ୍ଧ ନରପତି ମାଧବରାଜାଙ୍କ ଏକ ତାମ୍ରଶାସନରେ **ଚକ୍ରଧର ଭଗବାନ୍ ମାଧବଙ୍କ** ସର୍ବପ୍ରଥମ ଉଲ୍ଲେଖ ଦେଖାଯାଏ । (୪)

---

୩ । ଶୋଭନେଶ୍ୱର ମନ୍ଦିର ଶିଳାଲେଖ—J. B. O. R. S. Vol. XVII

୪ । "ପ୍ରବୃଦ୍ଧ-ଚକ୍ର ଚକ୍ରଧର ଇବ ଭଗବାନ୍ ମାଧବଃ ଶ୍ରୀ ମାଧବରାଜ କୁଶଲୀ"
Inscriptions of Orissa, Vol. I, part-II, p. 163.
by Sri S. N. Rajaguru.

ଉକ୍ତ ଦାନପତ୍ରରେ ମଣ୍ଡଳାଧିପତି ଶକ୍ତିଶାଳୀ ମାଧବରାଜ 'ଚକ୍ରଧର' ଭଗବାନ୍ ମାଧବଙ୍କ ସହିତ ତୁଳିତ ହୋଇଛନ୍ତି । ବିଷ୍ଣୁଙ୍କ ଚତୁର୍ବିଂଶତି ବିଗ୍ରହ କଳ୍ପିତ ଓ ପ୍ରଚଳିତ ହୋଇଥିଲେ ମଧ୍ୟ ପ୍ରଶସ୍ତିକାରଙ୍କ ଚକ୍ରାୟୁଧ ମାଧବ ନାମ ପ୍ରତି ବିଶେଷ ଗୁରୁତ୍ୱ ଆରୋପ ବିଶେଷ ପ୍ରଣିଧାନ ଯୋଗ୍ୟ । ଉକ୍ତ ରାଜବଂଶୀୟ କେତେକ ପ୍ରସିଦ୍ଧ ନରପତିଙ୍କ 'ମାଧବ ରାଜ' 'ମାଧବବର୍ମନ୍' ପ୍ରଭୃତି ନାମକରଣ ପ୍ରକାରାନ୍ତରରେ ମାଧବ ଉପାସନାର ଲୋକପ୍ରିୟତା ସୂଚିତ କରେ । କାରଣ ଏ ଦେଶରେ ସ୍ୱ ଇଷ୍ଟଦେବତା ବା ଆଞ୍ଚଳିକ ଲୋକପ୍ରିୟତା ଅର୍ଜ୍ଜନ କରିଥିବା ଦେବଦେବୀଙ୍କ ନାମାନୁସାରେ ନିଜ ପ୍ରିୟ ପୁତ୍ର-କନ୍ୟାଙ୍କ ନାମକରଣ ପୂର୍ବକାଳରୁ ଆଚରିତ ଏକ ପ୍ରଥା ରୂପେ ଚଳିଆସୁଛି । ଭଗବାନ୍ ମାଧବଙ୍କ 'ଚକ୍ରଧର' ପଦ ବିଶେଷଣ ରୂପେ ବ୍ୟବହାର ମଧ୍ୟ ବିଶେଷାର୍ଥ ଜ୍ଞାପକ । ତେଣୁ ଉତ୍କଳର ବିଭିନ୍ନ ଅଞ୍ଚଳରେ ପୂଜିତ ପ୍ରାପ୍ତ ସମସ୍ତ ମାଧବ ବିଗ୍ରହର ଉର୍ଦ୍ଧ୍ୱ ଦକ୍ଷିଣ ହସ୍ତରେ ଚକ୍ର ଏକବିଶିଷ୍ଟ ଦୃଷ୍ଟି ଆକର୍ଷଣକାରୀ ଆୟୁଧ ରୂପେ ଶୋଭା ପାଉଥିବାର ଦେଖାଯାଏ । ବର୍ତ୍ତମାନ ମାଧବ ପୂଜାର କ୍ରମବିକାଶ ସମ୍ପର୍କରେ ଆଲୋଚନା ଆବଶ୍ୟକ ।

ନବମ ଶତାବ୍ଦୀରେ ଉଦୟ ଖିଞ୍ଜିଳ ମଣ୍ଡଳ ଗନ୍ଧରାଡ଼ି (ବୌଦ୍ଧ, ସୋନପୁର, ଗୁମସର ଅଞ୍ଚଳ)ରେ ରାଜତ୍ୱ କରୁଥିବା ପରମ ବୈଷ୍ଣବ ଭଞ୍ଜାମଳ କୁଳତିଳକ ଗନ୍ଧାଟ ନାମରେ ପରିଚିତ ଶତ୍ରୁଭଞ୍ଜ ମହାନଦୀର ଦକ୍ଷିଣ ତୀରରେ ବର୍ତ୍ତମାନ ବୌଦ୍ଧ ସହରଠାରୁ ପ୍ରାୟ ୮ ମାଇଲ ଉତ୍ତରକୁ ଗନ୍ଧାଟପାଟି ନାମକ ଗ୍ରାମ ସ୍ଥାପନ କରିଥିଲେ । ସେଠାରେ ସେ ପ୍ରସ୍ତର ନିର୍ମିତ ଏକ ଉଚ୍ଚ ପୀଠ ଉପରେ ସମାକୃତିବିଶିଷ୍ଟ ସୁନ୍ଦର କାରୁକାର୍ଯ୍ୟ ଖଚିତ ଦୁଇଟି ମନ୍ଦିର ନିର୍ମାଣ କରି ସେଥିରେ ଯଥାକ୍ରମେ **ନୀଳମାଧବ** ଓ ସିଦ୍ଧେଶ୍ୱର ନାମରେ ପରିଚିତ ବିଗ୍ରହଦ୍ୱୟ ପ୍ରତିଷ୍ଠା କରିଥିଲେ । ମନ୍ଦିର ଗର୍ଭଗୃହସ୍ଥ ଚକ୍ର, ଶଙ୍ଖ, ପଦ୍ମ ଓ ଗଦାଧାରୀ ମୁଗୁନି ପଥରରେ ନିର୍ମିତ ଦଣ୍ଡାୟମାନ ନୀଳମାଧବ ବିଗ୍ରହଟି ଅତ୍ୟନ୍ତ ଜୀବନ୍ତ ଓ କମନୀୟ । ପୂର୍ବେ ଏହି ମନ୍ଦିର ଗାତ୍ରରେ ବିଭିନ୍ନ ସ୍ଥାନରେ ଦଶାବତାର ବିଗ୍ରହ ସମୂହ ଖଚିତ ହୋଇଥିଲା । ସେଥିମଧ୍ୟରୁ ଅଧିକାଂଶ ଏବେ ଅପସାରିତ ହୋଇଅଛି ।

ଉକ୍ତ ଶତ୍ରୁଭଞ୍ଜ ନୀଳମାଧବ ନାମରେ ପ୍ରଖ୍ୟାତ ବିଷ୍ଣୁଙ୍କ ପାଇଁ ଗନ୍ଧାଟପାଟି ବାସ୍ତବ୍ୟ ବ୍ରହ୍ମଚାରୀ ଭଟ୍ଟ ମନୋରଥଙ୍କୁ କାର୍ତ୍ତିକ ଶୁକ୍ଳ ମହାଦ୍ୱାଦଶୀ ଦିନ କୁରୁମକେଲା ଗ୍ରାମ ଦାନ କରିଥିବା ତାଙ୍କ ଦାନପତ୍ରରେ ବର୍ଣ୍ଣିତ ହୋଇଛି । (*) ତେଣୁ ଗନ୍ଧରାଡ଼ି ଗ୍ରାମରେ ଅବସ୍ଥିତ ଉକ୍ତ ନୀଳମାଧବ ଉତ୍କଳର ଏକ ପ୍ରାଚୀନତମ ମାଧବ ବିଗ୍ରହ ।

---

* । **Kurumakela charter of Satru Bhanja J. B. O. R. S. Vol. II, pp. 429-435.**
କାର୍ତ୍ତିକ ଶୁକ୍ଳମହାଦ୍ୱାଦଶ୍ୟାଂ ବିଷ୍ଣୁଭଟ୍ଟାରକମୁଦ୍ଦିଶ୍ୟ ।

**ସନ୍ତୋଷ ମାଧବ —**

ବଞ୍ଜୁଲ୍ବକ ନାମକ ରାଜଧାନୀରୁ ରାଜତ୍ୱ କରୁଥିବା ପରମବୈଷ୍ଣବ ରାଣକ ଶ୍ରୀ ଶତ୍ରୁଭଞ୍ଜଦେବ ତ୍ରିଭୁବନକଳସଙ୍କ ଦଶପଲ୍ଲା ତାମ୍ରଶାସନରେ (୬) **ସନ୍ତୋଷ ମାଧବ** ନାମକ ଗ୍ରାମର ନାମ ମିଳେ । ଏହି ଗ୍ରାମଟି ଏପର୍ଯ୍ୟନ୍ତ ଚିହ୍ନିତ ହୋଇ ନ ଥିଲେ ମଧ୍ୟ ଏହା ମାଧବ ବିଗ୍ରହଙ୍କ ନାମାନୁସାରେ ପ୍ରତିଷ୍ଠିତ ହୋଇଥିବା ସୁନିଶ୍ଚିତ । ଏହି ଦାନପତ୍ରଟି ଭୌମ ସମ୍ବତ୍ ୧୯୮ ବା ୮୧୨ ଖ୍ରୀଷ୍ଟାବ୍ଦରେ ପ୍ରଦତ୍ତ ହୋଇଥିଲା ।

**ଶ୍ରୀଲୋକମାଧବ —**

ଗଞ୍ଜାମ ଅଞ୍ଚଳରେ ଅବସ୍ଥିତ ଶ୍ୱେତକ ରାଜ୍ୟ (ବର୍ତ୍ତମାନ ଚିକିଟି ଓ ଖିମିଣ୍ଡି ଅଞ୍ଚଳ)ରେ ରାଜତ୍ୱ କରୁଥିବା ଗଙ୍ଗବଂଶୀୟ ଇନ୍ଦ୍ରବର୍ମଦେବଙ୍କ ସାନଖେମଣ୍ଡିରୁ ପ୍ରାପ୍ତ ଏକ ତାମ୍ରଶାସନରୁ ଜଣାଯାଏ ଯେ, ସେ 'ଲୋକମାଧବ' ନାମକ ବିଷ୍ଣୁମୂର୍ତ୍ତି ଓ 'ଶ୍ରୀ ସ୍ୱୟମ୍ଭୂକେଶ୍ୱର' ନାମକ ଶିବବିଗ୍ରହଙ୍କ ପୂଜା ଏବଂ ବ୍ରାହ୍ମଣମାନଙ୍କ ଉପଭୋଗ ନିମିତ୍ତ କେତେକ ଭୂମି ଦାନ କରିଥିଲେ । ଯଥା—

"ଏକଞ୍ଚ **ଶ୍ରୀଲୋକମାଧବାୟ** ଦତ୍ତଂ । ଅପରଂ ଅର୍ଦ୍ଧାଂଶଂ ଭଟ୍ଟାରକ ସ୍ୱୟମ୍ଭୂକେଶ୍ୱରାୟ ଦତ୍ତଂ । ଅପରଂ ଅର୍ଦ୍ଧାଂଶଂ ବ୍ରାହ୍ମଣେଭ୍ୟଃ" (୭)

ଗଙ୍ଗାବ୍ଦ ୩୧୩ ବା ୮୧୧ଖ୍ରୀଷ୍ଟାବ୍ଦରେ ପ୍ରଦତ୍ତ ଏକ ଦାନପତ୍ରରେ ଗଙ୍ଗରାଜ ଅନନ୍ତବର୍ମନ୍‌ଙ୍କ ରାଣୀ ଓ ଯୁବରାଜ ରାଜେନ୍ଦ୍ର ବର୍ମନ୍‌ଙ୍କ ମାତା ଲୋକମହାଦେବୀଙ୍କ ନାମୋଲ୍ଲେଖ ଦେଖାଯାଏ । ଯଥା — ଅରଳଗ୍ରାମ ତସ୍ୟମାତୁରସ୍ୟ ଶ୍ରୀଲୋକ ମହାଦେବ୍ୟା ପ୍ରଦତ୍ତଂ ।" (୮) ତେଣୁ ରାଣୀ ଲୋକମହାଦେବୀ ସ୍ୱସ୍ମୃତିରକ୍ଷା ପାଇଁ 'ଶ୍ରୀ ଲୋକମାଧବ' ନାମକ ମାଧବମୂର୍ତ୍ତି ଏକ ମନ୍ଦିରରେ ପ୍ରତିଷ୍ଠା କରିଥିବା ସୁନିଶ୍ଚିତ । ଲୋକମହାଦେବୀଙ୍କ ପ୍ରଦତ୍ତ ଅରଳ ଗ୍ରାମ ପୂର୍ବ ପାରଳାରାଜ୍ୟ ଅନ୍ତର୍ଭୁକ୍ତ ମହେନ୍ଦ୍ରତନୟା ନଦୀ ତୀରବର୍ତ୍ତୀ ପାଟପଟନ୍ ବା ପୁରୁଣା ପାଟଣା ଅଞ୍ଚଳରେ ଅବସ୍ଥିତ । ଉକ୍ତ ତାମ୍ରଶାସନ ଦ୍ୱାରା ନବମ ଶତାବ୍ଦୀ ଆରମ୍ଭ ବେଳକୁ ଗଞ୍ଜାମରେ ମାଧବ ବିଗ୍ରହ ପ୍ରତିଷ୍ଠା ଓ ପୂଜା ପ୍ରଚଳିତ ହୋଇଥିବାର ନିଃସନ୍ଦେହରେ ପ୍ରମାଣିତ ହୁଏ ।

---

(୬) Daspalla C. P. grant of Ranaka Satrubhanja, by Rajaguru O.H.R.J. Vol I.

(୭) The Indian Museum plates of Indra Varman. I. O., by Rajaguru Vol. II, p 282.

(୮) Pattali plates of Loka Mahadevi I. O. Vol II, p 133.

## ଶୈଳଗଙ୍ଗ ମାଧବ —

ଏହି ପରଂପରା ଅନୁସରଣ କରି ଉତ୍କଳରେ ଗଙ୍ଗସାମ୍ରାଜ୍ୟର ପ୍ରତିଷ୍ଠାତା ମହାପରାକ୍ରମଶାଳୀ ଶୈଳଗଙ୍ଗଦେବଙ୍କ ନାମାନୁସାରେ 'ଶୈଳଗଙ୍ଗ ମାଧବ' ନାମକ ବିଷ୍ଣୁ ବିଗ୍ରହ ସ୍ଥାପିତ ହୋଇଥିବା ଗୃରୋଟି ସ୍ତମ୍ଭଲେଖରୁ ଜଣାଯାଏ । (୯)

ଏହି ମନ୍ଦିରଟି ଆନ୍ଧ୍ରପ୍ରଦେଶର ଶ୍ରୀକାକୁଲମ୍ ଜିଲାର ବିଜୟ ନଗର ତାଲୁକସ୍ଥ ରେଲିବାଲସା ନାମକ ଗ୍ରାମରେ ନିର୍ମିତ ହୋଇଥିବାରୁ ଗୃରୋଟିଯାକ ସ୍ତମ୍ଭ-ଲେଖ ଉକ୍ତ ଗ୍ରାମରେ ପରିଦୃଷ୍ଟ ହୁଏ । ଏଥିମଧ୍ୟରୁ ଦୁଇଟି ଲେଖର ସମୟ ହେଉଛି ୧୦୭୫ ଶକାବ୍ଦ, ବା ୧୧୫୩ ଖ୍ରୀଷ୍ଟାବ୍ଦ । ଅନ୍ୟ ଦୁଇଟିର ୧୦୮୧ ଶକାବ୍ଦ (୧୧୫୯ ଖ୍ରୀଷ୍ଟାବ୍ଦ) ଓ ୧୧୦୫ ଶକାବ୍ଦ (୧୧୮୩ ଖ୍ରୀଷ୍ଟାବ୍ଦ) । ଅତଏବ ଦ୍ୱାଦଶ ଶତାବ୍ଦୀ ବେଳକୁ କେବଳ ଉତ୍କଳରେ ନୁହେଁ କଳିଙ୍ଗ ନାମରେ କଥିତ ଉତ୍କଳର ଦକ୍ଷିଣ ସୀମାନ୍ତ ଅଞ୍ଚଳରେ ମଧ୍ୟ ମାଧବ ପୂଜା ବିଶେଷ ପ୍ରସାରଲାଭ କରିଥିଲା ।

ଏଥିମଧ୍ୟରୁ ଗୋଟିଏ ସ୍ତମ୍ଭଲେଖରେ ଶୈଳଗଙ୍ଗମାଧବ ଦେବଙ୍କର ଓଡ଼ିଆ ମିଶା ତେଲେଙ୍ଗା ଭାଷାରେ ଲିଖିତ ପୂଜାପ୍ରଣାଳୀରୁ ଦେବତାଙ୍କ ହବି, ବଳି, ଅର୍ଚ୍ଚନ (ପୂଜା)ପାଇଁ ବାଦ୍ୟକାର, ପୂଜାରି ଓ ବଡ଼ୁ ପ୍ରଭୃତି ସେବକ ନିଯୁକ୍ତ ହୋଇଥିବାର ଜଣାଯାଏ । ଯଥା—

"ଶୈଳଗଙ୍ଗମାଧବ ଦେବର ହବି, ବଳି, ଅର୍ଚ୍ଚ(ଚ୍ଚା)ନଲକୁ ନିଗୁଡ଼ିଂ
ଗୋଲି ବେଡ଼ସାନୁଲକୁ ବାଦ୍ୟକାରଲକୁ ପୂଜାରି ବଡ଼ୁ ବୁଲୁ"

ପୂଜାରି ଓ ବଡ଼ୁ ସେବକ ଅଦ୍ୟାପି ପୁରୀ ଓ ଭୁବନେଶ୍ୱରରେ ବହୁସଂଖ୍ୟାରେ ରହିଛନ୍ତି ।

## କଣ୍ଟିଲୋର ନୀଳମାଧବ ମନ୍ଦିର —

ମହାନଦୀ କୂଳବର୍ତ୍ତୀ ଗନ୍ଧରାଡ଼ିର ନୀଳମାଧବ ମନ୍ଦିର ପରି ମହାନଦୀ କୂଳରେ ଅବସ୍ଥିତ ପୂର୍ବତନ ଖଣ୍ଡପଡ଼ା ରାଜ୍ୟର କଣ୍ଟିଲୋ ନାମକ ଗ୍ରାମରେ ଉତ୍କଳ ପ୍ରସିଦ୍ଧ ନୀଳମାଧବଙ୍କ ମନ୍ଦିର ଦଣ୍ଡାୟମାନ । ଏହା ନିକଟରେ ଏକ ପ୍ରାଚୀନ ଶିବମନ୍ଦିର ମଧ୍ୟ ବିଦ୍ୟମାନ । ଏହି ମନ୍ଦିରଦ୍ୱୟ ସୋମବଂଶୀ ରାଜାଙ୍କ କାଳରେ ନିର୍ମିତ ହୋଇଥିଲା । ମୂଳ ମନ୍ଦିର ଭାଙ୍ଗିଯିବାରୁ ଏଯାବତ୍ ପୁନଃନିର୍ମିତ ହୋଇଅଛି ।

---

(୯) (a) The pillar inscription of Rellivalasa. I.O. Vol III pt II
(b) ,, ,, p 279.
(c) ,, ,, p 281.
(d) ,, ,, p 290.

## ପ୍ରାଚୀ ଉପତ୍ୟକାରେ ମାଧବ ଉପାସନା

ଭକ୍ତକବିଙ୍କ ଜନ୍ମଭୂମି କେନ୍ଦୁବିଲ୍ୱ ଶାସନ ନିକଟରେ ପ୍ରବାହିତା ଉତ୍କଳର ସରସ୍ୱତୀ ସ୍ୱରୂପା ପ୍ରାଚୀ ତୀରବର୍ତ୍ତୀ ପ୍ରସିଦ୍ଧ ଦ୍ୱାଦଶ ଶମ୍ଭୁଙ୍କ ପ୍ରତିବେଶୀ ଭାବରେ ପୂଜିତ ଦ୍ୱାଦଶ ମାଧବ ମନ୍ଦିରର ଅବସ୍ଥିତି 'ପ୍ରାଚୀ ମହାତ୍ମ୍ୟ' ପାଠରୁ ଜଣାଯାଏ । ଯଥା—

"ଦ୍ୱାଦଶ ହର ମୂର୍ତ୍ତି ତହିଁ । ତୀରେ ନିବାସ ଛନ୍ତି ରହି ॥
ଦ୍ୱାଦଶ ଅମ୍ବିକା ମୂରତି । ଧରି ପାର୍ବତୀ ସଙ୍ଗେ ଛନ୍ତି ॥
ଦ୍ୱାଦଶ ମାଧବ ନିବାସ । କରିଅଛନ୍ତି ତୀରେ ବାସ ॥
କପିଳ ଋଷି ଆଶ୍ରମରୁ । ବିଜେ ସେ କଲେ ତୀର୍ଥଗୁରୁ ॥
ମହୋଦଧିର ନିକଟରେ । ଗୋମୁଖୀ କେଶବ ସେଠାରେ ॥
ନିବାସ କରିଛନ୍ତି ତହିଁ । ପାପୀଙ୍କୁ ଉଦ୍ଧରିବା ପାଇଁ ॥" (୧୦)

## କେନ୍ଦୁଲୀର ଲୁପ୍ତ ମାଧବ ମନ୍ଦିର

ପ୍ରାଚୀକୂଳର ଅନ୍ୟ ତୀର୍ଥ ପରି ଭକ୍ତକବି ଜୟଦେବଙ୍କ ଜନ୍ମସ୍ଥାନ କେନ୍ଦୁବିଲ୍ୱ (କେନ୍ଦୁଲୀ) ଶାସନରେ ଏକ ବେଢ଼ା ମଧ୍ୟରେ ଅମ୍ବିକା, ମୁକ୍ତେଶ୍ୱର ଓ ମାଧବ ମନ୍ଦିର ବିଦ୍ୟମାନ ଥିବାର ପ୍ରତ୍ନତାତ୍ତ୍ୱିକ ଭୂଖୋଦନ ଫଳରେ ପ୍ରମାଣିତ ହୋଇଛି । ଏଥିମଧ୍ୟରୁ ଧ୍ୱଂସସ୍ତୂପରେ ପରିଣତ ବୃହତ୍ତମ ଅମ୍ବିକା ମନ୍ଦିରଟିର ପୁନରୁଦ୍ଧାର କାର୍ଯ୍ୟ ମୁଁ ରାଜ୍ୟ ପ୍ରତ୍ନତତ୍ତ୍ୱ ବିଭାଗର ଅଧ୍ୟକ୍ଷ ଥିବା ସମୟରେ ବହୁଦୂର ଅଗ୍ରସର ହୋଇ ଏବେ ସମାପ୍ତ ହୋଇଛି । କ୍ଷୁଦ୍ର ମୁକ୍ତେଶ୍ୱର ମନ୍ଦିରର ନିମ୍ନାଂଶ ଭୂଗର୍ଭରେ ପ୍ରୋଥିତ । ଏଠାରେ ଥିବା ମାଧବ ମନ୍ଦିର ମଧ୍ୟ ମୁକ୍ତେଶ୍ୱର ମନ୍ଦିରପରି କ୍ଷୁଦ୍ରାକାର ଥିଲା । କିନ୍ତୁ ଏହା ବର୍ତ୍ତମାନ ଲୁପ୍ତ । କିନ୍ତୁ ଏଥିରେ ପ୍ରତିଷ୍ଠିତ ଅଣ୍ଡାକାର ପ୍ରଭାମଣ୍ଡଳ ମଣ୍ଡିତ ପ୍ରାଚୀନ ମାଧବ ବିଗ୍ରହଟି ଭୂଖୋଦନ ସମୟରେ ଆବିଷ୍କୃତ ହୋଇଛନ୍ତି । ଖୋଦନ ଶୈଳୀ ଦୃଷ୍ଟିରୁ ଏହାଙ୍କୁ ନିଃସନ୍ଦେହରେ ନବମ ଶତାବ୍ଦୀରେ ଅବସ୍ଥାପିତ କରାଯାଇପାରେ ।

## ପ୍ରାଚୀକୂଳର ଦ୍ୱାଦଶ ଶମ୍ଭୁ ଓ ଦ୍ୱାଦଶ ମାଧବ

ପ୍ରାଚୀ କୂଳବର୍ତ୍ତୀ ପ୍ରଖ୍ୟାତ ଦ୍ୱାଦଶ ଶମ୍ଭୁଙ୍କ ମଧ୍ୟରେ ପ୍ରଥମ ସ୍ଥାନ ଅଧିକାରି କରିଥିବା **କପିଳେଶ୍ୱର** ମନ୍ଦିର ନିକଟବର୍ତ୍ତୀ ମାଧବ ମନ୍ଦିର ବର୍ତ୍ତମାନ ବିଲୁପ୍ତ । ଦ୍ୱିତୀୟ ଶମ୍ଭୁ **ଗୋକର୍ଣ୍ଣେଶ୍ୱର**ଙ୍କ ପ୍ରତିବେଶୀ ମାଧବଙ୍କ ମନ୍ଦିରର ବର୍ତ୍ତମାନ କୌଣସି ଅସ୍ତିତ୍ୱ ନାହିଁ । କେବଳ ଦୃଢ଼ ମାଧବ ମନ୍ଦିରର ପାର୍ଶ୍ୱଦେବତା ରୂପେ

(୧୦) ପ୍ରାଚୀମାହାତ୍ମ୍ୟ—୧୦ମ ଅଧ୍ୟାୟ

ପୂଜିତ ହେଉଥିବା ବାମନ ବିଗ୍ରହ ଗୃହଶୂନ୍ୟ ହୋଇ ନବନିର୍ମିତ ଗୋକର୍ଣ୍ଣେଶ୍ୱର ମନ୍ଦିର ଦ୍ୱାର ନିକଟରେ ଦଣ୍ଡାୟମାନ ।

## ତ୍ରିବେଣୀ ମାଧବ

ତ୍ରିଜଗତ୍ ପ୍ରଖ୍ୟାତ ଶମ୍ଭୁ ବିଲ୍ୱେଶ୍ୱରଙ୍କ ଅଦୂରରେ କୁଶଭଦ୍ରା ନଦୀର 'ମଣି-କର୍ଣ୍ଣିକା' ନାମକ ପ୍ରଖ୍ୟାତ ଶାଖା ପ୍ରାୟ ଦୁଇଶହ ହାତ ଦକ୍ଷିଣକୁ ଯାଇ ପ୍ରାଚୀ ସହିତ ମିଳିତ ହୋଇଛି । ଏହି ମିଳନ ସ୍ଥାନ **ତ୍ରିବେଣୀସଂଗମ** ନାମରେ ଉତ୍କଳ ପ୍ରସିଦ୍ଧ । ଏହାର ମଧ୍ୟବର୍ତ୍ତୀ ସ୍ଥାନ 'ଅନ୍ତର୍ବେଦୀ' ନାମରେ ଆଖ୍ୟାତ । ପ୍ରାଚୀ ମହାତ୍ମ୍ୟର ବିବରଣୀ ଅନୁସାରେ ଏହା 'ମଣିକର୍ଣ୍ଣିକା ତୀର୍ଥ' ଏବଂ ସପ୍ତମାତୃକାଙ୍କ ଅବସ୍ଥିତି ଯୋଗୁଁ 'ମାତୃକାତୀର୍ଥ' ରୂପେ ମଧ୍ୟ ସୁବିଦିତ । ଏହା ନିକଟରେ ପୀତବାସ (ମାଧବ) ଲକ୍ଷ୍ମୀଙ୍କ ସହିତ ବିଦ୍ୟମାନ । ଯଥା—

"ଯାହାଙ୍କୁ ବୋଲନ୍ତି ତ୍ରିବେଣୀ । ମଣିକର୍ଣ୍ଣିକା ସେ ଯେ ପୁଣି ॥
କଳିରେ ଗୁପ୍ତ ବାରାଣସୀ । ଗୋକର୍ଣ୍ଣେଶ୍ୱର ପାଶେ ଆସି ॥
ବିଲ୍ୱେଶ୍ୱରଙ୍କ ନିକଟରେ । ମାତୃକାତୀର୍ଥ ସେହିଠାରେ ॥
ପୂର୍ବକାଳରେ ମାତୃଗଣ । ଦାନବ ସୈନ୍ୟେ କଲେ ରଣ ॥
ମାତୃଗଣରେ ପରାଭବ । ସେଠାରେ ଯାଇଲେ ଦାନବ ॥
ସେହିନୁ ମାତୃନାମେ ଖ୍ୟାତ । ମାତୃକାତୀର୍ଥରେ ଜଗତ ॥
**ସପ୍ତମାତୃକା** ଛନ୍ତି ରହି । ଦେଖିଲେ ଗର୍ଭେ ବାସ ନାହିଁ ॥
**ଲକ୍ଷ୍ମୀ ସହିତେ ପୀତବାସ** । ସର୍ବଦା କରନ୍ତି ନିବାସ ॥ (୧୧)

ତ୍ରିବେଣୀସଂଗମରେ ସପ୍ତମାତୃକା ବିଗ୍ରହର ଉପାସନା ଏ ସ୍ଥାନର ପ୍ରାଚୀନତ୍ୱ ଓ ବୈଶିଷ୍ଟ୍ୟର ପରିଚାୟକ । କାରଣ ତୀର୍ଥ ରୂପେ ବିଶେଷ ପ୍ରସିଦ୍ଧି ଲାଭ କରିଥିବା ବିରଜା କ୍ଷେତ୍ର (ଯାଜପୁର), ଏକାମ୍ର କ୍ଷେତ୍ର (ଭୁବନେଶ୍ୱର) ପୁରୁଷୋତ୍ତମ କ୍ଷେତ୍ର (ପୁରୀ) ପ୍ରଭୃତି ଅନ୍ୟ ଅଳ୍ପକେତେକ ସ୍ଥାନରେ ସପ୍ତମାତୃକା ଉପାସନା ପୀଠ ପରିଦୃଷ୍ଟ ହୁଏ । ତ୍ରିବେଣୀ ସଂଗମରେ ପୂଜିତ ପୀତବାସ ତ୍ରିବେଣୀ ମାଧବ ନାମରେ ବିଖ୍ୟାତ ।

## ନିଆଳୀର ଲୁପ୍ତ ମାଧବ ମନ୍ଦିର

ନିଆଳୀ ଶାସନରେ ମାକଡ଼ା ପଥରରେ ନିର୍ମିତ ଏକ ବୃହତ୍ ପ୍ରାକାର (୧୮୧ ଫୁ. X ୧୦୮ ଫୁ.) ମଧ୍ୟରେ ପ୍ରାୟ ୧୧୭୦ ଖ୍ରୀଷ୍ଟାବ୍ଦରେ ନିର୍ମିତ ଶୋଭନେଶ୍ୱର ମନ୍ଦିର ଜରାଜୀର୍ଣ୍ଣ ଅବସ୍ଥାରେ ଦଣ୍ଡାୟମାନ ଥିଲେ ମଧ୍ୟ ବେଢ଼ା ମଧ୍ୟରେ ଥିବା ମାଧବ

(୧୧) ପ୍ରାଚୀ ମାହାତ୍ମ୍ୟ ପଞ୍ଚମ ଅଧ୍ୟାୟ

ମନ୍ଦିର ଅଧୁନା ଲୁପ୍ତ । କିନ୍ତୁ ବେଢ଼ାର ଏକ ଉନ୍ମୁକ୍ତ ସ୍ଥାନରେ କଳା ମୁଗୁନି ପଥରରେ ଖୋଦିତ ଅତି ଚମତ୍କାର ଛଅଟି ଦଣ୍ଡାୟମାନ ମାଧବ ବିଗ୍ରହ ଅବହେଳିତ ଅବସ୍ଥାରେ ପରିଦୃଷ୍ଟ ହୁଏ । ବିଗ୍ରହ ଗୁଡ଼ିକ ପରିମାପ, ଯଥାକ୍ରମେ ପ୍ରଥମ (୩ ଫୁ: × ୧-୬ ଇ:) ଦ୍ୱିତୀୟ (୩-୩ ଇ: × ୧-୬ ଇ:), ତୃତୀୟ (୪-୨ ଇ: × ୨-୨ ଇ:) ଚତୁର୍ଥ (୨-୪ଇ: × ୧-୩ ଇ:), ପଞ୍ଚମ (୩-୧ ଇ: × ୧-୬ ଇ:), ଷଷ୍ଠ (୩ ୧ ଇ: × ୧-୬ ଇ:) । ପ୍ରତ୍ୟେକ ମୂର୍ତ୍ତିର ଉପରିଭାଗରେ କୀର୍ତ୍ତିମୁଖ ଶୋଭିତ ତ୍ରିଭଙ୍ଗ ତୋରଣ ବଡ଼ମୂର୍ତ୍ତିର ତୋରଣର ଉଭୟ ପାର୍ଶ୍ୱରେ ଶିବ ଓ ବ୍ରହ୍ମା ପରିବର୍ତ୍ତରେ ବୀଣାବାଦନୀ ସରସ୍ୱତୀ ମୂର୍ତ୍ତି ଦେଖାଯାଏ । ପ୍ରତ୍ୟେକ ମୂର୍ତ୍ତିର ଦୁଇପାଖରେ ଦୁଇଟି ଚାମରଧାରିଣୀ ଓ ତାହାର ନିମ୍ନଦେଶରେ ଦୁଇଟି ଦେବୀମୂର୍ତ୍ତି ରହିଛନ୍ତି । ଦେବୀମୂର୍ତ୍ତି ହସ୍ତ କାଷ୍ଠ ବିମାନାକୃତି ତୋରଣ ତଳେ ବିଶ୍ୱପଦ୍ମାସନୋପରି ଦଣ୍ଡାୟମାନା । ଜଗମୋହନ ମଧ୍ୟରେ ଉତ୍ତର କାନ୍ଥ ନିକଟରେ ଗୋଟିଏ ମାଧବାନନ୍ଦ ବିଗ୍ରହ (୪-୧୧ଇ: × ୨ଫୁ:) ଓ ଦକ୍ଷିଣକାନ୍ଥ ନିକଟରେ ଅନ୍ୟ ଏକ ମାଧବ ମୂର୍ତ୍ତି (୨-୯ ଇ: × ୧-୨ ଇ:) ବିରାଜମାନ । ବଡ଼ ମୂର୍ତ୍ତି ଗଠନରେ ବିଶେଷତ୍ୱ ଏହାର ପ୍ରାଚୀନତ୍ୱ ଜ୍ଞାପକ । ବିଗ୍ରହୋପରି ତ୍ରିଭଙ୍ଗ ତୋରଣ ପରିବର୍ତ୍ତରେ ପ୍ରଭାମଣ୍ଡଳ ରହିଛି । ଦୁଇପାଖରେ ଚାମରଧାରିଣୀ, ବ୍ରହ୍ମା, ଶିବ ନାହାନ୍ତି କିମ୍ବା ନୃତ୍ୟର ଦୃଶ୍ୟ ପ୍ରକଟିତ ହୋଇନାହିଁ । କେବଳ ଉପର ଦୁଇକୋଣରେ ଦୁଇଟି ବିଦ୍ୟାଧରୀ ଅଛନ୍ତି । ପ୍ରତ୍ୟେକ ବିଗ୍ରହର ଊର୍ଦ୍ଧ୍ୱ ଦକ୍ଷିଣ ହସ୍ତରେ ନି. ଅ: ଦ: ହସ୍ତରେ ପଦ୍ମ, ଉ: ବା: ହସ୍ତରେ ଶଙ୍ଖ ଓ ନି: ବା: ହସ୍ତରେ ଗଦା ପରିଶୋଭିତ । ଏହି ବେଢା ମଧ୍ୟରେ ଏକ ସାହାଡ଼ା ଗଛ ମୂଳରେ ମୁଗୁନି ପଥରରେ ତିଆରି ଏକ ସୁନ୍ଦର ବରାହମୂର୍ତ୍ତି (୧-୮ ଇ: × ୧୦ଇ:) ବିଦ୍ୟମାନ । ମୋଗଲ ରାଜତ୍ୱ କାଳରେ ମୁସଲମାନ ସେନାର ପ୍ରବଳ ଆକ୍ରମଣ ସମୟରେ ଏହି ଆଠଟି ମାଧବ ବିଗ୍ରହଙ୍କୁ ରକ୍ଷା କରିବା ପାଇଁ ନିକଟବର୍ତ୍ତୀ ମାଧବ ମନ୍ଦିର ଗୁଡ଼ିକରୁ ଏହି ବେଢା ମଧ୍ୟକୁ ଅଣାଯାଇଥିଲା । ମୁସଲମାନ ସେନା ଭୋଭନେଶ୍ୱର ମନ୍ଦିର ମଧ୍ୟ ଆକ୍ରମଣ କରିଥିବା, ଏହାର ପ୍ରବେଶ ଦ୍ୱାରରେ ଅବସ୍ଥିତ ମୁସଲମାନ ବସତି ଦ୍ୱାରା ପ୍ରମାଣିତ ହୁଏ । କିନ୍ତୁ ସେମାନେ ପରାସ୍ତ ହେବାରୁ ଭୋଭନେଶ୍ୱର ମନ୍ଦିର ଆସନ୍ନ ଧ୍ୱଂସମୁଖରୁ ରକ୍ଷା ପାଇଗଲା ।

## ସୁଆଗପୁରର ମାଧବ ବିଗ୍ରହ

ପ୍ରାଚୀକୂଳସ୍ଥ ପଞ୍ଚମ ପ୍ରସିଦ୍ଧ ଶମ୍ଭୁ **ରାମେଶ୍ୱର** ସୁଆଗପୁର ଶାସନରେ ବିଦ୍ୟମାନ । ଏହାର ପୂର୍ବ ମନ୍ଦିର ଭାଙ୍ଗିଯିବାରୁ ନୂତନ ମନ୍ଦିର ତୋଳାଯାଇଛି । ମନ୍ଦିରର ପଶ୍ଚିମକୁ ଚକ୍ର, ଶଙ୍ଖ, ଗଦା, ପଦ୍ମ-ପାଣି ମାଧବ ମୂର୍ତ୍ତି ଜର୍ଜର ପୂର୍ବ ନିବାସ ଧ୍ୱଂସ ପାଇଥିବାରୁ ପରିତ୍ୟକ୍ତ ଅବସ୍ଥାରେ ଦଣ୍ଡାୟମାନ । ଏହା ନିକଟବର୍ତ୍ତୀ ରାମକୁଣ୍ଡ ପାଖରେ ଏକ ସୁନ୍ଦର ମାଧବାନନ୍ଦ ବିଗ୍ରହ (୩-୮ ଇ: × ୧-୧୦ ଇ:) ଦଣ୍ଡାୟମାନ ।

ମାଧବ ବିଗ୍ରହଙ୍କ ଉପରେ ତ୍ରିଭଙ୍ଗ ତୋରଣ । ତୋରଣର ଉପରେ ଦକ୍ଷିଣକୁ ଲଳିତାସନରେ ଶିବ ଓ ଅପର ପାର୍ଶ୍ୱରେ ବ୍ରହ୍ମା ଉପବିଷ୍ଟ । ମୂର୍ତ୍ତିର ଦୁଇପାଖରେ ତୋରଣ ତଳକୁ ଦୁଇଟି ଚାମରଧାରିଣୀ । ଚାମରଧାରିଣୀ ନିମ୍ନଭାଗରେ ଦକ୍ଷିଣପାର୍ଶ୍ୱରେ ସରସ୍ୱତୀ ଓ ବାମପାର୍ଶ୍ୱରେ ଲକ୍ଷ୍ମୀ ବିରାଜମାନ । ମୂର୍ତ୍ତିର ଦକ୍ଷିଣ ପାଦ ନିକଟରେ ବାହନ ଗରୁଡ଼ ଉପବିଷ୍ଟ । ମାଧବ ମନ୍ଦିରଟି ବର୍ତ୍ତମାନ ଲୁପ୍ତ ।

## ପ୍ରସିଦ୍ଧ ମାଧବାନନ୍ଦ ମନ୍ଦିର—

ପ୍ରାଚୀକୂଳବର୍ତ୍ତୀ ମାଧବ ଗ୍ରାମର ମାଧବାନନ୍ଦ ମନ୍ଦିର ସମଗ୍ର ଉତ୍କଳ ପ୍ରସିଦ୍ଧ । ଫୁଲନଖରା ଠାରୁ ବାହାରି ନିମାପଡ଼ା ଅଞ୍ଚଳର ସଦର ସହିତ ସଂଯୋଜକଠାରେ ମିଶି-ଥିବା ରାସ୍ତା ନିଆଳୀ ଓ ମାଧବ ଶାସନ ନିକଟରେ ଯାଇଥିବାରୁ ଏହା ନିଆଳୀ-ମାଧବ ସଡ଼କ ନାମରେ ପ୍ରସିଦ୍ଧ । ଏହି ମନ୍ଦିରଟି ଅନଙ୍ଗଭୀମ ଦେବଙ୍କ ଦ୍ୱାରା ନିର୍ମିତ ହୋଇଥିବା କିମ୍ବଦନ୍ତୀ ପ୍ରଚଳିତ ଥିଲେ ମଧ୍ୟ ପ୍ରକୃତରେ ଅନଙ୍ଗଭୀମ (୧୧୯୦—୧୧୯୮ ଖ୍ରୀଷ୍ଟାବ୍ଦ)ଙ୍କ ବ୍ରାହ୍ମଣ ସାମନ୍ତରାଜା ବୈଦ୍ୟନାଥଙ୍କ ଦ୍ୱାରା ନିଆଳୀର ସୋଭନେଶ୍ୱର ମନ୍ଦିର ଓ ମାଧବାନନ୍ଦ ମନ୍ଦିର ନିର୍ମିତ ହୋଇଥିଲା । ସୋଭନେଶ୍ୱର ମନ୍ଦିର ପରି ଏହି ମନ୍ଦିର ଉଚ୍ଚ ପ୍ରାକାର ବେଷ୍ଟିତ ଓ ଅତି କମନୀୟ ଭାସ୍କର୍ଯ୍ୟ ମଣ୍ଡିତ । କବି ଶ୍ରୀ ଜୟ-ଦେବଙ୍କ ଜୀବନ କାଳ ମଧ୍ୟରେ ନିର୍ମିତ ଏହି ଉତ୍କଳ ବିଖ୍ୟାତ ମନ୍ଦିର ପ୍ରାଚୀର ଦ୍ୱାଦଶ ମାଧବ ଅନ୍ତର୍ଭୁକ୍ତ ନ ହେଲେ ମଧ୍ୟ ମାଧବ ପୂଜାର ଲୋକପ୍ରିୟତା ଲୋକପ୍ରିୟତା ପ୍ରତିପାଦନ ପାଇଁ ଏଠାରେ ବର୍ଣ୍ଣିତ ହେଲା ।

## ପିତାପଡ଼ାର ଧ୍ୱସ୍ତ ମାଧବ ମନ୍ଦିର—

ତୁଳସୀପୁର ଠାରୁ ଗୋଟିଏ କିଲୋମିଟର ଦୂରରେ ପ୍ରାଚୀର ଉତ୍ତର ତୀରରେ ପିତାପଡ଼ା ଗ୍ରାମରେ ସ୍ୱୟଂ ଶମ୍ଭୁ ରୂପେ ବିଖ୍ୟାତ ଅଙ୍ଗେଶ୍ୱରଙ୍କ ଇଷ୍ଟକ ନିର୍ମିତ ପୂର୍ବା-ଭିମୁଖ ପ୍ରାଚୀନ ମନ୍ଦିରର ଭଗ୍ନାବଶେଷ ବିଦ୍ୟମାନ । ଏହି ମନ୍ଦିରଟି ଚତୁରସ୍ର (୧୫ଫୁ: × ୧୫ ଫୁ:) ପଞ୍ଚରଥ ବିଶିଷ୍ଟ ବିମାନ ଓ ପୀଢ଼ଶ୍ରେଣୀଯୁକ୍ତ ଜଗମୋହନକୁ ନେଇ ଗଠିତ ହୋଇଥିଲା । ଏହାର ଅଦୂରରେ ଏକ ଇଷ୍ଟକ ସ୍ତୂପ ଉପରେ ମୁଗୁନି ପଥରରେ ଖୋଦିତ ଦୁଇଟି ସୁନ୍ଦର ମାଧବ ବିଗ୍ରହ (୩ଫୁ: × ୧-୬ ଇ:) ଅବହେଳିତ ଅବସ୍ଥାରେ ନିଜ ଧ୍ୱସ୍ତ ପ୍ରାଚୀନ ନିକେତନର ମୂକସାକ୍ଷୀ ରୂପେ ଦଣ୍ଡାୟମାନ ରହିଛନ୍ତି ।

## କୃଷ୍ଣପ୍ରସାଦର ବିଲୁପ୍ତ ମାଧବ ମନ୍ଦିର —

ଅଙ୍ଗେଶ୍ୱର ମନ୍ଦିର ଠାରୁ ପ୍ରାୟ ୧ମାଇଲ ଦୂରବର୍ତ୍ତୀ କୃଷ୍ଣପ୍ରସାଦ ନାମକ ଗ୍ରାମରେ ଏକ ପ୍ରାଚୀନ ଇଷ୍ଟକ ପ୍ରାକାର (୮୪ ଫୁ: × ୫୨ ଫୁ:) ବେଷ୍ଟିତ କ୍ଷେତ୍ର ଉପରେ ଇଟାରେ ତିଆରି ଏକ ଶିବମନ୍ଦିରର ଧ୍ୱଂସାବଶେଷ ବିଦ୍ୟମାନ । ଏହା

ନିକଟରେ ଥିବା ମାଧବ ମନ୍ଦିର ବର୍ତ୍ତମାନ ବିଲୁପ୍ତ ହୋଇଥିବାରୁ ଶିବମନ୍ଦିରର ମୋହନ ମଧ୍ୟରେ ମାଧବ ବିଗ୍ରହ ଓ ଏକ ବରାହ ଅବତାର ପ୍ରତିମା ଅଯତ୍ନ ଅବସ୍ଥାରେ ରକ୍ଷିତ ହୋଇଛି ।

## ଆଶ୍ରୟହୀନ ପ୍ରାଚୀ ମାଧବ —

ପ୍ରାଚୀକୂଳସ୍ଥ ସପ୍ତମ ଶମ୍ଭୁ ରୂପେ ଖ୍ୟାତ ଅମରେଶ୍ୱର ମନ୍ଦିର ନିମାପଡ଼ା ଅସ୍ତରଙ୍ଗ ସଡ଼କ ନିକଟରେ ପ୍ରାଚୀର ଦକ୍ଷିଣ ତୀରରେ ଅବସ୍ଥିତ । ପ୍ରାଚୀନ ମନ୍ଦିରର ବିମାନ ପୁନର୍ନିର୍ମିତ ହୋଇଛି । ଇଟାରେ ତିଆରି ପ୍ରାଚୀନ ଶୈଳୀରେ ଗଠିତ ଜଗମୋହନର ଅଧିକାଂଶ ଅକ୍ଷୁର୍ଣ୍ଣ ଅଛି । ଏହି ମନ୍ଦିର ନିକଟରେ ନିର୍ମିତ ମାଧବ ମନ୍ଦିର ବର୍ତ୍ତମାନ ଲୁପ୍ତ । **ପ୍ରାଚୀ ମାଧବ** ନାମରେ ପରିଚିତ ଉକ୍ତ ମାଧବ ବିଗ୍ରହ ଗୃହଶୂନ୍ୟ ହୋଇ ନିଜର ଆଜନ୍ମସଖା ଶମ୍ଭୁଙ୍କ ଜଗମୋହନରେ ଅବହେଳିତ ଭାବରେ ଆଶ୍ରୟ ଗ୍ରହଣ କରିଛନ୍ତି ।

## ଚୌରାଶୀ ଗ୍ରାମର ଲକ୍ଷ୍ମୀ-ନାରାୟଣ ମନ୍ଦିର —

ଏହି ଗ୍ରାମରେ ସୋମବଂଶୀ ରାଜତ୍ୱ କାଳରେ କନ୍ଦାପଥରରେ ନିର୍ମିତ ପୂର୍ବାଭିମୁଖ ଲକ୍ଷ୍ମୀ-ନୃସିଂହ ମନ୍ଦିର ବିଦ୍ୟମାନ । ଲକ୍ଷ୍ମୀ ନୃସିଂହ ବିଗ୍ରହ ମୁଗୁନି ପଥରରେ ଖୋଦିତ ହୋଇଛନ୍ତି । ପାର୍ଶ୍ୱଦେବତା ରୂପେ ଉତ୍ତରରେ ତ୍ରିବିକ୍ରମ, ପଶ୍ଚିମରେ ନୃସିଂହ ଓ ଦକ୍ଷିଣରେ ବରାହ ଅବତାର ବିଗ୍ରହ ବିଦ୍ୟମାନ । ମନ୍ଦିର ମଧ୍ୟରେ ସ୍ଥାପିତ ୯ମ-୧୦ମ ଶତାବ୍ଦୀର ଅବଲୋକିତେଶ୍ୱର ବିଗ୍ରହ ଏହି ସ୍ଥାନର ପ୍ରାଚୀନତ୍ୱର ପରିଚାୟକ । ଏହି ଗ୍ରାମର ନିକଟବର୍ତ୍ତୀ ଚହଟା ଗ୍ରାମରେ ଏକ ପ୍ରାଚୀନ ଭଗ୍ନ ବିଷ୍ଣୁ (ମାଧବ ବିଗ୍ରହ) ଦେଖାଯାଏ । ଏହାର ଅଦୂରରେ ଅବସ୍ଥିତ ଚୌରାଶୀ ଗ୍ରାମରେ ପ୍ରାଚୀନ ଲକ୍ଷ୍ମୀ-ନାରାୟଣ ମନ୍ଦିରର ନିମ୍ନାଂଶ ମାତ୍ର ଭଗ୍ନାବଶେଷ ରୂପେ ରହିଛି । ମନ୍ଦିର ମଧ୍ୟରେ ମୁଗୁନି ପଥରରେ ଖୋଦିତ ଅପୂର୍ବ କାରୁକାର୍ଯ୍ୟ ମଣ୍ଡିତ ଅତ୍ୟନ୍ତ ଚିତ୍ତାକର୍ଷକ ଲକ୍ଷ୍ମୀ ଓ ନାରାୟଣ ବିଗ୍ରହ ଦ୍ୱୟ ବିଶ୍ୱପଦ୍ମାସନୋପରି ପରସ୍ପର ଆଲିଙ୍ଗନ ଭଙ୍ଗୀରେ ଉପବିଷ୍ଟ । ଏହି ମନ୍ଦିରଟି ସୋମବଂଶୀ ଯୁଗର ଏକ ପ୍ରଖ୍ୟାତ କୀର୍ତ୍ତି । ସମଗ୍ର ଉତ୍କଳରେ ଅଦ୍ୱିତୀୟ ଏହି କମନୀୟ ଲକ୍ଷ୍ମୀ-ନାରାୟଣ ବିଗ୍ରହଦ୍ୱୟ ଦର୍ଶନରେ ଭାବବିହ୍ୱଳ ହୋଇ ଭକ୍ତକବି ଶ୍ରୀ ଜୟଦେବ ଗାଇ ପକାଇଥିଲେ—"ଶ୍ରିତକମଳାକୁଚମଣ୍ଡଳ ଧୃତକୁଣ୍ଡଳ ଜୟ ଜୟ ଦେବ ହରେ ।"

## ନଭରଣ ଓ ବୋଲଗାର ଲୁପ୍ତ ମାଧବ ମନ୍ଦିର —

**ଗ୍ରାମେଶ୍ୱର** ନାମରେ ପ୍ରସିଦ୍ଧ ପ୍ରାଚୀକୂଳର ଅଷ୍ଟମ ଶମ୍ଭୁ ଜଗତସିଂହପୁର ଥାନାର ନଭରଣ ଗ୍ରାମରେ ପ୍ରାଚୀନଦୀର ଉତ୍ତର ତୀରରେ ଅବସ୍ଥିତ । ଏଠାରେ

ପ୍ରାଚୀନ କାଳରେ ଶମ୍ଭୁ, ମାଧବ, ବାରଭୁଜା ଦୁର୍ଗା ଓ ଅନ୍ୟ ଏକ ଦେବୀ ମୂର୍ତ୍ତିଙ୍କ ପାଇଁ ଇଷ୍ଟକ ନିର୍ମିତ ଗୃଟେଏ ମନ୍ଦିର ଥିଲା। ସେଗୁଡ଼ିକ କାଳକ୍ରମେ ଧ୍ୱଂସ ପାଇବାରୁ ସ୍ଥାନୀୟ ଲୋକେ ଗୃଟିଏ ନୂତନ ମନ୍ଦିର ନିର୍ମାଣ କରିଛନ୍ତି। କଳା ମୁଗୁନି ପଥରରେ ଖୋଦିତ ମାଧବ ବିଗ୍ରହ ଅତ୍ୟନ୍ତ ସୁନ୍ଦର, ଚିକ୍‌କଣ ଓ ସୂକ୍ଷ୍ମ କାରୁକାର୍ଯ୍ୟ ପୂର୍ଣ୍ଣ।

ନନ୍ଦରଣ ଗ୍ରାମଠାରୁ ଅଳ୍ପ ଦୂରବର୍ତ୍ତୀ ବୋଲବା ଗ୍ରାମର ଅଧମାଇଲ ଉତ୍ତରରେ ପୁରୁଣା ଇଟା ଓ କନ୍ଦା ପଥରରେ ନିର୍ମିତ ଏକ ମନ୍ଦିରର ଭଗ୍ନାବଶେଷ ମଧ୍ୟରେ ଅତି ସୁନ୍ଦର କାରୁକାର୍ଯ୍ୟପୂର୍ଣ୍ଣ ଏକ ମାଧବାନନ୍ଦ ବିଗ୍ରହ ଅବହେଳିତ ଅବସ୍ଥାରେ ରହିଅଛି। (୧୨)

## 'ସୋମେଶ୍ୱର'ର ମାଧବ ସ୍ଥାନାନ୍ତରିତ—

ନିମାପଡ଼ା ଠାରୁ ଅସ୍ତରଙ୍ଗକୁ ଯାଇଥିବା ସଡ଼କ ନିକଟରେ କାକଟପୁର ଠାରୁ ପ୍ରାୟ ଅଧମାଇଲ ପୂର୍ବରେ ସୋମେଶ୍ୱର ନାମରେ ବିଖ୍ୟାତ ଜନୈକ ଶମ୍ଭୁଙ୍କ ପ୍ରାଚୀନ ଇଟା ମନ୍ଦିରର ଧ୍ୱଂସାବଶେଷ ଦେଖାଯାଏ। ଏବେ ସୋମେଶ୍ୱରଙ୍କ ପାଇଁ ଅଳ୍ପଦିନ ପୂର୍ବେ ଏକ ମନ୍ଦିର ନିର୍ମିତ ହୋଇଛି। କିନ୍ତୁ ମାଧବ ବିଗ୍ରହ ଏଠାରୁ ସ୍ଥାନାନ୍ତରିତ ହୋଇଛନ୍ତି। କେବଳ ପ୍ରାଚୀନ ମନ୍ଦିର ଗାତ୍ରରେ ଖଚିତ ହୋଇଥିବା ଚତୁର୍ହସ୍ତ ବିଶ୍ୱକର୍ମା (୨ ଫୁ: × ୧ ଫୁ:) ଚତୁର୍ହସ୍ତ ବଳରାମ, ବରାହ (୧.୧୧ ଇ: × ୧୧ ଇ:) ନୃସିଂହ (୧.୮ ଇ: × ୧୧ ଇ:) ଅନନ୍ତଶାୟୀ ବିଷ୍ଣୁ ବିଗ୍ରହଗୁଡ଼ିକ ନୂତନ ମନ୍ଦିରର ପାଚେରି କାନ୍ଥରେ ଇତସ୍ତତଃ ବିକ୍ଷିପ୍ତ ଭାବରେ ଖଞ୍ଜା ଯାଇଛନ୍ତି। ମୂର୍ତ୍ତିଗୁଡ଼ିକ ମୁଗୁନି ପଥରରେ ଖୋଦିତ ଓ ସୁନ୍ଦର କାରୁକାର୍ଯ୍ୟ ପୂର୍ଣ୍ଣ। ଏଠାରେ ବର୍ତ୍ତମାନ ଗୃଟିଏ ଅବତାରଙ୍କ ବିଗ୍ରହ ଥିବାରୁ ମୂଳ ମନ୍ଦିର ଗାତ୍ରରେ ଦଶାବତାର ବିଗ୍ରହ ସ୍ଥାପିତ ହୋଇଥିବା ସୁନିଶ୍ଚିତ।

ଏତଦ୍‌ବ୍ୟତୀତ ଏଠାରେ ଦୁଇଟି ଦ୍ୱାରପାଳ (୧-୮ ଇ: × ୧୨ ଇ:), ଆସ୍ତିକ ଜରତ୍କାରୁ (୧-୧୦ ଇ: × ୧୦ ଇ:), ଚତୁର୍ହସ୍ତ ଦଣ୍ଡାୟମାନ ଭୈରବ (୪-୨ ଇ: × ୧-୧୦ ଇ:), ଚାମୁଣ୍ଡା (୧.୮ ଇ: × ୧୧ ଇ:), ଏକ ସନ୍ନ୍ୟାସୀ ମୂର୍ତ୍ତି, ଉମା ଓ ଦ୍ୱିଭୁଜ ମହେଶ୍ୱର (୨-୭ ଇ: × ୧-୫ ଇ:), ଦ୍ୱିହସ୍ତ କାର୍ତ୍ତିକେୟ (୧-୧ ଇ: × ୬ ଇ:), ଉମା ଓ ଚତୁର୍ହସ୍ତ ମହେଶ୍ୱର, ଚତୁର୍ହସ୍ତ ଭୈରବ, ଯମ, ନୈଋତ, ବରୁଣ, ନାଗରାଜ, ନାଗରାଣୀ, ଈଶାନ, ମିଥୁନ ମୂର୍ତ୍ତି, ଚତୁର୍ହସ୍ତା ପାର୍ବତୀ (୨-୭ ଇ: × ୧-୧୦ ଇ:), ଷଡ଼ଭୁଜ ନୃତ୍ୟରତ ଗଣେଶ, ଦ୍ୱିହସ୍ତ ଐରାବତାସୀନ

(୧୨) 'ପ୍ରାଚୀ ନଦୀର ଐତିହାସିକ ବିଭବ'—ଡାକ୍ତର ଶ୍ରୀ ରାଧାଚରଣ ପଣ୍ଡା ପୃ ୯୧।

ଇନ୍ଦ୍ର ମୂର୍ତ୍ତି, କାର୍ତ୍ତିକେୟ (୩-୨ ଇ: × ୧-୧୦ ଇ:) ଚତୁର୍ହସ୍ତା ନୃତ୍ୟରତା ଚାମୁଣ୍ଡା, ଯମ, କୁବେର, ଗଣେଶ (୩-୨ ଇ: × ୧-୧୦ ଇ:) ମୋହନ ମଧ୍ୟରେ ଭୈରବ, ଯମ, ଦ୍ୱିହସ୍ତ ସପ୍ତାଶ୍ୱଯୁକ୍ତ ରଥାଶୋଭିତ ସୂର୍ଯ୍ୟ, ଶ୍ରେଷ୍ଠ ମନ୍ଦିରରେ ଅଷ୍ଟଭୂଜା ଚାମୁଣ୍ଡା ପ୍ରଭୃତିଙ୍କ ବିଗ୍ରହ ପରିଦୃଷ୍ଟ ହୁଏ ।

ଏଠାର ଧ୍ୱଂସସ୍ତୂପ ମଧ୍ୟରୁ ଶୈବ, ଶାକ୍ତ ଓ ବୈଷ୍ଣବ ମତାନୁଯାୟୀ ଖୋଦିତ ଏତେଗୁଡ଼ିଏ ବିଗ୍ରହର ପୁନରୁଦ୍ଧାର ଦ୍ୱାରା ପ୍ରଥମାବସ୍ଥାରେ ଏଠାରେ ଶମ୍ଭୁ, ମାଧବ ଓ କୌଣସି ଦେବୀଙ୍କ ପାଇଁ ଅନ୍ୟୂନ ତିନୋଟି ସ୍ୱତନ୍ତ୍ର ମନ୍ଦିରର ଅବସ୍ଥିତି ନିଃସନ୍ଦେହ ଭାବରେ ସ୍ୱୀକାର୍ଯ୍ୟ । ଏହି ପ୍ରାଚୀନ ତୀର୍ଥର ବିଗ୍ରହ ବିଭବ ଓ ପ୍ରତିମା ସମୂହର ଉନ୍ନତ ଭାସ୍କର୍ଯ୍ୟ ଦେଖିଲେ ଏହା ସୋମବଂଶୀୟ କୌଣସି ପ୍ରସିଦ୍ଧ ନରପତିଙ୍କ ଦ୍ୱାରା ନିର୍ମିତ ହୋଇଥିବାର ସ୍ଥିର କରାଯାଇପାରେ ।

## ମଙ୍ଗଳାଙ୍କ ମନ୍ଦିରରେ ମାଧବ ବିଗ୍ରହ—

ଗତ ଶତାବ୍ଦୀର ମଧ୍ୟଭାଗରେ ନିର୍ମିତ ହୋଇଥିବା କାକଟପୁରସ୍ଥ ବର୍ତ୍ତମାନ ମଙ୍ଗଳା ମନ୍ଦିରର ପଶ୍ଚିମ ଓ ଉତ୍ତର ଦିଗର ପାର୍ଶ୍ୱ ଦେବତା ରୂପେ ମୁଗୁନି ପଥରର ଦୁଇଟି ସୁନ୍ଦର ମାଧବାନନ୍ଦ ବିଗ୍ରହ (୩-୬ ଇ: × ୧-୬ ଇ: ଓ ୫-୪ ଇ: × ୨-୩ ଇ:) ଖଞ୍ଜାଯାଇଛି । ଦେବୀଙ୍କ ମନ୍ଦିରରେ ପାର୍ଶ୍ୱଦେବତାରୂପେ ମାଧବ ବିଗ୍ରହଙ୍କ ପୂଜା ଅନ୍ୟ କୌଣସି ମନ୍ଦିରରେ ଦେଖାଯାଏନାହିଁ ବା ପ୍ରାଚୀନ ଶାସ୍ତ୍ର ପୁରାଣରେ ଏପରି ବର୍ଣ୍ଣନା ମିଳେନାହିଁ । ଏହି ମାଧବାନନ୍ଦ ବିଗ୍ରହ ଦୁଇଟି ଖୁବ ସମ୍ଭବତଃ ସୋମେଶ୍ୱର ନିକଟବର୍ତ୍ତୀ ଧ୍ୱଂସପ୍ରାପ୍ତ ମାଧବ ମନ୍ଦିରରୁ ଏଠାକୁ ଆନୀତ ହୋଇଥିଲା । ଏହି ଦୁଇଟି ପ୍ରତିମା ବ୍ୟତୀତ ଏଠାରେ ଏକ ବରାହ (୨ ଫୁ: × ୧ ଫୁ:), ଦୁଇଟି ତ୍ରିବିକ୍ରମ, ଦୁଇଟି ନୃସିଂହ ମୂର୍ତ୍ତି ମଧ୍ୟ ଅନ୍ୟ ସ୍ଥାନରୁ ଆନୀତ ହୋଇ ମନ୍ଦିରର ନାନାସ୍ଥାନରେ ଖଚିତ ହୋଇଥିବାର ଦେଖାଯାଏ ।

## ନୀଳକଣ୍ଠପୁରରେ ଭଗ୍ନ ମାଧବ ମନ୍ଦିର—

କାକଟପୁର ଠାରୁ ଅଳ୍ପ ଦୂରବର୍ତ୍ତୀ ନୀଳକଣ୍ଠପୁରରେ ଏକ ଭଗ୍ନ ଇଟା ମନ୍ଦିର ମଧ୍ୟରେ ଏକ ବିଶାଳ ମାଧବାନନ୍ଦ ବିଗ୍ରହ ପୂଜିତ ହେଉଥିବାର ଦେଖାଯାଏ । ମାନବାକୃତି (୫-୯ ଇ: × ୨-୧୦ ଇ:) ଏହି ବିଗ୍ରହଟି ଅନୁପମ ଭାସ୍କର୍ଯ୍ୟ ଓ ପ୍ରାଣପ୍ରାଚୁର୍ଯ୍ୟ ଯୋଗୁଁ ପ୍ରାଚୀନ ଉତ୍କଳୀୟ ଖୋଦନଶିଳ୍ପର ଏକ ଜ୍ୱଳନ୍ତ ନିଦର୍ଶନ ସ୍ୱରୂପ ଅଦ୍ୟାପି ବିଦ୍ୟମାନ । ପ୍ରାଚୀ ନଦୀର କୂଳରେ ଅବସ୍ଥିତ ବିଶ୍ୱାମିତ୍ର ଆଶ୍ରମ ନାମରେ ପ୍ରଖ୍ୟାତ ଏକ ଉଚ୍ଚ କୁଦରେ ମନ୍ଦିରର ପାର୍ଶ୍ୱଦେବତା ରୂପେ ପୂଜିତ ଚତୁର୍ହସ୍ତ ତ୍ରିବିକ୍ରମ

(୨-୮ ଇଞ୍ଚ × ୧-୪ ଇଞ୍ଚ) ଚତୁର୍ଭୁଜ ବିଗ୍ରହ ଓ (୨-୮ ଇଞ୍ଚ × ୧-୪ ଇଞ୍ଚ) ତ୍ରିବିକ୍ରମ ମୂର୍ତ୍ତିର ଅବସ୍ଥିତି ଯୋଗୁଁ ଏଠାରେ ପ୍ରାଚୀନ କାଳରେ ଏକ ମାଧବ ମନ୍ଦିର ଥିବାର ସ୍ଥିର କରାଯାଇପାରେ ।

## ପୂର୍ବ ଆସ୍ଥାନରେ ମୁଦ୍‌ଗଲ ଗ୍ରାମରେ ମାଧବ ବିଗ୍ରହ —

ପ୍ରାଚୀକୂଳର ଦ୍ୱିତୀୟ ଶମ୍ଭୁ ରୂପେ ପ୍ରଖ୍ୟାତ **ସିଦ୍ଧେଶ୍ୱରଙ୍କ** ମନ୍ଦିର କାକଟପୁର ଠାରୁ ୭ ମାଇଲ ଅଗ୍ନିକୋଣରେ ମୁଦ୍‌ଗଲ ଗ୍ରାମରେ ଅବସ୍ଥିତ । **ମୁଦ୍‌ଗଲ** ଋଷି ନାମରେ ଆଖ୍ୟାତ ବିଶାଳ ବିଗ୍ରହ (୪-୭ ଇଞ୍ଚ × ୪ ଫୁଟ)ଟି ପ୍ରକୃତରେ ଏକ ଶଙ୍ଖପାଣି ଅବଲୋକିତେଶ୍ୱର ପ୍ରତିମା । ବ୍ରାହ୍ମଣ୍ୟ ଧର୍ମର ପୁନରୁତ୍ଥାନ ଯୁଗରେ ପୂର୍ବତନ ବୌଦ୍ଧପୀଠର ଏହି ଆରାଧ୍ୟ ଦେବତାଙ୍କ ମୁଦ୍‌ଗଲ ନାମକରଣ କରାଯାଇଥିଲା ଏବଂ ତାଙ୍କର ଗୌରବ ଓ ମାହାତ୍ମ୍ୟ ଖର୍ବ କରିବା ପାଇଁ ଅତି ନିକଟରେ ସିଦ୍ଧେଶ୍ୱର ଓ ମାଧବାନନ୍ଦଙ୍କ ପାଇଁ ଦୁଇଟି ମନ୍ଦିର ନିର୍ମିତ ହୋଇଥିଲା । ବିଶାଳତା, (୪-୮ ଇଞ୍ଚ × ୨-୧୦ ଇଞ୍ଚ) ଚମତ୍କାରିତା ଓ କଳାନୈପୁଣ୍ୟ ଦୃଷ୍ଟିରୁ ନୀଳକଣ୍ଠପୁରର ମାଧବଙ୍କ ସହିତ ଏହି ବିଗ୍ରହର ବିଶେଷ ସାମଞ୍ଜସ୍ୟ ରହିଛି । ଏହା ନିକଟରେ ସ୍ୱତନ୍ତ୍ର ଭାବରେ ଏକ ଚିତ୍ତାକର୍ଷକ ଗରୁଡ଼ ବିଗ୍ରହ (୨-୨ ଇଞ୍ଚ × ୧-୭ ଇଞ୍ଚ) ସ୍ଥାପିତ ହୋଇଛି । ବୌଦ୍ଧ ଅବଲୋକିତେଶ୍ୱର, ସିଦ୍ଧେଶ୍ୱର ଓ ମାଧବଙ୍କ ଇଟା ନିର୍ମିତ ପ୍ରାଚୀନ ମନ୍ଦିର ଗୁଡ଼ିକ ବର୍ତ୍ତମାନ ଲୁପ୍ତ । ଦୁଃଖର ବିଷୟ **ପ୍ରାଚୀ କୂଳର ଅଧିକାଂଶ ମାଧବ ବିଗ୍ରହ ପରି ନୀଳକଣ୍ଠପୁର ଓ ମୁଦ୍‌ଗଲ ଗ୍ରାମର ମାଧବ ବିଗ୍ରହ ହିଁ ସ୍ଥାନଚ୍ୟୁତ ହୋଇନାହାନ୍ତି** ।

ଡକ୍ଟର ଶ୍ରୀ ରାଧାଚରଣ ପଣ୍ଡା କାକଟପୁର ଥାନାସ୍ଥ ରଘୁନାଥପୁର ଗ୍ରାମର ଏକ ଛପର ଘରେ ଏକ ମାଧବ ବିଗ୍ରହ ପୂଜିତ ହେଉଥିବାର ଉଲ୍ଲେଖ କରିଛନ୍ତି । (୧୩) ଏହି ଥାନାସ୍ଥ ଗମ୍ଭାରିପଦା ଜଙ୍ଗଲରେ ଥିବା ପୁନର୍ନିର୍ମିତ ରାମେଶ୍ୱର ନାମକ ମହାଦେବଙ୍କ ମନ୍ଦିରର ସମ୍ମୁଖସ୍ଥ ମଣ୍ଡପରେ ଏକ ମାନବାକୃତି ମାଧବାନନ୍ଦ ମୂର୍ତ୍ତି ରଖାଯାଇଛି । ଏହାକୁ ଅନ୍ୟ ସ୍ଥାନରୁ ଏଠାକୁ ଅଣାଯାଇଥିବାର ଜନଶ୍ରୁତି ଅଛି । (୧୪)

## ଲତାହରଣ ଗ୍ରାମରେ ସ୍ଥାନଭ୍ରଷ୍ଟ ମାଧବ ବିଗ୍ରହ—

କାକଟପୁର ଥାନାର କାକଟପୁର-ଅସ୍ତରଙ୍ଗ ସଡ଼କ ପାର୍ଶ୍ୱବର୍ତ୍ତୀ ଲତାହରଣ ଗ୍ରାମରେ **ଗ୍ରାମେଶ୍ୱର** ଶିବଙ୍କର ଏକ ଇଷ୍ଟକ ନିର୍ମିତ ପ୍ରାଚୀନ ମନ୍ଦିର ବିଦ୍ୟମାନ ।

---

(୧୩) ପ୍ରାଚୀନଦୀର ଐତିହାସିକ ବିଭବ, ପୃ—୯୯
(୧୪) ,, ,, ପୃ—୧୦୧

ଏହାର ବମାନ ପଞ୍ଚରଥ ବଶିଷ୍ଟ ଓ ଜଗମୋହନ ପୀଢଜାଖ୍ୟ । ଏହ ମନ୍ଦରର ପାର୍ଶ୍ୱଦେବତା ଦକ୍ଷିଣରେ ଅଷ୍ଟଭୂଜ ନୃତ୍ୟରତ ଗଣେଶ (୧-୧୦ ଇଞ୍ଚ × ୧-୫ ଇଞ୍ଚ) ପଶ୍ଚିମରେ ଚତୁର୍ହସ୍ତ କୁକ୍‌ଟଧାରୀ କାର୍ତ୍ତିକେୟ (୨-୨ଇଞ୍ଚ × ୧-୪ଇଞ୍ଚ) ଓ ଉତ୍ତରରେ ଚତୁର୍ଭୂଜା ପାର୍ବତୀ ବଗ୍ରହ (୨-୩୳ ଇଞ୍ଚ × ୧-୩ ଇଞ୍ଚ) ଅକ୍ଷୁର୍ଣ୍ଣ ଅଛନ୍ତି ।

ଏହାର ଜଗମୋହନରେ ଦୁଇଟି ମାଧବ ବଗ୍ରହ (୪-୪ ଇଞ୍ଚ × ୨ ଇଞ୍ଚ) ଅଧୂନା ଲୁପ୍ତ ନକଟବର୍ତ୍ତୀ କୌଣସି ମାଧବ ମନ୍ଦିରରୁ ଅଣାଯାଇ ରଖାଯାଇଛି । ଏଥି-ମଧ୍ୟରୁ ଗୋଟିକର ତ୍ରିଭଙ୍ଗ ତୋରଣ ଉପରେ ନୃତ୍ୟର ଦୃଶ୍ୟ ଓ ଅନ୍ୟଟିର ତ୍ରିଭଙ୍ଗ ତୋରଣୋପର ଉପାସନାର ଦୃଶ୍ୟ ପ୍ରକଟିତ ହୋଇଅଛି । ଲୁପ୍ତ ମନ୍ଦରର ପାର୍ଶ୍ୱ-ଦେବତା ରୂପେ ଖଚତ ହୋଇଥିବା ତ୍ରିବକ୍ରମ (୨-୧ ଇଞ୍ଚ × ୧-୳ ଇଞ୍ଚ) ଓ ବରାହ (୨-୧ ଇଞ୍ଚ × ୧-୳ଇଞ୍ଚ) ବଗ୍ରହ ସମେତ ଅନ୍ୟ ଏକ କ୍ଷୁଦ୍ର ବରାହ ପ୍ରତମା (୧-୪ଇ: × ୮ ଇଞ୍ଚ) ମଧ୍ୟ ଏ ଦୁଇ ମାଧବ ବଗ୍ରହ ନକଟରେ ରଖାଯାଇଛନ୍ତି । ଏହ ମନ୍ଦର ନକଟରେ ଧ୍ୟାନବୁଦ୍ଧ ମଣ୍ଡିତ ଏକ କ୍ଷୁଦ୍ର ଅବଲୋକତେଶ୍ୱର ଓ ତାରା ବଗ୍ରହ (୧-୬୳ ଇଞ୍ଚ × ୯ ଇଞ୍ଚ) ଓ ଏକ ଦଣ୍ଡାୟମାନ ପଦ୍ମପାଣି ଅବଲୋକତେଶ୍ୱର ପ୍ରତମା (୧୧ ଇଞ୍ଚ × ୭ ଇଞ୍ଚ)ର ଅବସ୍ଥିତ ଯୋଗୁଁ ଏହା ପ୍ରଥମେ ବୌଦ୍ଧବଜ୍ରଯାନ ମତର ଏକ ପୀଠ ଥିବାର ନର୍ଦ୍ଧାରଣ କରାଯାଇପାରେ । ଏଗୁଡ଼କ ବ୍ୟତୀତ ଏଠାରେ ଦଶଭୂଜା ମହଷାସୁର ମର୍ଦ୍ଦିନୀ (୧-୩ ଇଞ୍ଚ × ୯୳ ଇଞ୍ଚ) ସପ୍ତାଶ୍ୱଯୁକ୍ତ ଦ୍ୱିହସ୍ତ ସୂର୍ଯ୍ୟ (୧୧ ଇଞ୍ଚ × ୭୳ ଇଞ୍ଚ) ମନ୍ଦର ପ୍ରଭୃତର ଅଯତ୍ନ ସଂରକ୍ଷଣ ଦ୍ୱାରା ଏହ ମନ୍ଦର ନକଟରେ ଅତୀତରେ ଏକ ଦେବୀମନ୍ଦର ଅବସ୍ଥିତ ଥିବା ମନେହୁଏ ।

## ପ୍ରାଚୀକୂଳର ଅନ୍ୟାନ୍ୟ ଲୁପ୍ତ ମାଧବ ବଗ୍ରହ —

କାକଟପୁର ଥାନାସ୍ଥ ନାସିକେଶ୍ୱର ଗ୍ରାମରେ ଅବସ୍ଥିତ ଏକାଦଶ ଶମ୍ଭୁ ରୂପେ ପ୍ରଖ୍ୟାତ **ନୃତ୍ୟେଶ୍ୱର** ବା **ନାଟେଶ୍ୱର** ମନ୍ଦର ଗର୍ଭଗୃହ (୧୫ଫୁ: × ୧୩ଫୁ:) ଓ ଜଗମୋହନ (୨୧ ଫୁଟ × ୧୭ ଫୁଟ)କୁ ନେଇ ଗଠିତ । ଇଷ୍ଟାନର୍ମିତ ପ୍ରାଚୀନ ମନ୍ଦରରେ ଏପରି କମନୀୟ ଭାସ୍କର୍ଯ୍ୟ ଉତ୍କଳର ଅନ୍ୟତ୍ର କ୍ୱଚତ୍ ପରଦୃଷ୍ଟ ହୁଏ । କନ୍ତୁ ଏହା ନକଟବର୍ତ୍ତୀ ମାଧବ ମନ୍ଦର ବହୁକାଳରୁ ଲୁପ୍ତ ।

ପ୍ରାଚୀ ମୁହାଣରେ ଅବସ୍ଥିତ ଦ୍ୱାଦଶ ଶମ୍ଭୁ ରୂପେ ପ୍ରଖ୍ୟାତ **ମୁକ୍ତେଶ୍ୱର** ମନ୍ଦର ଓ ତନ୍ନିକଟବର୍ତ୍ତୀ ମାଧବ ମନ୍ଦର ଅଧୁନା ଲୁପ୍ତ । କାକଟପୁର ଠାରୁ ୩ ମାଇଲ ଦକ୍ଷିଣ-ପୂର୍ବକୁ ଅବସ୍ଥିତ ନରୁଆ ଗ୍ରାମର ଙ୍କେରେଶ୍ୱରଙ୍କ ଇଷ୍ଟାନର୍ମିତ ଚତୁରସ୍ର (୨୨ ଫୁଟ × ୨୦ ଫୁଟ) ପଞ୍ଚରଥ ବଶିଷ୍ଟ ପୀଢ଼ ମନ୍ଦର ନକଟବର୍ତ୍ତୀ ମାଧବ ମନ୍ଦରର ବର୍ତ୍ତମାନ କୌଣସି ଅସ୍ତିତ୍ୱ ନାହିଁ । ସେହିପରି ଅନ୍ତରଙ୍ଗ ନକଟବର୍ତ୍ତୀ ଗୁଡ଼ବଣେଇ ଗ୍ରାମରେ ଇଷ୍ଟକ ନର୍ମିତ ଚତୁରସ୍ର, ପଞ୍ଚରଥ ପୀଢ଼ଜାଖ୍ୟ ବମାନ (୧୫ଫୁ: × ୧୫ଫୁ:)

ଓ ଜଗମୋହନ (୧୫ଫୁ:×୧୫ ଫୁଟ) ବିଶିଷ୍ଟ ଏକ ଶିବମନ୍ଦିର ବିଦ୍ୟମାନ । ଜଗ-ମୋହନରେ ମୁଗୁନି ପଥରରେ ଖୋଦିତ ହିରଣ୍ୟକଶିପୁ ବିଦାରଣ ନୃସିଂହ ମୂର୍ତ୍ତିର ସଂରକ୍ଷଣ ପ୍ରାଚୀନ କାଳରେ ଏଠାରେ ଏକ ମାଧବ ମନ୍ଦିର ଅବସ୍ଥିତିର ସୂଚନା ଦିଏ । ସେହିପରି ଜପୁରୁ ଗ୍ରାମରେ ଈଶ୍ୱରନାଥଙ୍କର ବିମାନ ଓ ଜଗମୋହନ ବିଶିଷ୍ଟ ଏକ ପୂର୍ଣ୍ଣାବୟବ ମନ୍ଦିର ପରିଦୃଷ୍ଟ ହୁଏ । କିନ୍ତୁ ଈଶ୍ୱରନାଥଙ୍କ ସଖା ମାଧବଙ୍କ ମନ୍ଦିରର ଅସ୍ତିତ୍ୱ ନାହିଁ ।

## ବୈତରଣୀ ତୀରରେ ଦ୍ୱାଦଶ ମାଧବ —

ପୁରୀଜିଲ୍ଲାର ପ୍ରାଚୀନତା ପରି ପୁଣ୍ୟତୋୟା ପୁରାଣ ଓ ଇତିହାସବିଶ୍ରୁତା ବିରଜାକ୍ଷେତ୍ର ଓ ଦଶାଶ୍ୱମେଧ ଘାଟ ଶୋଭିତା ବୈତରଣୀ ତୀରରେ ଦ୍ୱାଦଶ ମାଧବ ବିଗ୍ରହ ପୂଜିତ ହେଉଥିବାର ପ୍ରାଚୀନ 'ବିରଜାମହାତ୍ମ୍ୟ' ଗ୍ରନ୍ଥପାଠରୁ ଜଣାଯାଏ । ଯଥା :

"ପ୍ରୋକ୍ତଂ ଭଗବତା ତୂର୍ବଂ **ମାଧବା ଦ୍ୱାଦଶୋତ ମେ**
କ୍ଷେତ୍ରେ ବୈରଜସେ ନିତ୍ୟ ମନ୍ତର୍ଗୃହ ନିବାସିନଃ ॥

**ଆଦ୍ୟ ମାଧବ**—ତତ୍ରାଦ୍ୟମାଧବଂ ଦେବଂ ଆଦିତ୍ୟାଯୁତବର୍ଚ୍ଚସଂ ।
**ଅନନ୍ତ ମାଧବ**—ଅନନ୍ତମାଧବଂ ସାକ୍ଷାଦଭିବନ୍ଦ୍ୟ ମହେଶ୍ୱର ।
**ଭୋଗ ମାଧବ**—ତତଗତ୍ୱା ମହାଦେବ ଭୋଗମାଧବ ସଞ୍ଜ୍ଞକଂ ।
**ଚମ୍ପକ ମାଧବ**—ତତ୍ର ଚମ୍ପକନାମାନଂ ମାଧବଂ ବିଶ୍ୱରକ୍ଷକଂ ।
**ରମା ମାଧବ**—ମାଧବଂ ରମୟା ସାର୍ଦ୍ଧଂ ତଂ ଦୃଷ୍ଟ୍ୱା ଚାଭିବନ୍ଦ୍ୟଚ ॥
**ପ୍ରସନ୍ନ ମାଧବ**—ପ୍ରାର୍ଥୟେ ଭ୍ରାମହଂଦେବ ପ୍ରସନ୍ନୋଭବ ମାଧବ ॥
**ପୁରୁଷୋତ୍ତମ ମାଧବ**—ବ୍ରଜେତ୍ ତତ୍ର ମହାଦେବ ପୁରୁଷୋତ୍ତମ ସଞ୍ଜ୍ଞକମ୍ ॥
**ସୁଦର୍ଶନ ମାଧବ**—ଇଷ୍ଟ୍ୱା ପ୍ରଣମ୍ୟ ଦେବେଶି ତତୋ ଗଚ୍ଛେତ୍ ସୁଦର୍ଶନମ୍ ॥
**ଜନାର୍ଦ୍ଦନ ମାଧବ**—ଦୂରତଃ ସୌଖ୍ୟେକନିବାସଭୂମିଂ
ଜନାର୍ଦ୍ଦନଂ ତଂ ପ୍ରଣତୋଽସ୍ମି ନିତ୍ୟଂ ।
**ନରକାନ୍ତକ ମାଧବ**—ସଂହାସ୍ତେ ଭଗବାନ୍ ଦେବ ନରକାନ୍ତକ ସଂଜ୍ଞକଃ ॥
**ବାସୁଦେବ ମାଧବ**—ତତୋ ଗଚ୍ଛେତ୍ ମହାଦେବି ବାସୁଦେବାଭିଧଂହରି ।
**ଗୋବିନ୍ଦ ମାଧବ**—ତତ୍ରାଭି ବନ୍ଦ୍ୟ ଗୋବିନ୍ଦଂ ଦେବଂ ହରିହରାତ୍ମକଂ ॥
'ବିରଜାମହାତ୍ମ୍ୟ, ଅଷ୍ଟମ ଅଧ୍ୟାୟ' (୧୫)

---

(୧୫) ମିଉଜିୟମ ପୋଥିଭଣ୍ଡାରରେ ଥିବା 'ବିରଜା ମହାତ୍ମ୍ୟ' ପୋଥିରୁ (Museum Ms. No. p/24) ଏହାର ସଂରକ୍ଷକ ପଣ୍ଡିତ ଶ୍ରୀ ନୀଳମଣି ମିଶ୍ରଙ୍କ ସାହାଯ୍ୟରେ ହୃତ ।

ପ୍ରାଚୀ ଉପତ୍ୟକା ପରି ବୈତରଣୀ ଉପତ୍ୟକାରେ ପ୍ରାତ୍ନତାତ୍ତ୍ୱିକ ଭୂପର୍ଯ୍ୟବେକ୍ଷଣ (Archaeological Survey) ଏପର୍ଯ୍ୟନ୍ତ ହୋଇ ନ ଥିବାରୁ ଏହି ଦ୍ୱାଦଶ ମାଧବଙ୍କ ବର୍ତ୍ତମାନ ଅବସ୍ଥା ଓ ଅବସ୍ଥିତି ଜଣାଯାଉ ନାହିଁ । କିନ୍ତୁ ଭୌମ ଓ ସୋମବଂଶୀ ରାଜତ୍ୱ କାଳରେ ଖୋଦିତ ଉକ୍ତ ଦ୍ୱାଦଶ ମାଧବ ବିଗ୍ରହ ଶ୍ରୀ ଜୟଦେବଙ୍କ ଆବିର୍ଭାବ ପୂର୍ବରୁ ଉତ୍କଳରେ ମାଧବ ଉପାସନାର ପ୍ରସାର ସମ୍ବନ୍ଧରେ ଅକାଟ୍ୟ ପ୍ରମାଣ ପ୍ରଦାନ କରେ ।

## ଶ୍ରୀପୁରୁଷୋତ୍ତମ କ୍ଷେତ୍ରରେ ମାଧବ ଉପାସନା —

ଦ୍ୱାଦଶ ଶତାବ୍ଦୀ ପୂର୍ବରୁ କେବଳ ପୂତସଲିଳା ପ୍ରାଚୀ ଓ ବୈତରଣୀ ତୀରବର୍ତ୍ତୀ ବିଭିନ୍ନ ସ୍ଥାନରେ ଯେ ମାଧବ ମନ୍ଦିର ପ୍ରତିଷ୍ଠିତ ଥିଲା ତାହାନୁହେଁ, ସମଗ୍ର ଭାରତ ପ୍ରସିଦ୍ଧ ଶ୍ରୀ ପୁରୁଷୋତ୍ତମ କ୍ଷେତ୍ରରେ ନୀଳାଚଳ ଶିଖରସ୍ଥିତ ଏକ ମନ୍ଦିରରେ କମନୀୟ ଭାସ୍କର୍ଯ୍ୟ ମଣ୍ଡିତ ନୀଳମାଧବ ବିଗ୍ରହ ବହୁ ପ୍ରାଚୀନ କାଳରୁ ପୂଜିତ ହେଉଥିବା ଉତ୍କଳଖଣ୍ଡ ପାଠରୁ ଜଣାଯାଏ । ଯଥା —

"ତମନ୍ତଂ ନୀଳମେଘାଭଂ ନୀଳସ୍ତମ୍ଭମଣିବିଗ୍ରହମ୍
ନୀଳାଚଳଗୁହାବାସଂ ପ୍ରଣମାମି କୃପାନିଧିମ୍ ॥
ଶଙ୍ଖଚକ୍ର ଗଦାପଦ୍ମ ଧାରଣଂ ଶୁଭକାରଣମ୍
ପ୍ରଣତାଶେଷପାପୌଘଦାରଣଂ ମୁରବୈରିଣମ୍ । ୨୬
ନମସ୍ତେ କମଲାପାଙ୍ଗ ନିତ୍ୟସଂସ୍କାରଚକ୍ଷୁଷେ
ଶ୍ରୀବତ୍ସକୌସ୍ତୁଭୋଦ୍ଭାସି ମନୋଜ୍ଞବକ୍ଷସେ ॥ (୧୭କ)

ଅନ୍ୟତ୍ର ବାମବାହୁ ଦ୍ୱାରା ଲକ୍ଷ୍ମୀଙ୍କୁ ଆଲିଙ୍ଗନ କରୁଥିବା ଉକ୍ତ ବିଗ୍ରହର ନିମ୍ନୋକ୍ତ ବର୍ଣ୍ଣନା ମିଳେ ।

"ଶଙ୍ଖଚକ୍ରଗଦାପାଣିଂ ଦିବ୍ୟାଲଙ୍କାରଭୂଷିତମ୍ । ୬
ରତ୍ନପାଦୁକୟୋଃ ପୃଷ୍ଠେ ବିନ୍ୟସ୍ତଚରଣାମ୍ବୁଜମ୍
ବ୍ୟାକୋଷପୁଣ୍ଡରୀକାକ୍ଷଂ ପ୍ରସନ୍ନବଦନଂ ବିଭୁମ୍ ॥ ୭
ବାମପାର୍ଶ୍ୱଗତାଂ ଲକ୍ଷ୍ମୀଂ ବାମେନାଲିଙ୍ଗ୍ୟ ବାହୁନା
ନାଗବଲ୍ଲୀ ଦଳଂ କର୍ପୂରମାଦଦାନଂ ଶ୍ରିୟାହୃତମ୍ । ୮ ।" (୧୭ଖ)

ଉତ୍କଳଦେଶରେ ମାଧବ ଉପାସନା ବହୁ ପ୍ରାଚୀନ କାଳରୁ ସୁପ୍ରତିଷ୍ଠିତ ଥିବାରୁ ଅଦ୍ୟାପି ପ୍ରତ୍ୟେକ ଶୁଭକାର୍ଯ୍ୟରେ ଆବୃତ୍ତ 'ମଙ୍ଗଳାଷ୍ଟକ'ରେ ମାଧବ (ବିଷ୍ଣୁଙ୍କ) ପ୍ରତି ବିଶେଷ ଭକ୍ତି ଓ ଗୁରୁତ୍ୱ ପ୍ରଦର୍ଶିତ ହେଉଅଛି । ଯଥା—

---

(୧୭ କ) ଉତ୍କଳଖଣ୍ଡମ୍ ଦ୍ୱିତୀୟ ଅଧ୍ୟାୟ, ପୃ ୭
(୧୭ ଖ) ,, ପଞ୍ଚମ ଅଧ୍ୟାୟ, ପୃ ୨୯

"ମଙ୍ଗଳଂ ଭଗବାନ୍ ବିଷ୍ଣୁଃ ମଙ୍ଗଳଂ ମଧୁସୂଦନଃ
ମଙ୍ଗଳଂ ପୁଣ୍ଡରୀକାକ୍ଷଃ ମଙ୍ଗଳଂ ଗରୁଡ଼ଧ୍ୱଜଃ ॥
ମାଧବୋ ମାଧବୋ ବିଷ୍ଣୁ ର୍ମାଧବୋ ମାଧବୋହରିଃ ॥
ସ୍ମରନ୍ତି ସାଧବୋ ନିତ୍ୟଂ ସର୍ବକାର୍ଯ୍ୟେଷୁ ମାଧବମ୍ ॥

ଅମରକବି ଜୟଦେବଙ୍କ ଆବିର୍ଭାବ ସମୟରେ ପ୍ରବଳ ପରାକ୍ରାନ୍ତ ଗଙ୍ଗସମ୍ରାଟମାନଙ୍କ ପୃଷ୍ଠପୋଷକତାରେ ବୈଷ୍ଣବ ଧର୍ମର ବିଶେଷ ଅଭ୍ୟୁଦୟ ଘଟିଥିବା ନିଜ ଜନ୍ମଭୂମିର ଚତୁର୍ଦ୍ଦିଗରେ ନାରିକେଳ-ତାଳ-ପୂଗ-ପନସ-ପୁନ୍ନାଗ-ଆମ୍ର-ବକୁଳ ଉପବନ ସମୂହର ସ୍ନିଗ୍ଧ, ସୁଶାନ୍ତ ଓ ଶାନ୍ତିପ୍ରଦ ପରିବେଶ ମଧ୍ୟରେ ପୂର୍ଣ୍ଣ ଅଙ୍ଗସୌଷ୍ଠବ, ଐଶ୍ୱର୍ଯ୍ୟ ଓ ଗୌରବରେ ଦଣ୍ଡାୟମାନ ଦେବାଳୟଗୁଡ଼ିକରେ ଅପୂର୍ବ କାରୁକାର୍ଯ୍ୟ ମଣ୍ଡିତ ବହୁ କମନୀୟ ଚିତ୍ତାକର୍ଷକ ମାଧବ ବିଗ୍ରହ ଧର୍ମପ୍ରାଣ ଜନତା ଦ୍ୱାରା ଅଚଳାଭକ୍ତି ଓ ଏକାନ୍ତ ନିଷ୍ଠା ସହକାରେ ପୂଜିତ ହେଉଥିଲେ । ସ୍ୱ ଜନ୍ମଭୂମିରେ ମାଧବ ଉପାସନାର ପବିତ୍ର ପ୍ରଭାବରେ ଅନୁପ୍ରାଣିତ ହୋଇ 'ଶ୍ରୀକୃଷ୍ଣୈକତାନ' ଭକ୍ତକବି ଜୟଦେବ ସ୍ୱୀୟ ଅମର-କୃତି ଶ୍ରୀ ଗୀତଗୋବିନ୍ଦରେ ପରମାରାଧ୍ୟ ଶ୍ରୀକୃଷ୍ଣ ଓ ଅମିତପ୍ରଭାବ ମାଧବ (ବିଷ୍ଣୁ)ଙ୍କ ଅଭେଦତ୍ୱ ପ୍ରତିପାଦନ ପୂର୍ବକ ଭକ୍ତିବିହ୍ୱଳ ଚିତ୍ତରେ ମାଧବଙ୍କ ଗୁଣଗାନ କରିଛନ୍ତି । ମାଧବଭକ୍ତିରସ ପ୍ଲୁତ ତାଙ୍କ ହୃଦୟରୁ ଶ୍ରୀରାଧାକୃଷ୍ଣଙ୍କ ମିଳନ ପ୍ରସଙ୍ଗରେ ସ୍ୱତଃସ୍ଫୂର୍ତ୍ତ ଭାବରେ ଝଙ୍କୃତ ହୋଇଛି—

"ମଞ୍ଜୁତରକୁଞ୍ଜତଳକେଳିସଦନେ
ବିଳସ ରତିରଭସହସିତବଦନେ ।
ପ୍ରବିଶ ରାଧେ **ମାଧବ ସମୀପ** ମିହ" (ଧ୍ରୁବପଦ) (୧୭)

---

(୧୭) ଶ୍ରୀଗୀତଗୋବିନ୍ଦ, ଏକାଦଶ ସର୍ଗ, ଏକବିଂଶତ ଗୀତ

# ଷଷ୍ଠ ଅଧ୍ୟାୟ

# ଶ୍ରୀଗୀତଗୋବିନ୍ଦରେ ଶ୍ରୀରାଧା

**ଶ୍ରୀରାଧା ଉପାସନାର କ୍ରମବିକାଶ —**

ପୁଣ୍ୟଭୂମି ଉତ୍କଳଖଣ୍ଡରେ ଶ୍ରୀରାଧାକୃଷ୍ଣ ଉପାସନାର ପ୍ରଚଳନ ଓ ଲୋକପ୍ରିୟତା ସମ୍ବନ୍ଧରେ ଜ୍ଞାନଲାଭ ପାଇଁ ପ୍ରାଚୀନ ଭାରତର ଇତିହାସ ପ୍ରତି ସିଂହାବଲୋକନ ଆବଶ୍ୟକ । ଭାରତର ପ୍ରାଚୀନତମ ଧର୍ମଗ୍ରନ୍ଥ ଋକ୍‌ବେଦରେ ଗୋପବେଶଧାରୀ ବିଷ୍ଣୁଙ୍କର ଉଲ୍ଲେଖ ଦେଖାଯାଏ । ଯଥା—

(କ) ତ୍ରୀଣିପଦା ବିଚକ୍ରମେ **ବିଷ୍ଣୁର୍ଗୋପା** ଅଦାଭ୍ୟଃ
ଅତୋ ଧର୍ମାଣି ଧାରୟନ୍ ॥ (୧-୨୨-୧୮)

(ଖ) ବିଷ୍ଣୁର୍ଗୋପାଃ ପରମଂପାତିପାଥଃ ପ୍ରିୟାଧାମାନ୍ୟମୃତାଦଧାନଃ ॥ (୧)
(୩-୫-୧୦)

ଋକ୍‌ବେଦରେ ବ୍ୟବହୃତ ରାଧା ଓ ରାଧସ୍ ଶବ୍ଦଦ୍ୱୟକୁ କେହି କେହି ଶ୍ରୀକୃଷ୍ଣ ପ୍ରେୟସୀ ଶ୍ରୀରାଧା ଅର୍ଥରେ ଗ୍ରହଣ କରିଛନ୍ତି । କିନ୍ତୁ ସେଥିରେ ଏହି ଶବ୍ଦ ସ୍ପଷ୍ଟ ଭାବରେ ଅନୁରାଧା ନକ୍ଷତ୍ର ଅର୍ଥରେ ବ୍ୟବହୃତ ହୋଇଅଛି । ସେହିପରି ଅଥର୍ବ ବେଦରେ ବିଶାଖା ନକ୍ଷତ୍ରର ଅପର ନାମ ରାଧା । ଅତଏବ ବୈଦିକ ସାହିତ୍ୟରେ ରାଧା ଶବ୍ଦ ଶ୍ରୀକୃଷ୍ଣ ପ୍ରିୟଗୋପୀ ରାଧା ଅର୍ଥରେ ବ୍ୟବହୃତ ହୋଇଥିବାର ପ୍ରମାଣ ମିଳେ ନାହିଁ ।

ପୁନାସ୍ଥ ଭଣ୍ଡାରକର ପ୍ରାଚ୍ୟତତ୍ତ୍ୱ ଗବେଷଣା ସଂସ୍ଥା **(The Bhandarkar Oriental Research Institute)** ଦ୍ୱାରା ପ୍ରକାଶିତ ଓ ପ୍ରାମାଣ୍ୟ ରୂପେ ଗୃହୀତ ମହାଭାରତର ଏକ ସ୍ଥାନରେ ଅର୍ଜୁନ ଦ୍ରୌପଦୀଙ୍କ କ୍ରୋଧ ପ୍ରଶମନ ନିମିତ୍ତ ନିଜର ପତ୍ନୀ ସୁଭଦ୍ରାଙ୍କୁ ଗୋପାଳିକା ବେଶରେ ତାଙ୍କ ନିକଟକୁ ପଠାଇଥିବାର ଉଲ୍ଲେଖ ଦେଖାଯାଏ ।

---

(୧) **Professor P. K. Gode Commemoration Volume. Krshna, Gopas, Gopis and Radhā, part III, pp. 84** by Prof. Sadashiva L. Karte.

"ସୁଭଦ୍ରାଂ ଭ୍ରମାଣଞ୍ଚ ରକ୍ତକୌଶେୟବାସସମ୍
ପାର୍ଥଃ ପ୍ରସ୍ଥାପୟାମାସ କୃତ୍ୱାଗୋପାଳିକାବପୁଃ ॥
(ମହାଭାରତ, ପ୍ରଥମଖଣ୍ଡ, ପୃ ୮୩୦)

କିନ୍ତୁ ମହାଭାରତରେ ଶ୍ରୀକୃଷ୍ଣଙ୍କ ଗୋପୀମାନଙ୍କ ସହିତ ରାସଲୀଳାର ଉଲ୍ଲେଖ ଦେଖା-ଯାଏ ନାହିଁ । (୨)

## ମହାକବି ଭାସଙ୍କ ନାଟକରେ ଗୋପୀ ଓ କୃଷ୍ଣଙ୍କ ବର୍ଣ୍ଣନା —

ପ୍ରାୟ ଖ୍ରୀଷ୍ଟପୂର୍ବ ତୃତୀୟ ଶତାବ୍ଦୀରେ ଆବିର୍ଭୂତ ମହାକବି ଭାସ ସଂସ୍କୃତ ଭାଷାରେ କେତେକ ମନୋରମ ନାଟକ ରଚନା କରିଥିଲେ । ସେଥିମଧ୍ୟରୁ 'ବାଳଚରିତମ୍' ନାମକ ନାଟକର ତୃତୀୟ ଅଙ୍କରେ ଗୋପାଙ୍ଗନାମାନଙ୍କର ଏକ ଚିତ୍ତାକର୍ଷକ ବର୍ଣ୍ଣନା ମିଳେ । ଯଥା—

ଦାମୋଦରଃ—"ଏତାଃ ପ୍ରଫୁଲ୍ଲକମଳୋତ୍ପଳବକ୍ତ୍ରନେତ୍ରା
**ଗୋପାଙ୍ଗନାଃ** କନକଚମ୍ପକପୁଷ୍ପଗୌରାଃ ।
ନାନାବିରାଗବସନା ମଧୁରପ୍ରଳାପାଃ
କ୍ରୀଡନ୍ତି ବନ୍ୟକୁସୁମାକୁଳକେଶହସ୍ତାଃ ॥ ୨
ସଙ୍କର୍ଷଣଃ — ଏତେ ଗୋପଦାରକାଃ ସମାଗତାଃ

× × ×

**ବୃନ୍ଦାରଣ୍ୟ** ଗତେ ସମପ୍ରମୁଦିତା ଗାୟନ୍ତି କେଚିତ୍ସ୍ଥିତାଃ ॥ ୩

ସଂକର୍ଷଣ କହିଲେ ଗୋପବାଳୀଗଣ ଆସିଗଲେଣି । ସେମାନଙ୍କ ମଧ୍ୟରୁ କେତେକ ବୃନ୍ଦାରଣ୍ୟରେ ସମପ୍ରମୁଦିତ ଚିତ୍ତରେ ଗାନ କରୁଛନ୍ତି ।

ଦାମୋଦରଃ— ଘୋଷସୁନ୍ଦରି, ବନମାଳେ, ଚନ୍ଦ୍ରରେଖେ, ମୃଗାକ୍ଷି,
ଘୋଷବାସସ୍ୟାନୁରୂପୋଽୟଂ ହଲ୍ଲୀସକନୃତ୍ୟବନ୍ଧ ଉପଯୁଜ୍ୟତାମ୍"

ଅର୍ଥାତ୍ ଦାମୋଦର (ଶ୍ରୀକୃଷ୍ଣ) ଗୋପୀମାନଙ୍କୁ ହଲ୍ଲୀସକ ନୃତ୍ୟବନ୍ଧରେ ସମ୍ମିଳିତ ହେବାପାଇଁ ଆହ୍ୱାନ କରିଥିଲେ । (ବାଳଚରିତ, ତୃତୀୟୋଽଙ୍କଃ) (୩)

---

(୨) Professor P. K. Gode Commemoration Volume. Krshna, Gopas, Gopis and Radha, part III, pp. 84 by Prof Sadashiva L Karte.

(୩) 'ଭାସ ନାଟକ ଚକ୍ରମ୍', ପୁନାର Oriental Book Agencyଙ୍କ ଦ୍ୱାରା ପ୍ରକାଶିତ ପୃ ୫୩୮–୫୩୯

ମହାକବି ଭାସ ଗୋପାଙ୍ଗନାମାନଙ୍କ ସହିତ ଶ୍ରୀକୃଷ୍ଣଙ୍କ ବୃନ୍ଦାରଣ୍ୟରେ ବିହାର ବିଷୟ ବର୍ଣ୍ଣନା କରିଥିଲେ ମଧ୍ୟ ଶ୍ରୀରାଧାଙ୍କ ଉଲ୍ଲେଖ କରିନାହାନ୍ତି ।

**ମହାକବି କାଳିଦାସଙ୍କ ରଚନାରେ ଗୋପାଳକୃଷ୍ଣ ଓ ବୃନ୍ଦାବନର ଉଲ୍ଲେଖ —**

ଖ୍ରୀ: ପୂ: ପ୍ରଥମ ଶତାବ୍ଦୀରେ ଆବିର୍ଭୂତ ମହାକବି କାଳିଦାସ ତାଙ୍କର ଅତ୍ୟନ୍ତ ଲୋକପ୍ରିୟ ଗ୍ରନ୍ଥ 'ମେଘଦୂତମ୍'ର ଗୋଟିଏ ଶ୍ଳୋକରେ ଇନ୍ଦ୍ରଧନୁର ବର୍ଣ୍ଣନା ପ୍ରସଙ୍ଗରେ ଗୋପବେଶଧାରୀ ବିଷ୍ଣୁ ବା କୃଷ୍ଣଙ୍କ ବିଷୟ ଲେଖିଛନ୍ତି । ଯଥା—

"ରତ୍ନଚ୍ଛାୟାବ୍ୟତିକରଇବ ପ୍ରେକ୍ଷ୍ୟମେତତ୍ ପୁରସ୍ତାଦ୍
ବଲ୍ମୀକାଗ୍ରାତ୍ ପ୍ରଭବତି ଧନୁଃଖଣ୍ଡମାଖଣ୍ଡଳସ୍ୟ,
ଯେନ ଶ୍ୟାମଂ ବପୁରତିତରାଂ କାନ୍ତିମାପତ୍ସ୍ୟତେତେ
ବର୍ହେଣେବ ସ୍ଫୁରିତରୁଚିନା **ଗୋପବେଶସ୍ୟ ବିଷ୍ଣୋଃ** ॥"
(ପୂର୍ବମେଘଃ ୧୫ ଶ୍ଳୋକ)

ମହାକବି କାଳିଦାସ ସୁପ୍ରସିଦ୍ଧ ରଘୁବଂଶ ମହାକାବ୍ୟରେ ଇନ୍ଦୁମତୀଙ୍କ ସ୍ୱୟମ୍ବର ବର୍ଣ୍ଣନା ପ୍ରସଙ୍ଗରେ ସୁନନ୍ଦା ମୁଖରେ ଇନ୍ଦୁମତୀଙ୍କୁ ମଥୁରାଧିପତିଙ୍କ ପରିଚୟ ଦେଲାବେଳେ ଶ୍ରୀକୃଷ୍ଣଙ୍କ ବିହାରସ୍ଥଳୀ ବୃନ୍ଦାବନ ଓ ଗିରିଗୋବର୍ଦ୍ଧନର କନ୍ଦରା ବିଷୟ ଉଲ୍ଲେଖ କରିଛନ୍ତି—

"ସଂଭାବ୍ୟ ଭର୍ତ୍ତାରମମୁଂ ଯୁବାନଂ
ମୃଦୁପ୍ରବାଳୋତ୍ତରପୁଷ୍ପଶଯ୍ୟେ ।
**ବୃନ୍ଦାବନେ** ଚୈତ୍ରରଥାଦନୂନେ
ନିର୍ବିଶ୍ୟତାଂ ସୁନ୍ଦରି ଯୌବନଶ୍ରୀଃ ॥
ଅଧ୍ୟାସ୍ୟ ଚାମ୍ଭଃ ପୃଷତୋକ୍ଷିତାନି ।
ଶୈଳେୟଗନ୍ଧୀନି ଶିଳାତଳାନି ।
କଳାପିନାଂ ପ୍ରାବୃଷି ପଶ୍ୟନୃତ୍ୟଂ
କାନ୍ତାସୁ **ଗୋବର୍ଦ୍ଧନ କନ୍ଦରାସୁ** ॥"
(ଷଷ୍ଠ ସର୍ଗ ୫୦ ଓ ୫୧ ଶ୍ଳୋକ)

ମହାକବି କାଳିଦାସଙ୍କ ସମୟକୁ ଯମୁନା ପୁଳିନସ୍ଥ ବୃନ୍ଦାବନରେ ଏବଂ ଗୋବର୍ଦ୍ଧନ ଗିରିରେ କନ୍ଦରାରେ ଗୋପବେଶ ବିଷ୍ଣୁ ବା ଗୋପାଳକୃଷ୍ଣଙ୍କ ବନବିହାର ଲୋକପ୍ରିୟତା ଅର୍ଜନ କରିଥିବା ଉଦ୍ଧୃତ ଶ୍ଳୋକଦ୍ୱୟରୁ ସୂଚିତ ହୁଏ । କିନ୍ତୁ ତାଙ୍କର କୌଣସି ରଚନାରେ ଶ୍ରୀରାଧାଙ୍କ ଉଲ୍ଲେଖ ଦେଖାଯାଏ ନାହିଁ ।

**ହାଲଙ୍କ 'ଗାଥାସପ୍ତଶତୀ'ରେ ରାଧିକାଙ୍କ ଉଲ୍ଲେଖ—**

ଖ୍ରୀଷ୍ଟୀୟ ପ୍ରଥମ ଶତାବ୍ଦୀରେ ଆବର୍ଭୂତ ଦାକ୍ଷିଣାତ୍ୟର ଆନ୍ଧ୍ର ଭୃତ୍ୟ ବଂଶୀୟ ଜନୈକ ପ୍ରସିଦ୍ଧ ନରପତ 'ହାଳ'ଙ୍କ ଦ୍ୱାରା ପ୍ରାକୃତ ଭାଷାରେ ଓ ଆର୍ଯ୍ୟାବୃତ୍ତରେ ରଚିତ **ଗାଥାସପ୍ତଶତୀ** ନାମକ ଗ୍ରନ୍ଥରେ ଶ୍ରୀକୃଷ୍ଣ ଜନନୀ ଯଶୋଦା, ଦାମୋଦର, କୃଷ୍ଣ, ରାଧା, ଗୋପୀ, ବ୍ରଜବଧୂ ପ୍ରଭୃତିଙ୍କ ସମ୍ପର୍କରେ କେତେକ ଶ୍ଳୋକ ମିଳେ। ସେଥିରୁ ଦୁଇଟି ମୂଳଶ୍ଳୋକର ସଂସ୍କୃତାନୁବାଦ ନିମ୍ନରେ ଉଦ୍ଧାର କରାଗଲା। (୪)

"ମୁଖମାରୁତେନ ତ୍ୱଂ **କୃଷ୍ଣ** ଗୌରଜୋ **ରାଧିକାୟା** ଅପନୟନ୍
ଏତାସାଂ ବଲ୍ଲବୀନାମନ୍ୟାସାମପି ଗୌରବଂ ହରସି" (୮୯ ଶ୍ଳୋକ)

ଅର୍ଥାତ୍ ଶ୍ରୀକୃଷ୍ଣ ମୁଖମାରୁତ ବା ଫୁତ୍କାର ଦ୍ୱାରା ରାଧିକାଙ୍କ ମୁଖମଣ୍ଡଳରେ ପତିତ ଗୋରେଣୁଧୂଳି ଅପନୋଦନ ଛଳରେ ତାଙ୍କ ମୁଖ ଚୁମ୍ବନ କରି ଅନ୍ୟ ଗୋପୀମାନଙ୍କ ଗୌରବ ହରଣ କରିଥିଲେ। ଏଠାରେ କବି ଅତି ଚତୁର ଭାବରେ ଅନ୍ୟ ଗୋପୀମାନଙ୍କ ଅପେକ୍ଷା ରାଧିକାଙ୍କ ପ୍ରତି ଶ୍ରୀକୃଷ୍ଣଙ୍କ ଅଧିକ ଆସକ୍ତି ଓ ଅନୁରାଗ ପ୍ରଖ୍ୟାପନ କରିଛନ୍ତି।

ନିମ୍ନୋଦ୍ଧୃତ ୧୧୨ ସଂଖ୍ୟକ ଶ୍ଳୋକରେ ଶ୍ରୀକୃଷ୍ଣଙ୍କ ବାଲସୁଲଭ ରସିକତା ମଧ୍ୟ ଅତି ସୁନ୍ଦର ଭାବରେ ପ୍ରକଟିତ ହୋଇଛି।

"ଅଦ୍ୟାପି ବାଲୋ ଦାମୋଦର ଇତି ଇହଜଳ୍ପିତେ ଯଶୋଦୟା
କୃଷ୍ଣମୁଖପ୍ରେଷିତାକ୍ଷଂ ନିଭୃତଂ ହସିତଂ ବ୍ରଜବଧୂଭିଃ"

ଅର୍ଥାତ୍ ଯଶୋଦା ଏବେମଧ୍ୟ ମୋର ପୁଅ ଦାମୋଦର ବା ଶ୍ରୀକୃଷ୍ଣ ବାଳୁତ ବୋଲି କହିବାରୁ ଗୋପୀମାନେ ତାଙ୍କଆଡ଼ୁ ମୁହଁ ବୁଲାଇ କୃଷ୍ଣଙ୍କ ମୁହଁକୁ ଚାହିଁ ମୁରୁକି ମୁରୁକି ହସିଥିଲେ।

ଏହି ଦୁଇଟି ଶ୍ଳୋକ ଦ୍ୱାରା ଗୋପବଧୂ ପରିବେଷ୍ଟିତ ଯଶୋଦା-ନନ୍ଦନ ଶ୍ରୀକୃଷ୍ଣଙ୍କର ଶ୍ରେଷ୍ଠ ଗୋପୀ ରାଧିକାଙ୍କ ପ୍ରତି ପ୍ରେମାତିଶଯ୍ୟ ପ୍ରକଟିତ ହୁଏ।

**ପଞ୍ଚତନ୍ତ୍ରରେ ଶ୍ରୀରାଧାକୃଷ୍ଣ ଚରିତ—**

ସଂସ୍କୃତ 'ପଞ୍ଚତନ୍ତ୍ରମ୍' ଏକ ପୃଥିବୀ ପ୍ରସିଦ୍ଧ ଆଖ୍ୟାୟିକା ସଂଗ୍ରହ। ଏହାର ପ୍ରଣେତା ବିଷ୍ଣୁଶର୍ମା ଖ୍ରୀଷ୍ଟୀୟ ଷଷ୍ଠ ଶତାବ୍ଦୀରେ କଳିଙ୍ଗ ଦେଶରେ ଆବର୍ଭୂତ

---

(୪) 'ଗାଥାସପ୍ତଶତୀ'—ପୃ ୬୮ ପୃ— Published by Prasada Prakasan, Poona.

ହୋଇଥିବା ମୋ ଦ୍ୱାରା ପ୍ରମାଣିତ ହୋଇଅଛି । (*) ସେଥିରେ ପ୍ରଦତ୍ତ ଏକ ଉପାଖ୍ୟାନରୁ ଜଣାଯାଏ ଯେ, ଥରେ ଜଣେ ତନ୍ତୁବାୟ ଯୁବକ ଚତୁର୍ଭୁଜ ବେଶରେ ଏକ କାଷ୍ଠନିର୍ମିତ ଗରୁଡ଼ ପୃଷ୍ଠରେ ଆରୋହଣ ପୂର୍ବକ କୌଣସି ଏକ ରାଜଅନ୍ତଃପୁରରେ ପ୍ରବେଶ କରି ନବ୍ଦ୍ଧିତା ରାଜକନ୍ୟାକୁ ଉଠାଇ ତାଙ୍କର ପ୍ରଣୟ ଭିକ୍ଷା କରିଥିଲେ । ସେତେବେଳେ ସେ ଗୋପକୁଳପ୍ରସୂତା ରାଧାଙ୍କ ବିଷୟ ଉପଲକ୍ଷ୍ୟ ଦେଇଥିଲେ । ଯଥା —

"କୌଳିକୋଽପି ତଦାକର୍ଣ୍ୟ ତଥାରୂଢସ୍ତବଗତ୍ୱା ତାମାହ, ରାଜପୁତ୍ରି ! ସୁପ୍ତା କବା ଜାଗର୍ଷି ? ଅହଂ ତବ କୃତେ ସମୁଦ୍ରାତ୍ ସାନୁରାଗୋ **ଲକ୍ଷ୍ମୀଂ ବିହାୟୈବା** ଗତଃ । ତତ୍ ବିପୁଳାଂ ମୟାସହ ସମାଗମଃ (ସଙ୍ଗମଃ) ଇତି ।

ସାପି ଗରୁଡ଼ାରୂଢ଼ଂ ଚତୁର୍ଭୁଜଂ ସାୟୁଧଂ କୌସ୍ତୁଭୋପେତମବଲୋକ୍ୟ ସବିସ୍ମୟା ଶୟନାଦୁତ୍ଥାୟ ପ୍ରୋବାଚ ।

ଭଗବାନ୍ ! ଅହଂ ମାନୁଷୀ କୀଟିକାଶୁଚିଃ ଭଗବାଂସ୍ତ୍ରୈଲୋକ୍ୟପାବନ ବନ୍ଦନୀୟସ୍ତତ୍ କଥମେତଦୁଚ୍ୟତେ ?

କୌଳିକ ଆହ ସୁଭଗେ ସତ୍ୟମଭିହିତଂ ତ୍ୱୟା କିଂ ପରଂ ତୁ **ରାଧା ନାମ ମେ ଭାର୍ଯ୍ୟା** ଗୋପକୁଳପ୍ରସୂତା ପ୍ରଥମମାସୀତ୍, ସା ତ୍ୱମେବ ଅବତୀର୍ଣ୍ଣା, ତେନାହମାୟାତଃ ॥"

ପ୍ରତିଭାଶାଳୀ ଗଳ୍ପଲେଖକ ବିଷ୍ଣୁଶର୍ମା ଉକ୍ତ ଆଖ୍ୟାୟିକା ମାଧ୍ୟମରେ କ୍ଷୀରୋଦାର୍ଣ୍ଣବଶାୟୀ ଚତୁର୍ଭୁଜ ଗରୁଡ଼ାସନ କୌସ୍ତୁଭଶୋଭିତ ଭଗବାନ୍ ରମାରମଣ ବିଷ୍ଣୁ (କୃଷ୍ଣ) ଏବଂ ଗୋପକୁଳପ୍ରସୂତା ଶ୍ରୀରାଧାଙ୍କ ମଧ୍ୟରେ ପରକୀୟା ପ୍ରୀତିର ଏକ ଚିତ୍ତାକର୍ଷକ ଚିତ୍ର ପ୍ରଦାନ କରିଛନ୍ତି ।

## ବେଣୀସଂହାର ନାଟକରେ ଶ୍ରୀରାଧାକୃଷ୍ଣ କେଳିର ଉଲ୍ଲେଖ—

ସଂସ୍କୃତ **ବେଣୀସଂହାରମ୍** ନାଟକର ପ୍ରଣେତା ଭଟ୍ଟ ନାରାୟଣ ସପ୍ତମ ଶତାବ୍ଦୀରେ ଉତ୍କଳରେ ଆବିର୍ଭୂତ ହୋଇଥିବାର ମୋ ଦ୍ୱାରା ଲିଖିତ ଓଡ଼ିଶାରୁ ସଂଗୃହୀତ ପ୍ରାଚୀନ ସଂସ୍କୃତ ପୋଥିଗୁଡ଼ିକର ସୂଚୀଗ୍ରନ୍ଥରେ ପ୍ରଦର୍ଶିତ ହୋଇଅଛି ।

---

(*) 'A Descriptive Catalogue of Sanskrit Manuscripts in Orissa', Vol. II–Kāvya, Nātaka, Alamkāra & Sangita by Sri K N. Mahapatra, Preface pp IV, XI & XII.

(୬) ଏହି ନାଟକର ଦ୍ୱିତୀୟ ମଙ୍ଗଳାଚରଣ ଶ୍ଳୋକରେ କାଳିନ୍ଦୀପୁଳିନରେ ଶ୍ରୀରାଧା-କୃଷ୍ଣ କେଳି ବିଷୟ କବି ଚତୁରତାର ସହିତ ଉଲ୍ଲେଖ କରିଛନ୍ତି । (୭)

**"କାଳିନ୍ଦ୍ୟାଃ ପୁଳିନେଷୁ କେଳିକୁପିତାମୁତ୍ସୃଜ୍ୟ ରାସେରସଂ,**
ଗଚ୍ଛନ୍ତୀମନୁଗଚ୍ଛତୋଽଶ୍ରୁକଳୁଷାଂ **କଂସଦ୍ୱିଷୋ ରାଧିକାମ୍ ।**
ତତ୍ପାଦପ୍ରତିମାନିବେଶିତପଦସ୍ୟୋଦ୍ଭୁତରୋମୋଦ୍‌ଗତେ
ରକ୍ଷୁଣ୍ଣୋଽନୁନୟଃ ପ୍ରସନ୍ନଦୟିତାଦୃଷ୍ଟସ୍ୟ ପୁଷ୍ଣାତୁ ବଃ ॥"

ଅର୍ଥାତ୍ କାଳନ୍ଦୀ ପୁଳିନସ୍ଥ ରାସମଣ୍ଡଳ ତ୍ୟାଗକରି ପଳାୟିତା କେଳିକୁପିତା ଶ୍ରୀରାଧାଙ୍କ ପଦଚିହ୍ନ ସମୂହ ଲକ୍ଷ୍ୟକରି ତାଙ୍କର ଅନୁଗମନ କରିବା ସମୟରେ ଶ୍ରୀକୃଷ୍ଣ ରୋମାଞ୍ଚ ଅନୁଭବ କରିଥିଲେ ଏବଂ ଏହା ଦୂରରୁ ଲକ୍ଷ୍ୟକରି ଶ୍ରୀରାଧା ବିଶେଷ ପ୍ରସନ୍ନ ହୋଇଥିଲେ ।

ଭଟ୍ଟନାରାୟଣଙ୍କ ରଚିତ ଏହି ମଙ୍ଗଳାଚରଣ ଶ୍ଳୋକଦ୍ୱାରା ଖ୍ରୀଷ୍ଟୀୟ ସପ୍ତମ ଶତାବ୍ଦୀ ବେଳକୁ କାଳନ୍ଦୀ ପୁଳିନରେ ଶ୍ରୀରାଧାକୃଷ୍ଣଙ୍କ ରାସକେଳି ଉତ୍କଳରେ ଲୋକ-ପ୍ରିୟତା ଅର୍ଜନ କରିଥିବା ସ୍ପଷ୍ଟ ପ୍ରମାଣିତ ହୁଏ ।

## ଶ୍ରୀ ଶଙ୍କରାଚାର୍ଯ୍ୟ ଗ୍ରନ୍ଥମାଳାରେ ଶ୍ରୀରାଧାକୃଷ୍ଣ ତତ୍ତ୍ୱ—

ଅଷ୍ଟମ ଶତାବ୍ଦୀର ଶେଷଭାଗରେ ଆବିର୍ଭୂତ ଅଦ୍ୱୈତବାଦର ପ୍ରତିଷ୍ଠାତା ପରିବ୍ରାଜକାଚାର୍ଯ୍ୟ ଶ୍ରୀ ଶଙ୍କରାଚାର୍ଯ୍ୟ (ଆ ୭୮୮-୮୨୦ ଖ୍ରୀଷ୍ଟାବ୍ଦ) ସ୍ୱକୃତ ବିଭିନ୍ନ ଅଷ୍ଟକରେ ନାରାୟଣଙ୍କୁ ଅଚ୍ୟୁତ, କେଶବ, ମାଧବ, ସତ୍ୟଭାମାଧବ, ରୁକ୍ମଣୀରମଣ, ରାଧିକା-ରମଣ ରୂପେ ସମ୍ବୋଧନ କରି ସ୍ତୁତିଗାନ କରିଛନ୍ତି । ଯଥା—

### ଅଚ୍ୟୁତାଷ୍ଟକ ସ୍ତୋତ୍ରମ୍—

"ଦେବକୀତନୟ ଦୁଃଖଦାବାଗ୍ନେ **ରାଧିକାରମଣ** ରମ୍ୟ ସୁମୂର୍ତ୍ତେ ।
ଦୁଃଖମୋଚୟ ଦୟାର୍ଣ୍ଣବନାଥ, ଶ୍ରୀପତେ ଶମୟ ଦୁଃଖମଶେଷମ୍" । ୪ ।

### (୨) ଅଚ୍ୟୁତାଷ୍ଟକ ସ୍ତୋତ୍ରମ୍—

"ଅଚ୍ୟୁତଂ କେଶବଂ ସତ୍ୟଭାମାଧବଂ, ମାଧବଂ ଶ୍ରୀଧରଂ **ରାଧିକାରାଧିତମ୍**"

---

(୬) A Des. Cat. of Sans Mss of Orissa by Sri K.N. Mahapatra, Vol II. Preface—pp XII—XIV

(୭) ଚୌଖମ୍ବା ସଂସ୍କୃତ ସିରିଜ୍ ଅଫିସ୍ ଦ୍ୱାରା ପ୍ରକାଶିତ ପୃ-୩

(୩) **ନାରାୟଣ ସ୍ତୋତ୍ରମ୍—**

**ରାଧାଧରମଧୁରସିକା,** ରଜନୀକରକୁଳତିଳକା
ନାରାୟଣ, ନାରାୟଣ ଜୟଗୋବିନ୍ଦ ହରେ । ୭

× × ×

ବାଣଜଭୂଷାଭରଣ। **ରାଧାରୁକ୍ମଣୀରମଣା**
ନାରାୟଣ, ନାରାୟଣ ଜୟଗୋବିନ୍ଦ ହରେ । ୯
ଗିରିଜା ସଖବର ଶଙ୍କର, ନାମାମୃତମ୍ନଶିଳାନ୍ତର
ନାରାୟଣ, ନାରାୟଣ, ଜୟଗୋବିନ୍ଦ ହରେ ॥
ନାରାୟଣ, ନାରାୟଣ ଜୟଗୋପାଳ ହରେ ॥ ୩୦

(୪) **ଆର୍ତ୍ତତ୍ରାଣ ନାରାୟଣାଷ୍ଟାଦଶକ ସ୍ତୋତ୍ରମ୍—**

"ଯୋଽସାବୌ ଭୁବନତ୍ରୟେ ମଧୁପତିର୍ଭର୍ତ୍ତାନରାଣାଂ କୁଲେ ।
**ରାଧାୟା** ଅକରୋଦ୍ରତରତି ମନଃପ୍ରୀତିଂ ସୁରେନ୍ଦ୍ରାନୁଜଃ ।
ଯୋ ବା ରକ୍ଷତି ଦୀନପାଣ୍ଡୁତନୟାନ୍ ନାଥେତି ଭୀତିଂ ଗତା—
ନାର୍ତ୍ତତ୍ରାଣପରାୟଣଃ ସ ଭଗବାନ୍ନାରାୟଣୋ ମେ ଗତିଃ । ୧୨ (୮)

**'ଧ୍ୱନ୍ୟାଲୋକ'ରେ ଶ୍ରୀରାଧାକୃଷ୍ଣଙ୍କ ରାସଲୀଳାର ଉଲ୍ଲେଖ—**

ନବମ ଶତାବ୍ଦୀରେ ଆବିର୍ଭୂତ କାଶ୍ମୀରବାସୀ ପ୍ରସିଦ୍ଧ ଆଲଂକାରିକ ଆନନ୍ଦବର୍ଦ୍ଧନ (୮୭୦-୮୯୦ ଖ୍ରୀଷ୍ଟାବ୍ଦ) ସ୍ୱୀୟ **ଧ୍ୱନ୍ୟାଲୋକଃ** ନାମକ ପ୍ରସିଦ୍ଧ ଅଳଙ୍କାର ଗ୍ରନ୍ଥରେ ଶ୍ରୀରାଧାକୃଷ୍ଣଙ୍କ ରାସଲୀଳା ସଂପର୍କରେ ଦୁଇଟି ଶ୍ଳୋକ ଉଦାହରଣ ସ୍ୱରୂପ ପ୍ରଦାନ କରିଛନ୍ତି । ଯଥା—

"ତେଷାଂ ଗୋପବଧୂବିଳାସସୁହୃଦାଂ ରାଧାରହଃସାକ୍ଷିଣାଂ
କ୍ଷେମଂ ଭଦ୍ର କଳିନ୍ଦଶୈଳତନୟାତୀରେ ଲତାବେଶ୍ମନାମ୍
ବିଚ୍ଛିନ୍ନେ ସ୍ମରତଳ୍ପକଳ୍ପନମୃଦୁଚ୍ଛେଦୋପଯୋଗେଽଧୁନା
ତେ ଜାନେ ଜରଠୀଭବନ୍ତି ବିଗଳନ୍ନୀଳତ୍ୱିଷଃ ପଲ୍ଲବାଃ ॥

ଶ୍ରୀକୃଷ୍ଣ ଗୋପପୁରରୁ ଆଗତ ଉଦ୍ଧବଙ୍କୁ ଗୋପପୁର ବୃତ୍ତାନ୍ତ ପଚାରୁଅଛନ୍ତି— ହେ ଭଦ୍ର ! ମୋର ପରମ ସ୍ନେହାସ୍ପଦ, ଗୋପୀମାନଙ୍କର ବିଳାସବନ୍ଧୁ, ରାଧାଙ୍କର

---

(୮) ଶ୍ରୀ ଶଙ୍କରାଚାର୍ଯ୍ୟ ସ୍ତୋତ୍ରମାଳା ପୃ ୧୩, ପୃ ୧୫, ପୃ ୪୦, ପୃ ୭୧ ।

ନର୍ତ୍ତନ କେଳିର ସାକ୍ଷୀ ସ୍ୱରୂପ ଯମୁନା ତୀରବର୍ତ୍ତୀ ସେହି ଲତାକୁଞ୍ଜ (ବେଣୁ) ଗୁଡ଼ିକର କୁଶଳତ ? ପୁଣି ଶ୍ରୀକୃଷ୍ଣଙ୍କର ମନେହେଲା, ବର୍ତ୍ତମାନ କେଳିଶଯ୍ୟା ରଚନା ପାଇଁ ଗଛ ଗୁଡ଼ିକରୁ କୋମଳ ପତ୍ର ତୋଳା ବନ୍ଦ ହୋଇଯିବାରୁ ସେଗୁଡ଼ିକ ସ୍ୱାଭାବିକ କୋମଳତ୍ୱ ଓ ଶ୍ୟାମବର୍ଣ୍ଣକୁ ତ୍ୟାଗକରି ପାଚିଲା ପଡ଼ିଯିବେଣି ବା ବୁଢ଼ା ହୋଇଯିବେଣି । ତେଣୁ ସେମାନଙ୍କ କୁଶଳ ହେବ କପରି ? (୧)

ଆନନ୍ଦ ବର୍ଦ୍ଧନ ଶ୍ରୀକୃଷ୍ଣଙ୍କ ରାଧାନୁନୟସଂକ୍ରାନ୍ତ ଅନ୍ୟ ଏକ ଶ୍ଳୋକ ଉଦାହରଣ ସ୍ୱରୂପ ଉଦ୍ଧାର କରିଛନ୍ତି । ଯଥା—

"ଦୁରାରାଧା ରାଧା ସୁଭଗ ! ଯଦନେନାପି ମୃଜତ-
ସ୍ତବୈତତ୍ ପ୍ରାଣେଶାଜଘନବସନେନାଶ୍ରୁ ପତିତମ୍ ।
କଠୋରଂ ସ୍ତ୍ରୀଚେତସ୍ତଦଲମୁପଚାରୈ ର୍ବିରମ ହେ !
କ୍ରିୟାତ୍ କଲ୍ୟାଣଂ ବୋ ହରିରନୁନୟେଷ୍ୱେବ ମୁକ୍ତଃ ॥"

ଶ୍ରୀକୃଷ୍ଣ— ଆହେ ରାଧେ ! ତୁମ୍ଭେ ଅକାଳରେ କୁପିତା ହୋଇ, ଯେତେ ଅନୁନୟ କଲେ ମଧ୍ୟ ପ୍ରସନ୍ନ ହେଉନାହିଁ । ଅତଏବ ତୁମେ ଦୁରାରାଧା ଅଛ । ଆଉ କାନ୍ଦ ନାହିଁ । (ଏହା କହି ନଜେ ପିନ୍ଧିଥିବା ଲୁଗା କାନରେ ରାଧାଙ୍କ ଲୁହ ପୋଛିଦେଲେ) ।

ରାଧା — ହେ ସୁଭଗ ! ମୋର ଲୁହଧାରକୁ ପ୍ରାଣପ୍ରିୟାର ଏହି କଟିବସ୍ତ୍ରରେ ପୋଛୁଛ ଯେ ତୁମ୍ଭେ, ତୁମ୍ଭପକ୍ଷେ ରାଧା (ପ୍ରକୃତରେ) ଦୁରାରାଧା ଅଟେ । ଅର୍ଥାତ୍ ତୁମ୍ଭେ ଯେତେ ଅନୁନୟ ବିନୟ ଦେଖାଇଲେ ମଧ୍ୟ ରାଧା ପ୍ରସନ୍ନ ହେବ ନାହିଁ ।

ଶ୍ରୀକୃଷ୍ଣ— ସ୍ତ୍ରୀମାନଙ୍କର ଚିତ୍ତ ବଡ଼ ନିଷ୍ଠୁର ।

ରାଧା — ପ୍ରକୃତରେ ସ୍ତ୍ରୀର (ମୋର) ଚିତ୍ତ ବଡ଼ ନିଷ୍ଠୁର (କାରଣ ତୁମ୍ଭେ ଅନ୍ୟ ନାୟିକା ସମ୍ଭୋଗ କରି ତା'ର ଶାଢ଼ୀ ପିନ୍ଧି, ସେହି ପାଲଟାଲୁଗାର କାନରେ ମୋ ଲୁହ ପୋଛୁଚ, ଏହା ସବୁ ଦେଖିକରି ସୁଦ୍ଧା ମୋର ହୃଦୟ ଯେଣୁ ସହସ୍ରଧା ଫାଟି ନ ଯାଉଛି, ତେଣୁ ମୋର ହୃଦୟ ବଡ଼ ନିଷ୍ଠୁର) ତେଣୁ ଏସବୁ ଅନୁନୟ ବିନୟାଦ ଉପଚାରର ନିଷ୍ପ୍ରୟୋଜନ, ତାହା ବନ୍ଦ କର ।

---

(୧) ଧ୍ୱନ୍ୟାଲୋକ— ଅଧ୍ୟାପକ ପଣ୍ଡିତ ଶ୍ରୀ ବୁଲମଣି ମିଶ୍ରଙ୍କ ଓଡ଼ିଆ ଅନୁବାଦ, ଦ୍ୱିତୀୟ ଉଦ୍ୟୋତ ୩୭ ଶ୍ଲୋକ, ପୃ ୭୬

କବ—ରାଧିକାଙ୍କୁ ଅନୁନୟ କରୁଥିବା ସମୟରେ ରାଧିକାଙ୍କ ଦ୍ୱାରା ଏପରି ଉକ୍ତ ହୋଇଥିବା ଶ୍ରୀକୃଷ୍ଣ ଆପଣମାନଙ୍କର କଲ୍ୟାଣ ସଂପାଦନ କରନ୍ତୁ । (୧୦)

## କାବ୍ୟମୀମାଂସାରେ ଶ୍ରୀରାଧାଙ୍କ ପ୍ରେମ ବର୍ଣ୍ଣନା —

କନୌଜର ପ୍ରତିହାର ରାଜସଭା ମଣ୍ଡନକାରୀ ଭାରତ ପ୍ରସିଦ୍ଧ **କବିରାଜ ରାଜଶେଖର** (୮୮୦—୯୨୦ ଖ୍ରୀଷ୍ଟାବ୍ଦ) ସ୍ୱୀୟ **କାବ୍ୟମୀମାଂସା** ନାମକ ଅଳଙ୍କାର ଗ୍ରନ୍ଥର ଦୁଇଟି ଉଦାହରଣ ଶ୍ଳୋକରେ ଯଥାକ୍ରମେ ପାର୍ବତୀ ବିରହାତୁର ଶିବ ଏବଂ ଈର୍ଷ୍ୟାକଳୁଷିତ ଲକ୍ଷ୍ମୀଙ୍କ ଦ୍ୱାରା ପରିତ୍ୟକ୍ତ ଶ୍ରୀରାଧାସ୍ମରଣକାରୀ ହରିଙ୍କ ଶ୍ୱାସାନଳର ଏକ ତୁଳନାତ୍ମକ ଆଲୋଚନା କରିଛନ୍ତି । ଯଥା—

"ଯେ ସୀମନ୍ତିତଗାତ୍ରଭସ୍ମରଜସୋ ଯେ କୁମ୍ଭକଦ୍ୱେଷିଣଃ
ଯେ ଲୀଢ଼ାଃ ଶ୍ରବଣାନ୍ତପୂର୍ଣଫଣିନା ଯେ ଚନ୍ଦ୍ରଶୈତ୍ୟଦ୍ରୁହଃ
ତେ କୁପ୍ୟାଦ୍ଗିରିଜାବିଭକ୍ତବପୁଷଃ ଶମ୍ଭବ୍ୟଥାସାକ୍ଷିଣଃ
ସ୍ଥାଣୋର୍ଦକ୍ଷିଣନାସିକାପୁଟଭୁବାଃ ଶ୍ୱାସାନଳାଃ ପାନ୍ତୁ ବଃ ॥"

ସର୍ବାଙ୍ଗ ବିଲେପିତ ଭସ୍ମରଜସମୂହକୁ ଉଡ଼ାଇ ଦେଉଥିବା, କୁମ୍ଭକଶ୍ୱାସର ବିଦ୍ୱେଷ କରୁଥିବା ବା ପ୍ରଖର ଗତିରେ ବହୁଥିବା, ଶ୍ରବଣାଶ୍ରୟୀ ସର୍ପ ଦ୍ୱାରା ପୀତ ହେଉଥିବା, ମସ୍ତକସ୍ଥିତ ଚନ୍ଦ୍ରକିରଣ ଦ୍ୱାରା ଜାତ ଶୈତ୍ୟକୁ ଦୂର କରୁଥିବା, ପାର୍ବତୀ ବିରହକ୍ଲିଷ୍ଟ ଶିବଙ୍କ ଦୁଃଖର ସାକ୍ଷୀ ସ୍ୱରୂପ ତାଙ୍କ ଦକ୍ଷିଣ ନାସିକା ନିର୍ଗତ ଶ୍ୱାସାନଳ ଆପଣମାନଙ୍କୁ ରକ୍ଷା କରନ୍ତୁ । ଅନ୍ୟତ୍ର

"ଯେ କାର୍ଶ୍ୟଂ କୁସୁମାଭିରାମମଧବୋ, ଯେ ମ୍ଲାପିତୋରଃସ୍ରଜୋ
ଯେ ତାପାତୁରଲେନ ତଳ୍ପଫଣିନା ପୀତପ୍ରତାପୋଜ୍ଝିତାଃ
ତେ ରାଧାସ୍ମୃତିସାକ୍ଷିଣଃ କମଳୟାସାସୂୟମାକର୍ଣ୍ଣିତା
ଗାତାନ୍ତର୍ବିଥୋଃ ପ୍ରତପ୍ତତରଳାଃ ଶ୍ୱାସାଃ ହରେଃ ପାନ୍ତୁ ବଃ"

ଅର୍ଥାତ୍ ନାଭିକମଳର ମଧୁକୁ ଶୋଷଣ କରୁଥିବା, ହୃଦୟସ୍ଥ କୁସୁମ ହାରକୁ ମ୍ଳାନ କରୁଥିବା, ତଳ୍ପ ବା ଶଯ୍ୟା ରୂପେ ବ୍ୟବହୃତ ଅନନ୍ତ ନାଗ ଦ୍ୱାରା ପୀତ ହେଉଥିବା, ଈର୍ଷ୍ୟାନ୍ୱିତା ଲକ୍ଷ୍ମୀଙ୍କ ଶ୍ରୁତିପଥଗତ, ରାଧାଙ୍କ ବିରହାନଳରେ ଉତ୍ତପ୍ତ ଓ ପ୍ରଖର ଶ୍ରୀକୃଷ୍ଣଙ୍କ ଶ୍ୱାସପବନ ଆପଣମାନଙ୍କୁ ରକ୍ଷା କରନ୍ତୁ ।

---

(୧୦) 'ଧ୍ୱନ୍ୟାଲୋକଃ' ପଣ୍ଡିତ ଶ୍ରୀ କୃଷ୍ଣମଣି ମିଶ୍ର ଶର୍ମାଙ୍କ ଅନୁବାଦ ତୃତୀୟୋଦ୍ୟୋତ [illegible]
ପୃ [illegible]

## 'ନଳଚମ୍ପୂ' ଓ 'ଯଶସ୍ତିଲକଚମ୍ପୂ'ରେ ରାଧାଙ୍କ ପ୍ରୀତିର ଉଲ୍ଲେଖ—

ରାଷ୍ଟ୍ରକୂଟବଂଶୀୟ ସମ୍ରାଟ କୃଷ୍ଣଙ୍କ ଇନ୍ଦ୍ରଙ୍କର ସଭାକବି ତ୍ରିବିକ୍ରମ (୯୧୫ ଖ୍ରୀଷ୍ଟାବ୍ଦ) ସ୍ୱୀୟ **ନଳଚମ୍ପୂ**ରେ ନଳ-ଦମୟନ୍ତୀଙ୍କ ବର୍ଣ୍ଣନା ପ୍ରସଙ୍ଗରେ ଶ୍ରୀରାଧା ଓ କେଶୀମଥନ ଶ୍ରୀକୃଷ୍ଣଙ୍କ ମଧ୍ୟରେ ପ୍ରୀତିର ସୂଚନା ଦେଇଛନ୍ତି ।

"କେବଳମନବରତଶିକ୍ଷିତବୈଦଗ୍‌ଧ୍ୟକଳାପ ରାଧାମ୍ବିକା ଝପାପରା ପରିହୃତ୍ୟ ଗୁଣିନୋଽପ୍ୟନ୍ୟାନ୍ ପୁରୁଷେ ମାୟାବିନ କୃତକେଶୀବଧେ ଧୃତମନ୍ଦରାଗେ ରାଗଂ ବଧ୍ନାତି"

ଅର୍ଥାତ୍ ଅତ୍ୟନ୍ତ ବିଦଗ୍‌ଧା ରାଧା ଲଜ୍ଜା ତ୍ୟାଗକରି କେବଳ ମାୟାବୀ କେଶୀ ନିସୂଦନ, ମନ୍ଦରଧାରୀ, ଶ୍ରୀକୃଷ୍ଣ ରୂପକ ପୁରୁଷଙ୍କ ଠାରେ ବିଶେଷ ଅନୁରାଗବତୀ ହୋଇଛନ୍ତି ।

ଗୁଜୁରାଟରେ ଆବିର୍ଭୂତ ସୋମଦେବ ସୂରି ସ୍ୱୀୟ **ଯଶସ୍ତିଲକ ଚମ୍ପୂ**ରେ (୯୫୯ ଖ୍ରୀଷ୍ଟାବ୍ଦ) ଅମୃତମତି ନାମ୍ନୀ ନାୟିକାର ପରପୁରୁଷ ବର୍ଣ୍ଣନା ପ୍ରସଙ୍ଗରେ ରାଧାଙ୍କ ନାମୋଲ୍ଲେଖ କରିଛନ୍ତି । ଯଥା— "ରାଜା...... ତଥାହି ପୂର୍ବମପି କିଂ ନ ରେମେ ଗଙ୍ଗାସହ ମହେଶ୍ୱରେଣ, **ରାଧା ନାରାୟଣେନ,** ବୃହସ୍ପତି ପତ୍ନୀ ଦ୍ୱିଜରାଜେନ, ତାରାଚ ବାଳିନା"

ଅର୍ଥାତ୍ ପୂର୍ବକାଳରେ ଗଙ୍ଗା ମହେଶ୍ୱରଙ୍କ ସହିତ, ରାଧା ନାରାୟଣ (କୃଷ୍ଣ)ଙ୍କ ସହିତ, ବୃହସ୍ପତି ପତ୍ନୀ ଚନ୍ଦ୍ରଙ୍କ ସହିତ ଓ ତାରା ବାଳୀଙ୍କ ସହିତ କ'ଣ ରମଣ କରି ନ ଥିଲେ କି ?

## ଅଭିନବ ଗୁପ୍ତଙ୍କ ଦ୍ୱାରା ରାଧାରମଣଙ୍କ ପ୍ରେମବର୍ଣ୍ଣନା —

କାଶ୍ମୀରର ପ୍ରସିଦ୍ଧ କବି ଓ ଆଳଂକାରିକ ଅଭିନବ ଗୁପ୍ତ (୯୮୦— ୧୦୨୦ ଖ୍ରୀଷ୍ଟାବ୍ଦ) 'ଧ୍ୱନ୍ୟାଲୋକ'ର ପ୍ରସିଦ୍ଧ ଟୀକା ସ୍ୱୀୟ **ଧ୍ୱନ୍ୟାଲୋକଲୋଚନ**ରେ ଧ୍ୱନ୍ୟାଲୋକରେ ଉଦ୍ଧୃତ (ପୂର୍ବେ ଦିଆଯାଇଛି) ଦୁଇଟି ଶ୍ଳୋକର ବ୍ୟାଖ୍ୟା କରିବା ସଙ୍ଗେ ସଙ୍ଗେ ଉଦାହରଣ ଛଳରେ ରାଧାରମଣ ଶ୍ରୀକୃଷ୍ଣଙ୍କ ଅଖିଳତରୁଣୀ ଜନଙ୍କ ସହିତ ପ୍ରେମର ବର୍ଣ୍ଣନା କରିଛନ୍ତି । ଯଥା—

'ଯାବଦସ **ରାଧାରମଣସ୍ୟା**ଖିଳତରୁଣୀ ଜନକୃତାନୁରାଗଗରିମାସ୍ପଦତ୍ୱଂ
ନ ବିଦିତଂ ତାବଦର୍ଥାନ୍ତରସ୍ୟାପ୍ରଶଂସେଃ ସଲ୍ଲେଶମିତ୍ୟାହୁଃ ॥

**କୁନ୍ତକଙ୍କ ଦ୍ୱାରା ରାଧାଙ୍କ ଜଳକେଳିର ବର୍ଣ୍ଣନ—**

କାଶ୍ମୀର ଦେଶବାସୀ ଅନ୍ୟଜଣେ ଆଳଙ୍କାରିକ **କୁନ୍ତକ** (୯୫୦—୧୦୦୦ଖ୍ରୀଷ୍ଟାବ୍ଦ) ପ୍ରଣୀତ **ବକ୍ରୋକ୍ତିଜୀବିତମ୍** ଗ୍ରନ୍ଥରେ ମଧୁରିପୁ (ଶ୍ରୀକୃଷ୍ଣ)ଙ୍କ ସହିତ ରାଧାଙ୍କର କାଳିନ୍ଦୀରେ ଜଳକେଳି ବିଷୟ ଉଲ୍ଲେଖ କରିଛନ୍ତି । ଯଥା—

"ଯାତେ ଦ୍ୱାରବତୀଂ ତଦାମଧୁରିପୌ ତଦ୍ଦତ୍ତସଂପାଦନା
କାଳିନ୍ଦୀ-ଜଳ-କେଳି-ବଞ୍ଜୁଳ-ଲତା ମାଳମ୍ବ୍ୟ ସୋତ୍କଣ୍ଠୟା।
ତଦ୍ଗୀତଂ ଗୁରୁବାଷ୍ପଗଦ୍ଗଦଗଳତ୍ତାରସ୍ୱରଂ **ରାଧୟା**
ଯେନାନ୍ତର୍ଜଳଚାରିଭି ର୍ଜଳଚରୈରପ୍ୟୁତ୍କଣ୍ଠ **ମୁତ୍କୂଜିତମ୍**",

ଅର୍ଥାତ୍ ମଧୁରିପୁ କୃଷ୍ଣ ଦ୍ୱାରବତୀ ବା ଦ୍ୱାରକାପୁରକୁ ଚାଲିଯିବା ପରେ ତାଙ୍କର ଲୁଗାକୁ ଦେହରେ ଗୁଡ଼ାଇ ଏବଂ କାଳନ୍ଦୀ ଜଳକେଳିର ସାକ୍ଷୀ ସ୍ୱରୂପ ବଞ୍ଜୁଳ ଲତାକୁ ଆଲିଙ୍ଗନ କରି ଉତ୍କଣ୍ଠିତା ରାଧା ବାଷ୍ପଗଦ୍ଗଦ କଣ୍ଠରେ ବଡ଼ପାଟିରେ କାନ୍ଦିବାରୁ ଯମୁନାର ଜଳଚରମାନେ ମଧ୍ୟ ତାଙ୍କ ଦୁଃଖରେ ସମବେଦନା ପ୍ରକାଶ କରି କାନ୍ଦିପକାଇଥିଲେ ।

**ମାଳବରାଜ ମୁଞ୍ଜଙ୍କ ଲେଖରେ ଶ୍ରୀରାଧାକୃଷ୍ଣପ୍ରେମର ଉତ୍କର୍ଷ ପ୍ରକଟନ—**

ମାଳବର ପରମାର ବଂଶୀୟ ନରପତି **ବାକ୍ପତି ମୁଞ୍ଜଙ୍କ** ରାଜତ୍ୱରେ ୯୭୨, ୯୭୭ ଓ ୯୭୯ ଖ୍ରୀଷ୍ଟାବ୍ଦରେ ଖୋଦିତ ତନୋଟି ଶିଳାଲେଖର ମଙ୍ଗଳାଚରଣସ୍ଥ ପ୍ରଥମ ଶ୍ଳୋକରେ ଶ୍ରୀକଣ୍ଠ ବା ଶିବଙ୍କ ସ୍ତୁତିଗାନ କରାଯାଇଥିଲେ ମଧ୍ୟ ଦ୍ୱିତୀୟ ଶ୍ଳୋକରେ ଶ୍ରୀରାଧା-କୃଷ୍ଣ ପ୍ରେମର ଉତ୍କର୍ଷ ପ୍ରକଟିତ ହୋଇଅଛି । (୧୧)

"ଯ ଲକ୍ଷ୍ମୀବଦନେନ୍ଦୁନା ନ ସୁଖିତଂ, ଯନ୍ନାର୍ଦ୍ରିତମ୍ବାରଧେ-
ର୍ବାରା ଯନ୍ନନିଜେନ ନାଭିସରସୀପଦ୍ମେନ ଶାନ୍ତିଂଗତମ୍ ।
ଯଚ୍ଛେଷାହିଫଣାସହସ୍ରମଧୁରଶ୍ୱାସୈର୍ନଚାଶ୍ୱାସିତଂ,
ତଦ୍ରାଧାବିରହାତୁରଂ ମୁରରିପୋର୍ବେଲ୍ଲଦ୍ୱପୁଃ ପାତୁ ବଃ ॥

ଅର୍ଥାତ୍ ଲକ୍ଷ୍ମୀଙ୍କ ବଦନଚନ୍ଦ୍ର ଦର୍ଶନରେ ଯେ ସୁଖୀ ନୁହଁନ୍ତି, ସମୁଦ୍ରର ଅଗାଧ ବାରି ଦ୍ୱାରା ଯାହାଙ୍କ ତାପ ପ୍ରଶମିତ ନୁହେଁ, ସ୍ୱୀୟ ନାଭିଜାତ କମଳ ଯାହାଙ୍କ ପକ୍ଷେ ଶାନ୍ତିପ୍ରଦ ନୁହେଁ, ଶେଷସର୍ପର ସହସ୍ରଫଣାରୁ ନିର୍ଗତ ମଧୁର ଶ୍ୱାସାନିଳ ଦ୍ୱାରା ଯେ ଆଶ୍ୱାସିତ ନୁହଁନ୍ତି, ଏପରି ଯେ ମଧୁରିପୁ ବା ଶ୍ରୀକୃଷ୍ଣ ତାଙ୍କର ରାଧାବିରହାତୁର କଂପିତ ବପୁ ଆପଣମାନଙ୍କୁ ରକ୍ଷା କରୁ ।

(୧୧) (a) The Indian Antiquary, Vol. Vi, 1877, p 51.
(b) E Indica, Vol. XXII, pp 108 & 111.

## କବି ଧନିକଙ୍କ ଦ୍ୱାରା ରାଧାପ୍ରେମର ସୂଚନା —

ପ୍ରସିଦ୍ଧ ମୁଞ୍ଜଙ୍କ ସଭାମଣ୍ଡନ କରୁଥିବା କବି ଧନିକ (ଆ: ୧୦୦୦ ଖ୍ରୀଷ୍ଟାବ୍ଦ) ତାଙ୍କ ଭାଇଙ୍କ ଦ୍ୱାରା ରଚିତ 'ଦଶରୂପକ' ନାମକ ଅଳଙ୍କାରର **ଦଶରୂପାବଲୋକ** ନାମକ ଟୀକା ରଚନା କରିଥିଲେ । ଏଥିରେ 'ରୁଦ୍ର' ନାମକ ଅଳଙ୍କାରିକଙ୍କ ଦ୍ୱାରା ରଚିତ ନିମ୍ନୋକ୍ତ ଶ୍ଳୋକ ଉଦ୍ଧୃତ ହୋଇଅଛି ।

ଉତ୍ସ୍ୱପ୍ନାୟିତୋ ଯଥାରୁଦ୍ରସ୍ୟ
"ନର୍ମଗେନ ମୟାପି ସ୍ମରଭରଗଜାଲୀ ସମାଲିଙ୍ଗିତା
କେନାଲିକମିଦଂ ତବାଦ୍ୟକଥିତଂ **ରାଧେ** ମୁଧା ତାମ୍ୟସି ।
ଇତ୍ୟୁତ୍ସ୍ୱପ୍ନପରମ୍ପରାସୁ ଶୟନେ ଶ୍ରୁତ୍ୱା ବଚଃ ଶାର୍ଙ୍ଗିଣଃ
ସବ୍ୟାଜଂ ଶିଥିଳୀକୃତଃ କମଳୟା କଣ୍ଠଗ୍ରହଃ ପାତୁ ବଃ ॥"

ଅର୍ଥାତ୍ ଶ୍ରୀକୃଷ୍ଣ ଶୟନାବସ୍ଥାରେ ସ୍ୱପ୍ନରେ ଏପରି ପ୍ରଳାପ କରୁଛନ୍ତି "ହେ ରାଧେ ! ମୁଁ ତୁମ୍ଭ ସହିତ ପ୍ରଣୟ ପାଇଁ ବ୍ୟାକୁଳତା ଯୋଗୁଁ କନ୍ଦର୍ପ ରୂପକ ଜଳାଶୟରେ ବୁଡ଼ିଯାଉଥିବା ବେଳେ ତୁମ୍ଭେ ମିଥ୍ୟାକଥା କହି ମୋ ଉପରେ ଅଯଥା କୋପ କରୁଛ କାହିଁକି ?" ଏହି ପ୍ରଳାପ ବାକ୍ୟ ଶ୍ରବଣରେ ଶଯ୍ୟାଶାୟିନୀ ଲକ୍ଷ୍ମୀ କ୍ରୋଧରେ ଅଧୀର ହୋଇ ନାରାୟଣଙ୍କ କଣ୍ଠରୁ ଯେଉଁ ବାହୁପାଶ ଶିଥିଳୀକୃତ କରିଥିଲେ (ହାତ କାଢ଼ି ନେଲେ) ସେହି କଣ୍ଠପାଶ ତୁମ୍ଭମାନଙ୍କୁ ରକ୍ଷା କରୁ ।

ଏହି ଶ୍ଳୋକରେ କବି ରୁଦ୍ର ଅତି ଚମତ୍କାର ଭାବରେ ଶ୍ରୀରାଧାଙ୍କ ପ୍ରତି ଶ୍ରୀକୃଷ୍ଣଙ୍କ ଗଭୀର ପ୍ରୀତି ଏବଂ ସେଥିଯୋଗୁଁ ଲକ୍ଷ୍ମୀଙ୍କ କ୍ରୋଧ ଓ ଅସୂୟା ପ୍ରଦର୍ଶନ କରିଛନ୍ତି ।

## ପ୍ରସିଦ୍ଧ ଭୋଜରାଜଙ୍କ ଦ୍ୱାରା ଶ୍ରୀରାଧା-କୃଷ୍ଣପ୍ରେମ ବର୍ଣ୍ଣନା —

ମୁଞ୍ଜଙ୍କ ପରବର୍ତ୍ତୀ ପରମାର ବଂଶୀୟ ଭାରତ ପ୍ରସିଦ୍ଧ ସମ୍ରାଟ ଭୋଜ (୧୦୦୫-୧୦୫୫ ଖ୍ରୀଷ୍ଟାବ୍ଦ) ତାଙ୍କର **ସରସ୍ୱତୀକଣ୍ଠାଭରଣମ୍** ନାମକ ବିଖ୍ୟାତ ଅଳଙ୍କାର ଗ୍ରନ୍ଥରେ ଶ୍ରୀରାଧା-କୃଷ୍ଣଙ୍କ ପ୍ରେମ ସମ୍ବନ୍ଧରେ ସାତଟି ଶ୍ଳୋକ ଉଦାହରଣ ସ୍ୱରୂପ ପ୍ରଦାନ କରିଛନ୍ତି । (୧୨)

(୧) ରତାବଦ୍ୟାଧିରଜ୍ୟା ବିସରରରପବଦ୍ଧ୍ୟା ଜବାକ୍ଷ୍ମାଦକୋର
ରକା ପଞ୍ଚାଭଶୋଭା ନୟନନନ୍ଦନ ସ୍ୱା (ଯା)ଶ୍ୟାସ୍ତବ୍ୟମାରା ।

---

(୧୨) ନିର୍ଣ୍ଣୟ ସାଗର ପ୍ରେସ ଦ୍ୱାରା ପ୍ରକାଶିତ—

ରମାବ୍ୟସ୍ତୁର୍ନ୍ଣିରନ୍ଧା ଭୁଜ୍ଞନନନନ୍ଦଭୂଃ ଶ୍ରୀଃ କରକ୍ଷାରଧାରା,
ରାଧା ରକ୍ଷ୍ୟାନ୍ମୁ ମଦ୍ୟଂ ଶିବମମମବଶି ବ୍ୟାଳବନ୍ଧ୍ୟାବତାର ॥

(୨) **ଦ୍ୱିତୀୟ ଅଧ୍ୟାୟ ଉଦାହରଣ ୩୪୧**

"କୁଶଳଂ ରାଧେ ସୁଖିତୋଽସି କଂସ କଂସଃ କ୍ୱନୁ ସା ରାଧା
ଇତ୍ଥ ପାରାପ୍ରତିବଚନୈର୍ବିଲକ୍ଷହାସୋ ହରି ର୍ଜୟତି"

କୃଷ୍ଣ — ହେ ରାଧେ ତୁମ୍ଭର ସବୁ କୁଶଳତ ?

ରାଧା — ଆପଣ ସୁଖରେ ଅଛନ୍ତି ତ ?

କୃଷ୍ଣ — କାହାକୁ କହୁଛି ?

ରାଧା — ଶତ୍ରୁ (କଂସ) ଧ୍ୱଂସୀ କୃଷ୍ଣଙ୍କୁ

କୃଷ୍ଣ — ସେ ରାଧା କାହାନ୍ତି ?

ଏହିପରି ରାଧାକୃଷ୍ଣଙ୍କ ଉକ୍ତିପ୍ରତ୍ୟୁକ୍ତି ମଧ୍ୟରେ ହସ ହସ ମୁଖ ହରି (କୃଷ୍ଣ) ମଙ୍ଗଳ କରନ୍ତୁ ।

(୩) **ତୃତୀୟ ଅଧ୍ୟାୟ, ଉଦାହରଣ ୧୧୦** (ଭ୍ରାନ୍ତିଃ) ଯଥା

"କନକକଳଶସ୍ୱଚ୍ଛେ ରାଧାପୟୋଧରମଣ୍ଡଳେ
ନବଜଳଧରଶ୍ୟାମା ମାତ୍ମାଦ୍ୟୁତିଂ ପ୍ରତିବିମ୍ବିତାମ୍ ।
ଅସିତସିଚୟପ୍ରାନ୍ତଭ୍ରାନ୍ତ୍ୟା ମୁହୁର୍ମୁହୁରୁତ୍କ୍ଷିପନ୍
ଜୟତି ଜନିତବ୍ରୀଡ଼ାହାସଃ ପ୍ରିୟାହସିତୋ ହରିଃ"

ଅର୍ଥାତ୍ ନବଜଳଧର ଶ୍ୟାମ ଶ୍ରୀକୃଷ୍ଣ ରାଧାଙ୍କ କନକ (ସୁନା) କଳଶ ପରି ସ୍ୱଚ୍ଛ ସ୍ତନମଣ୍ଡଳରେ ପଡ଼ିଥିବା ସ୍ୱୀୟ ପ୍ରତିବିମ୍ବକୁ କଳାଶାଢ଼ୀର ପଣତ ବୋଲି ଭ୍ରମଧାରଣା କରି ବାରମ୍ବାର କାଢ଼ିନେବାକୁ ଚେଷ୍ଟା କରିବାରୁ ରାଧା ହସିପକାଇଲେ । ଶ୍ରୀକୃଷ୍ଣ ମଧ୍ୟ ନିଜର ଭ୍ରମ ବୁଝିପାରି ଲଜ୍ଜାରେ ହସିଦେଲେ ।

(୪) **ଚତୁର୍ଥ ଅଧ୍ୟାୟ ଉଦାହରଣ ୧୭୭**

"ଗେହାଦ୍ୟାତା ସରିତମୁଦକଂ ହାରିକା ନା ଜହ୍ନାସେ
ମତ୍ତ୍ୱାସ୍ୟାମୀତି ଶ୍ରୁୟସି ଯମୁନାତୀରବ୍ୟରୁଦ୍ଗୃହାଣି ।
ଗୋସଂଦାୟୀ ଶ୍ୱଶ୍ରାସି ବପିନାନ୍ୟେବ ଗୋବର୍ଦ୍ଧନାଦ୍ରେ-
ର୍ନିତ୍ୟଂ ରାଧେ ଦୃଶି ନପତିତା ଦେବକୀନନ୍ଦନସ୍ୟ"

ଅର୍ଥାତ୍ ହେ ରାଧେ, ତୁମ୍ଭେ ଯମୁନାକୁ ପାଣି ଆଣିବାକୁ ଗଲ । ତା ଛଡ଼ା ସେଠାରେ ଯାଇ ଯମୁନା କୂଳବର୍ତ୍ତୀ ଲତାକୁଞ୍ଜଗୁଡ଼ିକରେ ଆଶ୍ରୟ ନେଲ, ଗୋବର୍ଦ୍ଧନ ଗିରିସ୍ଥ ବନ ଗୁଡ଼ିକରେ ଗୋରକ୍ଷା କଲ । ତୁମ୍ଭେ କପରି ଦେବକୀ ନନ୍ଦନ ଶ୍ରୀକୃଷ୍ଣଙ୍କ ଦୃଷ୍ଟିରେ ପଡ଼ିଲ ନାହିଁ ?

## (୫) ପଞ୍ଚମ ଅଧ୍ୟାୟ ଉଦାହରଣ ୨୩୪—

"ଲୀଲାପ୍ରିତୋ ନିବାସନେ ରକ୍ଷତୁ ତ୍ୱାଂ ରାଧିକାୟାଃ ସ୍ତନସ୍ପୃଷ୍ଟେ
ହରେଃ ପ୍ରଥମ ସମାଗମ ସାଧ୍ୱସପ୍ରସରୈର୍ବେପନଶୀଲୋ ହସ୍ତଃ ॥"

ପ୍ରଥମ ସମାଗମ ସମୟରେ ଶ୍ରୀକୃଷ୍ଣଙ୍କ ଯେଉଁ ହସ୍ତ ରାଧାଙ୍କୁ ବିବସନା କରି ତାଙ୍କ କୁଚ ମର୍ଦ୍ଦନ କରିବା ସମୟରେ ଭୟରେ ଥରୁଥିଲା ତାହା ତୁମ୍ଭଙ୍କୁ ରକ୍ଷାକରୁ ।

## (୬) ଷଷ୍ଠ ଅଧ୍ୟାୟ ଉଦାହରଣ ୪୬୮ —

"ପ୍ରତ୍ୟଗ୍ରୋଜ୍ଝିତଗୋକୁଳସ୍ୟ ଶୟନାଦୁତ୍ସ୍ୱପ୍ନମୂଢ଼ସ୍ୟମେ
ସା ଗୋବର୍ଦ୍ଧନନାଦପିଞ୍ଛ ଚ ହବା ରାଧେତି ଖିଦ୍ୟାରତ ।
ରାହାବସ୍ଥତୋ ହବାଚ ବିଜନେ ଲକ୍ଷ୍ମୀତି ଗୃଭ୍ୟସତୋ
ରାଧାଂ ପ୍ରସ୍ମରତଃ ଶ୍ରିୟଂ ରମୟତଃ ସ୍ୱେଦୋ ହରେଃ ପାତୁବଃ" ॥

ଗୋକୁଳ ଶୟନକାଳୀନ ନିଦ୍ରାରେ ସହସା ସ୍ୱପ୍ନାବିଷ୍ଟ ହୋଇ ଖିନ୍ନ ରାଧାର ସ୍ମରଣରେ ବିନିଦ୍ରଭାବରେ ରାତ୍ରିଯାପନ କରୁଥିବା, ହବସରେ ଲକ୍ଷ୍ମୀ ଲକ୍ଷ୍ମୀ ବୋଲି ଅଭ୍ୟାସ କରୁଥିବା, ରାଧାଙ୍କୁ ମନରେ ସ୍ମରଣ କରି (ହୃଦୟରେ) ଲକ୍ଷ୍ମୀଙ୍କୁ ରମଣ କରୁଥିବା ରମାରମଣଙ୍କ ସ୍ୱେଦ ଜଳ ଆପଣମାନଙ୍କୁ ରକ୍ଷାକରୁ ।

## (୭) ସପ୍ତମ ଅଧ୍ୟାୟ ଉଦାହରଣ ୪୯୩—

"ହେଲୋଦସ୍ତମହୀଧରସ୍ୟ ତନୁତାମାଲୋକ୍ୟ ଦୋଷ୍ଣୋହରେ—
ହସ୍ତେନାଂସତଟେଽବଲମ୍ବ୍ୟ ଚରଣାବାରୋପ୍ୟ ତତ୍ପାଦୟୋଃ ।
ଶୈଳୋଦ୍ଧାରସହାୟତାଂ ଜିଗମିଷୋରୁତ୍କଣ୍ଠିତ ଗୋବର୍ଦ୍ଧନା-
ରାଧାୟାଃ ସ୍ମରତଂ ଜୟନ୍ତି ଗଗନେ ବନ୍ଧ୍ୟାକରଭ୍ରାନ୍ତୟଃ ।

ହରିଙ୍କ ବାହୁଦ୍ୱାରା ଅବଲୀଳାକ୍ରମେ ଉର୍ଦ୍ଧ୍ୱୋତ୍‌କ୍ଷିପ୍ତ ଗୋବର୍ଦ୍ଧନ ଗିରିର ଲଘୁତା ଦେଖି, ହରିଙ୍କ ସ୍କନ୍ଧଦେଶରେ ହସ୍ତ ସ୍ଥାପନ ପୂର୍ବକ ଓ ପାଦରେ ପାଦନ୍ୟାସ ଗୋବର୍ଦ୍ଧନ ଟେକିବାକୁ ଚେଷ୍ଟା କରିଥିଲେ ମଧ୍ୟ ତାହାର ଉଦ୍ଧାରଣରେ ସହାୟତା ଅଭିଳାଷିଣୀ ରାଧାଙ୍କ ନିଷ୍ଫଳ ହସ୍ତ ଚାଳନା ଜୟଲାଭ କରୁ ।

## କାଶ୍ମୀରବାସୀ ମହାକବି କ୍ଷେମେନ୍ଦ୍ରଙ୍କ ଦ୍ୱାରା ରାଧା ପ୍ରେମ ବର୍ଣ୍ଣନ—

କାଶ୍ମୀର ଦେଶୀୟ ମହାକବି **କ୍ଷେମେନ୍ଦ୍ର** ସ୍ୱକୃତ **'ଦଶାବତାର ଚରିତମ୍'** (୧୦୬୬ ଖ୍ରୀଷ୍ଟାବ୍ଦ)ରେ ଅଷ୍ଟମ ସର୍ଗରେ ଶ୍ରୀରାଧାକୃଷ୍ଣଙ୍କ ପ୍ରେମ ସମ୍ବନ୍ଧରେ ଗୁଟିଏ ଶ୍ଲୋକ ସନ୍ନିବେଶ କରିଛନ୍ତି । (୧୩) ଯଥା—

(୧) "ପ୍ରୀତୌ ବଭୂବ କୃଷ୍ଣସ୍ୟ ଶ୍ୟାମାନୟେ ଚୁମ୍ବିନିଃ
ଜାତିମଧୁକରସ୍ୟେବ ରାଧୈକାଧିକବଲ୍ଲଭା" (୮୩ ଶ୍ଲୋକ)

ମହୁମାଛିର ଫୁଲଗୁଡ଼ିକ ମଧ୍ୟରେ ଜାଈଫୁଲ ପ୍ରତି ଅଧିକ ଆଗ୍ରହ ଥିଲାପରି ଶ୍ୟାମା ବା ଗୋପୀମାନଙ୍କ ଚୁମ୍ବନକାରୀ ଶ୍ରୀକୃଷ୍ଣଙ୍କର ରାଧା ଅଧିକ ବଲ୍ଲଭା ବା ପ୍ରିୟ ଥିଲେ ।

(୨) "କଥଂ ରାଧାମନାମନ୍ତ୍ର୍ୟ ଗତୋଽହମିତି ମାଧବଃ
ଅରତିଂ ମ୍ଳାନତାଂ ଚିନ୍ତାଂ ଭ୍ରଜନ୍ ଭେଜେ ବିନିଃଶ୍ୱସନ୍" । (୧୬୦ ଶ୍ଲୋକ)

ଅର୍ଥାତ୍ ମାଧବ ରାଧାଙ୍କୁ ଆମନ୍ତ୍ରଣ ନ କରିବାରୁ ବିରହଜ୍ୱାଳାରେ ତାଙ୍କର ଅରତି, ମ୍ଳାନତା ଓ ଚିନ୍ତା ଜାତ ହୋଇଥିଲା ।

(୩) ଯଚ୍ଛନ୍ ଗୋକୁଳଗୂଢ଼କୁଞ୍ଜଗହନାନ୍ୟାଲୋକୟନ୍ କେଶବଃ
ସୋତ୍କଣ୍ଠଂ ବଳିତାନନୋ ବନଭୁବା ସଖ୍ୟେବ ରୁଦ୍ଧାଞ୍ଚଳଃ ।
ରାଧାୟା ନନନେତି ନୀବିହରଣେ ବୈକ୍ଳବ୍ୟଲକ୍ଷ୍ୟାକ୍ଷରାଃ
ସସ୍ମାର ସ୍ମରସାଧ୍ୱସାଦ୍ଭୁତତନୋ ରବୋକ୍ତିଶକ୍ତା ଗିରଃ" ॥
(୧୬୧ ଶ୍ଲୋକ)

ଗୋକୁଳର ଗହନ କୁଞ୍ଜବନରେ ଭ୍ରମଣ କରୁଥିବା ସମୟରେ ରାଧାଙ୍କୁ ନ ପାଇ ଦୁଃଖିତହୃଦୟ ଆବୃତବଦନ କେଶବ (କୃଷ୍ଣ) ମୁଗ୍ଧକୁଳା ରାଧାଙ୍କର ନୀବିମୋକ୍ଷଣ କାଳୀନ ନାନା ରୂପକ ବିକଳ ବଚନ ସ୍ମରଣ କରିଥିଲେ ।

**ରାଧାମାଧବ** ବିପ୍ରଯୋଗବିଗଳଲ୍ଲୀବୋପମାନୈ ମୂର୍ଦ୍ଧ-
ବାଷ୍ପୈଃ ପୀନପୟୋଧରସ୍ଥଗଳିତୈଃ ଫୁଲ୍ଲୋତ୍କଦମ୍ବାକୁଳା
ଅଚ୍ଛିନ୍ନ ଶ୍ୱସନେନ ବେଗଗତିନା ବ୍ୟାକୀର୍ଣ୍ଣମାଟୈଃ ପୁରଃ
ସନ୍ତାପପ୍ରତିବଦ୍ଧମୋହମଳିନା ପ୍ରାବୃଣ୍ନବୈବା ଭବତ୍ ॥ (୧୬୨ ଶ୍ଲୋକ)

---

(୧୩) ନର୍ଣ୍ଣୟ ସାଗର ପ୍ରେସରେ ମୁଦ୍ରିତ ପୃ ୮୨, ୯୦, ୯୧

ଉକ୍ତ ଶ୍ଳୋକରେ ମାଧବ ବିରହାତୁର ରାଧାଙ୍କୁ କବି ନବୀନ ଘନ ସହିତ ତୁଳନା କରିଛନ୍ତି । ମେଘାଗମ ହେଲେ ପର୍ବତ ଶିଖରରେ ମୂଷଳଧାରରେ ବାରିପାତ ହୋଇ ନିମ୍ନ ଭୂମିକୁ ବହିଆସେ, ଜଳକଣା ସମୃଦ୍ଧ ବାୟୁମଣ୍ଡଳକୁ ଆଚ୍ଛନ୍ନ କରେ । କଦମ୍ବଫୁଲ ଫୁଟେ । ବେଗ ଗତିରେ ପବନ ନିରବଚ୍ଛିନ୍ନ ଭାବରେ ବହେ । ସବୁଦିଗ ମେଘାଚ୍ଛନ୍ନ ହେବା ଫଳରେ ଅନ୍ଧାର ଘୋଟିଯାଏ ।

ରାଧାଙ୍କ ପକ୍ଷରେ—ମାଧବ ବିରହାତୁର ରାଧା ଅଶ୍ରୁମୋଚନ କରିବାରୁ ଲୋତକଧାରା ତାହାଙ୍କ ସ୍ତନମଣ୍ଡଳାଗ୍ରରେ ପତିତ ହୋଇ ତଳକୁ ଖସିଆସିଲା । ଶରୀରରେ ରୋମାଞ୍ଚ ଜାତ ହେଲା । ସେ କ୍ଷିପ୍ରଭାବରେ ଦୀର୍ଘଶ୍ୱାସ ତ୍ୟାଗ କରିବାକୁ ଲାଗିଲେ । ତାଙ୍କର ସମସ୍ତ ଆଶା ନୈରାଶ୍ୟ ରୂପକ ଅନ୍ଧକାରରେ ଆଚ୍ଛନ୍ନ ହେଲା ।

ମହାକବି କ୍ଷେମେନ୍ଦ୍ରଙ୍କ ରଚନାର ପ୍ରଭାବ ବିଶେଷତଃ ଶେଷ ଶ୍ଳୋକର ପ୍ରଭାବ ଉତ୍କଳୀୟ କବିରାଜ ଜୟଦେବଙ୍କ ଉପରେ ପଡ଼ିଥିବା ସମ୍ପୂର୍ଣ୍ଣ ସମ୍ଭବପର । ଶ୍ରୀ ଜୟଦେବଙ୍କ ପୂର୍ବବର୍ତ୍ତୀ ସଂସ୍କୃତ ସାହିତ୍ୟରେ ରାଧା-ମାଧବଙ୍କ ଏକତ୍ର ଉଲ୍ଲେଖ ଏହାହିଁ ସର୍ବପ୍ରଥମ ରୂପେ ମୋ ଗୋଚରକୁ ଆସିଛି ।

## 'ସଂଗୀତଚୂଡ଼ାମଣି'ର ମଙ୍ଗଳାଚରଣରେ ରାଧାସ୍ତୁତି —

ଏ'ତ ଗଲା ସୁଦୂର କାଶ୍ମୀରୀୟ ମହାକବିଙ୍କ କଳ୍ପନା । ତାଙ୍କର ପରବର୍ତ୍ତୀ ମହାରାଷ୍ଟ୍ର ଅନ୍ତର୍ଗତ କଲ୍ୟାଣୀର ଚାଲୁକ୍ୟ ବଂଶୀୟ ନରପତି ପ୍ରତାପ ଚକ୍ରବର୍ତ୍ତୀ **ଜଗଦେବମଲ୍ଲ** (୧୧୩୮—୧୧୫୦) ସ୍ୱୀୟ **ସଂଗୀତଚୂଡ଼ାମଣି** ନାମକ ଗ୍ରନ୍ଥର ମଙ୍ଗଳାଚରଣ ଶ୍ଳୋକରେ (ବିଷ୍ଣୁ) ଶ୍ରୀକୃଷ୍ଣ ଏକାଧାରରେ ରମା(ଲକ୍ଷ୍ମୀ)ଙ୍କ ପାଦପ୍ରଣାମପ୍ରିୟ, ଗୋପୀଚିତ୍ତ ବିନୋଦନକାରୀ ଓ ରାଧାପୀନୋପୟୋଧରଶ୍ରୟନରତ ରୂପେ ବର୍ଣ୍ଣିତ ହୋଇଛନ୍ତି । (୧୪)

ଈର୍ଷ୍ୟାରୋପକଣାହିତାଶୟରମାପାଦପ୍ରଣାମପ୍ରିୟୋ
ରାଧାପୀନପୟୋଧରାଶ୍ରୟନତଃପ୍ରୋଦ୍ଧର୍ବକ୍ଷସ୍ଥଳଃ,
ଗୋପୀଚିତ୍ତବିନୋଦନବ୍ୟତକରେ ଗୋପୀକୃତାମ୍ବାସ୍ୱୟଂ
ଦେବାନାମପି ଦେବତା ସ ଭବତାଂ ପୁଷ୍ଣାତୁ ବିଷ୍ଣୁ-ସୁଖଂ ।',

## ମହାକବି ଶ୍ରୀହର୍ଷଙ୍କ ଦ୍ୱାରା ରାଧାଙ୍କ ପ୍ରଣୟର ଉଲ୍ଲେଖ —

ଉତ୍କଳୀୟ ମହାକବି **ଶ୍ରୀହର୍ଷ** (ଆ ୧୧୪୦ ଖ୍ରୀଷ୍ଟାବ୍ଦ) ସ୍ୱୀୟ **ନୈଷଧୀୟ ଚରିତମ୍** ମହାକାବ୍ୟର ଏକବିଂଶତି ସର୍ଗର ୮୩ ସଂଖ୍ୟକ ଶ୍ଳୋକରେ

(୧୪) Indian Historical Quarterly, Vol XX, p. 87

ନଳରାଜାଙ୍କ ମୁଖରେ ଦଶାବତାର ସ୍ତୁତି ପ୍ରସଙ୍ଗରେ ରାଧାପ୍ରିୟ କୃଷ୍ଣଙ୍କ ଉଲ୍ଲେଖ କରିଛନ୍ତି ।

ପ୍ରାଣାବଳ୍ପ୍ରଣୟିରାଧ ! ନରାଧାପୂରଣେ ସୁଖିତା ସଦୃଶୀ ତେ
ଶ୍ରୀପ୍ରିୟସ୍ୟ ସଦୃଗେବ ଭବଶ୍ରୀବସ୍ତ୍ରମାନ୍ଧହୃଦେ ଧନ୍ତୁ ମଙ୍ଗଳମ୍ ॥

ଗୁଜୁରାଟର ପ୍ରସିଦ୍ଧ ଜୈନକବି ପଣ୍ଡିତ **ହେମଚନ୍ଦ୍ର** (୧୦୮୮—୧୧୭୨ ଖ୍ରୀଷ୍ଟାବ୍ଦ) ସ୍ୱକୃତ **କାବ୍ୟାନୁଶାସନମ୍**ରେ 'ବକ୍ରୋକ୍ତିଜୀବିତମ୍' ଓ 'ସରସ୍ୱତୀକଣ୍ଠାଭରଣମ୍'ରେ ଉଦ୍ଧୃତ 'ଯାତେ ଦ୍ୱାରବତୀ' ଓ 'କନକକଳଶସ୍ୱଚ୍ଛେ'—ଶ୍ଳୋକଦ୍ୱୟ ଉଲ୍ଲେଖ କରିଛନ୍ତି । ଏ ଦୁଇଟି ପୂର୍ବେ ଆଲୋଚିତ ହୋଇଥିବାରୁ ପୁନରୁକ୍ତି ଅନାବଶ୍ୟକ ।

ହେମଚନ୍ଦ୍ରଙ୍କ ଶିଷ୍ୟ ରାମଚନ୍ଦ୍ର (୧୧୦୦—୧୧୭୫) ଗୁଣଚନ୍ଦ୍ର ନାମକ ଅନ୍ୟ ଏକ ଲେଖକଙ୍କ ସାହାଯ୍ୟରେ ନାଟ୍ୟଶାସ୍ତ୍ର ସଂପର୍କରେ **ନାଟ୍ୟଦର୍ପଣ** ନାମକ ଗ୍ରନ୍ଥ ରଚନା କରିଥିଲେ । ଏଥିରେ ଭେଜ୍ଜଲ କବି ବିରଚିତ ରାଧାବିପ୍ରଲମ୍ଭ ନାମକ ନାଟକର ଉଲ୍ଲେଖ ଦେଖାଯାଏ । ଯଥା— "ଏବଂ ଅଙ୍ଗବୟେଣାପି । ଯଥା ଭେଜ୍ଜଲବିରଚିତେ **ରାଧାବିପ୍ରଲମ୍ଭେ** ରାସକାଙ୍କେ ପରିକରପରିନ୍ୟାସୟୋରୁପକ୍ଷେପେଣୈବ ଗତତ୍ୱାନ୍ନିତନ୍ନିବଦ୍ଧଃ" ଗ୍ରନ୍ଥର ନାମକରଣରୁ ସ୍ପଷ୍ଟ ଜଣାଯାଏ ଯେ, ଏହା ଶ୍ରୀରାଧା-କୃଷ୍ଣ ପ୍ରେମଲୀଳା ବିଷୟକ ଏକ ନାଟକ ।

## ପ୍ରସିଦ୍ଧ 'ଶ୍ରୀକୃଷ୍ଣକର୍ଣ୍ଣାମୃତମ୍'ରେ ରାଧାସ୍ତୁତି—

କବିରାଜ ଜୟଦେବଙ୍କ 'ଶ୍ରୀଗୀତଗୋବିନ୍ଦମ୍' ପରି ଦାକ୍ଷିଣାତ୍ୟର ପ୍ରସିଦ୍ଧ ଭକ୍ତକବି ଲୀଳାଶୁକ ବା ବିଲ୍ୱମଙ୍ଗଳ କୃତ **କୃଷ୍ଣକର୍ଣ୍ଣାମୃତମ୍** ଗ୍ରନ୍ଥ ସମଗ୍ର ଭାରତରେ ଲୋକପ୍ରିୟତା ଅର୍ଜନ କରିଥିଲା । ଏଥିରେ ଶ୍ରୀରାଧାକୃଷ୍ଣଙ୍କ ଯୁଗଳମୂର୍ତ୍ତି ଓ ଶ୍ରୀକୃଷ୍ଣଙ୍କ ମଧୁର ବଂଶୀବାଦନ ମହାତ୍ମ୍ୟର ଉଲ୍ଲେଖ ଦେଖାଯାଏ । ଯଥା—

"ତେଜସେଽସ୍ତୁ ନମୋ ଧେନୁପାଳନେ ଲୋକପାଳନେ
**ରାଧାପୟୋଧରୋତ୍ସଙ୍ଗଶାୟିନେ** ଶେଷଶାୟିନେ" । ୭୬

ଅର୍ଥାତ୍ ତେଜସ୍ୱରୂପ, ଧେନୁପାଳକ, ଲୋକପାଳକ, ରାଧାକୁଚମଣ୍ଡଳାଶ୍ରୟୀ, ଶେଷଶାୟୀ ଶ୍ରୀକୃଷ୍ଣଙ୍କୁ ନମସ୍କାର ।

—ଭକ୍ତକବି ଅନ୍ୟତ୍ର ଗାନ କରନ୍ତି—

"ଯାନିତଚ୍ଚରିତାମୃତାନି ରସନାଲେହ୍ୟାନି ଧନ୍ୟାତ୍ମନାଂ
ଯେ ବା ଶୈଶବଚାପଲବ୍ୟତିକରା ରାଧାବରୋଧନ୍ମୁଖାଃ ।
ଯେ ବା ଭାବିତବେଣୁଗୀତଗତୟୋ ଲୀଳାମୁଖାମ୍ଭୋରୁହେ
ଧାରାବାହିକୟା ବହନ୍ତୁ ହୃଦୟେ ତାନ୍ୟେବ ତାନ୍ୟେବ ମେ"

ଅର୍ଥାତ୍ ହେ ଶ୍ରୀକୃଷ୍ଣ ! ତୁମ୍ଭର ଯେଉଁ ସକଳ ଚରିତାମୃତ ଧନ୍ୟାତ୍ମା ବା ପୁଣ୍ୟାତ୍ମାମାନେ ନିତ୍ୟ ଗାନ କରୁଛନ୍ତି, ରାଧାଙ୍କୁ ନାନା ଭାବରେ ଅବରୋଧ କରିବାପାଇଁ ତୁମ୍ଭର ଯେଉଁ ସମସ୍ତ ଶୈଶବଗୃପଳ୍ପ ପ୍ରସୂତ ଚେଷ୍ଟା, ତୁମ୍ଭର ମୁଖପଦ୍ମ ବିନିସୃତ ମଧୁର ବଂଶୀବାଦନ ଧ୍ୱନି,ସେ ସକଳ ମୋ ହୃଦୟରେ ଧାରବାହିକ ଭାବରେ ସ୍ଥାନପାଉ ।

**ମହାକବି ପଣ୍ଡିତ ଗୋବର୍ଦ୍ଧନାଚାର୍ଯ୍ୟଙ୍କ ଦ୍ୱାରା ରାଧାପ୍ରେମର ଗୌରବ ଗାନ :—**

କବିରାଜ ଜୟଦେବଙ୍କ ଜ୍ୟେଷ୍ଠଭ୍ରାତା ସଦୃଶ ପ୍ରସିଦ୍ଧ ଉତ୍କଳୀୟ କବିପଣ୍ଡିତ ଗୋବର୍ଦ୍ଧନାଚାର୍ଯ୍ୟ ସ୍ୱୀୟ **ଆର୍ଯ୍ୟାସପ୍ତଶତୀ** (ପ୍ରାୟ ୧୧୭୦ ଖ୍ରୀଷ୍ଟାବ୍ଦ) କାବ୍ୟର ପାଞ୍ଚଟି ଶ୍ଳୋକରେ ଶ୍ରୀରାଧାଙ୍କ ପ୍ରେମର ଗୌରବ ଗାନ କରିଛନ୍ତି । (୧୫)

(୧) "ମଧୁମଥନମୌଳିମାଲେ ସଖି ତୁଲୟସି କିଂ ମୁଧା ରାଧାମ୍
ଯତ୍ତବ ପଦମଦସୀୟଂ ସୁରଭୟିତୁଂ ସୌରଭୋଦ୍ଭେଦଃ ॥
(୪୩୧ ଶ୍ଳୋକ)

ଶ୍ରୀକୃଷ୍ଣଙ୍କ ଶିରଭୂଷଣ ତୁଳସୀ (ବୃନ୍ଦାବତୀ) ରାଧାଙ୍କ ସମକକ୍ଷ ହୋଇ ପାରିବ ନାହିଁ । କାରଣ ଶ୍ରୀକୃଷ୍ଣ ଶ୍ରୀରାଧାଙ୍କ ପାଦରେ ପ୍ରଣାମ କଲାବେଳେ ତୁଳସୀ ରାଧାଙ୍କ ପାଦ ସ୍ପର୍ଶ କରେ ।

(୨) "ରାଜ୍ୟାଭିଷେକସଲିଳକ୍ଷାଳିତମୌଳେଃ କଥାସୁ କୃଷ୍ଣସ୍ୟ
ଗର୍ବଭରମନ୍ଥରାକ୍ଷୀ ପଶ୍ୟତି ପଦପଙ୍କଜଂ **ରାଧା**" । (୪୯୦ ଶ୍ଳୋକ)

ରାଧା ଶ୍ରୀକୃଷ୍ଣଙ୍କ ରାଜ୍ୟାଭିଷେକ ବାର୍ତ୍ତା ଶ୍ରବଣ କରି ଗର୍ବ ଓ ଆନନ୍ଦରେ ନିଜର ପଦ ପ୍ରତି ଦୃଷ୍ଟିପାତ କଲେ, କାରଣ ରାଜ୍ୟାଭିଷିକ୍ତ ଶ୍ରୀକୃଷ୍ଣ ତାଙ୍କ ପଦ-ପଙ୍କଜରେ ମସ୍ତକ ଲଗାଇ ଏହାର ଗୌରବ ବୃଦ୍ଧି କରିବେ ।

(୩) "ଲଜ୍ଜିତିତୁମଖିଳ ଗୋପୀନିଟିତମାନସଂ ମଧୁଦ୍ୱିଷଂ **ରାଧା**
ଅଙ୍କେଦ ପୃଚ୍ଛତି କଥାଂ ଶମ୍ଭୋର୍ଦୟିତାର୍ଦ୍ଧଭୁକ୍ତସ୍ୟ । (୫୧୦ ଶ୍ଳୋକ)

ଅର୍ଥାତ୍ କୃଷ୍ଣଙ୍କୁ ଅପମାନ ଦେବା ଉଦ୍ଦେଶ୍ୟରେ ରାଧା ଅଜ୍ଞତାର ଛଳନା କରି ପଚାରିଲେ, ଶିବ (ଅର୍ଦ୍ଧନାରୀଶ୍ୱର) ପାର୍ବତୀଙ୍କ ଅର୍ଦ୍ଧାଙ୍ଗ ଉପଭୋଗ କରି ଶାନ୍ତିଲାଭ

(୧୫) ନିର୍ଣ୍ଣୟ ସାଗର ପ୍ରେସ ଦ୍ୱାରା ମୁଦ୍ରିତ ଓ ପ୍ରକାଶିତ 'ଆର୍ଯ୍ୟାସପ୍ତଶତୀ' ପୃ ୯୫, ପୃ ୧୨୧, ପୃ ୧୭୧, ପୃ ୧୭୨, ପୃ ୮୯

କରିପାରୁଛନ୍ତି, ଅଥଚ ଅଖିଳ ଗୋପୀଜନଙ୍କ ସମ୍ଭୋଗ ପରେ ମଧ୍ୟ ତୁମ୍ଭର କାମାଗ୍ନି ପ୍ରଶମିତ ହେଉନାହିଁ ।

(୩) "ଲକ୍ଷ୍ମୀନିଶ୍ୱାସାନଳପିଣ୍ଡୀକୃତ ଦୁଗ୍ଧଜଳଧିସାରଭୁଜଃ
କ୍ଷୀରନିଧିତୀରସୁହୃଦୋ ଯଶାଂସି ଗାୟନ୍ତି ରାଧାୟାଃ" (୫୧୧ ଶ୍ଳୋକ)

ଅର୍ଥାତ୍ ରାଧାଙ୍କ ପ୍ରତି ଶ୍ରୀକୃଷ୍ଣଙ୍କ ଗଭୀର ଅନୁରାଗ ଥିବାରୁ କ୍ଷୀରାବ୍ଧି ତୀରର ବାସିନୀ ସୁହୃଦଗଣ ରାଧାଙ୍କ ଯଶଃ ଗାନ କରୁଛନ୍ତି । ଏଥିରେ କ୍ଷୀରାବ୍ଧିତନୟା ରମା ଈର୍ଷା ଜର୍ଜରିତା ହୋଇ ଉତପ୍ତ ନିଶ୍ୱାସାନଳ ତ୍ୟାଗ କରୁଛନ୍ତି ।

(୪) ବିଚରତି ପରିତ କୃଷ୍ଣେ ରାଧାୟାଂ ରାଗଚପଳନୟନାୟାମ୍
ଦଶଦିଗ୍‌ବେଧିବିଶିଖଂ ବିଶିଖଂ ବିଦଧାତି ବିଷମେଷୁଃ ॥ (୫୩୦ ଶ୍ଳୋକ)

ଅର୍ଥାତ୍ କୃଷ୍ଣ ତାଙ୍କର ଚତୁର୍ଦ୍ଦିଗରେ ଇତସ୍ତତଃ ବୁଲୁଥିବାରୁ ତାଙ୍କ ସହିତ ମିଳନ ପାଇଁ ଉତ୍କଣ୍ଠିତ ଚପଳନୟନା ରାଧା କନ୍ଦର୍ପର ଘନ ଘନ ଶରାଘାତରେ ପ୍ରପୀଡ଼ିତ ହୋଇଥିଲେ (ଗଭୀର ବିରହ ଦୁଃଖ ଅନୁଭବ କରିଥିଲେ) ।

ଶ୍ରୀ ଜୟଦେବଙ୍କ ଗୁରୁପ୍ରତିମ ଗୋବର୍ଦ୍ଧନାଚାର୍ଯ୍ୟଙ୍କ ଗ୍ରନ୍ଥରୁ ଉଦ୍ଧୃତ ଶ୍ଳୋକ ଗୁଡ଼ିକ ଆଲୋଚନା କଲେ ସ୍ପଷ୍ଟ ଜଣାଯାଏ ଯେ, ଶ୍ରୀ ଜୟଦେବଙ୍କ ବେଳକୁ ଶ୍ରୀରାଧାକୃଷ୍ଣ କେଳି କଥା ଉତ୍କଳ ଦେଶରେ ଲୋକପ୍ରିୟତା ଅର୍ଜନ କରିସାରିଥିଲା । ଗୋବର୍ଦ୍ଧନଙ୍କ ଦୁଇଟି ଶ୍ଳୋକରେ ଶ୍ରୀକୃଷ୍ଣ ଶ୍ରୀରାଧାଙ୍କ ପଦପଙ୍କଜରେ ପ୍ରଣାମ କରିବା ବିଷୟ କୌଶଳ କ୍ରମେ ସୂଚିତ ହୋଇଅଛି । ତାଙ୍କର ପଦାଙ୍କ ଅନୁସରଣ କରି ଭକ୍ତ ଜୟଦେବ ପରମାରାଧ୍ୟ ଶ୍ରୀକୃଷ୍ଣଙ୍କ ମୁଖରେ ଶୁଣାଇଥିଲେ 'ଦେହି ପଦପଲ୍ଲବମୁଦାରମ୍' ।

## ଆଚାର୍ଯ୍ୟ ନିମ୍ବାର୍କଙ୍କ ଦ୍ୱାରା ଶ୍ରୀ ରାଧାକୃଷ୍ଣ ଉପାସନା ପ୍ରଚଳନ : -

ଦ୍ୱାଦଶ ଶତାବ୍ଦୀରେ ଦାକ୍ଷିଣାତ୍ୟରେ ଶ୍ରୀବିଷ୍ଣୁ ସ୍ୱାମୀ, ଶ୍ରୀ ନିମ୍ବାର୍କାଚାର୍ଯ୍ୟ, ଶ୍ରୀ ମାଧ୍ୱାଚାର୍ଯ୍ୟ ଓ ଶ୍ରୀ ରାମାନୁଜାଚାର୍ଯ୍ୟ ନାମକ ଚାରିଜଣ ପ୍ରସିଦ୍ଧ ବୈଷ୍ଣବ ସଂପ୍ରଦାୟ ପ୍ରବର୍ତ୍ତକଙ୍କ ଆବିର୍ଭାବ ଓ ପ୍ରଚାର ଫଳରେ ଧର୍ମ ଜଗତରେ ଏକ ବିପ୍ଳବ ଘଟିଥିଲା । ଏହି ବିପ୍ଳବର ଏକ ପ୍ରଧାନ କେନ୍ଦ୍ର ଥିଲା ଶ୍ରୀ ପୁରୁଷୋତ୍ତମ କ୍ଷେତ୍ର ବା ଶ୍ରୀକ୍ଷେତ୍ର । ସେଠାରେ ପଣ୍ଡିତ ମଣ୍ଡଳୀ ଦ୍ୱାରା ନବ ପ୍ରବର୍ତ୍ତିତ ଧର୍ମମତ ଗୃହୀତ ବା ସମର୍ଥିତ ହେଲେ ତାହା ସମଗ୍ର ଭାରତରେ ପ୍ରସିଦ୍ଧି ଲାଭ କରୁଥିଲା । ତେଣୁ ପରିବ୍ରାଜକାଚାର୍ଯ୍ୟ ଶ୍ରୀ ଶଙ୍କରାଚାର୍ଯ୍ୟଙ୍କ ପଦାଙ୍କ ଅନୁସରଣ କରି ଏହି ଚାରିଜଣ ଧର୍ମମତ ପ୍ରଚାରକ ଶ୍ରୀକ୍ଷେତ୍ରରେ ଅବସ୍ଥାନ ପୂର୍ବକ ସେଠାରେ ଉତ୍କଳାଧୀଶଙ୍କ ପୃଷ୍ଠପୋଷକତାରେ ସ୍ୱ ସ୍ୱ ସମ୍ପ୍ରଦାୟର ମଠ ପ୍ରତିଷ୍ଠା କରିଥିଲେ ।

ଏହି ଚାରିଗୋଟି ସଂପ୍ରଦାୟ ପ୍ରବର୍ତ୍ତକଙ୍କ ମଧ୍ୟରେ ଆଚାର୍ଯ୍ୟ ନିମ୍ବାର୍କ ଶ୍ରୀରାଧାକୃଷ୍ଣ ଉପାସନାକୁ ସମର୍ଥନ କରିଥିବା ତତ୍‌କୃତ **ଦଶଶ୍ଳୋକୀ**ର ପଞ୍ଚମ ଶ୍ଲୋକରେ ପ୍ରତିପାଦିତ ହୋଇଛି । ଯଥା—

"ଅଙ୍ଗେ ତୁ ବାମେ **ବୃଷଭାନୁଜାଂ** ମୁଦା
ବିରାଜମାନା ମନୁରୂପସୌଭଗାମ୍
ସଖୀସହସ୍ରୈଃ ପରିସେବିତାଂ ସଦା
ସ୍ମରେମ ଦେବୀଂ ସକଳେଷ୍ଟକାମଦାମ୍" । (୧୭)

ଅର୍ଥାତ୍ ଯେଉଁ ବୃଷଭାନୁ ନନ୍ଦିନୀ ରାଧା ଲକ୍ଷ୍ମୀଙ୍କ ଅନୁରୂପ ସୌଭାଗ୍ୟବତୀ ରୂପେ ଶ୍ରୀକୃଷ୍ଣଙ୍କ ବାମଅଙ୍ଗରେ ବିରାଜମାନା, ଯେ ସହସ୍ର ସଖୀଙ୍କ ଦ୍ୱାରା ସର୍ବଦା ପରିସେବିତା, ଯେ ସକଳ ମଙ୍ଗଳ ଓ ଅଭୀଷ୍ଟ ପ୍ରଦାୟିନୀ, ସେ ସର୍ବଦା ସ୍ମରଣୀୟା ବା ଆରାଧ୍ୟା । ଦାକ୍ଷିଣାତ୍ୟବାସୀ ଚାରିଜଣ ବୈଷ୍ଣବାଚାର୍ଯ୍ୟଙ୍କ ମଧ୍ୟରେ ନିମ୍ବାର୍କ ପ୍ରଥମେ ନିର୍ଦ୍ଦିଷ୍ଟ ଭାବରେ ଶ୍ରୀରାଧାକୃଷ୍ଣ ପୂଜାକୁ ସମର୍ଥନ ଓ ପ୍ରଚଳନ କରିଥିଲେ । ତେଣୁ ଶ୍ରୀ ନିମ୍ବାର୍କଙ୍କ ମତରେ ଦୀକ୍ଷିତ ଭକ୍ତକବି ଶ୍ରୀ ଜୟଦେବ ସ୍ୱ ଅମରକୃତି ଶ୍ରୀ ଗୀତଗୋବିନ୍ଦରେ ଶ୍ରୀରାଧାକୃଷ୍ଣ ଉପାସନାର ମହତ୍ତ୍ୱ ଓ ଗୌରବ ଅତି ପ୍ରାଣସ୍ପର୍ଶୀ ଭାବରେ ବର୍ଣ୍ଣନା କରିଥିଲେ ।

ଭାରତର ବିଭିନ୍ନ ପ୍ରାନ୍ତବାସୀ ବିଶିଷ୍ଟ କବିପଣ୍ଡିତମାନଙ୍କ ଦ୍ୱାରା ରଚିତ ବା ସଂଗୃହୀତ ଶ୍ଳୋକାବଳି ଓ ବିଭିନ୍ନ ଗଦ୍ୟାଂଶ ଦ୍ୱାରା ସ୍ପଷ୍ଟ ପ୍ରମାଣିତ ହୁଏ ଯେ, ଭକ୍ତକବି ଜୟଦେବଙ୍କ ଅଭ୍ୟୁଦୟର ବହୁ ପୂର୍ବରୁ, ଅନ୍ତତଃ ଖ୍ରୀଷ୍ଟୀୟ ଦ୍ୱିତୀୟ ଶତାବ୍ଦୀରେ ଆବିର୍ଭୂତ ମହାକବି ହାଲଙ୍କ ସମୟରୁ ଗୋପବଧୂ ପରିବେଷ୍ଟିତ ଯଶୋଦା ନନ୍ଦନ ଶ୍ରୀକୃଷ୍ଣଙ୍କର ଗୋପୀଗିରୋମଣି, ଅଧିକ ପ୍ରାଣବଲ୍ଲଭା ଶ୍ରୀରାଧାଙ୍କ ସହିତ କାଳିନ୍ଦୀ ପୁଳିନସ୍ଥ ନିଜନ କୁଞ୍ଜ ଗୁଡ଼ିକରେ ରଚିତ ରାସକେଳି ପ୍ରସିଦ୍ଧି ଲାଭ କରିଥିଲା ।

ତେଣୁ ଢାକା ବିଶ୍ୱବିଦ୍ୟାଳୟ ଦ୍ୱାରା ପ୍ରାମାଣ୍ୟ ଗ୍ରନ୍ଥରୂପେ ଇଂରାଜୀ ଭାଷାରେ ପ୍ରକାଶିତ 'ବଙ୍ଗଲାର ଇତିହାସ'ରେ ଡକ୍ଟର ଶ୍ରୀ ପ୍ରବୋଧଚନ୍ଦ୍ର ବାଗ୍‌ଚି ଶ୍ରୀରାଧା ଉପାସନାର ଉତ୍ପତ୍ତି ଓ ବ୍ୟାପ୍ତି ସଂପର୍କରେ ଆଲୋଚନା ପ୍ରସଙ୍ଗରେ ଯେଉଁ ମତ ପ୍ରଚାର କରିଛନ୍ତି ତାର ଅସାରତା ଏଠାରେ ବିଚାରଣୀୟ । ଡକ୍ଟର ବାଗ୍‌ଚି ଲେଖିଛନ୍ତି,

---

(୧୭) 'ଶ୍ରୀ ନିମ୍ବାଦିତ୍ୟ ଦଶଶ୍ଳୋକୀ'
—ନିର୍ଣ୍ଣୟ ସାଗର ମୁଦ୍ରଣାଳୟ ଦ୍ୱାରା ପ୍ରକାଶିତ
ଶ୍ରୀହରି ବ୍ୟାସଦେବ ପ୍ରଣୀତ ସିଦ୍ଧାନ୍ତ କୁସୁମାଞ୍ଜଳି ଭାଷ୍ୟ ସଂବଳିତ, ପୃ ୨୧

"Radha was probably a Bengali innovation made shortly before the time of Jayadeva and represented only a Vaishnavite phase of growing Sāktism" (୧୭)

ଅର୍ଥାତ୍ ଶ୍ରୀ ଜୟଦେବଙ୍କ ଅଳ୍ପକାଳ ପୂର୍ବରୁ ଶ୍ରୀରାଧା ଉପାସନାର ବହୁଳ ପ୍ରଚଳନ ବଙ୍ଗାଳୀମାନଙ୍କ 'ପ୍ରାଚୀନ ଭାରତର ଧର୍ମ ଇତିହାସ'କୁ ଏକ ନୂତନ ଅବଦାନ ଏବଂ ଏହା କ୍ରମବର୍ଦ୍ଧମାନ ଶାକ୍ତ ମତ ସହ ଲୋକପ୍ରିୟ ବୈଷ୍ଣବ ମତର ସମନ୍ୱୟ ସ୍ଥାପନର ପରି-ପ୍ରକାଶ ମାତ୍ର ।

କିନ୍ତୁ ପୂର୍ବ ପ୍ରଦତ୍ତ ଉଦ୍ଧୃତି ଗୁଡ଼ିକରୁ ଅକାଟ୍ୟ ଭାବରେ ପ୍ରମାଣିତ ହେଉ-ଅଛି ଯେ, ଶ୍ରୀ ଜୟଦେବଙ୍କ ପୂର୍ବରୁ ଭାରତର ଅନ୍ୟାନ୍ୟ ପ୍ରାନ୍ତରେ ଲିଖିତ ଗ୍ରନ୍ଥ ଓ ଅଭିଲେଖ ଗୁଡ଼ିକରେ ରାଧାଙ୍କ ଉଲ୍ଲେଖ ମିଳୁଥିଲେ ମଧ୍ୟ ବଙ୍ଗଦେଶରେ ଲିଖିତ ଶ୍ରୀ ଜୟଦେବଙ୍କ ପୂର୍ବବର୍ତ୍ତୀ କୌଣସି ଗ୍ରନ୍ଥ ବା ଲେଖରେ ରାଧାଙ୍କ ନାମ ପର୍ଯ୍ୟନ୍ତ ଅଦ୍ୟାବଧି ମିଳିନାହିଁ । ତେଣୁ ଶ୍ରୀରାଧା ଉପାସନାର ପ୍ରଚଳନ ସମ୍ବନ୍ଧରେ ଡକ୍ଟର ବାଗ୍‌ଚିଙ୍କ ମତ କୌଣସି ପ୍ରମାଣ ଅଭାବରୁ ଭ୍ରାନ୍ତ ଓ ପ୍ରାଦେଶିକତା ଦୋଷଦୁଷ୍ଟ ରୂପେ ବର୍ଜନୀୟ ।

## ଶ୍ରୀରମା ଓ ଶ୍ରୀରାଧା —

କ୍ଷୀରାବ୍ଧିତନୟା ରମାସେବିତ କ୍ଷୀରୋଦାର୍ଣ୍ଣବଶାୟୀ ନାରାୟଣ ଶ୍ରୀକୃଷ୍ଣ ରୂପରେ ଶ୍ରୀରମାରମଣତ୍ୱ ପରିତ୍ୟାଗ କରି ଅତିଶୟ ଆଗ୍ରହ ଓ ଅନୁରାଗ ସହକାରେ ଶ୍ରୀରାଧାରମଣତ୍ୱ ବରଣ କରିବାରୁ ଶ୍ରୀରମା (ଲକ୍ଷ୍ମୀ) ଶ୍ରୀରାଧାଙ୍କ ପ୍ରତି ଈର୍ଷ୍ୟାପରାୟଣା ଓ ଅତ୍ୟନ୍ତ ବ୍ୟଥିତା ହୋଇଥିବା ପୂର୍ବରୁ ଉଦ୍ଧୃତ ବିଷ୍ଣୁଶର୍ମାଙ୍କ 'ପଞ୍ଚତନ୍ତ୍ର'ର ଅନୁଚ୍ଛେଦ, ମୁଞ୍ଜଙ୍କ ଅଭିଲେଖର ମଙ୍ଗଳାଚରଣ, ରାଜଶେଖରଙ୍କ କାବ୍ୟମୀମାଂସାର ବିଶିଷ୍ଟ ଉଦା-ହରଣ ଧନିକଙ୍କ 'ଦଶରୂପାବଲୋକ'ରେ ପ୍ରଦତ୍ତ ଶ୍ଳୋକ,ଭୋଜଙ୍କ 'ସରସ୍ୱତୀ କଣ୍ଠାଭରଣ'ର 'ରାଧାଂ ପ୍ରସୁରତଃ' ଶ୍ଳୋକ' ଏବଂ ଗୋବର୍ଦ୍ଧନ ଆଚାର୍ଯ୍ୟକୃତ 'ଆର୍ଯ୍ୟାସପ୍ତଶତୀ'ର 'ଲକ୍ଷ୍ମୀ-ଶ୍ୱାସାନଳ' ଶ୍ଳୋକ ଦ୍ୱାରା ପ୍ରତିପାଦିତ ହୋଇଅଛି ।

କିନ୍ତୁ ବହୁପୂର୍ବରୁ ଉତ୍କଳରେ ଲକ୍ଷ୍ମୀ-ନାରାୟଣ ପୂଜା ସୁପ୍ରତିଷ୍ଠିତ ଥିବାରୁ ଏବଂ ତାଙ୍କର ପ୍ରଧାନ ଆରାଧ୍ୟ ଦେବତା ଶ୍ରୀ ଜଗଦୀଶ (ଜଗନ୍ନାଥ)ଙ୍କ ମନ୍ଦିରରେ ଲକ୍ଷ୍ମୀ-ଠାକୁରାଣୀଙ୍କ ବିଶେଷ ପ୍ରାଧାନ୍ୟ ଓ କର୍ତ୍ତ୍ରୀତ୍ୱ ପ୍ରତିଷ୍ଠା ଯୋଗୁଁ ସ୍ୱ କୃତ 'ଶ୍ରୀଗୀତ-

(୧୭) 'History of Bengal' published by the Dacca University, Vol. I, p. 404.

ଗୋବିନ୍ଦ'ରେ 'ଶ୍ରୀବାସୁଦେବ-ରତି-କେଳି-କଥା' ବର୍ଣ୍ଣନା ଶ୍ରୀ ଜୟଦେବଙ୍କ ପ୍ରଧାନ ଲକ୍ଷ୍ୟ ଥିଲେମଧ୍ୟ ଗ୍ରନ୍ଥ ଆଦ୍ୟରେ ସେ ଦଶାକୃତିକୃତ' ଜଗଦୀଶ (ଶ୍ରୀକୃଷ୍ଣ)ଙ୍କ ସ୍ତୁତିଗାନ ପରେ ନାରାୟଣରୂପୀ ଶ୍ରୀକୃଷ୍ଣଙ୍କୁ 'ଶ୍ରିତ କମଳା-କୁଚ-ମଣ୍ଡଳ, ଧୃତକୁଣ୍ଡଳ, କଳିତ-ଲଳିତ-ବନମାଳ' ବା ଶ୍ରୀରମାରମଣ ଭାବରେ ଭକ୍ତିଉଦ୍‌ଗତ ଚିତ୍ତରେ ପ୍ରାର୍ଥନା କରିଛନ୍ତି ।

ଦ୍ୱିତୀୟ ଗୀତ ଶେଷରେ କ୍ଷୀରାବ୍ଧି ମନ୍ଥନ ସମୟରେ ମନ୍ଦର ପର୍ବତକୁ ଧାରଣ କରିଥିବା ଏବଂ ସମୁଦ୍ର ମନ୍ଥନରୁ ଆବିର୍ଭୂତା ଶ୍ରୀ ବା ଲକ୍ଷ୍ମୀଙ୍କ ମୁଖଚନ୍ଦ୍ରକୁ ଚକୋର ସଦୃଶ ସଲାଳସ ଦୃଷ୍ଟିପାତ କରୁଥିବା ନାରାୟଣ (ଶ୍ରୀକୃଷ୍ଣ)ଙ୍କୁ ଲକ୍ଷ୍ୟକରି ଭକ୍ତକବି ତନ୍ମୟ ଭାବରେ ଗାଇଛନ୍ତି—

"ଅଭିନବଜଳଧରସୁନ୍ଦର, ଧୃତମନ୍ଦର,
ଶ୍ରୀମୁଖଚନ୍ଦ୍ରଚକୋର
ଜୟ ଜୟ ଦେବ ହରେ"

ଭକ୍ତକବି ଶ୍ରୀ ଜୟଦେବ 'ଉଜ୍ଜ୍ୱଳ ମଙ୍ଗଳଗୀତି' ଗାନ କଲା ପରେ ଶ୍ରୀରାଧାକୃଷ୍ଣ ପ୍ରେମ-ଲୀଳାର ଉପକ୍ରମ ସ୍ୱରୂପ ପ୍ରବଳ ମଦନ ବେଦନାରେ ଚିନ୍ତାକୁଳା ଓ କାତରା ଶ୍ରୀରାଧା-ଙ୍କର ବୃନ୍ଦାବନର ନିଭୃତ କୁଞ୍ଜରେ ଶ୍ରୀକୃଷ୍ଣାନୁସରଣ ବର୍ଣ୍ଣନା କରିବା ପୂର୍ବରୁ ପୁନର୍ବାର ଲକ୍ଷ୍ମୀନାରାୟଣଙ୍କ ଆଶୀର୍ବାଦ ଭିକ୍ଷା କରିଛନ୍ତି । ଯଥା—

'ପଦ୍ମାପୟୋଧରତଟୀପରିରମ୍ଭଲଗ୍ନ-
କାଶ୍ମୀର ମୁଦ୍ରିତମୁରୋ ମଧୁସୂଦନସ୍ୟ ।
ବ୍ୟକ୍ତାନୁରାଗମିବ ଖେଳଦନଙ୍ଗଖେଦ-
ସ୍ୱେଦାମ୍ବୁପୂରମନୁପୂରୟତୁ ପ୍ରିୟଂବଃ" ॥ ୨୬

ଅର୍ଥାତ୍ ପ୍ରଗାଢ ଆଲିଙ୍ଗନ ଯୋଗୁଁ ପଦ୍ମା (ଲକ୍ଷ୍ମୀ)ଙ୍କ ସ୍ତନତଟରେ କୁଙ୍କୁମ (କାଶ୍ମୀର) ଲାଗି ଯାହାର ବକ୍ଷଦେଶ ବର୍ଣ୍ଣଶବଳରୂପେ ଚର୍ଚ୍ଚିତ ହୋଇଅଛି ଓ ଏହିରୂପ କୁଙ୍କୁମ ଚିହ୍ନ ଦ୍ୱାରା ଯାହାର ଅନ୍ତରର ଅନୁରାଗ ସତେଯେପରି ବାହାରେ ପ୍ରକାଶ ପାଇଅଛି, ସେହି ମଧୁସୂଦନଙ୍କ ମଦନ ସନ୍ତାପ ଜନିତ ସ୍ୱେଦଧାରା ଆପଣମାନଙ୍କ ଆନନ୍ଦ ବର୍ଦ୍ଧନ କରୁ ।

ଗ୍ରନ୍ଥର ଉପଜୀବ୍ୟ ବିଷୟ 'ରାଧାମୁରାରି ରମଣୀୟ ରହସ୍ୟ ଲୀଳା'ର ପରି-ବେଷଣ ପୂର୍ବରୁ ଦେଶପ୍ରଚଳିତ ଧର୍ମପରଂପରା ପ୍ରତି ଯଥୋଚିତ ସମ୍ମାନ ପ୍ରଦର୍ଶନ ଦ୍ୱାରା ଭକ୍ତକବି ଜୟଦେବ ନିଜର ମହତ୍ତ୍ୱ ଓ ମହାନୁଭବତ୍ତ୍ୱ ପ୍ରତିପାଦନ କରିଛନ୍ତି ।



# ସପ୍ତମ ଅଧ୍ୟାୟ

## ଓଡ଼ିଶାର ସାହିତ୍ୟ ଓ ଶିଳ୍ପରେ ଶ୍ରୀଗୀତଗୋବିନ୍ଦର ପ୍ରଭାବ

ଗତ ଚାଳିଶ ବର୍ଷ ହେଲା ଓଡ଼ିଶା ଓ ବିଚ୍ଛିନ୍ନ ଓଡ଼ିଆଭାଷୀ ଅଞ୍ଚଳରୁ ରାଜ୍ୟ ସଂଗ୍ରହାଳୟର ପୋଥିଭଣ୍ଡାର ପାଇଁ ପୋଥି ସଂଗ୍ରହ କାର୍ଯ୍ୟରେ ନାନାଭାବରେ ସମ୍ପୃକ୍ତ ରହି ଯେଉଁ ଅଭିଜ୍ଞତା ଅର୍ଜନ କରିଛି ତାହାକୁ ଭିତ୍ତିକରି ଦୃଢଭାବରେ କୁହାଯାଇ-ପାରେ ଯେ, ସମଗ୍ର ଓଡ଼ିଆଭାଷୀ ଭୂଖଣ୍ଡରେ ଭକ୍ତକବି ଜଗନ୍ନାଥ ଦାସଙ୍କ ଭାଗବତ ତୁଲ୍ୟ ସନ୍ଥଶିରୋମଣି ଶ୍ରୀ ଜୟଦେବଙ୍କ ଶ୍ରୀଗୀତଗୋବିନ୍ଦ ଅତ୍ୟଧିକ ଲୋକପ୍ରିୟତା ଅର୍ଜନ କରିଥିଲା । ତେଣୁ ପୁରାତନ, ଜରାଜୀର୍ଣ୍ଣ ମଠ, ମନ୍ଦିର ଓ ଭଜନଘର ଏବଂ ଗ୍ରାମର ମିଳନ ପୀଠ ଭାଗବତ ଟୁଙ୍ଗୀ ଠାରୁ ଆରମ୍ଭ କରି ସଂଭ୍ରାନ୍ତ ବ୍ରାହ୍ମଣ, ଖଣ୍ଡାୟତ, କରଣ ପରିବାରମାନଙ୍କ ଘରେ ପୁରୁଷାନୁକ୍ରମେ ସାଇତା ହୋଇ ରଖାଯାଇଥିବା ପୋଥିଗାଦି ମନ୍ଥନ ପରୀକ୍ଷା କଲେ ଜଗନ୍ନାଥ ଦାସଙ୍କ ଭାଗବତ ପୋଥି ସାଙ୍ଗକୁ ଶ୍ରୀଗୀତଗୋବିନ୍ଦର ଖଣ୍ଡିଏ ବା ଦୁଇଖଣ୍ଡି ପୋଥି ନିଶ୍ଚୟ ହସ୍ତଗତ ହୋଇଥାଏ । ସ୍ଥାନେ ସ୍ଥାନେ ପୂର୍ଣ୍ଣ ଗୀତ-ଗୋବିନ୍ଦ ପୋଥି ନ ମିଳିଲେ ମଧ୍ୟ ଏହାର ଅତ୍ୟନ୍ତ ଲୋକପ୍ରିୟ 'ଦଶାବତାର ସ୍ତୁତି' ଲେଖାହୋଇଥିବା ଖଣ୍ଡିଏ ସଚିତ୍ର ବା ଚିତ୍ରହୀନ ଖେଦା ପୋଥି ଗାଦିରୁ ମିଳିବାର ଯଥେଷ୍ଟ ସମ୍ଭାବନା ଥାଏ ।

ପୂର୍ବକାଳର ମଠ, ମନ୍ଦିର, ମଣ୍ଡପ, ଭଜନଘର ଓ ଅଭିଜାତଶ୍ରେଣୀର ବାସଗୃହର କାନ୍ଥ ଦେହରେ ବିଭିନ୍ନ ରଙ୍ଗରେ ଦଶାବତାର ଚିତ୍ର ଅଙ୍କନ କରିବା ଓଡ଼ିଶୀ ଚିତ୍ରକଳାର ଏକ ମହନୀୟ ପରମ୍ପରା ଥିଲା । ଏ ସଂପର୍କରେ ସାରଳା ସାହିତ୍ୟ ମନ୍ଥନ କରିଥିବା ଐତିହାସିକ ଡକ୍ଟର କୃଷ୍ଣଚନ୍ଦ୍ର ପାଣିଗ୍ରାହୀଙ୍କ ସୁଚିନ୍ତିତ ମତ ଏଠାରେ ଉଲ୍ଲେଖଯୋଗ୍ୟ । ଯଥା—

"ଗୀତଗୋବିନ୍ଦ ମାଧ୍ୟମରେ ଦଶାବତାର ଓଡ଼ିଶାରେ ବହୁଳ ଭାବରେ ପ୍ରଚଳିତ ହୋଇପାରିଥିଲା । ଓଡ଼ିଶାର ଚିତ୍ରକଳାରେ ତ ଦଶାବତାର ବହୁଳ ଭାବରେ ସ୍ଥାନ ପାଇଥିଲା, ତା' ଛଡ଼ା ଦଶାବତାର ଶାଢୀ, ଦଶାବତାର ମୁଦି, ଦଶାବତାର ମାଳି ଇତ୍ୟାଦି ବ୍ୟବହୃତ ହୋଇଥିବାର ଅନେକ ପ୍ରମାଣ ସାରଳା ସାହିତ୍ୟରୁ ମିଳେ । କୀଚକ କରୁଣା ଦାସୀ ହାତରେ ଦ୍ରୌପଦୀଙ୍କ ପାଇଁ ଯେଉଁ ଅଳଙ୍କାରମାନ ପଠାଇଥିଲା ତା ଭିତରେ ଥିଲା ଗୋଟିଏ 'ଦଶାବତାର ମାଳି' ।

"ବଳା ଗୃପସର **ଦଶ ଅବତାର ମାଳ**
ସୁବର୍ଣ୍ଣର ଚୁଡ଼ୀ କଟିକିଙ୍କିଣୀ ମେଖଳ" (ବିଗ୍ଧଟପର୍ବ ପୃ ୫୬) (୧)

ଯେଉଁ ରାଜ୍ୟରେ ଶ୍ରୀଗୀତଗୋବିନ୍ଦ ରଚିତ ହେବାର ଅଳ୍ପଦିନ ମଧ୍ୟରେ ଏହାର ମହାତ୍ମ୍ୟ ଓ ଆଦର ଏପରି ବିଦ୍ୟୁତ୍‌ବେଗରେ ଲୋକମାନଙ୍କ ମଧ୍ୟରେ ବ୍ୟାପିଗଲା ଯେ, ସରଳା ପଲ୍ଲୀବାଳା ମଧ୍ୟ ବାଇଗଣ ତୋଳିବା ସମୟରେ ତନ୍ମୟ ଚିତ୍ତରେ ମଧୁର କଣ୍ଠରେ ଏହାର 'ଧୀର ସମୀରେ ଯମୁନା ତୀରେ ବସତି ବନେ ବନମାଳୀ' ଗୀତଗାନ ଦ୍ୱାରା ସ୍ୱୟଂ ଜଗନ୍ନାଥ ମହାପ୍ରଭୁଙ୍କୁ ରତ୍ନସିଂହାସନରୁ ବାଇଗଣ ବାଡ଼ୀକୁ ଆକର୍ଷଣ କରି ନେଇପାରିଥିଲା, ସେ ଦେଶରେ ଏହାର ଲୋକପ୍ରିୟତା ଓ ପ୍ରଭାବ କିପରି ବ୍ୟାପକ ଓ ଗଭୀର ସହଜରେ ଅନୁମେୟ । ତେଣୁ ଏ ଦେଶର ଲେଖକ ଓ କବିମାନେ ଅତ୍ୟନ୍ତ ଲୋକପ୍ରିୟ ଶ୍ରୀଗୀତଗୋବିନ୍ଦର ସରଳ, ଲଳିତ, ଶ୍ରୁତିମଧୁର, ପ୍ରାଣସ୍ପର୍ଶୀ ସଂଗୀତମୟୀ ଭାଷା ଦ୍ୱାରା ବିଶେଷ ଭାବରେ ପ୍ରଭାବିତ ହେବା ସ୍ୱତଃସିଦ୍ଧ । ଏ ସଂପର୍କରେ ନବ୍ୟ ଉତ୍କଳର ଜଣେ ପ୍ରସିଦ୍ଧ କବି ପଣ୍ଡିତ ଡକ୍ଟର ଶ୍ରୀ ମାୟାଧର ମାନସିଂହଙ୍କ ସମୀଚୀନ ମନ୍ତବ୍ୟ ନିମ୍ନରେ ଉଦ୍ଧାର କରାଗଲା । (୨)

"ଯେଉଁ ଚଉତିଶା ସବୁ ଓଡ଼ିଆ ସାହିତ୍ୟରେ ଦେଖାଦେଲେ ସେମାନଂକ ଚରଣେ ଚରଣେ ଥିଲା ସଂଗୀତର ଝଂକାର ଓ ସେମାନଙ୍କର ସ୍ରଷ୍ଟାମାନଙ୍କର ଉଦ୍ଦେଶ୍ୟ ଥିଲା ଯେ ସେଗୁଡ଼ିକ ହେବେ ଗେୟ । ସଂଗୀତ ଓ ସାହିତ୍ୟର ଏ ଯେଉଁ ଘନିଷ୍ଠ ମିଳିତା ଏହିକାଳରେ ଦେଖାଦେଲା, ତାହା ଊନବିଂଶ ଶତାବ୍ଦୀର ନବଯୁଗର ଆରମ୍ଭ ପର୍ଯ୍ୟନ୍ତ ସମଗ୍ର ଉତ୍କଳ ସାହିତ୍ୟକୁ ବହୁ ଶତାବ୍ଦୀ ଧରି ସଂପୂର୍ଣ୍ଣ ପ୍ରଭାବିତ କରି ରଖି-ଥିଲା । X X ଦୁଇଶ ବର୍ଷ ପରେ ଆମେ ଦେଖିବା ଯେ ଓଡ଼ିଆରେ ଏକ ଏକ ମହାକାବ୍ୟ ଲେଖାହୋଇଛି ଏଇ ଚଉତିଶାମାନଙ୍କ ଗେୟଶୈଳୀରେ ଓ ସେଗୁଡ଼ିକ ମଧ୍ୟ ଯମକ-ଅନୁପ୍ରାସ ପ୍ରଭୃତି ନାନା ଅଳଂକାରରେ ଭାରାକ୍ରାଂତ ଏବଂ ମୂଳରୁ ଶେଷପର୍ଯ୍ୟଂତ ଓ ଉଦ୍ଦୀପନର ଭାବରେ ଯୌନ ସଂଭୋଗ ନେଇହିଁ ବ୍ୟସ୍ତ । ଜୟଦେବଂକର କ୍ଷୁଦ୍ରାବୟବ ଗୀତଗୋବିଂଦ ଏହିସବୁ ଗୁଣଦୋଷରେ ଜର୍ଜରିତ ନୁହେଁ କି ? X X ଗୀତଗୋବିଂଦ ସହିତ ଚଉତିଶା ଓ ଓଡ଼ିଶୀ ଗ୍ରଂଥ-କାବ୍ୟମାନଂକର କୁଟୁଂବିତା ଅନସ୍ୱୀକାର୍ଯ୍ୟ । ଗୀତ-ଗୋବିଂଦ ଓଡ଼ିଶାର କଳା, ସମାଜ ଓ ସାହିତ୍ୟରେ ଯେପରି ଗଭୀର ଓ ବ୍ୟାପକ

---

(୧) ଓଡ଼ିଆ ସାହିତ୍ୟରେ 'ଗୀତଗୋବିନ୍ଦ'ର ପ୍ରଭାବ — ଶ୍ରୀ କୃଷ୍ଣଚନ୍ଦ୍ର ପାଣିଗ୍ରାହୀ, ଝଙ୍କାର ୨୧ଶ ବର୍ଷ, ୧୦ମ ସଂଖ୍ୟା, ପୃ ୯୬୧–୬୨

(୨) 'ଓଡ଼ିଆ ସାହିତ୍ୟର ଇତିହାସ' — ଡକ୍ଟର ମାୟାଧର ମାନସିଂହ, ପ୍ରଥମ ସଂସ୍କରଣ, ୧୯୬୭, ପୃ ୧୪୬–୪୭

ପ୍ରଭାବ ପକାଇ ପାରିଛି ତାହା ବୋଧହୁଏ ଭାରତର ଅନ୍ୟ କୌଣସି ଅଂଚଳରେ ଦେଖାଯାଏ ନାହିଁ । ଆନୁପ୍ରାସିକ ଭାଷା, ଶ୍ରୁତିରସାପ୍ଲୁତ ସଂଗୀତ ଓ ମନୋଜ୍ଞ ଯୌନ ସଂକେତମୟ ତରୁଣ ରାଧା-କୃଷ୍ଣ ପ୍ରେମଚିତ୍ରଣ—ଏସବୁ ଗୀତଗୋବିନ୍ଦ ଓ ଚଉତିଶା ମାନଙ୍କ ମଧ୍ୟରେ ସମାନ ଭାବରେ ବିରାଜିତ । ମଧ୍ୟଯୁଗର ଓଡ଼ିଆ କବିମାନେ ଜଣେ ଓଡ଼ିଆ କବି ସଂସ୍କୃତରେ ଯେଉଁ ଅନବଦ୍ୟ କାବ୍ୟ ସୃଷ୍ଟି କରିଯାଇଥିଲେ, ତାକୁ ହିଁ ପ୍ରାକୃତ ଭାଷାରେ ଅନୁକରଣ କରି କରି ଚଉତିଶାମାନ ଲେଖିବା ଆରମ୍ଭ କରିଥିବା ଏକାନ୍ତ ବିଶ୍ବାସ୍ୟ ଘଟଣା । ଓଡ଼ିଆ କବିମାନଙ୍କ ଲେଖମାରେ ସଂସ୍କୃତ ଗୀତ-ଗୋବିନ୍ଦର ଏହି ପ୍ରାକୃତ ଅନୁସରଣ ସ୍ଥାନେ ସ୍ଥାନେ ଯେ ଆଦର୍ଶର ସମକକ୍ଷ ହୋଇ-ପାରିଛି, ସେଥିପାଇଁ ପ୍ରତ୍ୟେକ ଓଡ଼ିଆ ଗର୍ବ କରିବାର କଥା । ଅଭିମନ୍ୟୁ, ଘନକୃଷ୍ଣ ଓ ଉପେନ୍ଦ୍ରଙ୍କ କେତେକ ଗ୍ରନ୍ଥ ସଂସ୍କୃତ ଅନଭିଜ୍ଞ ଓଡ଼ିଆ ଜନତାକୁ ଗତ କେତେ ଶତାବ୍ଦୀ ହେଲା, ସଂସ୍କୃତ ଗୀତଗୋବିନ୍ଦର ବର୍ଣ୍ଣ, ସୌରଭ ଓ ସ୍ୱାଦ ଯଥାର୍ଥ ଭାବରେ ପରିବେଷଣ କରିଆସୁଛନ୍ତି ।”

## ମହାକବି ସାରଳା ଦାସଙ୍କ 'ମହାଭାରତ' —

ଖ୍ରୀଷ୍ଟୀୟ ଦ୍ୱାଦଶ ଶତାବ୍ଦୀ ମଧ୍ୟଭାଗରୁ ଖ୍ରୀଷ୍ଟୀୟ ପଞ୍ଚଦଶ ଶତାବ୍ଦୀର ମଧ୍ୟଭାଗ ପର୍ଯ୍ୟନ୍ତ ପ୍ରାୟ ତିନିଶତ ବର୍ଷ ମଧ୍ୟରେ ଶ୍ରୀଗୀତଗୋବିନ୍ଦ ଓଡ଼ିଶାରେ ବିଶେଷ ଲୋକପ୍ରିୟତା ଅର୍ଜନ କରିଥିବାରୁ ଏ ରାଜ୍ୟର ଆଦି ମହାକବି ସାରଳା ଦାସ ଶ୍ରୀରାଧା-ମାଧବଙ୍କ ଶୃଙ୍ଗାର ଲୀଳା ବିଷୟ ସ୍ୱୀୟ ବିରାଟ ମହାଭାରତର ନାନାସ୍ଥାନରେ ଉଲ୍ଲେଖ କରିଛନ୍ତି । ଯଥା—

“ଶ୍ରୀରାଧାମାଧବ ଯେ କୁଞ୍ଜଲତା ତଳେ
ବିହରଇ ମଳୟାନିଳ ବସନ୍ତ ଶୟନେ ।
ରାଧାମାଧବ ଯେ ଶୃଙ୍ଗାର ଅବକାଶେ
ଦହିଲା ଅନଙ୍ଗ ଯେ ପ୍ରେମରସେ ରୋଷେ ।
କୃଷ୍ଣର ପ୍ରୀତିଭାବେ ବଢ଼ିଲା ପ୍ରେମଚିନ୍ତା
ସ୍ୱାମୀର ମୁଖ ଯେ ଛାଡ଼ିଲା ବନିତା ।” (ବନପର୍ବ)

ଉଦ୍‌ଯୋଗ ପର୍ବରେ ଦୁର୍ଯ୍ୟୋଧନ ମୁଖରେ ମଧ୍ୟ ଶ୍ରୀରାଧା-କୃଷ୍ଣଙ୍କ ପ୍ରେମଲୀଳା ବର୍ଣ୍ଣିତ ହୋଇଛି । ରାଧାକୃଷ୍ଣଙ୍କ ସମ୍ଭୋଗ-ଶୃଙ୍ଗାର ସମୟରେ ଚନ୍ଦ୍ରସେଣା ରାଧାଦେବୀଙ୍କୁ ତାହାକୁ କୃଷ୍ଣ ବିଶ୍ୱରୂପ ଦେଖାଇଛନ୍ତି । କବି ଆହୁରି ଲେଖିଛନ୍ତି ଯେ, କୃଷ୍ଣ ଚନ୍ଦ୍ର-ସେଣାର ଭୁଜକୁ ବୁଲାଇ ପକାଇ ଦେବାରେ ସେ ସହସ୍ର ଯୋଜନ ଦୂରରେ ପଡ଼ିଛି ଓ ଅନେକ କାଳ ବାଟବଣା ହୋଇ ବୁଲୁଛି ।

ମହାକବି ସାରଳା ଆଦ୍ୟପର୍ବରେ ଖନକାର ଜନ୍ମ ପ୍ରସଙ୍ଗରେ ଶ୍ରୀରାଧାକୃଷ୍ଣଙ୍କ ପରକୀୟା ପ୍ରେମର ବିସ୍ତୃତ ବର୍ଣ୍ଣନା କରିଥିଲେମଧ୍ୟ ଉତ୍କଳୀୟ ସମାଜରେ ସଂଯମ ପାତିବ୍ରତ୍ୟ ଓ ଶୃଙ୍ଖଳାର ପରଂପରା ବଦ୍ଧମୂଳ ଥିବାରୁ ଏପରି ପରକୀୟା ପ୍ରୀତି ପ୍ରତି ଦୂରୁ କଟାକ୍ଷପାତ କରି ଲେଖିଛନ୍ତି —

"ପର ଦାରା ଶୃଙ୍ଗାର ନୋହୁ ପୋଡ଼ୁ ପୋଡ଼
ପର ଦାରାକୁ ଯେ ଆଶ କରଇ ଜୀବନ ତାର ଗୁଣ୍ଡୁ ।
ଜଗମୋହନ ପୁରୁଷର ଭାଙ୍ଗିଲା ଏଡ଼େ ଦପ
ପର ସ୍ତ୍ରୀ ପର ଦାରା ଅଟଇ ମହା ପାପ ।" (୩)

## ସ୍ୱାମୀ ନାରାୟଣା ନନ୍ଦଙ୍କ 'ରୁଦ୍ରସୁଧାନିଧି'—

ଷୋଡ଼ଶ ଶତାବ୍ଦୀର ପ୍ରଥମ ପାଦରେ ଏକାମ୍ରକାନନ ଆଶ୍ରିତ ନାରାୟଣାନନ୍ଦ ଅବଧୂତ ସ୍ୱାମୀଙ୍କ ଦ୍ୱାରା ରଚିତ 'ରୁଦ୍ରସୁଧାନିଧି' (୪) ପ୍ରାଚୀନ ଓଡ଼ିଆ ସାହିତ୍ୟରେ ଏକ ଅଭୂତପୂର୍ବ, ଅନୁପମ ଓ ଅଦ୍ୱିତୀୟ ଗଦ୍ୟକାବ୍ୟ । ଏହି ପଦ୍ୟାତ୍ମକ ଗଦ୍ୟ କାବ୍ୟର ରଚନାଶୈଳୀରେ ପ୍ରତିପୃଷ୍ଠାରେ ଶ୍ରୀଗୀତଗୋବିନ୍ଦର ଗଭୀର ପ୍ରଭାବ ପରିଲକ୍ଷିତ ହୁଏ । ଏହା ଶ୍ରୀଗୀତଗୋବିନ୍ଦ ପରି ଆମୂଳଚୂଳ ଯମକ ଓ ଅନୁପ୍ରାସାଦି ଅଳଙ୍କାର ଦ୍ୱାରା ଝଙ୍କୃତ ଏବଂ ମଧୁରକୋମଳକାନ୍ତ ପଦାବଳମଣ୍ଡିତ । ଭାବ ଓ ଭାଷା, ଶବ୍ଦ ଓ ଅର୍ଥ ଏ ଦୁହିଁଙ୍କର ଉଚିତ ସମନ୍ୱୟ ଓ ସମ୍ମିଳନରେ ଏହା ମଞ୍ଜୁଳ, ରସାଳ ଓ ଚିତ୍ତାକର୍ଷକ ହୋଇଛି ।

ଶ୍ରୀଗୀତଗୋବିନ୍ଦର 'ଜୟ ଜୟ ଦେବ ହରେ' ଧ୍ରୁବ ପଦ ପରି 'ରୁଦ୍ରସୁଧାନିଧି'ର ପଞ୍ଚାଶତ୍ ବର୍ଣ୍ଣଭେଦରେ ରଚିତ 'ଶିବସ୍ତୁତି'ର ପ୍ରତି ଅନୁଚ୍ଛେଦ ଶେଷରେ ଜୟ ଜୟ ପଦ ଅତି ଶ୍ରୁତିରୋଚକ ଭାବରେ ବିନ୍ୟସ୍ତ ହୋଇଛି । ଯଥା—ଜୟ ଜୟ 'କୁନ୍ଦ-କୁମୁଦ-କୁରଙ୍ଗଧର', ଜୟ ଜୟ ଶିବ ଶମ୍ଭୋ, ଜୟ ଜୟ ଗଗନପତି, ଜୟ ଜୟ ଜଗତନାଥ ଜଗତଶରଣ, ଜୟ ଜୟ ନରକଉଦ୍ଧାରଣ, ଜୟ ଜୟ ତ୍ରିଭୁବନାୟକ ତ୍ରିଲୋଚନ, ଜୟ ଜୟ ନବ-ନୀରଜ-ଦଳ-ନୟନ ଇତ୍ୟାଦି ।

ଉଭୟ ଗ୍ରନ୍ଥର ପଦଯୋଜନାରେ ଲକ୍ଷିତ ସାମଞ୍ଜସ୍ୟର କେତୋଟି ଉଦାହରଣ ପରପୃଷ୍ଠାରେ ଦିଆଗଲା ।

---

(୩) 'ସାରଳା ମହାଭାରତରେ ରାଧା ଏବଂ କୃଷ୍ଣ ଚରିତ୍ର'—ଅଧ୍ୟାପକ ଡକ୍ଟର ଶ୍ରୀ ବଂଶୀଧର ମହାନ୍ତି । ଝଙ୍କାର ୧୫ଶ ଭାଗ, ୫ମ ସଂଖ୍ୟା, ପୃ. ୫୪୭—୫୫୦ ।

(୪) ସ୍ୱର୍ଗତ ଡକ୍ଟର କରୁଣାକର କରଙ୍କ ଦ୍ୱାରା ସମ୍ପାଦିତ ଓ ଓଡ଼ିଶା ସାହିତ୍ୟ ଏକାଡ଼େମୀ ଦ୍ୱାରା ପ୍ରକାଶିତ ।

| **ଶ୍ରୀଗୀତଗୋବିନ୍ଦମ୍** | **ରୁଦ୍ରସୁଧାନିଧି** |
|---|---|
| ପଦ୍ମା-ପୟୋଧର-ତଟୀ ପରିରମ୍ଭଲଗ୍ନ-<br>କାଶ୍ମୀରମୁଦ୍ରିତମୁରୋମଧୁସୂଦନସ୍ୟ,<br>ମଧୁ-ମୁର-ନରକ-ବିନାଶନ<br>ମୁନି-ଜନ-ମାନସ-ହଂସ<br>ତ୍ରିଭୁବନ-ଭବନ-ନିଧାନ, | କୁଧର-ନନ୍ଦନୀ-କୁଚ-କୁମ୍ଭ-<br>କୁଙ୍କୁମ-ଲେପନ,<br>କାମାଙ୍ଗ-ନାଶନ,<br>ମୁନି-ମନ-ମାନସ-ହଂସ,<br>ରସ-ବ୍ରଜ-କମଳ-ନିଧାନ, |

ଅନୁପ୍ରାସ ଅଳଙ୍କାରର ଅତ୍ୟନ୍ତ ବହୁଳ ବ୍ୟବହାର ଦୃଷ୍ଟିରୁ ଏହାକୁ **'ଓଡ଼ିଆ ଗଦ୍ୟରେ ଶ୍ରୀଗୀତଗୋବିନ୍ଦ'** ରୂପେ ନିର୍ବିବାଦରେ ଆଖ୍ୟାତ କରାଯାଇପାରେ ।

## ନରସିଂହ ସେଣଙ୍କ 'ଗୋପକେଳି'—

ଗଜପତି ପ୍ରତାପରୁଦ୍ର (୧୪୯୭—୧୫୩୩)ଙ୍କ ପୃଷ୍ଠପୋଷକତା ଲାଭ କରିଥିବା ପ୍ରସିଦ୍ଧ ଓଡ଼ିଆ କବି-ପଣ୍ଡିତ **ନରସିଂହ ସେଣଙ୍କ** ଦ୍ୱାରା ରଚିତ **'ପରିମଳା'** (୫) ଓ 'ଗୋପକେଳି' (୬) ନାମକ ଦୁଇଖଣ୍ଡି ଉତ୍କୃଷ୍ଟ କାବ୍ୟ ଏଯାବତ୍ ଉପଲବ୍ଧ ହୋଇଅଛି ।

'ଗୋପକେଳି'ରେ ଶ୍ରୀଗୀତଗୋବିନ୍ଦ ଅନୁକରଣରେ 'ଶ୍ରୀରାଧାକୃଷ୍ଣଙ୍କ ବସନ୍ତ ରାସ' ରାଗନିବଦ୍ଧ କେତୋଟି ଛନ୍ଦରେ ସରଳ, ଲଳିତ ଓ କୋମଳ ଭାଷାରେ ବର୍ଣ୍ଣିତ ହୋଇଅଛି । ଏହାର ଆଲୋଚକ ଶ୍ରୀମାନ୍ ସଚ୍ଚିଦାନନ୍ଦ ମିଶ୍ରଙ୍କ ଗ୍ରନ୍ଥ ସମୀକ୍ଷା କ୍ରମରେ ଉଦ୍ଧାର କରିଗଲେ ।

'ଗୋପକେଳି'ର କଥାବସ୍ତୁରେ ସ୍ଥାନ, କାଳ ଓ ପାତ୍ରର ସନ୍ନିବନ୍ଧ ଯୋଜନା ବଡ଼ ଚମତ୍କାର । ପୁଷ୍ପବତୀ ଲତା-କୁଞ୍ଜ-ଶୋଭିତ ଯମୁନାର ତୀରବର୍ତ୍ତୀ ବନସ୍ଥଳ 'ଗୋପକେଳି'ର ସ୍ଥାନ, ଫାଲ୍‌ଗୁନ ପୂର୍ଣ୍ଣିମାର ରାତିଟିଏ ଉନ୍ମାଦକ କହିଥିବାରୁ ତାହାର କାଳ ଏବଂ ପାତ୍ର ଏକମାତ୍ର ଗୋପାଙ୍ଗନାଲମ୍ପଟ କୃଷ୍ଣ । ରଜନୀର ଆରମ୍ଭରେ କଦମ୍ବବୃକ୍ଷ ମୂଳରେ ଠିଆହୋଇ କୃଷ୍ଣ ମୁରଲୀନାଦ କରନ୍ତେ ଗୋପିକାକୁଳ କାମାର୍ତ୍ତ-ହୋଇ ରସିକରାଜଙ୍କ ସନ୍ନିଧିକୁ ଗଲେ ଏବଂ ନାନା ରଙ୍ଗରସରେ ବ୍ୟାପୃତ ହେଲେ । ବିବିଧ ପୁଷ୍ପଚୟନ କରି ସ୍ୱୟଂ ଭୂଷିତ ହେଲେ ଓ କୃଷ୍ଣଙ୍କୁ ମଣ୍ଡିତ କଲେ ।

---

(୫) ଶ୍ରୀ କେଦାରନାଥ ମହାପାତ୍ରଙ୍କ ଦ୍ୱାରା ସମ୍ପାଦିତ ହୋଇ କାବ୍ୟଟି ଓଡ଼ିଶା ରାଜ୍ୟ ମିଉଜିୟମ ଦ୍ୱାରା ପ୍ରକାଶିତ ।

(୬) ଅପ୍ରକାଶିତ 'ଗୋପକେଳି' କାବ୍ୟର ସମୀକ୍ଷାପାଇଁ ଶ୍ରୀମାନ୍ ସଚ୍ଚିଦାନନ୍ଦ ମିଶ୍ରଙ୍କ ପ୍ରକାଶିତ ପ୍ରବନ୍ଧ ଦ୍ରଷ୍ଟବ୍ୟ । ଝଙ୍କାର, ୧୯ଶ ଖଣ୍ଡ, ୬ଷ୍ଠ ସଂଖ୍ୟା, ପୃ. ୬୦୮—୬୧୩ ।

ମୁରଲୀଧରଙ୍କୁ ମଧ୍ୟସ୍ଥଳରେ ରଖି କାମିମାଗଣ ମଣ୍ଡଳାକାର ରାସନୃତ୍ୟ କଲେ ଓ ବିବିଧ ଗୀତଗାନ କଲେ । ଗାନ, ନର୍ତ୍ତନ ଓ ବାଦନ ହେତୁରୁ ଅବସନ୍ନ ହେବାପରେ ଗୋପୀମାନେ 'ବାରୁଣୀସୁରା' ପାନକରି ମଦବିମତ୍ତ ହେଲେ । × × ଏହି ଅବସରରେ କୃଷ୍ଣ ରାଧାଙ୍କୁ ସ୍କନ୍ଧ ଉପରେ ବସାଇ ବନବିହାର କଲେ । ତେଣେ ଅନ୍ୟାନ୍ୟ ଗୋପୀ କୃଷ୍ଣଙ୍କୁ ନିକଟରେ ନ ପାଇ ନାନାସ୍ଥାନ ଅନ୍ୱେଷଣ କଲେ । ଗୋପୀମାନଙ୍କର କାତରତା ସହ୍ୟ କରି ନ ପାରି × × କୃଷ୍ଣଙ୍କର ଗୋଟିଏ ଗୋଟିଏ ରୂପ ଗୋଟିଏ ଗୋଟିଏ ଗୋପୀଙ୍କୁ ଅନ୍ୟମାନଙ୍କ ଅଜ୍ଞାତରେ ରମଣ କଲା । ଏ ଭାବରେ ରଜନୀର ଶେଷପ୍ରହର ସମାଗତ ହେଲା । 'ଗୋପକେଳି'ର ବିଷୟବସ୍ତୁ ମୂଳତଃ ଏତିକ ।"

'ଗୋପକେଳି' ଆମୂଳଚୂଳ ଉତ୍କଟ ଶୃଙ୍ଗାର ରସାପ୍ଲୁତ । କାବ୍ୟଟିର ସରଳ ପ୍ରାଞ୍ଜଳ ଭାଷା, ଲଳିତ ପଦାବଳୀ; ରଚନା ପରିବେଶ ରଚନା ଏହାର ମୁଖ୍ୟ ଆଧାର ଆଦିରସକୁ ପାଠକ ସମକ୍ଷରେ ପର୍ଯ୍ୟାପ୍ତ ଭାବରେ ପରିବେଷଣ କରିବାରେ ଏକେ ସମର୍ଥ ହୋଇଛନ୍ତି ।" ଏହି କାରଣରୁ 'ଗୋପକେଳି' 'ଶ୍ରୀଗୀତଗୋବିନ୍ଦ' ଅନୁସରଣରେ ରଚିତ ପ୍ରାଚୀନ ଓଡ଼ିଆ ସାହିତ୍ୟର ପ୍ରଥମ ଶୃଙ୍ଗାର କାବ୍ୟ ।

## ଶ୍ରୀଗୀତଗୋବିନ୍ଦର ପଦ୍ୟାନୁବାଦ —

ଏପର୍ଯ୍ୟନ୍ତ ଉପଲବ୍ଧ ଶ୍ରୀଗୀତଗୋବିନ୍ଦର ଓଡ଼ିଆ ପଦ୍ୟାନୁବାଦ ଗୁଡ଼ିକ ମଧ୍ୟରେ ଶ୍ରୀ ଧରଣୀଧର କୃତ ପଦ୍ୟାନୁବାଦ ପ୍ରାଚୀନତମ । ଗ୍ରନ୍ଥକର୍ତ୍ତା ନିଜର ପରିଚୟ ବା ଗ୍ରନ୍ଥରଚନା ସମୟ କୁତ୍ରାପି ପ୍ରଦାନ କରିନାହାନ୍ତି । କେବଳ ସେ ନିଜକୁ ଦ୍ୱିଜ ବା ବ୍ରାହ୍ମଣ ବୋଲି କେତେକ ଛାନ୍ଦରେ ଭଣିତ କରିଛନ୍ତି । ଧରଣୀଧର ଶ୍ରୀଗୀତଗୋବିନ୍ଦର ଦ୍ୱାଦଶ ସର୍ଗକୁ ଷୋଳଟି ଛାନ୍ଦରେ ଅତି ସରଳ, କୋମଳ ଓ ମଧୁର ପଦାବଳୀରେ ଅନୁବାଦ କରିଛନ୍ତି । ତେଣୁ ଓଡ଼ିଆରେ ଶ୍ରୀଗୀତଗୋବିନ୍ଦର ପ୍ରାଚୀନ ପଦ୍ୟାନୁବାଦ ଗୁଡ଼ିକ ମଧ୍ୟରେ ଏହାର ଲୋକପ୍ରିୟତା ସର୍ବାଧିକ । ଏହାର ପୋଥି ବହୁସଂଖ୍ୟାରେ ଓଡ଼ିଶାର ସର୍ବାଞ୍ଚଳରୁ ମିଳିଥାଏ ।

ଓଡ଼ିଆରେ ରଚିତ କାବ୍ୟଗୁଡ଼ିକ ମଧ୍ୟରେ ଷୋଡ଼ଶ ଶତାବ୍ଦୀର ପ୍ରଥମ ପାଦରେ ରଚିତ ଅର୍ଜୁନ ଦାସଙ୍କ 'ରାମବିଭା' ପ୍ରାଚୀନତମ । ଧରଣୀଧର ରାମବିଭା ସପ୍ତମ ଛାନ୍ଦର 'ମଣୋହି ଭୁଆଇ ଜନକ ରାଜ୍ୟେ' ପଂକ୍ତିକୁ ନିଜ 'ଗୀତଗୋବିନ୍ଦ'ର ପ୍ରଥମ ଛାନ୍ଦର ବାଣୀ ରୂପେ ନିର୍ଦ୍ଦେଶ କରିଥିବାରୁ ସେ ନିଶ୍ଚିତରେ ଅର୍ଜୁନ ଦାସଙ୍କ ପରବର୍ତ୍ତୀ । ତାଙ୍କ ଦ୍ୱାରା ବ୍ୟବହୃତ ରାଗ ଓ ବାଣୀ ଗୁଡ଼ିକ ଷୋଡ଼ଶ ଶତାବ୍ଦୀର

ପ୍ରଥମ ଭାଗରେ ରଚିତ ଅର୍ଜ୍ଜୁନ ଦାସଙ୍କ 'ରାମବିଭା' ଓ 'କଳ୍ପଲତା', (୭) ନରସିଂହ ସେଣଙ୍କ 'ପରିମଳା' ପ୍ରଭୃତି କାବ୍ୟରେ ବ୍ୟବହୃତ ହୋଇଥିବାର ଦେଖାଯାଏ । ଧରଣୀଧରଙ୍କ ରଚନାଶୈଳୀରେ ପ୍ରାଚୀନତାର ଲକ୍ଷଣ ପରିସ୍ଫୁଟ ହୁଏ । ତେଣୁ ଅନ୍ୟ କୌଣସି ବିରୁଦ୍ଧ ପ୍ରମାଣ ନ ପାଇବା ପର୍ଯ୍ୟନ୍ତ ଏହାର ରଚନା କାଳକୁ ଷୋଡ଼ଶ ଶତାବ୍ଦୀରେ ଅବସ୍ଥାପିତ କରାଯାଇପାରେ । ଧରଣୀଧରଙ୍କ ଦ୍ୱାରା ବ୍ୟବହୃତ ରାଗ ଓ ବାଣୀଗୁଡ଼ିକର ଏକ ତୁଳନାତ୍ମକ ବିବରଣ ନିମ୍ନରେ ପ୍ରଦତ୍ତ ହେଲା । ଶ୍ରୀଗୀତ-ଗୋବିନ୍ଦରେ ବିଭିନ୍ନ ଗୀତର ରାଗ ନିର୍ଦ୍ଦେଶ ପରି ଏଥିରେ ପ୍ରତ୍ୟେକ ଛାନ୍ଦର ରାଗ ଓ ବାଣୀ ନିର୍ଦ୍ଦିଷ୍ଟ ହୋଇଛି ।

| ଧରଣୀଧରଙ୍କ **ଗୀତଗୋବିନ୍ଦ** | ଅର୍ଜ୍ଜୁନ ଦାସଙ୍କ **ରାମବିଭା** (୧୫୧୦ ଖ୍ରୀ:) | ଅର୍ଜ୍ଜୁନ ଦାସଙ୍କ **କଳ୍ପଲତା** (୧୫୨୦ ଖ୍ରୀ:) | ନରସିଂହ ସେଣଙ୍କ **ପରିମଳା** (୧୫୨୫ ଖ୍ରୀ:) |
|---|---|---|---|
| ୧ମ ଛାନ୍ଦ ମଙ୍ଗୋଳ୍ପ ଭୂଆଳ ଜନକରାପ୍ୟେ ଏ ବାଣୀରେ ଗାଇବ | ୭ମ | × | × |
| ୨ୟ ,, ମଙ୍ଗଳ ଗୁର୍ଜ୍ଜରୀ | ୧ମ | × | ୭ମ |
| ୩ୟ ,, ଗୁର୍ଜ୍ଜରୀ(ସଙ୍ଗମତିଆରବାଣୀ) | ୫ମ | ୭ମ | ୪ର୍ଥ |
| ୪ର୍ଥ ,, ଶୋକବରାଡ଼ି (ଆଷାଢଶୁକ୍ଳ ବାଣୀ) | × | × | ୨୨ଶ, |
| ୫ମ ,, ରାଗ ରେଖି (ସପନ ଚେତିଆ ବାଣୀ) | ୯ମ | ୧୧ଶ | × |
| ୬ଷ୍ଠ ,, ଚକ୍ରାଦେଶାକ୍ଷ | × | × | ୧୨ଶ |
| ୭ମ ,, ନଳନୀ ଗୌଡ଼ା | × | × | ୧୪ଶ ୨୩ଶ |
| ୮ମ ,, } ମଙ୍ଗଳ (ଭେଦମାରିଆ)<br>୧୨ଶ ,, } ,, | ୧୧ଶ | × | ୯ମ |
| ୯ମ ,, ଚକ୍ରାଭୈରବ (କରେକୃପାଣ ଯେ ସାଧୁକର) | × | × | × |
| ୧୦ମ ,, କାଳୀ | × | × | × |
| ୧୧ଶ ,, ବଙ୍ଗଳାଶ୍ରୀ | × | × | ୧୭ଶ |

(୭) ଶ୍ରୀ କେଦାରନାଥ ମହାପାତ୍ରଙ୍କ ଦ୍ୱାରା ସଂପାଦିତ ଓ ଓଡ଼ିଶା ରାଜ୍ୟ ମିଉଜିୟମ ଦ୍ୱାରା ୧୯୬୧ରେ ପ୍ରକାଶିତ ।

| | | | | | |
|---|---|---|---|---|---|
| ୧୩ଶ | ଛାନ୍ଦ | ‘ଶୁଣହେ ରସିକ ଜନ ଜ୍ୟେଷ୍ଠ ପୌର୍ଣ୍ଣମୀ ଦିନ’ ବାଣୀ | | | |
| ୧୪ଶ | ,, | ଶକୁନ୍ତଳା ବାଣୀ “ବୋଲନ୍ତି ଦ୍ରୌପଦ ଦୋହିତା ପତି” ଏ ବାଣୀ | × | × | × |
| ୧୫ଶ | ,, | କେଦାର-ଚକ୍ରକେଳି-ବାଣୀ | ୨ୟ | ୭ମ | ୧୫ଶ |
| ୧୬ଶ | ,, | ବସନ୍ତ-ଭୈରବ | × | ୪ର୍ଥ | ୧୯ଶ |

ଧରଣୀଧର ମୂଳ ଶ୍ରୀଗୀତଗୋବିନ୍ଦରେ ପ୍ରକ୍ଷିପ୍ତ କେତେକ ଶ୍ଳୋକର ଅନୁବାଦ କରିନାହାନ୍ତି । ଏହା ଯଥାସ୍ଥାନରେ ଆଲୋଚିତ ହେବ ।

## ବୃନ୍ଦାବନ ଦାସ କୃତ ‘ରସବାରିଧି’ (୮)

ବୈଷ୍ଣବ କବି ବୃନ୍ଦାବନ ଦାସ ସ୍ୱକୃତ ‘ଶ୍ରୀଗୀତଗୋବିନ୍ଦ’ର ଓଡ଼ିଆ ପଦ୍ୟାନୁବାଦର ନାମକରଣ କରିଛନ୍ତି **ରସବାରିଧି** । ଗ୍ରନ୍ଥ ମଧ୍ୟରେ କବି ନିଜର କୌଣସି ପରିଚୟ ବା ଗ୍ରନ୍ଥ ରଚନାର କାଳ ଉଲ୍ଲେଖ କରିନାହାନ୍ତି । ତେଣୁ ପରୋକ୍ଷ ପ୍ରମାଣ ସାହାଯ୍ୟରେ ଏହାର ସମୟ ନିରୂପଣ କରାଯାଉଛି । ସେ ତାଙ୍କ ଗ୍ରନ୍ଥର ଷୋଡ଼ଶ ଛାନ୍ଦକୁ ଗୋପୀଜୀବନ ଚଉତିଶା ବାଣୀରେ ଗାଇବା ପାଇଁ ନିର୍ଦ୍ଦେଶ ଦେଇଛନ୍ତି । ଏହି ଚଉତିଶାଟି ବୃନ୍ଦଦାସଙ୍କ ଦ୍ୱାରା ରଚିତ ହୋଇଥିଲା । (୯) ‘ଗୋପୀଚନ୍ଦନ’ କାବ୍ୟର ପ୍ରଣେତା ଉକ୍ତ ବୃନ୍ଦଦାସ ଗଜପତି ରାମଚନ୍ଦ୍ରଦେବ (ପ୍ରଥମ)ଙ୍କ ରାଜତ୍ୱକାଳ (୧୫୬୮-୧୬୦୦ ଖ୍ରୀଷ୍ଟାବ୍ଦ)ରେ ଆବିର୍ଭୂତ ହୋଇଥିବାରୁ (୧୦) ତାଙ୍କର ଚଉତିଶାକୁ ଏକ ବାଣୀ (ବୃତ୍ତ) ରୂପେ ବ୍ୟବହାର କରିଥିବା ବୃନ୍ଦାବନ ଦାସ ନିଶ୍ଚିତ ଭାବରେ ‘ବୃନ୍ଦ ଦାସ’ଙ୍କ ପରବର୍ତ୍ତୀ । ଅତଏବ ତାଙ୍କୁ ସପ୍ତଦଶ ଶତାବ୍ଦୀର ପ୍ରଥମ ଭାଗରେ ଅବସ୍ଥାପିତ କରାଯାଇପାରେ ।

ବୃନ୍ଦାବନ ଦାସ ଓଡ଼ିଶାରେ ପ୍ରଚଳିତ ପରଂପରାକୁ ଅନୁସରଣ କରି କେବଳ ଶ୍ରୀଗୀତଗୋବିନ୍ଦର ୧୨ ସର୍ଗସ୍ଥ ୨୪ ଗୀତ ଓ ୭୨ ଶ୍ଳୋକର ପଦ୍ୟାନୁବାଦ କରିଛନ୍ତି । ଯଥା—

---

(୮) ଅଧୁନା ଲୁପ୍ତ ପ୍ରାଚୀ ସମିତି ଦ୍ୱାରା ପ୍ରକାଶିତ

(୯) ‘ଚଉତିଶା ମଧୁଚକ୍ର’ (ପ୍ରାଚୀ) ତୃତୀୟ ଖଣ୍ଡ ପୃ ୩୯, ପାଦ ଟୀକା

(୧୦) ପଣ୍ଡିତ ଶ୍ରୀ ନୀଳମଣି ମିଶ୍ରଙ୍କ ଦ୍ୱାରା ସଂପାଦିତ ଓ ଓଡ଼ିଶା ସାହିତ୍ୟ ଏକାଡେମୀ ଦ୍ୱାରା ପ୍ରକାଶିତ ।

"ଗାଥା ଚତ୍ୱର ଶ୍ଳୋକ ବାଆସ୍ତର
ସର୍ଗ ଦ୍ୱାଦଶ ବର୍ଣ୍ଣି ଆଦ କର ।"

ଶ୍ରୀଗୀତଗୋବିନ୍ଦରେ ପ୍ରକ୍ଷିପ୍ତ ଶ୍ଳୋକ ଗୁଡ଼ିକର ଅନୁବାଦ ଏଥିରେ ମିଳେ ନାହିଁ । ବୃନ୍ଦାବନ ଦାସ 'ଶ୍ରୀ ଗୀତଗୋବିନ୍ଦ'ର କ୍ରମଭଙ୍ଗ କରି ପଦ୍ୟାନୁବାଦ କରିଥିବାର ଦେଖାଯାଏ । ସେ ପ୍ରଥମ ଛାନ୍ଦରେ ଦଶାବତାର ବନ୍ଦନା କରି ଦ୍ୱିତୀୟ ଛାନ୍ଦରେ 'ଶ୍ରିତକମଳାକୁଚମଣ୍ଡଳ' ଠାରୁ 'ପଦ୍ମାପୟୋଧରତଟୀ' ଶ୍ଳୋକ ପର୍ଯ୍ୟନ୍ତ ଅନୁବାଦ କରିଛନ୍ତି । ତତ୍ପରେ ତୃତୀୟ ଛାନ୍ଦରେ 'ବାଗ୍‌ଦେବତା' 'ଯଦ୍‌ହରିସ୍ମରଣେ' 'ବାଚଃ ପଲ୍ଲବୟତି' ଓ 'ମେଘୈର୍ମେଦୁର' ଶ୍ଳୋକଚତୁଷ୍ଟୟର ଅନୁବାଦ ପ୍ରଦତ୍ତ ହୋଇଅଛି । ଏପରି କ୍ରମଭଙ୍ଗ ପୂର୍ବକ ସେ ଚତୁର୍ଥ ଛାନ୍ଦରେ 'ବସନ୍ତେ ବାସନ୍ତୀ' ଶ୍ଳୋକଠାରୁ ବିଷୟବସ୍ତୁର ଅବତାରଣା କରିଛନ୍ତି ।

'ରସବାରିଧି'ରେ ୨୦ଟି ଛାନ୍ଦରେ ବ୍ୟବହୃତ ବିଭିନ୍ନ **ରାଗ, ବାଣୀ** ଓ **ବୃତ୍ତି** ସମୂହ ଗବେଷଣାର ସୁବିଧା ନିମିତ୍ତ ନିମ୍ନରେ ଉଦ୍ଧାର କରାଗଲା ।

୧ମ ଛାନ୍ଦ— ରାଗ ମଙ୍ଗଳଧନାଶ୍ରୀ
୨ୟ ,, — ବୃତ୍ତି ରାମକେରୀ
୩ୟ ,, — କେଦାର (ଚନ୍ଦ୍ରକେଳିବାଣୀ)
୪ର୍ଥ ,, — ରାଗ ଭୈରବ (ଆଷାଢ଼ଶୁକ୍ଳ କେଳି ବାଣୀ)
୫ମ ,, — ରାଗ ମଙ୍ଗଳଗୁର୍ଜ୍ଜରୀ (ବୃତ୍ତି ଭୂପାଳ ଚଣ୍ଡେକ)
୬ଷ୍ଠ ,, — ବୃତ୍ତି ଗୁର୍ଜ୍ଜରୀ (ସଙ୍ଗମ ତଆରି ବାଣୀ)
୭ମ ,, — ବୃତ୍ତି କଲ୍ୟାଣ ଆହାରୀ (କୁମୁଦ ବଦନ ବାଣୀ)
୮ମ ,, — ବୃତ୍ତି ବଙ୍ଗଳାଶ୍ରୀ (ମାଧବ ଚଉତିଶା ବାଣୀ)
୯ମ ,, — ବୃତ୍ତି ବରାଡ଼ି (କଳସା ବାଣୀ)
୧୦ମ ,, — ରାଗ ରାମକେରୀ (ପଦ୍ମଭୋଳା ବାଣୀ, ଜାତକ ବାଣୀ)
୧୧ଶ ,, — ବୃତ୍ତି ଭୈରବ (ଚନ୍ଦ୍ରଘଣ୍ଟାବାଣୀ)
୧୨ଶ ,, — ବୃତ୍ତି କାମୋଦୀ (କାମଶ୍ରେଣୀ ଚଉତିଶା ବାଣୀ)
୧୩ଶ ,, — ରାଗ କୌଶିକ (କମଳମୁଖୀକି ସମଜାଇ ଚଉତିଶାବାଣୀ)
୧୪ଶ ,, — ବୃତ୍ତି ଗୁର୍ଜ୍ଜରୀ
୧୫ଶ ,, — ବୃତ୍ତିକାମୋଦୀ(ଯେଣିକି ଗୃହଁ ବା ତେତେ ଦିଶନ୍ତି ମୁରାରି ବାଣୀ)
୧୬ଶ ,, — ବୃତ୍ତି କାମୋଦୀ (**ଗୋପୀଜୀବନ ଚଉତିଶା ବାଣୀ**)
୧୭ଶ ,, — ବୃତ୍ତି ବୋଲି (ଉଦ୍ଧବ ଗୀତା, ଦ୍ୱିତୀୟ ଗାଥା ବାଣୀ)
୧୮ଶ ,, — ବୃତ୍ତି ଭୂପାଳ ଚଣ୍ଡେକ (ଜଳକ୍ରୀଡ଼ା ବାଣୀ)

୧୯ଶ ଛାନ୍ଦ—ରାଗ ମଙ୍ଗଳଗୁର୍ଜ୍ଜରୀ
୨୦ଶ ଛାନ୍ଦ—ମଙ୍ଗଳଗୁର୍ଜ୍ଜରୀ ରାଗେଣ ଗୀୟତେ (ରାମଚନ୍ଦ୍ର ପ୍ରଥମ ଛାନ୍ଦବାଣୀ)

ଶ୍ରୀଗୀତଗୋବିନ୍ଦରେ ବ୍ୟବହୃତ ଦ୍ୱାଦଶ ରାଗ ମଧ୍ୟରୁ 'ରସବୋଧ'ରେ ମାଳବ ରାଗ, ଗୁର୍ଜ୍ଜରୀ ରାଗ, ରାମକେରୀ ରାଗ ଓ ବରାଡ଼ି ରାଗ ବ୍ୟବହୃତ ହୋଇଅଛି ।

## ଦୀନକୃଷ୍ଣ ଦାସ କୃତ 'ଅମୃତ ସାଗର ବୋଲି' (୧୧)—

ଢେଙ୍କାନାଳ ରାଜ୍ୟାଧୀଶ ବଳରାମ ସାମନ୍ତସିଂହାରଙ୍କ (ଆନୁମାନିକ ୧୬୫୦ ଖ୍ରୀଷ୍ଟାବ୍ଦ)ଙ୍କ ପୃଷ୍ଠପୋଷକତାରେ ବ୍ରାହ୍ମଣୀ ନଦୀ କୂଳବର୍ତ୍ତୀ ଏକଘରିଆ ଗ୍ରାମରେ କନକେଶ୍ୱର ଲିଙ୍ଗଙ୍କ ନିକଟରେ ବାସ କରୁଥିବା ଜଳେଶ୍ୱରଗତ କବି ଦୀନକୃଷ୍ଣ ଦାସ ଦଶମ ସ୍କନ୍ଧ ଭାଗବତର ଗୋପଲୀଳା ଓ 'ଶ୍ରୀଗୀତଗୋବିନ୍ଦ'କୁ ଏକତ୍ର କରି 'ଅମୃତ ସାଗର ବୋଲି' ନାମକ ୪୫ ଛାନ୍ଦ ବିଶିଷ୍ଟ ଏକ ବୃହତ୍ ଗ୍ରନ୍ଥ ରଚନା କରିଥିଲେ । ବୈଷ୍ଣବମାନଙ୍କ ଅତି ପ୍ରିୟତମ ଶ୍ରୀମଦ୍‌ଭାଗବତ ବର୍ଣ୍ଣିତ ଗୋପଲୀଳା ସହିତ ଶ୍ରୀଗୀତଗୋବିନ୍ଦରେ ପ୍ରକଟିତ ଶ୍ରୀରାଧାକୃଷ୍ଣଙ୍କ ବାସନ୍ତୀ ରାସଲୀଳାର ଏକତ୍ର ସମାବେଶ କବିଙ୍କ ଲକ୍ଷ୍ୟଥିଲା । ଏହି ଗ୍ରନ୍ଥର ପ୍ରଥମ ବାର ଛାନ୍ଦରେ ଶ୍ରୀକୃଷ୍ଣଙ୍କ ବାଲ୍ୟଲୀଳା ଓ ଗୋପଲୀଳା ବର୍ଣ୍ଣିତ ହୋଇଛି । କବି ତ୍ରୟୋଦଶ ଠାରୁ ଦ୍ୱାତ୍ରିଂଶ ଅଧ୍ୟାୟ ପର୍ଯ୍ୟନ୍ତ କୋଡ଼ିଏଟି ଛାନ୍ଦରେ ଶ୍ରୀଗୀତଗୋବିନ୍ଦର ପଦ୍ୟାନୁବାଦ କରି ଗ୍ରନ୍ଥର ଶେଷ ଭାଗରେ କଂସର ମୃତ୍ୟୁ ଓ ଉଗ୍ରସେନର ସିଂହାସନ ଆରୋହଣ ବର୍ଣ୍ଣନା କରିଛନ୍ତି ।

"ମହାକାବ୍ୟ ଗୀତଗୋବିନ୍ଦ ସେହି । ଏହିଠାରୁ ଅର୍ଥ ବହିଲା ସେହି ॥୧॥
ବାରର ଶୋଳଖ ଚରଣ ଗାଥା । ଏହି ବୋଲିରେ ଅଛି ସକଳ କଥା ॥୨॥
ଶ୍ରୀଗୀତଗୋବିନ୍ଦ ଅର୍ଥର ବାଣୀ । ସାବଧ କରି ଭେଟାଇଲା ଆଣି ॥୩॥
ଆଜ୍ଞା ଦେଲେ ପ୍ରଭୁ ଶ୍ରୀଜଗନ୍ନାଥ । ତେଣୁ ସେ କହିଲା ଏଥିର ଅର୍ଥ ॥୪॥
(ତ୍ରୟୋବିଂଶ ଛାନ୍ଦ)

## ବଜରୀ ଦାସ କୃତ 'ଅର୍ଥଗୋବିନ୍ଦ' :—

ଉତ୍ତର ଭାରତରୁ ଆଗତ ବଜରୀ ଦାସ ନାମକ ସନ୍ଥ ଢେଙ୍କାନାଳ ରାଜ୍ୟର **'ଅଶୋକ ଖୋଲା'** ଗଡ଼ରେ ନିଜର ଆଶ୍ରମ ସ୍ଥାପନ କରିଥିଲେ । କଳକଳ ନିନାଦିନୀ କେତେକ ନିର୍ଝରିଣୀ ବିଧୌତ ନିକଟବର୍ତ୍ତୀ ପର୍ବତରେ ବିସ୍ତୃତ ରକ୍ତବର୍ଣ୍ଣ ରମ୍ୟ ପୁଷ୍ପଧାରୀ ଅଶୋକ ବନର ଅବସ୍ଥିତି ଯୋଗୁଁ ଏହି ଗଡ଼ର ଏପରି ନାମକରଣ ହୋଇଥିଲା । (୧୨)

---

(୧୧) ଏହି ଅପ୍ରକାଶିତ ଗ୍ରନ୍ଥର ପୋଥି ରାଜ୍ୟ ସଂଗ୍ରହାଳୟର ପୋଥି ଭଣ୍ଡାରରେ ସଂରକ୍ଷିତ ।
(୧୨) ଦ୍ରଷ୍ଟବ୍ୟଃ ରାମଚନ୍ଦ୍ର ନନ୍ଦ ଭକ୍ତିବିନୋଦ ରଚିତ 'ଢେଙ୍କାନାଳ ଭୂଗୋଳ' ପୃ. ୩୭ ଓ ପୃ. ୪୨

ଏହି ପାର୍ବତ୍ୟ ଦୁର୍ଗ-ବାସୀ ବଳଶ୍ରୀ ଦାସ ଙ୍କ ଖୁର୍ଦ୍ଧା ରାଜା ଗଜପତି ମୁକୁନ୍ଦ ଦେବ (ପ୍ରଥମ)ଙ୍କ ଏକୋଇଶ ଅଙ୍କରେ ଶ୍ରୀଗୀତଗୋବିନ୍ଦକୁ ନବାକ୍ଷରୀ ଭାଗବତ ବୃତ୍ତରେ ଅନୁବାଦ କରି ଏହାର ନାମ ଦେଇଥିଲେ 'ଅର୍ଥଗୋବିନ୍ଦ' । ଏହା ୨୦ଟି ଅଧ୍ୟାୟ ବିଶିଷ୍ଟ ଏବଂ ଏଥିରେ ଶ୍ରୀଗୀତଗୋବିନ୍ଦର ୨୪ଟି ଗାଥା ଓ ୭୨ ଶ୍ଳୋକର ଅନୁବାଦ ପରିଦୃଷ୍ଟ ହୁଏ । ଯଥା :—

"ଚୌବିଂଶ ଗାଥା ଗୀତ ମତେ, ବାଆସ୍ତରି ଶ୍ଳୋକ ସଙ୍ଗିତେ ।
ଲେଖନ କରିବି ଗୋସାଇଁ, ଅର୍ଥଗୋବିନ୍ଦ ନାମେ ମୁହିଁ ।"

ଗ୍ରନ୍ଥ ଶେଷରେ ଏହାର ରଚନାକାଳ ସେ ନିମ୍ନୋକ୍ତ ପ୍ରକାରେ ଲେଖିଛନ୍ତି ।

"ବଳଶ୍ରୀ ଦାସ ମୂଢ଼ ବାଇ । ଅଶୋକ ଖୋଲା ଗଡ଼େ ଥାଇ ॥
ମୁକୁନ୍ଦ ଦେବ ରାଜାଙ୍କର । ଏକୋଇଶ ଅଙ୍କରେ ଆର ॥
କୁମ୍ଭ ପନ୍ଦର ଦିନ ଅନ୍ତେ । ବସିଲି ଲେଖନେ ଏ ପୁସ୍ତେ ॥
ଗାଇବା ଭାଗବତ ରୀତି । ବୋଲେ ବଳଶ୍ରୀ ମୂଢ଼ ଦାସ ॥"

ଗଜପତି ମୁକୁନ୍ଦଦେବଙ୍କ ୨୧ ଅଙ୍କ ୧୨-୯-୧୬୭୩ ତାରିଖ ଠାରୁ ୧-୯-୧୬୭୪ ତାରିଖ ପର୍ଯ୍ୟନ୍ତ ପ୍ରଚଳିତ ଥିବାରୁ ଏବଂ ଏହା କୁମ୍ଭ ମାସରେ ସମାପ୍ତ ହୋଇଥିବାରୁ ଏହାର ରଚନାକାଳ ୧୬୭୪ ଖ୍ରୀଷ୍ଟାବ୍ଦ ମାର୍ଚ୍ଚ ମାସ ରୂପେ ସ୍ଥିର କରାଯାଇପାରେ (୧୩) । ମୂଳ ଶ୍ରୀଗୀତଗୋବିନ୍ଦର ୧୨ଶ ସର୍ଗ ଏଥିରେ ନିମ୍ନୋକ୍ତ ଅଧ୍ୟାୟଗୁଡ଼ିକରେ ଅନୁଦିତ କରାଯାଇଛି ।

| | | | |
|---|---|---|---|
| **ଶ୍ରୀଗୀତଗୋବିନ୍ଦର** | ୧ମ ସର୍ଗ — | **ଅର୍ଥଗୋବିନ୍ଦର** | ୧ମରୁ ୬ଷ୍ଠ ଅଧ୍ୟାୟ |
| ,, | ୨ୟ ସର୍ଗ — | ,, | ୭ମ ଓ ୮ମ ଅଧ୍ୟାୟ |
| ,, | ୩ୟ ସର୍ଗ — | ,, | ୯ମ ଅଧ୍ୟାୟ |
| ,, | ୪ର୍ଥ ସର୍ଗ — | ,, | ୧୦ମ ଓ ୧୧ଶ ଅଧ୍ୟାୟ |
| ,, | ୫ମ ସର୍ଗ — | ,, | ୧୨ଶ ଓ ୧୩ଶ ଅଧ୍ୟାୟ |
| ,, | ୬ଷ୍ଠ ସର୍ଗ — | ,, | ୧୪ଶ ଅଧ୍ୟାୟ |
| ,, | ୭ମ ସର୍ଗ — | ,, | ୧୫ଶରୁ ୧୮ଶ ଅଧ୍ୟାୟ |
| ,, | ୮ମ ସର୍ଗ — | ,, | ୧୯ ଅଧ୍ୟାୟ |
| ,, | ୯ମ ସର୍ଗ — | ,, | ୨୦ ଅଧ୍ୟାୟ |

(୧୩) ଶ୍ରୀ କେଦାରନାଥ ମହାପାତ୍ରଙ୍କ ଦ୍ୱାରା ରଚିତ ଓ ପ୍ରକାଶିତ 'ଖୋର୍ଦ୍ଧା ଇତିହାସ' ପୃ. ୧୧୨ । ଏହି ଗ୍ରନ୍ଥଟି ବିସ୍ତୃତ ମୁଖବନ୍ଧ ସହ ସାଂସ୍କୃତିକ ବ୍ୟାପାର ବିଭାଗର ଦୁଇଜଣ ସମ୍ପାଦକଙ୍କ ଦ୍ୱାରା ସଂକଳିତ ହୋଇ ପ୍ରକାଶ ପାଇଛି ।

ଶ୍ରୀଗୀତଗୋବିନ୍ଦର ୧୦ମ ସର୍ଗ — ଅର୍ଥଗୋବିନ୍ଦର ୨୧ ଅଧ୍ୟାୟ
,, ୧୧ଶ ସର୍ଗ — ,, ୨୨ରୁ ୨୪ ଅଧ୍ୟାୟ
,, ୧୨ଶ ସର୍ଗ — ,, ୨୫ରୁ ୨୭ ଅଧ୍ୟାୟ

## ଉଦ୍ଧବ ଦାସ କୃତ ଶ୍ରୀଗୀତଗୋବିନ୍ଦର ପଦ୍ୟାନୁବାଦ —

ଉଦ୍ଧବ ଦାସ ନାମକ କମାର ଜାତିର ଜନୈକ କବି ତାଙ୍କ ଗୁରୁ ଶ୍ରୀ ଜଗନ୍ନାଥ ମିଶ୍ରଙ୍କ ଦ୍ୱାରା ସ୍ୱପ୍ନରେ ଆଦିଷ୍ଟ ହୋଇ ଶ୍ରୀଗୀତଗୋବିନ୍ଦର ନବାକ୍ଷରୀ ବୃତ୍ତରେ ପଦ୍ୟାନୁବାଦରେ ପ୍ରବୃତ୍ତି ହୋଇଥିଲେ ।

"ଶ୍ରୀ ଜଗନ୍ନାଥ ମିଶ୍ରେ ଆସି । ସ୍ୱପ୍ନେ ମୋହର ପାଶେ ବସି ॥
ବୋଇଲେ ଶୁଣ ମୋର ପୁତ୍ର । ଜୟଦେବର କର ଅର୍ଥ ॥
ମୁଁ ଅର୍ଥ କରିଅଛି ଯାହା । ତୁ ଗୀତ କରି କହ ତାହା ॥

ତାଙ୍କ ଗୁରୁ ଜଗନ୍ନାଥ ମିଶ୍ରଙ୍କ ଦ୍ୱାରା ରଚିତ ଶ୍ରୀଗୀତଗୋବିନ୍ଦର ଗଦ୍ୟାନୁବାଦ ଲେଖା ହୋଇଥିବା ପୋଥି ଉପଲବ୍ଧ ହେଲାଣି । ସେଥିରେ ସେ ଗ୍ରନ୍ଥରଚନା ସମୟ କୋଡରେ ଉଲ୍ଲେଖ କରିଥିଲେ । କିନ୍ତୁ ତାହାର ପ୍ରଥମ ଦୁଇଟି ଶବ୍ଦ ପୋଥିରେ ନଷ୍ଟ ହୋଇଯାଇଛି । ଶେଷ ଦୁଇଟି ଶବ୍ଦ ହେଉଛି ବାଣ (୫) ମହୀ (୧) ଅର୍ଥାତ୍ ୧୫ ବା ୧୫୦୦ ଶକାବ୍ଦ ବା ୧୫୭୮ ଖ୍ରୀଷ୍ଟାବ୍ଦ ପରେ ଏହା ରଚିତ ହୋଇଥିବା ସୁନିଶ୍ଚିତ । କିନ୍ତୁ ଏକକ ଓ ଦଶକ ସ୍ଥାନର ସଂଖ୍ୟା ଜଣାଯାଉ ନ ଥିବାରୁ ରଚନାର ବର୍ଷ ନିର୍ଦ୍ଦିଷ୍ଟ ହୋଇପାରୁ ନାହିଁ । ତେଣୁ ଏହି ପ୍ରମାଣ ବଳରେ ଉଦ୍ଧବ ଦାସଙ୍କୁ ସପ୍ତଦଶ ଶତାବ୍ଦୀରେ ଅବସ୍ଥାପିତ କରାଯାଇପାରେ ।

ଉଦ୍ଧବ ଦାସ ଧରଣୀଧର ଦାସ କୃତ ପଦ୍ୟାନୁବାଦକୁ ପ୍ରଥମେ ଉଦ୍ଧାରକରି କ୍ରମାନ୍ୱୟରେ ତାହାକୁ ନବାକ୍ଷରୀ ବୃତ୍ତରେ ପଦ୍ୟାନୁବାଦ କରିଛନ୍ତି । ମହାତ୍ମା ଜଗନ୍ନାଥ ଦାସ କୃତ ଭାଗବତ ନବାକ୍ଷରୀ ବୃତ୍ତର ଓଡ଼ିଆଙ୍କ ମଧ୍ୟରେ ବିଶେଷ ଲୋକପ୍ରିୟତା ଥିବାରୁ କବି ଉଦ୍ଧବ ଦାସ ସ୍ୱ ଗ୍ରନ୍ଥର ବହୁଳ ପ୍ରଚାର ପାଇଁ ଏହି ବୃତ୍ତକୁ ସ୍ୱ ଅନୁବାଦରେ ବ୍ୟବହାର କରିଥିଲେ । କମାର ଜାତିର ଜଣେ କବିଙ୍କ ଦ୍ୱାରା ଶ୍ରୀଗୀତଗୋବିନ୍ଦର ସରଳ, ସୁନ୍ଦର ଓ ଶ୍ରୁତିମଧୁର ପଦ୍ୟାନୁବାଦରୁ ଏହି ଗ୍ରନ୍ଥର (ଗୀ:ଗୋ:)ର ଲୋକପ୍ରିୟତା ସହଜରେ ଅନୁମେୟ ।

## ତ୍ରିଲୋଚନ ଦାସ କୃତ ପଦ୍ୟାନୁବାଦ —

ନାପିତ କୁଳ ଜାତ ତ୍ରିଲୋଚନ ନାମକ ଜନୈକ କବି ଶ୍ରୀଗୀତଗୋବିନ୍ଦର ପଦ୍ୟାନୁବାଦ କରିଥିବା ପ୍ରଥମେ ପ୍ରାଚୀ ସମିତି ଦ୍ୱାରା ପ୍ରକାଶିତ 'ରସବାରିଧି' ପୁସ୍ତକର

ମୁଖବନ୍ଧରେ ଉଲ୍ଲେଖ କରାଯାଇଥିଲା । ସୁଖର ବିଷୟ, ଅଧ୍ୟାପକ ଶ୍ରୀ ନରେନ୍ଦ୍ରନାଥ ପ୍ରଧାନ କଟକ ଜିଲ୍ଲା ଜଗତ୍‌ସିଂହପୁର ଅଞ୍ଚଳର ଗୋଟିଏ ଗାଁରେ ଏହାର ପୋଥି ପାଇ ତତ୍‌ସଂପର୍କରେ ଆଲୋଚନା କରିଛନ୍ତି । ଏଥିରୁ ଜଣାଯାଏ ଯେ, ସେ ଶ୍ରୀଗୀତ-ଗୋବିନ୍ଦର ଦ୍ୱାଦଶ ସର୍ଗର ପଦ୍ୟାନୁବାଦରେ ନିମ୍ନଲିଖିତ ରାଗ ଓ ବାଣୀ ବ୍ୟବହାର କରିଥିଲେ । ୧ମ ସର୍ଗ—ଭାରତିବାଣୀ, ୨ୟ ସର୍ଗ—ଦେସା କଳସାବାଣୀ, ୩ୟ ସର୍ଗ—ଦେଶ କଉସିକ, ୪ର୍ଥ ସର୍ଗ—ଦେଶ ମୁନିବରବାଣୀ, ୫ମ ସର୍ଗ—ଦେଶୀ ବରାଡ଼ି, ୬ଷ୍ଠ ସର୍ଗ—ଗୁଜ୍ଜରୀ, ୭ମ ସର୍ଗ—ମାଳବ ଗଉଡ଼ା, ୮ମ ସର୍ଗ—ଗୁଜ୍ଜରୀ ରାଗ, ୯ମ ସର୍ଗ—ଭଇରବୋ (ଭୈରବ), ୧୦ମ ସର୍ଗ—ବସନ୍ତ, ୧୧ଶ ସର୍ଗ—ରାମକିରୀ, ୧୨ଶ ସର୍ଗ—ଦେସ ପଡଆ ଗୁଜ୍ଜରୀ । ବ୍ୟବହୃତ ରାଗ ଓ ବାଣୀ ଗୁଡ଼ିକରୁ ବିଚାର କରି ଅଧ୍ୟାପକ ପ୍ରଧାନ କବି ସପ୍ତଦଶ ଶତାବ୍ଦୀର ପରବର୍ତ୍ତୀ ହୋଇ ନ ଥିବା ଅନୁମାନ କରିଛନ୍ତି । ତାଙ୍କର ଏହି ଅନୁମାନ ସମର୍ଥନୀୟ । ତାଙ୍କର ପଦମାନଙ୍କରେ ସେ ଅନ୍ତରଙ୍ଗ ଓ ବହିରଙ୍ଗ ଅର୍ଥ ରଖି ଅନୁବାଦ କରିଛନ୍ତି । ରଚନାର ଭାଷା ଅତ୍ୟନ୍ତ ଲଳିତ ଓ ମନୋମୁଗ୍ଧକର । *

ଗ୍ରନ୍ଥ ଶେଷରେ କବି ଉତ୍କଳରେ ପ୍ରଚଳିତ ପରଂପରା ଅନୁଯାୟୀ ଶ୍ରୀଗୀତ-ଗୋବିନ୍ଦର ୨୪ଟି ଗାଥା (ଗୀତ) ଓ ୭୨ଟି ଶ୍ଲୋକକୁ ସ୍ୱୀକାର କରିଛନ୍ତି । ଯଥା—

"ଶ୍ଲୋକ ସଂପୂର୍ଣ୍ଣ ହୋଇଲା ବାଅସ୍ତରି
ଚଉବିଂଶ ଗାଥା ସୂତ୍ର ଆଦି କରି ।
ପୂର୍ଣ୍ଣ ଦ୍ୱାଦଶ ସର୍ଗ ଏ ମହାକାବ୍ୟ
ଅଷ୍ଟାଦଶ ପୁରାଣାଦି ଏ ବେଦ ଭବ
ବେଦ ନିଧାନ ଯେତେ ପୁରାଣମାନ
ସର୍ବଶାସ୍ତ୍ରେଣ ଗୀତଗୋବିନ୍ଦ ନାମ ॥
ଭଣେ ଶ୍ରୀ ଜୟଦେବ ଭାବନା ଭାବେ
ଧନଜ ନ ସଂପଦ ମଙ୍ଗଳଲାଭେ ।

× × ×

**ଗୀତପ୍ରବନ୍ଧେ ଭଣିଲା ତ୍ରିଲୋଚନ**
ଓଷ୍କୁଳେ ଜାତରେ ସେବକସ୍ଥାନ
ସେବା ଭକ୍ତି ଜ୍ଞାନ କିଛି ନ ଜାଣଇ
ସାଧୁଗୋଷ୍ଠୀରେ କ୍ଷଣେହେଁ ନ ବସଇ ।"

* ଅଧ୍ୟାପକ ନରେନ୍ଦ୍ର ନାଥ ପ୍ରଧାନ କୃତ "ଓଡ଼ିଆ ସାହିତ୍ୟରେ ଶ୍ରୀଜୟଦେବ", ପୃ ୨୦୩—୨୦୪

**ଦଶାବତାର ସ୍ତୁତିର ଅନୁବାଦ—**

ଶ୍ରୀଗୀତଗୋବିନ୍ଦସ୍ଥ ଦଶାବତାର ସ୍ତୁତିର ବିଶେଷ ଲୋକପ୍ରିୟତା ଥିବାରୁ କୌଣସି କୌଣସି କବି କେବଳ ଏହାର ପଦ୍ୟାନୁବାଦ କରି ନିଜ ନିଜକୁ କୃତାର୍ଥ ମନେକରିଛନ୍ତି । ଏପର୍ଯ୍ୟନ୍ତ ଆବିଷ୍କୃତ ଏହିପରି ଦୁଇଜଣ କବି ହେଉଛନ୍ତି **ଚୈତନ୍ୟ ଦାସ** ଓ **ଭିଖାରୀ ଦାସ** । ସେ ଦୁହିଁଙ୍କ ରଚନା ଥିବା ପୋଥି ମିଉଜିୟମ ପୋଥି-ଭଣ୍ଡାରରେ ସଂରକ୍ଷିତ । ଉତ୍କଳୀୟ କବିରାଜ ଜୟଦେବଙ୍କ ପାଣ୍ଡିତ୍ୟ ଓ କବିତ୍ୱରେ ବିଶେଷ ମୁଗ୍ଧ କବିସମ୍ରାଟ ଉପେନ୍ଦ୍ରଭଞ୍ଜ ନାୟିକା 'କୋଟିବ୍ରହ୍ମାଣ୍ଡ ସୁନ୍ଦରୀ'ଙ୍କ ମୁଖରେ ପ୍ରିୟତମ ନାୟକଙ୍କୁ ଦଶାବତାରୀ ରୂପେ ନିମ୍ନୋକ୍ତ ଭାବରେ ପ୍ରୀତିସମ୍ବର୍ଦ୍ଧନା ଜଣାଇଛନ୍ତି । ଯଥା—

"କଣ୍ଟୁଶଙ୍ଖଜିତ ମନ୍ଦରତାଡ଼ନ ବରାହବର ଅଖିତ
ନେ ନରକେଶରୀ ବଳଧ୍ୱଂସୀ ତେଜ ସହସ୍ରକରଣଜିତ
ରେ ସଖି
ମୂର୍ତ୍ତି ରାମ ବଳ ଖ୍ୟାତ ମହି
ବୁଦ୍ଧି ଗୁଣେ ଚନ୍ଦ୍ରହାସ ଶୋହି ।
ବିଷ୍ଣୁ ଦଶରୂପ ଏଣୁ ଏହି ।"

ଓଡ଼ିଶାର ବହୁ କୃଷ୍ଣକାବ୍ୟ ପ୍ରଣେତା ପରମ ବୈଷ୍ଣବ ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମା ସ୍ୱୀୟ ୫୨ ଛାନ୍ଦ ବିଶିଷ୍ଟ 'ଲଳିତଲୋଚନା' ନାମକ କାଳ୍ପନିକ କାବ୍ୟର ନବମ ଛାନ୍ଦରେ ଶ୍ରୀଜୟଦେବଙ୍କ ପରି ଭକ୍ତିଗଦ୍‌ଗଦ ଚିତ୍ତରେ ଦଶାବତାର ସ୍ତୁତି ଗାନ କରିଛନ୍ତି ।

**ଓଡ଼ିଆ ସଂଗୀତରେ ଶ୍ରୀଗୀତଗୋବିନ୍ଦ —**

**ପିଣ୍ଡିକ ଶ୍ରୀଚନ୍ଦନଙ୍କ ବସନ୍ତରାସ**—ଅଷ୍ଟାଦଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ ଖୁର୍ଦ୍ଧା ରାଜା ଗଜପତି ବୀରକେଶରୀ ଦେବ (୧୭୩୭—୧୭୯୩) ଓ ମରହଟ୍ଟା ଶାସକ (୧୭୫୧-୧୮୦୩) ମାନଙ୍କ ପୃଷ୍ଠପୋଷକତା ଯୋଗୁଁ ଓଡ଼ିଶାରେ ଗୌଡ଼ୀୟ ଗୋସ୍ୱାମୀମାନଙ୍କ ପ୍ରଭାବ ବୃଦ୍ଧିଲାଭ କରିବାରୁ ବଙ୍ଗଳା ଗ୍ରନ୍ଥ ଓ କୀର୍ତ୍ତନ ଗୁଡ଼ିକ ବିଶେଷ ଲୋକପ୍ରିୟତା ଅର୍ଜନ କରିଥିଲା । ତେଣୁ ପୁରୀଜିଲ୍ଲା ଅନ୍ତର୍ଗତ ବେଗୁନିଆଁ ଥାନାର ସାନପଦର ନାମକ ପଲ୍ଲୀଗ୍ରାମରେ ଆବିର୍ଭୂତ ବୈଷ୍ଣବ କବି ପିଣ୍ଡିକ ଶ୍ରୀଚନ୍ଦନ ମହାପ୍ରଭୁ ଶ୍ରୀଚୈତନ୍ୟଙ୍କ ଧର୍ମବର୍ଦ୍ଧିଷ୍ଣୁ ଭକ୍ତଜନଙ୍କର ଚିତ୍ତାକର୍ଷଣ ନିମିତ୍ତ ବଙ୍ଗଳା ମିଶା ଓଡ଼ିଆ ଭାଷାରେ ସ୍ୱୀୟ ଲୋକପ୍ରିୟ 'ବସନ୍ତରାସ' ରଚନା କରିଥିଲେ । ଏହାର

ନାମ 'ବସନ୍ତରସ' ହେଲେମଧ୍ୟ ଏହା ସଂଗୀତରେ ଶ୍ରୀଗୀତଗୋବିନ୍ଦର ଅନୁବାଦ ଏବଂ ଦ୍ୱାଦଶ ସର୍ଗରେ ସଂପୂର୍ଣ୍ଣ ।

ଉନ୍ମୁକ୍ତ ରଙ୍ଗମଞ୍ଚରେ ବହୁଲୋକ ସମାଗମ ମଧ୍ୟରେ ଅଭିନୀତ ହେବାପାଇଁ ଏହା ଥିଲା ଅଭିପ୍ରେତ । ତେଣୁ ଶ୍ରୀଚନ୍ଦନ ଉତ୍କଳଖଣ୍ଡରେ ବହୁ ପ୍ରାଚୀନ କାଳରୁ ପ୍ରସାରଲାଭ କରିଥିବା ଶ୍ରୀଗୀତଗୋବିନ୍ଦର ଭାବ ଓ ଭାଷାକୁ ମଧୁରତର ଭାବରେ ଜନତାର ହୃଦୟସ୍ପର୍ଶ କରିବା ନିମିତ୍ତ ସ୍ୱୀୟ ରସର ସଂଗୀତ ଗୁଡ଼ିକ ଅତି ସରଳ, କାନ୍ତ ଓ ଲଳିତ ଭାଷାରେ ରଚନା କରିଥିଲେ । ସଂଗୀତ ଗୁଡ଼ିକ ମଧ୍ୟରେ ସ୍ଥାନେ ସ୍ଥାନେ ସ୍ୱରଚିତ ଶ୍ଳୋକମାନ ସନ୍ନିବିଷ୍ଟ କରି ଏହାର ମହତ୍ତ୍ୱ ଓ ମର୍ଯ୍ୟାଦାକୁ ବଢାଇ ଦେଇଥିଲେ । ରସର ଭାଷାଲାଳିତ୍ୟ ଓ ଅଭିନୟ ଉପଯୋଗିତା ଯୋଗୁଁ ଏହା ଅଳ୍ପଦିନ ମଧ୍ୟରେ ଉତ୍କଳ ଓ ବଙ୍ଗଦେଶରେ ପ୍ରସାର ଲାଭ କରିଥିଲା । ରଣପୁର, ବାଣପୁର ଓ ସାକ୍ଷୀଗୋପାଳ ପ୍ରଭୃତି ବହୁ ପ୍ରସିଦ୍ଧ ସ୍ଥାନରେ ବସନ୍ତରସ ଆନୁଷ୍ଠାନିକ ଭାବରେ ପାରିପୂର୍ଣ କରି ଉନ୍ମୁକ୍ତ ରଙ୍ଗମଞ୍ଚରେ ଅଭିନୀତ ହେଉଥିଲା ।

## ଗୋପୀନାଥ ଧୀର ଜଗଦ୍ଦେବ କୃତ 'ସଂଗୀତଗୀତଗୋବିନ୍ଦ' —

କଟକ ଜିଲ୍ଲା ଅନ୍ତର୍ଗତ ବଳରାମପୁର ଜମିଦାରୀର ରାଜବଂଶରେ ଉତ୍ପନ୍ନ ଗୋପୀନାଥ ଧୀର ଜଗଦ୍ଦେବ ଶ୍ରୀଗୀତଗୋବିନ୍ଦର ଏକ ଅନୁବାଦ କରି ତାହାର ନାମ ଦେଇଥିଲେ "ସଂଗୀତ ଗୀତଗୋବିନ୍ଦ" । ଶ୍ରୀଗୀତଗୋବିନ୍ଦର ଶ୍ଳୋକଗୁଡ଼ିକର ଅନୁବାଦ ପୋଇ ବୃତ୍ତରେ ଏବଂ ଗୀତଗୁଡ଼ିକର ଅନୁବାଦ ବିଭିନ୍ନ ରାଗସଂଗୀତ ଓ ଛାନ୍ଦବୃତ୍ତରେ ରଚିତ ହୋଇଅଛି । କବି ରଥବନ୍ଧ, ମନୋଜରଥବନ୍ଧ, କଙ୍କଣବନ୍ଧ, ଅନ୍ତର୍ଲିପି, ବହିର୍ଲିପି, ଚକ୍ରବନ୍ଧ, ପଦ୍ମବନ୍ଧ, ଗଜବନ୍ଧ ଇତ୍ୟାଦି ଭାବରେ କେତେକ ଛାନ୍ଦ ରଚନା କରିଛନ୍ତି । ଏଥିରେ ରାଜକବିଙ୍କ ଅସାଧାରଣ ପାଣ୍ଡିତ୍ୟ ପ୍ରକଟିତ ହୋଇଅଛି । ଏଭଳି ଧରଣର ଛାନ୍ଦବନ୍ଦୀ ସଂଗୀତରେ ପୁଣି ଏପରି ବିଶୁଦ୍ଧ ଅନୁବାଦ ଅତ୍ୟନ୍ତ ଦୁର୍ଲ୍ଲଭ । ଶ୍ରୀଗୀତଗୋବିନ୍ଦର ୬ଷ୍ଠ ସର୍ଗର 'ପଶ୍ୟତି ଦିଶିଦିଶି' ଗୀତଟିର ଅନୁବାଦ ଏହିପରି ହୋଇଛି—

(ରାଗ-ଭୈରବୀ, ତାଳ-ଆଠତାଳ)

"ହେ ନାଥ ହରି
କେଳି ନିବାସରେ ବିଷାଦ କରେରାଧା ॥ ଘୋଷା ॥
ତୁମ୍ଭ ପ୍ରତିଆଶେ ଆସେ     କି ଦେଖି ମାନସ ତୋଷେ
ଧ୍ୟାନ ଭାବରେ ରଭସେ     ତବ ଅଧର ମଧୁ ସେ
ପାନ କରି । ସତତ ବିଚୁରି । ୧

× × ×

ଶ୍ରୀ ଜୟଦେବ ଭଣିତ ଶ୍ରୀଗୀତଗୋବିନ୍ଦ ଖ୍ୟାତ
ସେ ଅର୍ଥ ଅନୁଭବିତ କରି କହେଗୋପୀନାଥ
ଜଗଦ୍ଦେବ, ସଙ୍ଗୀତେ ବିସ୍ତରି ॥'

ସରସ, ସୁନ୍ଦର ଓ ଶବ୍ଦକର୍ଷକ ଏହି ସଂଗୀତ–ଗୀତଗୋବିନ୍ଦ (୧୪) ପ୍ରାଚୀନ ଓଡ଼ିଆ ସାହିତ୍ୟର ଏକ ଅମୂଲ୍ୟ ରତ୍ନ ! କିନ୍ତୁ ଗ୍ରନ୍ଥକର୍ତ୍ତାଙ୍କ ସମୟ ନିର୍ଦ୍ଧାରିତ ହୋଇନାହିଁ !

## ଶ୍ରୀ ଗୌରହରି ପରିଚ୍ଛା କୃତ ସଂଗୀତ ଗୀତଗୋବିନ୍ଦ—

ପ୍ରସିଦ୍ଧ ଭକ୍ତକବି ଗୋପାଳକୃଷ୍ଣଙ୍କ ସମସାମୟିକ ପାରଳାଖେମଣ୍ଡି ନିବାସୀ ଶ୍ରୀ ଗୌରହରି ପରିଚ୍ଛା ବିଭିନ୍ନ ରାଗତାଳ ନିବଦ୍ଧ ସଂଗୀତରେ ଶ୍ରୀଗୀତଗୋବିନ୍ଦର ଅନୁବାଦ କରିଛନ୍ତି । ଏହି ଅନୁବାଦରେ ଶ୍ରୀଗୀତଗୋବିନ୍ଦ ପ୍ରତିସର୍ଗର ଶେଷ ଶ୍ଳୋକର ଅନୁବାଦ କରାଯାଇନାହିଁ । ଗୌରହରିଙ୍କର ଉଭୟ ଓଡ଼ିଆ ଓ ତେଲେଙ୍ଗୁ ସାହିତ୍ୟ ଓ ସଂଗୀତରେ ବିଶେଷ ପାଣ୍ଡିତ୍ୟ ଥିବାରୁ ତାଙ୍କ ସଂଗୀତ ମଧ୍ୟରୁ ଅନେକ ଗୁଡ଼ିଏ ତେଲେଙ୍ଗା ଗୀତର ରାଗତାଳ ନିବଦ୍ଧ । ତେଲେଙ୍ଗା ଗୀତର ପ୍ରଥମ ଧାଡ଼ିର ଉଲ୍ଲେଖ କରି ସେହି 'ପ୍ରତି' ସ୍ୱରବିନ୍ୟାସରେ ମଧ୍ୟ କେତେକ ସଂଗୀତ ରଚିତ । ତାଙ୍କ ଦ୍ୱାରା ଶ୍ରୀଗୀତଗୋବିନ୍ଦର ପ୍ରଥମ ଶ୍ଳୋକର ଅନୁବାଦରେ ପିଣ୍ଡିକ ଶ୍ରୀଚନ୍ଦନ ଲିଖିତ 'ବସନ୍ତ ରାସ'ର ଭାବଧାରା ଅନୁସୃତ ହୋଇଛି । (୧୫)

## ଶ୍ୟାମସୁନ୍ଦର ଭଞ୍ଜଙ୍କ 'ବସନ୍ତକ୍ରୀଡ଼ା ସମୁଜ୍ଜ୍ୱଳ ରସାବଳୀ—

ଖୁର୍ଦ୍ଧା ସବ୍‌ଡ଼ିଭିଜନ ଅନ୍ତର୍ଗତ ପୂର୍ବତନ 'ହଳଦିଆ' ରାଜ୍ୟର ଜମିଦାର ଶ୍ୟାମସୁନ୍ଦର ଭଞ୍ଜ ଗତ ଶତାବ୍ଦୀର ପ୍ରଥମ ଭାଗରେ ଶ୍ରୀଗୀତଗୋବିନ୍ଦର ଏକ ଅନୁବାଦ ରଚନା କରିଥିଲେ । ଏହାର ନାମ 'ବସନ୍ତକ୍ରୀଡ଼ା ସମୁଜ୍ଜ୍ୱଳ ରସାବଳୀ' । (୧୬) ପିଣ୍ଡିକ ଶ୍ରୀଚନ୍ଦନଙ୍କ ପ୍ରସିଦ୍ଧ ଲୋକପ୍ରିୟ 'ବସନ୍ତରାସ' ଅନୁକରଣରେ ଏହାର ଗୀତ ଗୁଡ଼ିକ ବଙ୍ଗଳା ମିଶା ଓଡ଼ିଆରେ ଲିଖିତ ।

---

(୧୪) ଏହି ଗ୍ରନ୍ଥଟି ୧୯୧୩ ମସିହାରେ ସ୍ୱର୍ଗତଃ ବିଶ୍ୱନାଥ କରଙ୍କ ଉତ୍କଳ ସାହିତ୍ୟ ପ୍ରେସରେ ମୁଦ୍ରିତ ଓ ଶ୍ରୀ ଉଦୟନାଥ ଅଗ୍ରୱାଲଙ୍କ ଦ୍ୱାରା ପ୍ରଥମବାର ପ୍ରକାଶିତ ହୋଇଥିଲେହେଁ ଗ୍ରନ୍ଥକର୍ତ୍ତା ଗୋପୀନାଥ ଧୀର ଜଗଦ୍ଦେବ ଉତ୍କଳର ଜଣେ ପ୍ରାଚୀନ କବି । ଏହାର ମହତ୍ତ୍ୱପୂର୍ଣ୍ଣ ଆଲୋଚନା ପାଇଁ କବିଚନ୍ଦ୍ର ଶ୍ରୀ କାଳୀଚରଣ ପଟ୍ଟନାୟକ କୃତ 'ଶ୍ରୀଗୀତଗୋବିନ୍ଦ' ପୁସ୍ତକ ଦ୍ରଷ୍ଟବ୍ୟ (ପୃ ୫୦୩–୫୦୭)

(୧୫) କବିଚନ୍ଦ୍ର କାଳୀଚରଣ ପଟ୍ଟନାୟକଙ୍କ 'ଶ୍ରୀଗୀତଗୋବିନ୍ଦ' ପୃ ୫୦୮

(୧୬) ଏହାର ପୋଥି ରାଜ୍ୟ ସଂଗ୍ରହାଳୟର ପୋଥିଭଣ୍ଡାରରେ ସଂରକ୍ଷିତ ।

## ଶ୍ରୀଗୀତଗୋବିନ୍ଦର ଗଦ୍ୟାନୁବାଦ

### ଶ୍ରୀ ଜଗନ୍ନାଥ ମିଶ୍ରଙ୍କ ଗଦ୍ୟାନୁବାଦ—

ପଣ୍ଡିତ ଶ୍ରୀ ଜଗନ୍ନାଥ ମିଶ୍ର ଶ୍ରୀଗୀତଗୋବିନ୍ଦକୁ ଓଡ଼ିଆ ଗଦ୍ୟରେ ଅନୁବାଦ କରିଥିଲେ ମଧ୍ୟ ସଂସ୍କୃତ ଭାଷାରେ ମଙ୍ଗଳାଚରଣ ଶ୍ଳୋକ ସମୂହ ରଚନା କରିଛନ୍ତି । ଯଥା

'ଲମ୍ବୋଦରପଦଯୁଗଳଂ ବୃନ୍ଦାରକବୃନ୍ଦବନ୍ଦିତଂ ବନ୍ଦେ ।
ଭକ୍ତଜନକଳ୍ପବଲ୍ଲୀଂ ଜୟ ଜଗଦମ୍ବା ମମ ବଚାଚ ଗୁରୁଃ ॥
ଯା ଲୀଳା ପରଭାବତା ଭଗବତୋ ବୃନ୍ଦାବନେ ରାଧୟା
ତତ୍‌କାମଜ୍ୱରଭୂଷ୍ଣ ଶାନ୍ତିକରଣେ ପାନଂ ସୁଧାପୂର୍ଣ୍ଣୟା ।
ଧାତାନିର୍ମିତଦୁଃଖସିନ୍ଧୁ ସଲିଲସ୍ୟୋଦ୍ଧରଣାର୍ଥଂ ଝଟିତ୍
ଭୂୟାଦ୍ଧା ବନମାଳାଃବନାପୁ ମଳନାଂ ସଧାରଣାଂ ସର୍ବଦା ॥
ଶ୍ରୀମଦ୍‌ବିପ୍ର ଜଗନ୍ନିବାସ ରଚିତା ଟୀକାପବର୍ଗପ୍ରଦା
ନତ୍ୱା ନର୍ମକଳାବିଳାସବିସରଂ ରାଧାରମାନାଥଯୋଃ
ଶ୍ରୀରେ ଚଞ୍ଚଦୃତା ଲତାସୁଚରିତୋ ବୃନ୍ଦାଃଭିରମ୍ୟେ ବନେ
ସୈଷା ସଂସ୍କୃତମୋଚନୀ ଭଗବତୀ ଶ୍ରୀଗୀତଗୋବିନ୍ଦତଃ ॥
ସ୍ୱସ୍ତି ଶ୍ରୀ ଜୟଦେବଟୀକା ଭାଷାପ୍ରବନ୍ଧେ ଲେଖ୍ୟତେ ।
× × × ×
ଶାକେ × × ବାଣେମହୀ ମୃଗେନ୍ଦ୍ରମାସେ ଶୀତେ ଭାନୁତିଥ୍ୟନ୍ଦୁ ଗ୍ରସ୍ତେ
ଟୀକାକୃତଂ ଗୀତଗୋବିନ୍ଦଗୀତଂ ଜଗନ୍ନିବାସେନ ବିଲିଖିତଂ ହ୍ୱ ॥ (୧୭)

ମାସ, ବାର, ତିଥି ପ୍ରଭୃତିର ଗଣନା ଅନୁସାରେ ଏହାର ସମୟ ହେଉଛି ୬-୮-୧୫୯୮ ବା ୨୮-୮-୧୬୭୩ ।

### ଅନନ୍ତ ରଥ ବାଣୀଭୂଷଣ କୃତ ଗଦ୍ୟାନୁବାଦ—

ବାଣୀଭୂଷଣ ଉପାଧି ଭୂଷିତ ଅନନ୍ତ ରଥ ନାମକ ଜନୈକ ପଣ୍ଡିତ ଶ୍ରୀ ଦିବ୍ୟସିଂହ ଦେବ ରାଜାଙ୍କ ଆଦେଶରେ ଶ୍ରୀଗୀତଗୋବିନ୍ଦର ଗଦ୍ୟାନୁବାଦ ରଚନା କରିଥିଲେ । ତାଙ୍କୁ ନିଧି ପରମଗୁରୁ, ଏହି ଟୀକା ରଚନାରେ ସାହାଯ୍ୟ କରିଥିଲେ । ଯଥା:

"ଶ୍ରୀଦିବ୍ୟସିଂହଦେବ ଶ ? ମଁଣୋ ନାମନୃପଜ୍ଞାନୁଜ୍ଞୟା ବାଣୀଭୂଷଣପଦ୍ଧତ୍ୟା-ନନ୍ତରଥଶର୍ମଣା ରଚିତାର୍ଥଂ, ନିଧି ନାମା ପରମଗୁରୁଣା ଲିଖିତମିଦଂ ଗୀତଗୋବିନ୍ଦାଖ୍ୟଂ ସାର୍ଥପୁସ୍ତକଂ ।" (୧୮)

---

(୧୭) ଓ (୧୮) ଉତ୍କଳ ବିଶ୍ୱବିଦ୍ୟାଳୟ 'ପୋଥିଭଣ୍ଡାର'ରେ ପୋଥି ଦୁଇଟି ସଂରକ୍ଷିତ ।

ଅନୁବାଦ ଗ୍ରନ୍ଥର ଗଦ୍ୟଶୈଳୀର ପ୍ରାଚୀନତା ଦୃଷ୍ଟିରୁ ଉଦ୍ଧୃତ ସଂସ୍କୃତ ଗଦ୍ୟାଂଶରେ ବର୍ଣ୍ଣିତ ଶ୍ରୀ ଦିବ୍ୟସିଂହ ଦେବଙ୍କୁ ଖୁରୁଧା ଗଜପତି ପ୍ରଥମ ଦିବ୍ୟସିଂହ ଦେବଙ୍କ ସହିତ ( ୧୬୮୮—୧୭୧୭ ଖ୍ରୀଷ୍ଟାବ୍ଦ ) ନିଃସନ୍ଦେହରେ ଚିହ୍ନିତ କରାଯାଇ ପାରେ । ଅତଏବ ଅନନ୍ତ ରଥ ବାଣୀଭୂଷଣ ସପ୍ତଦଶ ଶତାବ୍ଦୀର ଶେଷ ଦଶକ ବା ଅଷ୍ଟାଦଶ ଶତାବ୍ଦୀର ପ୍ରଥମ ପାଦରେ ଶ୍ରୀଗୀତଗୋବିନ୍ଦର ଓଡ଼ିଆ ଗଦ୍ୟାନୁବାଦ ରଚନା କରିଥିଲେ ।

## ବାସୁଦେବ ମିଶ୍ର କୃତ 'ଶ୍ରୀଗୀତଗୋବିନ୍ଦ'ର ଗଦ୍ୟାନୁବାଦ—

ବାସୁଦେବ ମିଶ୍ର ନାମଧେୟ ଜନୈକ ପଣ୍ଡିତ ଶ୍ରୀଗୀତଗୋବିନ୍ଦର 'ବାଳବୋଧିନୀ' (୧୯) ନାମକ ଗଦ୍ୟାନୁବାଦ କରିଥିବାର ଜଣାଯାଏ । କିନ୍ତୁ ଉକ୍ତ ଗ୍ରନ୍ଥକର୍ତ୍ତା ଓ ଉକ୍ତ ଟୀକାର ସମୟ ସମ୍ବନ୍ଧରେ କୌଣସି ତଥ୍ୟ ମିଳୁନାହିଁ ।

## ବିଭିନ୍ନ ପ୍ରସିଦ୍ଧ କୃଷ୍ଣକାବ୍ୟରେ ଶ୍ରୀଗୀତଗୋବିନ୍ଦର ପ୍ରଭାବ

## ଦୀନକୃଷ୍ଣ ଦାସ କୃତ ରସକଲ୍ଲୋଳ—

ପ୍ରାଚୀନ ଓଡ଼ିଆ ଭାଷାରେ ଲିଖିତ ବହୁ କୃଷ୍ଣକାବ୍ୟରେ ଶ୍ରୀଗୀତଗୋବିନ୍ଦର ପ୍ରଭାବ ଅଳ୍ପାଧିକ ଭାବରେ ପରିଲକ୍ଷିତ ହେଉଥିଲେ ମଧ୍ୟ ଏଠାରେ କେବଳ କେତେକ ମୁଖ୍ୟକୃତି ସମ୍ପର୍କରେ ଆଲୋଚନା କରାଯାଉଛି । ସେଗୁଡ଼ିକ ମଧ୍ୟରେ ଓଡ଼ିଆଭାଷୀ ଅଞ୍ଚଳ ଏବଂ ବଙ୍ଗ ଓ ମଧ୍ୟପ୍ରଦେଶର ପୂର୍ବାଞ୍ଚଳରେ ବିଶେଷ ଆଦର ଓ ଲୋକପ୍ରିୟତା ଅର୍ଜନ କରିଥିବା କାନ୍ତକବି ଦୀନକୃଷ୍ଣଙ୍କ 'ରସକଲ୍ଲୋଳ' ସର୍ବାଗ୍ରଗଣ୍ୟ । ଆମୂଳଚୂଳ ଯମକ, ଅନୁପ୍ରାସାଦି ଅଳଙ୍କାର ମଣ୍ଡିତ ଓ ଲଳିତ-କୋମଳ-କାନ୍ତ ପଦାବଳି ସମନ୍ୱିତ ଉକ୍ତ କାବ୍ୟଟି ଶ୍ରୀଗୀତଗୋବିନ୍ଦର ସମକକ୍ଷ । ଶ୍ରୀଗୀତଗୋବିନ୍ଦର ଦ୍ୱିତୀୟ ଗୀତରେ ପ୍ରଦତ୍ତ ବସନ୍ତ ବର୍ଣ୍ଣନା ଦୀନକୃଷ୍ଣ ସ୍ୱକୀୟ ପ୍ରତିଭା ବଳରେ କିପରି ନିଜସ୍ୱ କରି ପାରିଛନ୍ତି ତାହା ନିମ୍ନରେ ଉଦ୍ଧୃତ ପଦ୍ୟାବଳିରୁ ସ୍ପଷ୍ଟ ହୃଦୟଙ୍ଗମ କରିପାରିବେ ।

(ଦ୍ୱାଦଶ ଛାନ୍ଦ, ରାଗ—କଲ୍ୟାଣ ଆହାରୀ)

"କୁସୁମ ସମୟ ହୋଇଲା ଉଦୟ ଦକ୍ଷିଣ ପବନ ବହିଲା
କାମଦେବ ଦୂତ ହୋଇ ମହାମତ୍ତ ପଞ୍ଚମ ସ୍ୱରରେ କହିଲା
କନ୍ଦର୍ପ, ଦର୍ପ ହୋଇଲା ଅତିଶୟ,
କୁସୁମ-ବିଶିଖ କରିବାକୁ ଲିଖ କାମୀ କାମିନୀ କରିଲ ଭୟ ॥୧॥

(୧୯) ଏହାର ପୋଥି ଉତ୍କଳ ବିଶ୍ୱବିଦ୍ୟାଳୟ ପୋଥି ଭଣ୍ଡାରରେ ସଂରକ୍ଷିତ ।

କମଳ, ରସାଳ, ମାଳ ଉତପଳ, ନଆଳ ଅଶୋକ ବକାଶ
କାମ-ପଞ୍ଚବାଣ କାମୀ-ପଞ୍ଚପ୍ରାଣ ଯେନମାକୁ ହେଲେ ପ୍ରକାଶ
କେତକୀ, କୁନ୍ଦ କ ହୋଇଲ ପ୍ରକଟ,
କାନ୍ତା-କାନ୍ତ ଭେଟ ହୋଇଲା ଅଭେଟ ଜୀବ ଯିବା ହେଲା ନକଟ ॥୨॥

କୁସୁମବନ୍ତ ମାଧବୀ ଧନୁଶୋଭ ଭ୍ରମରକଦମ୍ବ-ଗୁଣରେ
କଉତୁକ କର କାମକୁ ବସନ୍ତ ଦେଇଅଛୁ ସଖା ପଣରେ
କଂଶୁକ, ପାଟ କରବାଳ ତାହାର,
କରବାରୁ ରଙ୍ଗ କୋପେ ତାହା ସଙ୍ଗ ସୁଖ ନୋହୁଅଛୁ କାହାର ॥୩॥

କେତର କୁସୁମ ଅତ ମନୋରମ କାମ-ନୃପତ ଶ୍ୱେତ ଛତ
କଶଳୟପନ୍ତ ପତାକା ଉଡ଼ନ୍ତ ବଶ କରନ୍ତ ମନ ନେତ୍ର ।
କରୁଣା, କେଶର ମଲ୍ଲୀ ଗନ୍ଧ ଧୂପ,
କେଳକଦମ୍ବେ ଶଙ୍ଖଧ୍ୱନ କରଇ ସଧୀରେ ଶଙ୍ଖୁଆ ମଧୁପ ॥୪॥

କୋକଳ କୁହୁ କୁହୁ ରବ ସଜାଉଁବାଜଲ ଅତ୍ୟନ୍ତ ପ୍ରବଳେ
କଲେ ପ୍ରୟାଣ କୁସୁମବାଣ ରାଏ ବସନ୍ତ ପ୍ରାଣସଖା ମେଳେ
କହବ, କେ ଅବା ସେକାଳ ସମ୍ପତ୍ତି
କର ମହାଭୟେ କମ୍ପର ପରାଏ କାମବଶ ଯୁବା ଯୁବତୀ" ॥୫॥ (୨୦)

କବରାଜ ଶ୍ରୀଜୟଦେବ ଓଡ଼ିଶା ଭୂମିରେ ଗେୟ ମହାକାବ୍ୟର ଯେଉଁ ସୁଦୃଢ଼ ଭିତ୍ତି ସ୍ଥାପନ କରିଥିଲେ, ତାଙ୍କର ସୁଯୋଗ୍ୟ ଦାୟାଦ ଶ୍ରୀକ୍ଷେତ୍ରବାସୀ କାନ୍ତକବ ଦୀନକୃଷ୍ଣ ତଦୁପର 'କ' ଆଦ୍ୟ ଅନୁପ୍ରାସରେ ରଚିତ 'ରସକଲ୍ଲୋଳ' ରୂପକ ରମଣୀୟ ବରାଟ ଗେୟ-କାବ୍ୟସୌଧ ଉତ୍ତୋଳନ କର ଓଡ଼ିଆ ସାହିତ୍ୟକୁ ସମସାମୟିକ ପ୍ରାଦେଶିକ ସାହିତ୍ୟ ସମୂହ ମଧ୍ୟରେ ଏକ ଶୀର୍ଷସ୍ଥାନ ପ୍ରଦାନ କରିବାପାଇଁ ସମର୍ଥ ହୋଇଥିଲେ ।

ଭକ୍ତକବ ଜୟଦେବ ସ୍ୱୀୟ ଅମର କୃତିକୁ 'କଲକଲୁଷଂ ଜନୟତୁ ପରି-ଶମିତମ୍', କଲିଯୁଗଚରିତଂ ନ ବସତୁ ଦୁରିତଂ' ବା 'କଳକଳୁଷଜ୍ୱରଖଣ୍ଡନ' ଭାବରେ ଅଭିହିତ କଲାପର **ଅଭିନବ ଜୟଦେବ ଦୀନକୃଷ୍ଣ** ବିରଚିତ 'ରସକଲ୍ଲୋଳ' ରୂପକ କୃଷ୍ଣଚରିତ ପାଠକର 'କଳିକଳୁଷ ଦୋଷ' ନାଶ କରିବାପାଇଁ ପାଠକ-ମାନଙ୍କୁ ବାରମ୍ବାର ବିନୀତ ଭାବରେ ନିବେଦନ କରିଛନ୍ତି । ଯଥା—

(୨୦) ରସକଲ୍ଲୋଳ, ପ୍ରାଚୀ ସଂସ୍କରଣ, ପୃ: ୪୧ ।

"କଳି କଳୁଷ ସଂଘାତ ଉପରେ କର ସଂଘାତ
ସଂଶୟ ନ କର କାଳଦଣ୍ଡ ବ୍ୟଥାକୁ ।
କଳାକରେ ଅନ୍ଧାର ପ୍ରାପ୍ତ
କୃଷ୍ଣ କଥା ଶ୍ରବଣରେ ଦୁରିତ କ୍ଷୟ" । ୧ । (ଦ୍ୱିତୀୟ ଛାନ୍ଦ)

"କବି ସେ ଚରିତ ମନୋହର ଗୀତ କରି ଭବସିନ୍ଧୁ ତରନ୍ତି" ॥୩୦॥
(ଅଷ୍ଟମ ଛାନ୍ଦ)

"କହେ ଦୀନକୃଷ୍ଣ ହୋଇ ମହା ତୃଷ୍ଣ ଗୋପୀ ଗୋପୀନାଥ କଥା
କରିବାକୁ ହିତ ଅଶେଷ ଦୁରିତ ଦଣ୍ଡଧର ଦଣ୍ଡ ବ୍ୟଥା" ॥୩୫॥ (ଦଶମଛାନ୍ଦ)

"କହଇ, ଦୀନକୃଷ୍ଣ ବନଭ୍ରମଣି
କର୍ଣ୍ଣେ ଏହା ଶୁଣି ସୁକୃତ ପର୍ଗୀ ତର ସଂସାର ତରଙ୍ଗିଣୀ" ॥୩୫॥
(ଦ୍ୱାଦଶ ଛାନ୍ଦ)

"କହେ ଦୀନକୃଷ୍ଣ କବି, କୃଷ୍ଣ ପାଦପଦ୍ମ ସେବି
କଳୁଷ ଅନ୍ଧାର ଅଳପକେ ଦୂର କରେ ଯାହା ନାମରବି ସେ କାମିନୀ ॥୪୩॥
(ଊନବିଂଶ ଛାନ୍ଦ)

ଜନଶ୍ରୁତିରୁ ଜଣାଯାଏ ଯେ, ଦୀନକୃଷ୍ଣଙ୍କ ଲାଳିତ୍ୟପୂର୍ଣ୍ଣ ପଦବିନ୍ୟାସରେ ଅତ୍ୟନ୍ତ ମୁଗ୍ଧ ହୋଇ କବିସମ୍ରାଟ୍ ଉପେନ୍ଦ୍ର ଭଞ୍ଜ ତାଙ୍କୁ ଜୟଦେବଙ୍କ ସମକକ୍ଷ କବି ରୂପେ ପ୍ରଣାମ ପୂର୍ବକ ଅନ୍ୟ କବିମାନଙ୍କ କବିତ୍ୱ ପ୍ରତି ତାଚ୍ଛଲ୍ୟ ପ୍ରଦର୍ଶନ ନିମିତ୍ତ ନିମ୍ନୋକ୍ତ ପଦ ରଚନା କରିଥିଲେ—

"କହେ ଉପଇନ୍ଦ୍ର ଭଞ୍ଜ ଠେକ ବେକ ବାହାକୁ
ରିବିତଳେ କବିପଣେ ନ ଗଣେ ମୁଁ କାହାକୁ
**ଜୟଦେବ ଦୀନକୃଷ୍ଣ ଏକା ମୋର ଶରଣ**
ଆନ କବିଙ୍କର ମୁଣ୍ଡେ ମୋର ବାମ ଚରଣ"

## ଶିଶୁ ଶଙ୍କରଙ୍କ 'ଉଷାଭିଳାଷ' —

ଷୋଡ଼ଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ ଆବିର୍ଭୂତ ଶିଶୁ ଶଙ୍କର କୃତ 'ଉଷାଭିଳାଷ' ପ୍ରାଚୀନ ଓଡ଼ିଆ ସାହିତ୍ୟ ଭଣ୍ଡାରରେ ଏକ ସମୁଜ୍ଜ୍ୱଳ ରତ୍ନ । ଏହି ଲୁପ୍ତ ରତ୍ନର ଉଦ୍ଧାର ସାଧନ କରିଥିଲେ ଆମ୍ଭମାନଙ୍କ ଗୁରୁ ସ୍ୱନାମଧନ୍ୟ ଅଧ୍ୟାପକ ଆର୍ତ୍ତ-ବଲ୍ଲଭ ମହାନ୍ତି । (୨୧) ଏହାର ୪୭ ପୃଷ୍ଠା ବ୍ୟାପୀ ସୁଦୀର୍ଘ ମୁଖବନ୍ଧରେ ଅଧ୍ୟାପକ

(୨୧) ପ୍ରାଚୀ ସଭ ଦ୍ୱାରା ୧୯୨୯ ମସିହାରେ ପ୍ରକାଶିତ । ଏହାର ମୁଖବନ୍ଧ ପୃ ୧୨, ପୃ ୨୩ ଓ ପୃ ୨୭ ଦ୍ରଷ୍ଟବ୍ୟ ।

ମହାଶୟ ଏହି କାବ୍ୟରେ ଶ୍ରୀଗୀତଗୋବିନ୍ଦର ପ୍ରଭାବ ସମ୍ବନ୍ଧରେ ଯେଉଁ ସୁଚିନ୍ତିତ ମତ ପ୍ରଦାନ କରିଛନ୍ତି ତାହା ନିମ୍ନରେ ଉଦ୍ଧୃତ ହେଲା ।

"କବିକୋକିଳକଣ୍ଠ ଜୟଦେବଙ୍କ ଅମରତୂଳିକାରେ ବୃନ୍ଦାବନର କାନନଲକ୍ଷ୍ମୀ ଯେପରି ସରସ ଓ ପ୍ରାଣସ୍ପର୍ଶୀ ହୋଇଉଠିଛି, ଶିଶୁଶଙ୍କର ଉଦ୍ୟାନଲକ୍ଷ୍ମୀ (ତୃଷ୍ଣାପୁ ଗ୍ରନ୍ଥ) ତାହାର ଅନୁକରଣରେ ସେହିପରି ସରସ ଓ ପ୍ରାଣସ୍ପର୍ଶୀ ହୋଇଉଠିଛି ।"

'ଉତ୍କଳର କବିକୋକିଳକଣ୍ଠ ଜୟଦେବ' ବୃନ୍ଦାବନ ରଚନାରେ ଯେଉଁ ଦିବ୍ୟ କଳାକୁଶଳତା ଦର୍ଶାଇ ପ୍ରେମମୟୀ କିଶୋରୀଙ୍କ ମାନଭଞ୍ଜନର ମଞ୍ଜୁ ଚିତ୍ରଣ କରିଥିଲେ ତାହାର ସ୍ପୃହା ଉଷାଭିଳାଷର ବୃନ୍ଦୁରଚନାରେ ସ୍ଥାନେ ସ୍ଥାନେ ଶିଶୁଶଙ୍କରଙ୍କୁ ପ୍ରଭାବିତ କରିଥିବାର ଦେଖାଯାଏ । ଗୀତଗୋବିନ୍ଦକାର କବି ୧୦ମ ସର୍ଗରେ କିଶୋରୀଙ୍କ ମାନଭଞ୍ଜନ ଉଦ୍ଦେଶ୍ୟରେ ରସିକଚୂଡ଼ାମଣି କୃଷ୍ଣଙ୍କ ମୁଖରେ କହିଅଛନ୍ତି—

"ସତ୍ୟମେବାସି ଯଦି ସୁଦତି ମୟି କୋପିନୀ ଦେହି ଖରନୟନଶରଘାତମ୍
ଘଟୟ ଭୁଜବନ୍ଧନଂ ଜନୟ ରଦଖଣ୍ଡନଂ ଯେନ ବା ଭବତି ସୁଖଜାତମ୍ ॥
ତ୍ୱମସି ମମ ଭୂଷଣଂ ତ୍ୱମସି ମମ ଜୀବନଂ ତ୍ୱମସି ମମ ଭବଜଲଧିରତ୍ନମ୍
ଭବତୁ ଭବତୀହ ମୟି ସତତମନୁରୋଧିନୀ ତତ୍ର ମମ ହୃଦୟମତି ଯତ୍ନମ୍ ॥"

କବି ଶିଶୁଶଙ୍କର ଉଦ୍ଧୃତ ଶ୍ଳୋକର ଭାବକୁ ନିମ୍ନୋକ୍ତ ପଂକ୍ତିଚୟରେ ପ୍ରକାଶ କରିଛନ୍ତି—

"ଇଷତ ଆଜ୍ଞାରେ ଯାର          ପାଶେ ଆସି ପରିଚର
ଅବନୀ ଶୟନ କି କେ ପାଣ୍ଡୁର ଗଣ୍ଡ
ଯେବେ ଅଛି ଅନୁରାଗ ତିଳ ମୋରେ ଭୁଜଯୁଗ ଅପରାଧ ଅନୁରୂପେ କରହିଦଣ୍ଡ
କରନୁହି ଦଶନ କ୍ଷତା, ଯେତେଣେ ରୋଷ ଛାଡ଼ି ହୋଏ ହରଷ ଜାତ ।୫।

×          ×          ×

ଏ ତୋର ସନ୍ଦେଶ ପାଇ, ବଳମ୍ବ ମୁଁ କଲାନାହିଁ ବିଫଳ ମଉନେ କି କେ
ହେଠ ବଦନ
ତୁ ମୋର ଦେହ-ଜୀବନ, ତୁ ମୋର ଭୂଷଣମାନ, ତୁ ମୋର ଇନ୍ଦ୍ରିୟ ଚିତ୍ତ
ମନ ସଦନ
ତୁ ମୋହର ମୁକୁଟ ଶିରେ ତୁ ମୋର ସୁକୃତ ଫଳ ସୁଖ ସାଗରେ । ୧୫ ।
ତୁ ମୋର ଗୃହନନ୍ଦନ, ତୁ ମୋର ଶିରବନ୍ଧନ, ତୁ ମୋର ମଦନଜଳନିଧିତରଣୀ
ତୁ ମୋ ଗଳେ ବନମାଳ, ତୁ ମୋହୋର ବାହୁବଳ, ତୁ ମୋର ଭବ ବିଭବ
ସୁଖ ସରଣୀ
ତୁ ମୋହୋର ସବୁ ରମଣୀ । ମୁଁ ତୋହୋର ପରିଚର କି କେ ନ ଗଣି ।"

"ଗୀତଗୋବିନ୍ଦର କବି ସମ୍ଭୋଗ ଶେଷରେ କୃଷ୍ଣଙ୍କ ଦ୍ୱାରା ରାଧାଙ୍କ ବେଶ ରଚନା ଯେଉଁ ପ୍ରଣାଳୀରେ କରିଛନ୍ତି, ତାହାର ଏକ ଅନାବିଳ ଅଥଚ ଅସ୍ପଷ୍ଟ ପ୍ରଭାବ ଉପାର ବେଶବିନ୍ୟାସରେ ଦେଖିବାକୁ ମିଳେ ।"

## ଦେବଦୁର୍ଲ୍ଲଭଙ୍କ 'ରହସ୍ୟମଞ୍ଜରୀ'—

ଷୋଡ଼ଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ ଆବିର୍ଭୂତ ଦେବଦୁର୍ଲ୍ଲଭ ଦାସଙ୍କ 'ରହସ୍ୟମଞ୍ଜରୀ' (୨୨) ଏକ ଉତ୍କୃଷ୍ଟ କୃଷ୍ଣକାବ୍ୟ । ଏଥିରେ ଶ୍ରୀଗୀତଗୋବିନ୍ଦର ପ୍ରଭାବ ସୁସ୍ପଷ୍ଟ । ଶ୍ରୀଗୀତଗୋବିନ୍ଦର ପ୍ରତ୍ୟେକ ସର୍ଗ ଶେଷରେ ସର୍ଗସ୍ଥ ବିଷୟବସ୍ତୁ ସୂଚକ ପୁଷ୍ପିକା ପରି 'ରହସ୍ୟମଞ୍ଜରୀ'ର ପ୍ରତି ଛାନ୍ଦର ଶେଷପଦରେ ଛାନ୍ଦବର୍ଣ୍ଣିତ ବିଷୟର ସୂଚନା ଦିଆଯାଇଛି । କବିରାଜ ଜୟଦେବଙ୍କ ପଦାଙ୍କ ଅନୁସରଣ କରି କବି ଦେବଦୁର୍ଲ୍ଲଭ ସ୍ୱ କାବ୍ୟରେ ଶ୍ରୀରାଧା-କୃଷ୍ଣ ପ୍ରେମଲୀଳାର ଉତ୍କର୍ଷ ପ୍ରତିପାଦନ ପାଇଁ ଅତି ଚତୁରତାର ସହିତ ଉଦ୍ୟମ କରିଛନ୍ତି । ରହସ୍ୟମଞ୍ଜରୀର ଦଶମ ଛାନ୍ଦରେ ନାନାଳଙ୍କାର ଭୂଷିତା ଶ୍ରୀରାଧାଙ୍କୁ ଶ୍ରୀକୃଷ୍ଣଙ୍କ ନିକଟକୁ ଗମନ ପାଇଁ ଦୂତୀଙ୍କ ଅନୁରୋଧରେ ଶ୍ରୀଗୀତଗୋବିନ୍ଦର ଏକାଦଶ ସର୍ଗରେ ପ୍ରଦତ୍ତ ଶ୍ରୀରାଧାଙ୍କ ଅଭିସାର ବର୍ଣ୍ଣନା ପ୍ରତିଧ୍ୱନିତ ହୋଇଅଛି । 'ଶ୍ରୀଗୀତଗୋବିନ୍ଦ'ର 'ପ୍ରବିଶ ରାଧେ ମାଧବ ସମୀପମିହ' ଧ୍ରୁବପଦ ପରି ଏହି ଛାନ୍ଦର ଘୋଷା ହୋଇଛି—

"ଗୋ ସଖି ତୁ ଯାଉକିନା
କନାଇ ପାଖକୁ ଯାଉକିନା"

ଶ୍ରୀଗୀତଗୋବିନ୍ଦ ପରି 'ରହସ୍ୟମଞ୍ଜରୀ'ର ପଞ୍ଚଦଶ ଛାନ୍ଦରେ ଶ୍ରୀ ରାଧାକୃଷ୍ଣଙ୍କ ସମ୍ଭୋଗ ଶୃଙ୍ଗାର ବର୍ଣ୍ଣିତ ହୋଇଅଛି । ଶ୍ରୀଗୀତଗୋବିନ୍ଦ ସୁଲଭ ପଦଲାଳିତ୍ୟ ମଧ୍ୟ ଏହି କାବ୍ୟର ଏକ ବୈଶିଷ୍ଟ୍ୟ ।

## ଭୂପତି ପଣ୍ଡିତ କୃତ 'ପ୍ରେମପଞ୍ଚାମୃତ'—

ପଣ୍ଡିତମାନଙ୍କ ଭୂପତି ପଣ୍ଡିତଙ୍କ ଦ୍ୱାରା ୨୯-୧-୧୬୯୪ ମସିହାରେ ସମାପ୍ତ 'ପ୍ରେମପଞ୍ଚାମୃତ' ଏକ ଉପାଦେୟ କୃଷ୍ଣକାବ୍ୟ । ଏଥିରେ କବି ଶ୍ରୀ ଜୟଦେବ କୃତ ଶ୍ରୀଗୀତଗୋବିନ୍ଦ ଗୀତ ନାଚୁଣିମାନେ ବୋଲି କପରି ନୃତ୍ୟ କରୁଥିଲେ ତାହାର ଉଲ୍ଲେଖ ଦେଖାଯାଏ । ଯଥା—

---

(୨୨) ପ୍ରାଚୀ ସମିତି ଦ୍ୱାରା ପ୍ରକାଶିତ 'ରହସ୍ୟମଞ୍ଜରୀ'

"ଶ୍ରୀ ଜୟଦେବ କବି କୃତ । ଗାପୁଣି ଗାଇଲେ ବସନ୍ତ ॥
ଘଣା ମୃଦଙ୍ଗ ତାଳ ନାଦେ । **ନାଚୁଣି ନାଚନ୍ତି ଆନନ୍ଦେ**
ଏରୂପେ ସନମାନ କରି । ତା ପଛେ କାରଣ ପଗୁରି ॥
(ପ୍ରେମପଞ୍ଚାମୃତ, ପ୍ରାଚୀ ସଂସ୍କରଣ, ପୃ ୯୪)

**ଦାଶରଥି ଦାସ କୃତ 'ବ୍ରଜବିହାର'—**

ଦାଶରଥି ଦାସ କୃତ 'ବ୍ରଜବିହାର' ଏକ ଲୋକପ୍ରିୟ ପ୍ରାଚୀନ କୃଷ୍ଣ କାବ୍ୟ । ସେ ୪୮୩୨ ଯୁଗାବ୍ଦ, ୧୭୫୩ ଶକାବ୍ଦ, ଖୁର୍ଦ୍ଧା ରାଜା ଗଜପତି ରାମଚନ୍ଦ୍ର ଦେବଙ୍କ ୮ ଅଙ୍କ କୁମାର ପୂର୍ଣ୍ଣିମା ଦିନ ଉକ୍ତ ଗ୍ରନ୍ଥ ସମାପ୍ତ କରିଥିବା ଗ୍ରନ୍ଥଶେଷରେ ଉଲ୍ଲେଖ କରିଛନ୍ତି । ଗଣନା ଅନୁସାରେ ଏହା ହେଉଛି ୧୭୩୧ ମସିହା, ଅକ୍ଟୋବର ୪ ତାରିଖ । (୨୩) ସେ ଶ୍ରୀମଦ୍‌ଭାଗବତ, ବ୍ରହ୍ମବୈବର୍ତ୍ତ ପୁରାଣ ଓ ଶ୍ରୀଗୀତଗୋବିନ୍ଦରୁ ସଂଗୃହୀତ ଉପାଦାନ ସାହାଯ୍ୟରେ ଉକ୍ତ ବୃହତ୍ କୃଷ୍ଣକାବ୍ୟ ରଚନା କରିଥିଲେ ମଧ୍ୟ ଶ୍ରୀଗୀତଗୋବିନ୍ଦର ବିଷୟବସ୍ତୁ ସମାବେଶ, ପ୍ରକାଶଭଙ୍ଗୀ ଓ ଭାଷାର ଶୈଳୀ କବିଙ୍କୁ ବିଶେଷ ଭାବରେ ପ୍ରଭାବିତ କରିଅଛି । କବି ଏକାଧିକ ସ୍ଥଳରେ ଶ୍ରୀଗୀତଗୋବିନ୍ଦରୁ ଏକାଧିକ ଶ୍ଳୋକ ମଧ୍ୟ ଉଦ୍ଧାର କରିଛନ୍ତି । ଯଥା—

"**ଗୀତଗୋବିନ୍ଦେ** ପ୍ରଥମ ଶ୍ଳୋକେ ଜୟଦେବ କହେ ।
ଏହି ଦିନ ନନ୍ଦ ରାଧା ସଙ୍ଗେ କୃଷ୍ଣ ପେଷେ ଗୃହେ ॥
ଏହି ସୂତ୍ର ଅନୁକ୍ରମେ ଗୀତ ହୋଇବ ବିସ୍ତାର
ଯେ ଶୁଣିବ ଏହି ରସ ସେହି ହୋଇବ ନିସ୍ତାର ॥ (୬ଷ୍ଠ ବୋଲି)

**ଗୀତଗୋବିନ୍ଦ** ଚରିତ ଭେଦ, ବିଗୁରି ଜନେ କରି ଆସ୍ୱାଦ । (୮ମ ବୋଲି)

**ଶ୍ରୀରାଧା-କୃଷ୍ଣ ଯୁଗଳମୂର୍ତ୍ତି ପ୍ରତିଷ୍ଠା ଯୋଗୁଁ ଶ୍ରୀଗୀତଗୋବିନ୍ଦର ପ୍ରଭାବ ବୃଦ୍ଧି —**

ଉତ୍କଳୀୟ କବିରାଜ ଶ୍ରୀ ଜୟଦେବ ଯେଉଁ ଶ୍ରୀରାଧାକୃଷ୍ଣ ଉପାସନାର ଧାରା ସ୍ୱୀୟ ଅମର କୃତିରେ ପ୍ରଚାର କରିଥିଲେ ତାହା ପ୍ରାୟ ଅର୍ଦ୍ଧ ଷଟ୍ ଶତାବ୍ଦୀ ମଧ୍ୟରେ ସଂସ୍କୃତ ସାହିତ୍ୟ ତଥା ବିଭିନ୍ନ ପ୍ରାନ୍ତୀୟ ସାହିତ୍ୟରେ ଅଖଣ୍ଡ ପ୍ରଭାବ ବିସ୍ତାର କରିଥିଲେ ମଧ୍ୟ ସମାଜର ନିୟନ୍ତା ସ୍ମୃତିକାରମାନଙ୍କ ପ୍ରବଳ ପ୍ରତିରୋଧ ଯୋଗୁଁ ଶ୍ରୀରାଧାକୃଷ୍ଣ ଯୁଗଳମୂର୍ତ୍ତି ପୂଜାର ଶାସ୍ତ୍ରୀୟତା ସ୍ୱୀକୃତ ହୋଇପାରି ନ ଥିଲା । କିନ୍ତୁ ଉତ୍କଳର ଅନ୍ୟତମ ବରପୁତ୍ର ପଣ୍ଡିତ ବଳଦେବ ବିଦ୍ୟାଭୂଷଣ ପ୍ରଣୀତ 'ଗୋବିନ୍ଦ-

(୨୩) ମୋ ଦ୍ୱାରା ପ୍ରଣୀତ ଓ ପ୍ରକାଶିତ 'ଖୁର୍ଦ୍ଧା ଇତିହାସ' ପୃ-୧୭୯

ଭାଷ୍ୟ' ପ୍ରାପ୍ତ ୧୭୪୦ ଖ୍ରୀଷ୍ଟାବ୍ଦରେ ରାଜସ୍ଥାନର ଜୟପୁରଠାରେ ଅନୁଷ୍ଠିତ ନିଖିଳ ଭାରତ ବୈଷ୍ଣବ ସମ୍ମିଳନୀରେ ଗୃହୀତ ହେବା ପରେ ଶ୍ରୀରାଧାକୃଷ୍ଣ ଯୁଗଳ ମୂର୍ତ୍ତିପୂଜାର ଶାସ୍ତ୍ରିୟତା ସ୍ୱୀକୃତ ହୋଇଲା । ଶ୍ରୀରାଧା-ମାଧବଙ୍କ ପରମଭକ୍ତ ଶ୍ରୀ ଜୟଦେବଙ୍କ ଅଭିଳାଷ ପୂର୍ଣ୍ଣ କରିଥିଲେ ପରମ ବୈଷ୍ଣବ ପଣ୍ଡିତ ବଳଦେବ ବିଦ୍ୟାଭୂଷଣ । ଏହି ସମ୍ମିଳନୀ ପରେ ଶ୍ରୀରାଧାକୃଷ୍ଣ ଯୁଗଳମୂର୍ତ୍ତି ଉପାସନା ଅତି କ୍ଷିପ୍ର ଭାବରେ ସମଗ୍ର ଭାରତରେ ବ୍ୟାପିଯାଇ ଶ୍ରୀଗୀତଗୋବିନ୍ଦର ଶାଶ୍ୱତୀୟ ମହତ୍ତ୍ୱ ଓ ଗୌରବ ବୃଦ୍ଧି କରିଥିଲା ।

ଯୁଗଳମୂର୍ତ୍ତି ପୂଜାର ଏହି ଅଭ୍ୟୁତ୍ଥାନ ଯୁଗରେ ଉତ୍କଳରେ ଆବିର୍ଭୂତ ହୋଇ-ଥିଲେ ତିନିଜଣ ପ୍ରସିଦ୍ଧ ବୈଷ୍ଣବ କବି— ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମା, ତାଙ୍କର ଶିଷ୍ୟ ଅଭିମନ୍ୟୁ ସାମନ୍ତସିଂହାର ଏବଂ କବିସୂର୍ଯ୍ୟ ବଳଦେବ ରଥ । ଏହି ସୁଧୀତ୍ରୟଙ୍କ ମଧ୍ୟରେ ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମା ଶ୍ରୀରାଧାକୃଷ୍ଣଙ୍କ ଯୁଗଳ ଉପାସନାରେ ଆତ୍ମହରା ହୋଇ ରଚନା କରିଥିଲେ **ଯୁଗଳ ରସାମୃତ ଲହରୀ, ଯୁଗଳ ରସାମୃତ ଭଙ୍ଗୀ, ଯୁଗଳ ରସାମୃତ ବିନ୍ଦୁ**, ପ୍ରେମତରଙ୍ଗ, ପ୍ରେମଲହରୀ, ପ୍ରେମ-କଳ୍ପଲତା ପ୍ରଭୃତି ବହୁ ଶ୍ରୀରାଧାକୃଷ୍ଣ ପ୍ରେମଲୀଳା ବର୍ଣ୍ଣନାତ୍ମକ ଗ୍ରନ୍ଥ ॥ ତାଙ୍କର ରଚନାବଳୀ ଦ୍ୱାରା ଉତ୍କଳରେ ପ୍ରକୃତରେ ଯୁଗଳ ରସାମୃତର ଲହରୀ ଖେଳି-ଯାଇଥିଲା ।

କବିସୂର୍ଯ୍ୟ ସଦାନନ୍ଦଙ୍କ ଶିଷ୍ୟ ବରେଣ୍ୟ ବୈଷ୍ଣବ କବି ଅଭିମନ୍ୟୁ ସାମନ୍ତ-ସିଂହାର ତାଙ୍କର ଅମରକୃତି **ବିଦଗ୍ଧ ଚିନ୍ତାମଣିରେ** 'ଅପ୍ରାକୃତ ପ୍ରେମମୂର୍ତ୍ତି' ଶ୍ରୀରାଧାହରିଙ୍କ ଅବ୍ୟକ୍ତ ଲୀଳାକୁ ଅତି ଚମତ୍କାର ଭାବରେ ବ୍ୟକ୍ତ କରିଛନ୍ତି । ସେ ତାଙ୍କର ସ୍ୱଭାବ ସୁଲଭ ସରଳ, କୋମଳ ଓ ତରଳ ଭାଷାରେ ପ୍ରେମମୟୀ ଶ୍ରୀରାଧା-ଙ୍କର ଶ୍ରୀକୃଷ୍ଣଙ୍କ ପ୍ରତି ଗଭୀର ପ୍ରେମର ଯେଉଁ ହୃଦୟସ୍ପର୍ଶୀ ଚିତ୍ର ପ୍ରଦାନ କରିଛନ୍ତି ତାହା ପ୍ରାଚୀନ ଓଡ଼ିଆ ସାହିତ୍ୟରେ ଅତୁଳନୀୟ । ଶ୍ରୀଗୀତଗୋବିନ୍ଦର ରାଧାଙ୍କୁ ସ୍ୱଭାବ କବି ସାମନ୍ତସିଂହାରଙ୍କ ଲେଖନୀ ଉତ୍କଳର ଜନତାଙ୍କ ନିକଟରେ ମୂର୍ତ୍ତିମନ୍ତ ପ୍ରେମ ପ୍ରତିମା ରୂପେ ପରିଚିତ କରାଇ ପାରିଥିଲେ ।

କବିସୂର୍ଯ୍ୟ ବଳଦେବ ରଥ ଅମରକବି ଶ୍ରୀ ଜୟଦେବଙ୍କର ଉପଯୁକ୍ତ ଦାୟାଦ ଏବଂ ତାଙ୍କକୃତ **କିଶୋର ଚନ୍ଦ୍ରାନନ୍ଦ ଚମ୍ପୂ** ଶ୍ରୀଗୀତଗୋବିନ୍ଦର ଏକ ପରିମାର୍ଜିତ ସଂସ୍କରଣ । ଏହା ସଂପର୍କରେ ପ୍ରସିଦ୍ଧ କବି ଉତ୍କଳର ମାନସିଂହଙ୍କ ମୂଲ୍ୟବାନ ମନ୍ତବ୍ୟ ଏଠାରେ ସ୍ମରଣୀୟ । ଯଥା—

"କବିସୂର୍ଯ୍ୟଙ୍କ କିଶୋରଚନ୍ଦ୍ରାନନ୍ଦ ଚମ୍ପୂ ଓ ଜୟଦେବଙ୍କ ଗୀତ-ଗୋବିନ୍ଦର କଥାବସ୍ତୁ ଏକାବେଳେକେ ଏକା । ହୁଏତ ଓଡ଼ିଆ ଭାଷାର କବି ନିଜ

ରାଜ୍ୟର ବିଖ୍ୟାତ ସଂସ୍କୃତ କବିଙ୍କଠାରୁ ଏହି ଗ୍ରଂଥ ରଚନାରେ ପ୍ରେରଣା ପାଇଥିବେ । କିଂତୁ ଓଡ଼ିଆ କବି ସଂସ୍କୃତ ଆଦର୍ଶକୁ ଯେ ଅନେକ ବିଭବରେ ବଳି ଯାଇଛଂତି, ଏହା କମ୍ ଗୌରବର କଥା ନୁହେଁ । କବିସୂର୍ଯ୍ୟଂକ ଚଂପୂ ଗୀତଗୋବିଂଦ ଅପେକ୍ଷା ଅଂତତଃ କମ୍ ଅଶ୍ଳୀଳତାଯୁକ୍ତ ଓ ଅଧିକ ପାରମାର୍ଥିକ କାବ୍ୟ ।" (୨୪କ)

ଉକ୍ତ ଚମ୍ପୂ ଚଉତିଶା ରୀତିରେ ଲିଖିତ ୩୪ଟି ସଙ୍ଗୀତର ସମାହାର ଯୋଗୁଁ କ୍ଷୁଦ୍ରାବୟବ ହେଲେ ମଧ୍ୟ ଏହାକୁ ପାଠକଲେ "ନାୟକ ଓ ନାୟିକାର ରାଗାନୁରାଗର କ୍ଷିପ୍ର ପ୍ରବହମାନ ବନ୍ୟାରେ ପାଠକ ଭାସିଯାଏ । ପ୍ରତ୍ୟେକଟି ଗୀତର ନୂତନ ମନୋରମ ରାଗ ଓ ପ୍ରତ୍ୟେକଟି ଗୀତର ପରିବେଶ ଅନୁଯାୟୀ ଚତୁର, ବିଚକ୍ଷଣ, ଅନୁପମ ଶବ୍ଦ ପ୍ରୟୋଜନ ପାଠକକୁ ଏକ ବିମୋହନ ଆଣିଦିଏ । ଚଉତିଶାର ସୀମିତ ପରିସର ଯୋଗୁ ପ୍ରତ୍ୟେକଟି ଗୀତ ଯେପରି ହୋଇଉଠିଛି ଏକ ନିଟୋଳ, ସୁଂଦର ସ୍ୱୟଂ ସମ୍ପୂର୍ଣ୍ଣ ମିନିଏଚର ଚିତ୍ର । × × × ସମଗ୍ର ଓଡ଼ିଆ ସାହିତ୍ୟରେ ଏପରି ଏକ ସାଂଧିକ ନିବିଡ଼ ସୁନିର୍ମିତ ଦୀପ୍ତିମୟ କାବ୍ୟ ଆଉ ନାହିଁ ବୋଧହୁଏ ।" (୨୪ଖ)

ଶ୍ରୀଜୟଦେବଙ୍କ ଜନ୍ମଭୂମିର କବି କବିସୂର୍ଯ୍ୟ ବଳଦେବଙ୍କ ଚମ୍ପୂ ଓଡ଼ିଆ ସାହିତ୍ୟରେ ଶ୍ରୀଗୀତଗୋବିନ୍ଦ ଶେଷ ଓ ଶ୍ରେଷ୍ଠ ଅନୁକୃତି ।

ଶ୍ରୀଗୀତଗୋବିନ୍ଦ ପ୍ରତି କବିସୂର୍ଯ୍ୟଙ୍କର କିପରି ପରମ ଆଦର ଥିଲା, ତାହା ତତ୍‌କୃତ 'ଚନ୍ଦ୍ରକଳା' କାବ୍ୟରୁ ନିମ୍ନରେ ଉଦ୍ଧୃତ ପଂକ୍ତି ଦ୍ୱୟରେ ସୁସ୍ପଷ୍ଟ ହୋଇଅଛି ।

"ଜୟଦେବ-କୃତ ରତିଜନ୍ୟ ରତି-ମୋକ୍ଷଣ-ଗୋପାଙ୍ଗନା ଗୀତ
ପାଠକରିଲାରୁ ମନ୍ଦରସେ ଭ୍ରୂ-ଭ୍ରମରୀ ନୟନା ବନିତା ।"

## ଗୋପୀନାଥ ପ୍ରତିମା ପୂଜାରେ ଶ୍ରୀଗୀତଗୋବିନ୍ଦର ପ୍ରଭାବ

### ମାଧବ ( ବିଷ୍ଣୁ ) ଉପାସନା—

ଦ୍ୱାଦଶ ଶତାବ୍ଦୀରେ ଶ୍ରୀଜୟଦେବଙ୍କ ଆବିର୍ଭାବ ସମୟକୁ ସମଗ୍ର ଭାରତରେ ଶଙ୍ଖ-ଚକ୍ର-ଗଦା-ପଦ୍ମ ଧାରୀ ଦଣ୍ଡାୟମାନ ବିଷ୍ଣୁ ପ୍ରତିମା ପୂଜା ବିଶେଷଭାବରେ ପ୍ରଚଳିତ ଥିଲା । ଓଡ଼ିଶାରେ ଊର୍ଦ୍ଧ୍ୱ ଦକ୍ଷିଣ ହସ୍ତରେ ଚକ୍ର ଓ ଊର୍ଦ୍ଧ୍ୱ ବାମହସ୍ତରେ ଶଙ୍ଖ ଧାରଣ କରିଥିବା ଏ ପ୍ରକାର ବିଗ୍ରହ ସାଧାରଣତଃ ମାଧବ ନାମରେ ପୂଜିତ ହେଉଥିଲେ ।

---

(୨୪ କ ଓ ଖ) 'ଓଡ଼ିଆ ସାହିତ୍ୟର ଇତିହାସ' — ଡକ୍ଟର **ମାୟାଧର ମାନସିଂହ,** ପୃ. ୨୦୪-୨୦୫ ।

ଓଡ଼ିଶାର ବଭିନ୍ନ ସ୍ଥାନରେ ବିଶେଷତଃ ପ୍ରାଚୀ ବିଧୌତ ଅଞ୍ଚଳ ଓ ବୈତରଣୀ ତଟ-ଦେଶରେ ବହୁ ମାଧବ ମନ୍ଦିରର ଅବସ୍ଥିତି ସମ୍ବନ୍ଧରେ ଚତୁର୍ଥ ଅଧ୍ୟାୟରେ ବିସ୍ତୃତ ଭାବରେ ଆଲୋଚିତ ହୋଇଅଛି ।

## ବିଷ୍ଣୁ-କୃଷ୍ଣ ଉପାସନା—

ଦ୍ୱାଦଶ ଶତାବ୍ଦୀର ମଧ୍ୟଭାଗରୁ ଶ୍ରୀମଦ୍‌ଭାଗବତ, ଶ୍ରୀଗୀତଗୋବିନ୍ଦମ୍, ଶ୍ରୀକୃଷ୍ଣକର୍ଣ୍ଣାମୃତମ୍ ପ୍ରଭୃତିର ବହୁଳ ପ୍ରଚାର ଫଳରେ ମାଧବ-ବିଷ୍ଣୁଙ୍କର ଉପାସନା କ୍ରମଶଃ ହ୍ରାସ ଲାଭ କଲା । ଏହାକୁ ଆସନ୍ନ ଲୋପମୁଖରୁ ରକ୍ଷା କରିବାପାଇଁ ଏବଂ ବର୍ଦ୍ଧିଷ୍ଣୁ କୃଷ୍ଣଉପାସକମାନଙ୍କ ସନ୍ତୋଷବିଧାନ ନିମିତ୍ତ ବିଷ୍ଣୁ ଓ କୃଷ୍ଣଙ୍କ ସମନ୍ୱୟ ଜ୍ଞାପକ ବିଷ୍ଣୁ-କୃଷ୍ଣ ପ୍ରତିମାର ସୃଷ୍ଟି କରାଗଲା । ଓଡ଼ିଶା ରାଜ୍ୟ ସଂଗ୍ରହାଳୟରେ ଏକ ଚମତ୍କାର ବିଷ୍ଣୁ-କୃଷ୍ଣ ପ୍ରତିମା ସଂରକ୍ଷିତ । ତ୍ରିଭଙ୍ଗଠାଣୀରେ ଦଣ୍ଡାୟମାନ, ଚମ୍ପକ-ମାଳା ମଣ୍ଡିତ, ବଂଶୀବାଦନରତ, ଚତୁର୍ଦ୍ଦିଗରେ ଦଶାବତାର ପରିଶୋଭିତ ଶ୍ରୀକୃଷ୍ଣ ବିଗ୍ରହର ଊର୍ଦ୍ଧ୍ୱ ଦକ୍ଷିଣହସ୍ତରେ ଚକ୍ର ଓ ଊର୍ଦ୍ଧ୍ୱ ବାମହସ୍ତରେ ଶଙ୍ଖ ଶୋଭମାନ । ସେ ନିମ୍ନ ଦୁଇହସ୍ତରେ ବଂଶୀ ଧାରଣ କରିଛନ୍ତି । ଏହି ବିଗ୍ରହରେ ଦଶାବତାର ପ୍ରକଟନ ଅତ୍ୟନ୍ତ ତାତ୍ପର୍ଯ୍ୟପୂର୍ଣ୍ଣ । ଶ୍ରୀଗୀତଗୋବିନ୍ଦରେ ବର୍ଣ୍ଣିତ ଦଶାବତାର କ୍ରମ ଏବଂ **ଶ୍ରୀକୃଷ୍ଣଙ୍କ ଦଶାକୃତିକୃତ୍** ଭାବ ଏଥିରେ ପ୍ରଦର୍ଶିତ ହୋଇଅଛି । ଏହିଭଳି ଦୁଇଟି ବିଷ୍ଣୁ-କୃଷ୍ଣ ବିଗ୍ରହ ଶ୍ରୀକ୍ଷେତ୍ରସ୍ଥ ଜଗନ୍ନାଥବଲ୍ଲଭ ମଠ ଓ ଷଡ଼ଭୁଜ ଗୌରାଙ୍ଗ ମଠରେ ପୂଜିତ ହେଉଥିବାର ଜଣାଯାଏ । (୨୫) ହିନ୍ଦୁ ପ୍ରତିମା ତତ୍ତ୍ୱ ସମ୍ବନ୍ଧରେ ଜଣେ ଲବ୍ଧପ୍ରତିଷ୍ଠ ବିଶେଷଜ୍ଞ ରୂପେ ଖ୍ୟାତ ସ୍ୱର୍ଗତଃ ଜେ· ଏନ୍· ବାନାର୍ଜ୍ଜି ମହାଶୟ ଉଡ଼ିପିଠରେ ମାଧ୍ୱାଚାର୍ଯ୍ୟ (୧୧୯୯—୧୨୭୮)ଙ୍କ ଦ୍ୱାରା ଏପରି ଏକ ବିଷ୍ଣୁ-କୃଷ୍ଣ ବିଗ୍ରହ ପ୍ରତିଷ୍ଠା ସମ୍ବନ୍ଧରେ ତାଙ୍କଦ୍ୱାରା ବଙ୍ଗଳା ଭାଷାରେ ଲିଖିତ 'ପଞ୍ଚୋପାସନା' ପୁସ୍ତକରେ ଲିପିବଦ୍ଧ କରିଛନ୍ତି ।

## ଗୋପୀନାଥ ପ୍ରତିମା ପୂଜା—

ସମାଜରେ ଶ୍ରୀଭାଗବତ ଓ ଶ୍ରୀଗୀତଗୋବିନ୍ଦର ପ୍ରଚାର ଓ ପ୍ରଭାବ ବୃଦ୍ଧି ଯୋଗୁଁ ଅଳ୍ପ କେତେବର୍ଷ ମଧ୍ୟରେ ବିଷ୍ଣୁ-କୃଷ୍ଣ ପ୍ରତିମା ପରିବର୍ତ୍ତରେ ଦ୍ୱିଭୁଜ ଗୋପୀନାଥ କୃଷ୍ଣଙ୍କ ପ୍ରତିମା ପୂଜାପାଇଁ ଶତ ଶତ ମନ୍ଦିର ଉତ୍କଳର ନାନାସ୍ଥାନରେ ନିର୍ମିତ ହୋଇଥିଲା । ଏହି ବିଗ୍ରହରେ ବିଷ୍ଣୁଭିର ପରିଚାୟକ ଚକ୍ର ଓ ଶଙ୍ଖ ସହିତ

---

(୨୫) On the worship of images of Rādhā Krṣhna by P. Acharya. '*Souvenir on Sri Jayadeva*' pp. 52—73.

ଲବଧ ଭୂଜ ମଧ୍ୟ ପରିତ୍ୟକ୍ତ ହେଲା । ଏହି ଯୁଗରେ ରାଜପ୍ରତିଷ୍ଠିତ ପ୍ରତି ବ୍ରାହ୍ମଣ ଶାସନର ପଶ୍ଚିମ ସୀମାରେ ଗୋପୀନାଥ ମନ୍ଦିର ପ୍ରତିଷ୍ଠା ଏକ ପ୍ରଥା ରୂପେ ଗୃହୀତ ହୋଇଥିଲା । ରେମୁଣା କଟକଠାରେ ଗଙ୍ଗସମ୍ରାଟ୍ ଦ୍ୱିତୀୟ ନରସିଂହ ଦେବଙ୍କ ଦ୍ୱାରା (୧୨୭୮-୧୩୦୭ ଖ୍ରୀଷ୍ଟାବ୍ଦ) ପ୍ରତିଷ୍ଠିତ ଗୋପୀନାଥ ପରବର୍ତ୍ତୀ କାଳରେ କ୍ଷୀରଚୋରା ଗୋପୀନାଥ ନାମରେ ପ୍ରସିଦ୍ଧି ଲାଭ କରିଥିଲେ । ଓଡ଼ିଶାର ରାଜଧାନୀ କଟକରେ ପ୍ରତିଷ୍ଠିତ ଗୋପୀନାଥ ବିଗ୍ରହ ସାକ୍ଷୀଗୋପାଳ ନାମରେ ପ୍ରଖ୍ୟାତ ଥିଲେ । ଶ୍ରୀଚୈତନ୍ୟ ମହାପ୍ରଭୁଙ୍କ ତିରୋଧାନ ପରେ ପରମାନନ୍ଦ ସେନ କବିକର୍ଣ୍ଣପୁରଙ୍କ ଦ୍ୱାରା ରଚିତ (୧୫୩୪ ଖ୍ରୀଷ୍ଟାବ୍ଦ) 'ଶ୍ରୀଚୈତନ୍ୟ ଚନ୍ଦ୍ରୋଦୟ ନାଟକମ୍'ରେ ଉଭୟ ଗୋପୀନାଥଙ୍କ ଭକ୍ତିପୂର୍ଣ୍ଣ ଉଲ୍ଲେଖ ମିଳେ । ଯଥା—

"ରେମୁଣା ନଗର ମଣ୍ଡଳମୂର୍ତ୍ତି **ବେଣୁପାଣି ଭଗବନ୍ତ୍ ପ୍ରତିମୂର୍ତ୍ତିଃ,**
ପ୍ରାକ୍ରମାଂତବଦ୍ଧମାନନ୍ତ ଆସୀଦ୍ବନ୍ଦନାର୍ଥମଥ **ରାଜପଥସ୍ଥ**"
"**ସାକ୍ଷିଗୋପାଳ ଦର୍ଶନାର୍ଥଂ** କଟକ ନାମଧେୟାଂ ରାଜଧାନୀଂ ଗତଃ
ଯଃ ଖଳୁ ପ୍ରତିମାକାର ଏବ **ବସ୍ତୁତସ୍ତୁ ସ୍ୱୟଂ ଭଗବାନ୍**" (୨୬)

ଅଲାରପୁର ତାମ୍ରଶାସନ ପ୍ରଦାତା ସମ୍ରାଟ୍ ଦ୍ୱିତୀୟ ନରସିଂହଦେବ (୨୭), ଭାର୍ଗବୀ ତୀରବର୍ତ୍ତୀ ଅଲାରପୁର ଶାସନ ଓ ଚଉଷଠୀ ଯୋଗିନୀ ପୀଠସ୍ଥଳୀ ହୀରାପୁର ଗ୍ରାମ ଓ ନନ୍ଦକଟବର୍ତ୍ତୀ ସରକଣା ଶାସନରେ ତିନୋଟି ଗୋପୀନାଥ ମନ୍ଦିର ନିର୍ମାଣ କରିଥିଲେ । ଅଲାରପୁରର ବିଶାଳ ଗୋପୀନାଥ ବିଗ୍ରହ ବର୍ତ୍ତମାନ ବାଲିଅନ୍ତା ବଜାରରେ ଏକ ନୂତନ ମନ୍ଦିରରେ ଅଧିଷ୍ଠିତ, ହୀରାପୁରର ଗୋପୀନାଥ ପ୍ରତିମା ବାସସ୍ଥାନ ଓ ପରିତ୍ୟକ୍ତ ଅବସ୍ଥାରେ ଦଣ୍ଡାୟମାନ । ସରକଣାର ଗୋପୀନାଥ ଏକ ନୂତନ ମନ୍ଦିରରେ ପୂଜିତ । ଦୟାନଦୀ ତୀରବର୍ତ୍ତୀ କାକୁଡ଼ିଆ ଗ୍ରାମରେ ଅତି ଚମତ୍କାର କାରୁକାର୍ଯ୍ୟ ମଣ୍ଡିତ ଓ କୋଣାର୍କର ପ୍ରସିଦ୍ଧ ସୂର୍ଯ୍ୟମନ୍ଦିର ପରି ତିନୋଟି କ୍ଷୁଦ୍ର ପାର୍ଶ୍ୱଦେବତା ମନ୍ଦିରଯୁକ୍ତ ଗୋପୀନାଥ ମନ୍ଦିର ଅଦ୍ୟାପି ଜରାଜୀର୍ଣ୍ଣ ଅବସ୍ଥାରେ ଦଣ୍ଡାୟମାନ ଥିଲେମଧ୍ୟ ଗୋପୀନାଥ ମୂର୍ତ୍ତି ଅପସାରିତ । ପିପିଲି ନିକଟବର୍ତ୍ତୀ ଦାନମୁକୁନ୍ଦପୁର ଶାସନରେ ଗୋପୀନାଥ ପ୍ରତିମା ନୂତନ ମନ୍ଦିରରେ ସ୍ଥାପିତ । କେବଳ ଅଲଗୁମ ନିକଟବର୍ତ୍ତୀ ସୋମେଶ୍ୱର ମନ୍ଦିର (ପ୍ରାୟ ତ୍ରୟୋଦଶ ଶତାବ୍ଦୀ)ରେ ଗୋପୀନାଥ ସ୍ୱ ପୂର୍ବ ଅଧିଷ୍ଠାନରେ ବିଦ୍ୟମାନ ।

---

(୨୬) 'ଶ୍ରୀଚୈତନ୍ୟଚନ୍ଦ୍ରୋଦୟ ନାଟକମ୍' ପୃ ୮୭, ପୃ ୮୧ ଶ୍ଳୋକାଙ୍କ ।

(୨୭) Alarpur plates of Narasimha II, Saka 1215. E. I. Vol. XXI, No. 3, pp. 17-24.

ବ୍ରାହ୍ମଣୀ ନଦୀ କୂଳବର୍ତ୍ତୀ କୌଣସି ସ୍ଥାନରେ ପୂଜିତ ହେଉଥିବା ଗୋପୀନାଥ ବିଗ୍ରହ ବର୍ତ୍ତମାନ ଭୁବନେଶ୍ୱରସ୍ଥ ରାଜ୍ୟ ସଂଗ୍ରହାଳୟରେ ସଂରକ୍ଷିତ । ଏହାର ପାଦପୀଠରେ ତ୍ରୟୋଦଶ ଶତାବ୍ଦୀର ବର୍ଣ୍ଣମାଳାରେ ଖୋଦିତ ଏକ ଲେଖରୁ ଜଣାଯାଏ ଯେ, 'ଅଭିନବ ବାରଣାସୀ କଟକ ସ୍ଥିତ' ବା ବର୍ତ୍ତମାନ କଟକବାସୀ ଜନୈକ ସୂତ୍ରଧାର ଏହାକୁ ନିର୍ମାଣ କରିଥିଲେ । ଯାଜପୁର ନିକଟବର୍ତ୍ତୀ ଗୋପୀନାଥପୁର, ଭଦ୍ରକ ନିକଟବର୍ତ୍ତୀ ମାଳତିବରି ଗ୍ରାମରେ ଗୋଟିଏ ଗୋଟିଏ ପ୍ରାଚୀନ ଗୋପୀନାଥ ବିଗ୍ରହର ଅବସ୍ଥିତି ଜଣାଯାଏ । ପ୍ରାତ୍ନତାତ୍ତ୍ୱିକ ଅନୁସନ୍ଧାନ ଫଳରେ କ୍ରମଶଃ ଉତ୍କଳର ଅନ୍ୟ କେତେକ ସ୍ଥାନରେ ଗୋପୀନାଥ ବିଗ୍ରହର ଅବସ୍ଥିତି ସମ୍ବନ୍ଧରେ ସଂବାଦ ମିଳୁଅଛି । ୧୨୮୨ ଖ୍ରୀଷ୍ଟାବ୍ଦର ଏକ ଅଭିଲେଖରେ ଗୋପୀନାଥ ମୂର୍ତ୍ତିର ଉଲ୍ଲେଖ ମିଳେ । (୨୮)

## ଶ୍ରୀଚୈତନ୍ୟୋତ୍ତର ଯୁଗରେ ବଙ୍ଗଦେଶରେ ଗୋପୀନାଥ ପୂଜାର ପ୍ରଚଳନ—

ଓଡ଼ିଶାରେ ଶ୍ରୀଗୀତଗୋବିନ୍ଦର ବହୁଳ ପ୍ରଚାର ଫଳରେ ତ୍ରୟୋଦଶ ଶତାବ୍ଦୀରୁ ଗୋପୀନାଥ ପୂଜାର ବିଶେଷ ପ୍ରଚଳନ ଘଟିଥିଲେ ମଧ୍ୟ ବଙ୍ଗଦେଶରେ ଶ୍ରୀଚୈତନ୍ୟଙ୍କ ତିରୋଧାନ ପର୍ଯ୍ୟନ୍ତ କେବଳ ଚତୁର୍ଭୁଜ ବିଷ୍ଣୁବିଗ୍ରହ ପୂଜା ପ୍ରଚଳିତ ଥିବାର ଅକାଟ୍ୟ ପ୍ରମାଣ ମିଳେ ପ୍ରାୟ ୧୫୩୪ ଖ୍ରୀଷ୍ଟାବ୍ଦରେ ରଚିତ 'ଶ୍ରୀଚୈତନ୍ୟ ଚନ୍ଦ୍ରୋଦୟ ନାଟକମ୍'ରୁ । ଯଥା—

"ଅୟଂ ଖଳୁ ଦେବଚତୁର୍ଭୁଜରୂପତୋଽପି ଦ୍ୱିଭୁଜରୂପୋ ଗୋପୀନାଥମେବ ଭକ୍ତୈ ର୍ଭଜନୀୟମିତି ଭଣନ୍ତି କେଽପି । **କେଽପି ଭଣନ୍ତି ଚତୁର୍ଭୁଜ ମର୍ତ୍ତିରେବ ଦୃଶ୍ୟତେ ସର୍ବସ୍ଥଳ ଏବ** । ନଖଳୁ ଦ୍ୱିଭୁଜରୂପା ଗୋପୀନାଥମୂର୍ତ୍ତିଃ ପ୍ରସିଦ୍ଧମାନ ।

ରତ୍ନାକରଃ—ତେ ଭ୍ରାନ୍ତାଃ **କଟକାଦୌ ସାକ୍ଷିଗୋପାଳାଦୟଃଅତି ପ୍ରାଚୀନା ଏବ"** (୨୯)

ଏହି ଉଦ୍ଧୃତିରେ କବିକର୍ଣ୍ଣପୂର କଟକସ୍ଥିତ ଦ୍ୱିଭୁଜ ସାକ୍ଷିଗୋପାଳ ମୂର୍ତ୍ତି ଓ ଉତ୍କଳର ଅନ୍ୟ କେତେକ ସ୍ଥାନରେ ପୂଜିତ ଗୋପୀନାଥ ମୂର୍ତ୍ତି ସମୂହର ପ୍ରାଚୀନତା ସ୍ୱୀକାର ପୂର୍ବକ କେବଳ ଚତୁର୍ଭୁଜ ବିଷ୍ଣୁବିଗ୍ରହ ପୂଜାର ସମର୍ଥକମାନଙ୍କୁ ଭ୍ରାନ୍ତ ବୋଲି ଘୋଷଣା କରିଛନ୍ତି ।

---

(୨୮) South Indian Inscriptions, Vol X, No. 718.

(୨୯) ଶ୍ରୀଚୈତନ୍ୟ ଚନ୍ଦ୍ରୋଦୟ ନାଟକମ୍ ଷଷ୍ଠୋଽଙ୍କଃ ପୃ ୧୮୭-୧୮୮

ଏ ସଂପର୍କରେ ଭାରତର ଜଣେ ଶ୍ରେଷ୍ଠ ପ୍ରତ୍ନତତ୍ତ୍ୱବିତ୍ ସ୍ୱର୍ଗତଃରାଖାଲ ଦାସ ବାନାର୍ଜିଙ୍କ ବହୁଗବେଷଣାପ୍ରସୂତ ସୁଚିନ୍ତିତ ମତ ପ୍ରଣିଧାନଯୋଗ୍ୟ ।

"Not only do we find a very great scarcity of combined images of Kṛisṇa and Rādhā in the eastern school, *but no image of Kṛishṇa by himself earlier than the fifteenth century has been discovered any-where in Bengal and Bihar*. The popularity of Rādhā Kṛishṇa cult in the north-eastern provinces of India appears to date from the advent of the great reformer Chaitanya." (୩୦)

## ଶ୍ରୀରାଧାକୃଷ୍ଣ ଯୁଗଳମୂର୍ତ୍ତି ଉପାସନା ହେଉଛି ଓଡ଼ିଶାର ଅବଦାନ—

ମହାପ୍ରଭୁ ଶ୍ରୀଚୈତନ୍ୟ ମତାବଲମ୍ବୀ ବୈଷ୍ଣବମାନଙ୍କର ଗୋସ୍ୱାମୀ ଗୋପାଳ ଭଟ୍ଟଙ୍କ ଦ୍ୱାରା ୧୪୬୫ ଶକାବ୍ଦ ବା ୧୫୪୩ ଖ୍ରୀଷ୍ଟାବ୍ଦରେ ବୃନ୍ଦାବନ ଧାମରେ ସଂକଳିତ **ହରିଭକ୍ତିବିଳାସ** (୩୧) ହେଉଛି ପ୍ରଧାନ ଧର୍ମଶାସ୍ତ୍ର । ଏଥିରେ ମୂର୍ତ୍ତିନିର୍ମାଣ ସମ୍ବନ୍ଧୀୟ ବିଳାସ ବା ଅଧ୍ୟାୟରେ ଲକ୍ଷ୍ମୀ-ନାରାୟଣ, ରୁକ୍ମିଣୀ-କୃଷ୍ଣ ପ୍ରଭୃତିଙ୍କ ମୂର୍ତ୍ତି ନିର୍ମାଣ ପାଇଁ ବ୍ୟବସ୍ଥା ଥିଲେମଧ୍ୟ ଶ୍ରୀରାଧା-କୃଷ୍ଣ ଯୁଗଳମୂର୍ତ୍ତି ନିର୍ମାଣ ପାଇଁ ବ୍ୟବସ୍ଥା ନାହିଁ । ଏଥିରେ ଶ୍ରୀରାଧାକୃଷ୍ଣଙ୍କ ରାସଯାତ୍ରାର ମଧ୍ୟ ଉଲ୍ଲେଖ ମିଳେ ନାହିଁ । ତେଣୁ ବୃନ୍ଦାବନରେ ଗୌଡ଼ୀୟ ଗୋସ୍ୱାମୀମାନଙ୍କ ଦ୍ୱାରା ସ୍ଥାପିତ ଓ ନିତ୍ୟସେବିତ ଗୋବିନ୍ଦଜୀ ପ୍ରଭୃତି ବିଗ୍ରହମାନଙ୍କ ନିକଟରେ ଶ୍ରୀରାଧା ପ୍ରତିମା ନ ଥିଲେ ।

## ବୃନ୍ଦାବନ-ଧାମରେ ଓଡ଼ିଶାରୁ ପ୍ରେରିତ ରାଧାପ୍ରତିମା ପ୍ରତିଷ୍ଠା—

ଓଡ଼ିଶାରୁ ବୃନ୍ଦାବନ-ଧାମକୁ ଶ୍ରୀମୂର୍ତ୍ତି (ରାଧାମୂର୍ତ୍ତି) ପ୍ରେରଣ ସମ୍ବନ୍ଧରେ ବଙ୍ଗୀୟ ଐତିହାସିକ ଅମରନାଥ ରାୟ ନିମ୍ନୋକ୍ତ ମନ୍ତବ୍ୟ ପ୍ରକାଶ କରିଛନ୍ତି ।

"The deities installed by the Gosvāmins at Vṛndābana were single images of Kṛshṇa; that long after their times a

(୩୦) Eastern Indian School of Medieval Sculpture, Chapter VI, P. 127.
Archaeological Survey of India, New Imperial Series, Vol. XLVII, 1933.

(୩୧) ମୋ ଦ୍ୱାରା ସଂକଳିତ "A Descriptive Catalogue of Sanskrit manuscripts of Orissa", Vol. I, P. 123.

Chief of Orissa sent to Vrindabana the first Srimurti (image of Rādhā) which was installed by the side of one of the deities and the omission in case of others was made good gradually". (୩୨)

ବୃନ୍ଦାବନ ଧାମରେ ରାଧାପ୍ରତିମା ପ୍ରତିଷ୍ଠା ସମ୍ବନ୍ଧରେ ନାନାସୂତ୍ରରୁ ତଥ୍ୟ ସଂଗ୍ରହ କରି ମୋର ଗୁରୁ ସ୍ୱର୍ଗତଃ ପରମାନନ୍ଦ ଆଚାର୍ଯ୍ୟ ଏକ ଉପାଦେୟ ପ୍ରବନ୍ଧ ପ୍ରକାଶ କରିଥିଲେ (୩୩) । ତାହାର ସାରମର୍ମ ନିମ୍ନରେ ପ୍ରଦତ୍ତ ହେଲା ।

କବି କର୍ଣ୍ଣପୁର ବିରଚିତ 'ଶ୍ରୀଚୈତନ୍ୟ ଚନ୍ଦ୍ରୋଦୟ ନାଟକମ୍' (ସପ୍ତମ ଅଙ୍କ)ରୁ ଜଣାଯାଏ ଯେ, ଶ୍ରୀଚୈତନ୍ୟ ମହାପ୍ରଭୁ ଗୋଦାବରୀ ତୀରବାସୀ ରାୟରାମାନନ୍ଦଙ୍କୁ ଉପାସ୍ୟ ଦେବତାଙ୍କ ସଂପର୍କରେ ପ୍ରଶ୍ନ କରିବାରୁ ସେ ଶ୍ରୀରାଧାକୃଷ୍ଣଙ୍କ ଯୁଗଳ ମୂର୍ତ୍ତିର ଉପାସନା କର୍ତ୍ତବ୍ୟ ବୋଲି ମତ ଦେଇଥିଲେ ।

ଭଗବାନ୍ (ଶ୍ରୀଚୈତନ୍ୟ)-କମୁପାସ୍ୟମହ
ରାମାନନ୍ଦ—ମହସୀ ଶ୍ରୀକୃଷ୍ଣରାଧାଭିଧେ । ୧୦ ।
(ଚୈ: ଚ—ସପ୍ତମୋଽଙ୍କଃ)

କିନ୍ତୁ ପ୍ରସିଦ୍ଧ ଗୌଡ଼ୀୟ ପଣ୍ଡିତ ବାସୁଦେବ ସାର୍ବଭୌମଙ୍କ ବିରୋଧ ଯୋଗୁଁ ଗଜପତି ପ୍ରତାପରୁଦ୍ରଦେବ ରାୟରାମାନନ୍ଦଙ୍କ ମତକୁ ଗ୍ରହଣ କରି ନ ଥିଲେ ।

କବିରାଜ କୃଷ୍ଣଦାସ ଗୋସ୍ୱାମୀଙ୍କ ଦ୍ୱାରା ୧୬୧୫ ଖ୍ରୀଷ୍ଟାବ୍ଦରେ ବୃନ୍ଦାବନ ଧାମରେ ରଚିତ ଅତ୍ୟନ୍ତ ଲୋକପ୍ରିୟ **ଶ୍ରୀଚୈତନ୍ୟ ଚରିତାମୃତ**ରେ ବୃନ୍ଦାବନ ଧାମରେ ପୂଜିତ 'ମଦନ ଗୋପାଳ' ଓ 'ଗୋବିନ୍ଦ'ଙ୍କ ନିକଟରେ ଶ୍ରୀରାଧା ପ୍ରତିମା ପୂଜିତ ହେଉଥିବାର ଉଲ୍ଲେଖ ମିଳେ ନାହିଁ । ଅତଏବ ୧୬୧୫ ଖ୍ରୀଷ୍ଟାବ୍ଦ ପରେ ବୃନ୍ଦାବନରେ ଶ୍ରୀରାଧାମୂର୍ତ୍ତି ପ୍ରତିଷ୍ଠିତ ହୋଇଥିଲେ ।

ପରମ ବୈଷ୍ଣବ ନରହରି ଚକ୍ରବର୍ତ୍ତୀଙ୍କ ଦ୍ୱାରା ଅଷ୍ଟାଦଶ ଶତାବ୍ଦୀର ପ୍ରଥମ ଭାଗରେ ରଚିତ **ଭକ୍ତିରତ୍ନାକର** ନାମକ ପ୍ରସିଦ୍ଧ ଗ୍ରନ୍ଥରେ ବୃନ୍ଦାବନସ୍ଥ ଗୋବିନ୍ଦ ଓ ମଦନମୋହନଙ୍କ ବିଗ୍ରହ ନିକଟରେ ପ୍ରଥମେ ଶ୍ରୀରାଧାମୂର୍ତ୍ତି ପୂଜିତ ହେଉ ନ ଥିବାର ଉଲ୍ଲେଖ ମିଳେ । ଯଥା—

---

(୩୨) Indian Culture, Vol. V. No. 2.

(୩୩) *'On the worship of images of Radha Krishna'*
Souvenir on Sri Jayadeva, pp, 52-72

"ଶ୍ରୀଗୋବିନ୍ଦ ଯେ ସମୟେ ପ୍ରକଟ ହୋଇଲା
**ସେ ସମୟୁ ଶ୍ରୀମତୀ ରାଧିକା ନାହିଁ ଛିଲା ।**
ଛିଲେନ ଶ୍ରୀମଦନମୋହନ ପ୍ରଭୁ ଏଛେ
ସଂକ୍ଷେପେ କହିଲୁଁ ଶ୍ରୀଯୁଗଳ ହୈଲ ଜୈଛେ ।"

ଓଡ଼ିଶାର ରାଜା ପୁରୁଷୋତ୍ତମଦେବ ପଠାଇଥିବା ଶ୍ରୀରାଧାମୂର୍ତ୍ତି ପ୍ରଥମେ ଶ୍ରୀଗୋବିନ୍ଦଙ୍କ ନିକଟରେ ସ୍ଥାପିତ ହୋଇଥିଲେ । ପରେ ଓଡ଼ିଶାରୁ ପ୍ରେରିତ ଅନ୍ୟଏକ ରାଧା ପ୍ରତିମା ମଦନଗୋପାଳଙ୍କ ନିକଟରେ ପ୍ରତିଷ୍ଠିତ ହୋଇଥିଲେ । ବଂଗଳା ସାହିତ୍ୟରେ ପ୍ରସିଦ୍ଧିଲାଭ କରିଥିବା ଉକ୍ତ ପୁରୁଷୋତ୍ତମଦେବ ଖୁର୍ଦ୍ଧା ରାଜା ଗଜପତି ପୁରୁଷୋତ୍ତମ ଦେବ (୧୬୦୧-୧୬୨୩ ଖ୍ରୀଷ୍ଟାବ୍ଦ)ଙ୍କ ସହିତ ନିଃସନ୍ଦେହରେ ଚିହ୍ନିତ ହୋଇପାରନ୍ତି ।

ଉତ୍କଳରେ ଶ୍ରୀଚୈତନ୍ୟ ପ୍ରବର୍ତ୍ତିତ ବୈଷ୍ଣବ ମତକୁ ବିଶେଷ ଲୋକପ୍ରିୟ କରିଥିବା ପ୍ରଭୁ ରସିକାନନ୍ଦ (୧୫୯୦—୧୬୫୨ଖ୍ରୀଷ୍ଟାବ୍ଦ)ଙ୍କ ଉଦ୍ୟମରେ ସୁବର୍ଣ୍ଣରେଖା ନଦୀ ତୀରବର୍ତ୍ତୀ ବୈଷ୍ଣବ ଧର୍ମର ପ୍ରଧାନ କେନ୍ଦ୍ର ଗୋପୀବଲ୍ଲଭପୁରରେ ଅଧିଷ୍ଠିତ ଗୋପୀବଲ୍ଲଭ ବିଗ୍ରହ ନିକଟରେ ଏକ ରାଧା ପ୍ରତିମା ପ୍ରତିଷ୍ଠିତ ହୋଇଥିଲା । ମୟୂରଭଞ୍ଜ ରାଜ୍ୟର ତତ୍କାଳୀନ ମହାରାଜା ବୈଦ୍ୟନାଥ ଭଞ୍ଜ ପ୍ରଭୁ ରସିକାନନ୍ଦଙ୍କ ଶିଷ୍ୟତ୍ୱ ଗ୍ରହଣ କରି ଗୋପୀବଲ୍ଲଭ ଓ ଶ୍ରୀରାଧାଙ୍କ ବିବାହ କାର୍ଯ୍ୟ ସଂପନ୍ନ କରିଥିଲେ । ଏହି ବିବାହରେ ରାଜାଙ୍କ ଦ୍ୱାରା ଯୌତୁକ ସ୍ୱରୂପ ପ୍ରଦତ୍ତ ମଂଲେଶ୍ୱର ନାମକ ଗ୍ରାମ ଅଦ୍ୟାପି ଲଖରାଜ ମୌଜାରୂପେ ବିଦ୍ୟମାନ ।

ବୃନ୍ଦାବନରେ ଶ୍ରୀରାଧାକୃଷ୍ଣ ଯୁଗଳମୂର୍ତ୍ତି ଉପାସନା ବିରୁଦ୍ଧରେ ଦାକ୍ଷିଣାତ୍ୟର ବୈଷ୍ଣବମାନେ ଆନ୍ଦୋଳନ କରିବାରୁ ପ୍ରାୟ ୧୭୪୦ ଖ୍ରୀଷ୍ଟାବ୍ଦରେ ଜୟପୁରରେ ଆହୂତ ବୈଷ୍ଣବ ସମ୍ମିଳନୀରେ ପ୍ରଖ୍ୟାତ ଉତ୍କଳୀୟ ପଣ୍ଡିତ ବଳଦେବ ବିଦ୍ୟାଭୂଷଣ ସ୍ୱରଚିତ **ଗୋବିନ୍ଦଭାଷ୍ୟ** ସାହାଯ୍ୟରେ ଯୁଗଳମୂର୍ତ୍ତି ପୂଜାର ଶାସ୍ତ୍ରିୟତା ପ୍ରତିପାଦନ କରିଥିଲେ । ଏହା ପରେ ସମଗ୍ର ଭାରତରେ ଶ୍ରୀରାଧାକୃଷ୍ଣ ଯୁଗଳମୂର୍ତ୍ତି ଉପାସନା କ୍ଷିପ୍ରଗତିରେ ପ୍ରସାର ଲାଭ କରିଥିଲା । ବୃନ୍ଦାବନ ଧାମରେ ଉପାସ୍ୟ ରୂପେ ଶ୍ରୀରାଧାମୂର୍ତ୍ତି ପ୍ରତିଷ୍ଠା ତଥା ତାହାର ଶାସ୍ତ୍ରିୟତା ପ୍ରତିପାଦନ ବିଷୟରେ ଓଡ଼ିଶାର ଅବଦାନ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ବୈଷ୍ଣବଧର୍ମ ଜଗତରେ ଏହି ଯୁଗାନ୍ତକାରୀ ପରିବର୍ତ୍ତନ ମୂଳରେ ଶ୍ରୀକ୍ଷେତ୍ରରେ ବିରଚିତ ଶ୍ରୀଗୀତଗୋବିନ୍ଦର ବଦ୍ଧମୂଳ ପ୍ରଭାବ ଓ ଶାଶ୍ୱତ ପ୍ରେରଣାର କାର୍ଯ୍ୟକାରିତା ଅବଶ୍ୟ ସ୍ୱୀକାର୍ଯ୍ୟ ।

**ତାଳପତ୍ର ପୋଥିରେ ଶ୍ରୀଗୀତଗୋବିନ୍ଦ ଚିତ୍ରାବଳୀ—**

ଉତ୍କଳଖଣ୍ଡରେ ଆଦ୍ୟରୁ ଧର୍ମଗ୍ରନ୍ଥ ଭାବରେ ସମ୍ମାନିତ ଶ୍ରୀଗୀତଗୋବିନ୍ଦର ବହୁଳ ପ୍ରଚାର ଓ ଗଭୀର ପ୍ରଭାବ ଫଳରେ ପ୍ରଥମେ ଶ୍ରୀ ଗୋପୀନାଥ (କୃଷ୍ଣ) ବିଗ୍ରହ

ଓ ପରବର୍ତ୍ତୀ କାଳରେ ଶ୍ରୀରାଧାକୃଷ୍ଣ ଯୁଗଳମୂର୍ତ୍ତିର ଉପାସନା କ୍ଷିପ୍ରଭାବରେ ପ୍ରଚଳିତ ହେବାରୁ ଏ ଦେଶରେ ପ୍ରସ୍ତର ତଥା ବିଭିନ୍ନ ଧାତୁରେ ପ୍ରତିମା ନିର୍ମାଣ ପ୍ରଣାଳୀର ଅଭୂତପୂର୍ବ ବିକାଶ ସାଧିତ ହୋଇଥିଲା । ଏ ଦେଶରେ ବହୁସଂଖ୍ୟାରେ ନିର୍ମିତ ପ୍ରସ୍ତର ଓ ଧାତୁ ବିଗ୍ରହ ସକଳ ନାନାସ୍ଥାନରେ ପ୍ରତିଷ୍ଠିତ ହେବା ସଙ୍ଗେ ସଙ୍ଗେ ବଙ୍ଗଦେଶ ଓ ବ୍ରଜଭୂମି (ମଥୁରା-ବୃନ୍ଦାବନ ଅଞ୍ଚଳ)ରେ ମଧ୍ୟ ଆଦୃତ ଓ ବନ୍ଦିତ ହେଉଥିଲା ।

ପ୍ରସ୍ତର ଓ ଧାତୁ ଶିଳ୍ପୀମାନଙ୍କ ପରି ପୁରୁଷାନୁକ୍ରମିକ ଚିତ୍ରକର ଓ ଲିପିକର ଭାବରେ ଜୀବିକାର୍ଜ୍ଜନ କରୁଥିବା ବ୍ୟକ୍ତିଗଣ ସର୍ବଜନାଦୃତ ପବିତ୍ର ଶ୍ରୀଗୀତଗୋବିନ୍ଦର ମନମୋହନ ପ୍ରତିଲିପି ଓ ନାନାରଙ୍ଗରେ ରଞ୍ଜିତ ଚିତ୍ରାବଳି ମାଧ୍ୟମରେ ଏହାର ଭାବ-ରାଜି ପ୍ରକଟନ ନିମିତ୍ତ ଧାରାବାହିକ ଭାବରେ ଉଦ୍ୟମ ଚଳାଇଥିଲେ । ପ୍ରତି ବିଜୟା ଦଶମୀ ଦିନ ଏପରି ଚିତ୍ରସମ୍ବଳିତ ଶ୍ରୀଗୀତଗୋବିନ୍ଦ ପୋଥି ବା ଅନ୍ତତଃ ଏହାର ଦଶାବତାର ଚିତ୍ରାବଳି ବିଭିନ୍ନ ରାଜା, ରାଜପୁରୁଷ, ସାମନ୍ତ ଓ ସମାଜର ବିଶିଷ୍ଟ ବ୍ୟକ୍ତିମାନଙ୍କୁ ଉପହାର ଦେବା ଗୋଟିଏ ପ୍ରଥାରେ ପରିଣତ ହୋଇଗଲା । ମୁଦ୍ରାଯନ୍ତ୍ରର ଅଭୂତପୂର୍ବ ପ୍ରସାର ସତ୍ତ୍ୱେ ତାଳପତ୍ରରେ ଦଶାବତାର ଚିତ୍ରାଙ୍କନ ଅଦ୍ୟାପି ଅବ୍ୟାହତ ରହିଛି ।

ଗ୍ରୀଷ୍ମପ୍ରଧାନ ଉତ୍କଳଭୂମିରେ ସମସ୍ତ ପୋଥି ପରି ଶ୍ରୀଗୀତଗୋବିନ୍ଦ ପୋଥି ଗୁଡ଼ିକ ବହୁ ଯତ୍ନରେ ରକ୍ଷିତ ହେଲେମଧ୍ୟ ଜଳବାୟୁର ପ୍ରଭାବରୁ ତିନି ଚାରିହେ ବର୍ଷ ମଧ୍ୟରେ ଜୀର୍ଣ୍ଣ, କୀଟଦଂଷ୍ଟ ଓ ଭଙ୍ଗପ୍ରବଣ ହେଉଥିବାର ଦେଖାଯାଏ । ପ୍ରାୟ ପ୍ରତି ପାଞ୍ଚବର୍ଷର ବ୍ୟବଧାନରେ ଘଟୁଥିବା ପ୍ରବଳ ବନ୍ୟା, ବାତ୍ୟା ଓ ବହୁଜଳବୃଷ୍ଟି ପ୍ରଭୃତି ଦୈବୀ ବିପତ୍ତି ସେଗୁଡ଼ିକର ପରମାୟୁ କ୍ଷୟରେ ସାହାଯ୍ୟ କରୁଛି । କାଳର ଏହି ସର୍ବଧ୍ୱଂସୀ ଶକ୍ତି ଯୋଗୁଁ ୩ । ୪ ଶତାବ୍ଦୀ ଠାରୁ ପ୍ରାଚୀନତର ତାଳପତ୍ରାଙ୍କିତ ଶ୍ରୀଗୀତଗୋବିନ୍ଦ ଚିତ୍ରାବଳୀ ବର୍ତ୍ତମାନ ପ୍ରାୟ ବିଲୁପ୍ତ । ତେଣୁ ପ୍ରାଚୀନ ଉତ୍କଳର ଚିତ୍ରାଙ୍କନ ଶୈଳୀର ପରଂପରା ସମ୍ପର୍କରେ ଜ୍ଞାନ ଆହରଣ ପାଇଁ ତିନିଶତ ବର୍ଷ ତଳେ-ମାପୁ ଥିବା ତାଳପତ୍ର ପୋଥି ଉପରେ ବର୍ତ୍ତମାନ ନିର୍ଭର କରିବାକୁ ପଡ଼ିବ ।

ଏପରି ଖଣ୍ଡିଏ ଅତି ପ୍ରାଚୀନ ସଚିତ୍ର ଶ୍ରୀଗୀତଗୋବିନ୍ଦ ପୋଥିର ତିନୋଟି ପତ୍ରର ପ୍ରତିଲିପି ହଣ୍ଟର ସାହେବ ଏକ ଶତାବ୍ଦୀ ପୂର୍ବେ ଇଂରେଜୀ ଭାଷାରେ ଲିଖିତ ତାଙ୍କ ଓଡ଼ିଶା ଇତିହାସର ପ୍ରଥମ ଭାଗରେ ସନ୍ନିବିଷ୍ଟ କରିଛନ୍ତି । ଏହାର ତିନି-ପତ୍ରରେ ଶ୍ରୀଗୀତଗୋବିନ୍ଦର ଦ୍ୱାଦଶ ସର୍ଗସ୍ଥ ଶେଷୋକ୍ତାଂଶ ଗୀତ ଉଦ୍ଧୀର୍ଣ୍ଣ ହୋଇଥିବା ଚିତ୍ର ମଧ୍ୟରେ ଥିବା ଭଣିତା ଶ୍ଲୋକରୁ ଜଣାଯାଏ । ଯଥା—

"ଶ୍ରୀଜୟଦେବ-ଭଣିତମିଦମନୁପଦ-ନିଗଦିତ-ମଧୁରିପୁମୋଦମ୍
ଜନୟତୁ ରସିକଜନେଷୁ ମନୋରମ-ରତିରସଭାବ-ବିନୋଦମ୍"

ଚତୁର୍ବିଂଶ ଗୀତରେ ଶ୍ରୀଗୀତଗୋବିନ୍ଦ ସମାପ୍ତ ହୋଇଥିବାରୁ ହଣ୍ଟର ସାହେବ ଚତ୍ରାଙ୍କିତ ଏକ ପୂର୍ଣ୍ଣ ଶ୍ରୀଗୀତଗୋବିନ୍ଦ ପୋଥି ସଂଗ୍ରହ କରିଥିବା ସୂଚିତ ହେଉଅଛି । (୩୪)

ଓଡ଼ିଶା ରାଜ୍ୟ ସଂଗ୍ରହାଳୟରେ ପ୍ରାପ୍ତ ୧୦ ଖଣ୍ଡ ଚିତ୍ର ସମ୍ବଳିତ ସଂପୂର୍ଣ୍ଣ ଶ୍ରୀଗୀତଗୋବିନ୍ଦ ପୋଥି ଅଛି । କିନ୍ତୁ ଯାଜପୁରରୁ ସଂଗୃହୀତ ଶ୍ରୀଗୀତଗୋବିନ୍ଦ ପୋଥି ବ୍ୟତୀତ ଅନ୍ୟଗୁଡ଼ିକରେ ଲିପିକରଣ (ନକଲ) ସମୟ ଦିଆଯାଇନାହିଁ । ଯାଜପୁର ପୋଥିର ନକଲ ସମୟ ହେଉଛି ୧୬୩୯ ଶକାବ୍ଦ ଗଜପତି ଶ୍ରୀ ହରେକୃଷ୍ଣ ଦେବଙ୍କ ଗୃହଅଙ୍କ (୩୫) ବା ୧୭୧୭ ଖ୍ରୀଷ୍ଟାବ୍ଦ । ଏହି ପୋଥିଟି ୨୫୭ ବର୍ଷ ପୁରାତନ ହେଲେମଧ୍ୟ ଏହାର ଚିତ୍ରାବଳୀରେ ବ୍ୟବହୃତ ରଙ୍ଗଗୁଡ଼ିକ ଏପର୍ଯ୍ୟନ୍ତ ସତେଜ ରହିଛି । ଅନ୍ୟ କେତେକ ପୁରାତନ ପୋଥିର ଚିତ୍ରଗୁଡ଼ିକ ଅଧିକ ମନୋରମ ହେଲେ ମଧ୍ୟ ସେଗୁଡ଼ିକର ସମୟ ଜଣାଯାଉନାହିଁ ।

## ତାଳପତ୍ର ପ୍ରସ୍ତୁତ ଶ୍ରୀଗୀତଗୋବିନ୍ଦ ମାଳା—

କୋରାପୁଟ ଜିଲ୍ଲାର ଜୟପୁରରୁ ମିଉଜିୟମ ପୋଥିଭଣ୍ଡାର ପାଇଁ ସଂଗୃହୀତ ତାଳପତ୍ର ପ୍ରସ୍ତୁତ ଶ୍ରୀଗୀତଗୋବିନ୍ଦ ମାଳା ଏକ ଚମତ୍କାର ଦର୍ଶନୀୟ ବସ୍ତୁ (Ext/15) ଅତି ଯତ୍ନରେ ପାକଳ ତାଳପତ୍ରକୁ ସମବର୍ଦ୍ଧିତ ବୃତ୍ତାକାରରେ କାଟି ସେଗୁଡ଼ିକୁ ପ୍ରଥମେ ବଡ଼ ବଡ଼ ରୁଦ୍ରାକ୍ଷ ପରି କରାଯାଇଛି । ରୁଦ୍ରାକ୍ଷାକୃତ ତାଳପତ୍ର ଗୋଟିଗୁଡ଼ିକୁ ମଝିରେ ବିନ୍ଧ କରି ସୂତା ଗଳାଇ ଏକ ମାଳା ଆକାରରେ ଗୁନ୍ଥାଯାଇଛି । ଅତି କ୍ଷୁଦ୍ର ଗୋଲାକାର ତାଳପତ୍ର ଦେହରେ ସୁନ୍ଦର ସୁଗୋଲ, ଓଡ଼ିଆ ଅକ୍ଷରରେ ସମଗ୍ର ଶ୍ରୀଗୀତଗୋବିନ୍ଦ ଲିପିକାର କପରି ଧୈର୍ଯ୍ୟ, ନିଷ୍ଠା ଓ ଧର୍ମବିଶ୍ୱାସ ସହିତ ଉତ୍କୀର୍ଣ୍ଣ କରିଛି ତାହା ଦେଖିଲେ ଆଶ୍ଚର୍ଯ୍ୟ ଲାଗେ । ଭୁବନେଶ୍ୱରରେ P.E N ଅଧିବେଶନ ସମୟରେ ଅନୁଷ୍ଠିତ ପ୍ରଦର୍ଶନୀରେ ସ୍ୱର୍ଗତଃ ପଣ୍ଡିତ ଜବାହରଲାଲ ନେହେରୁ ଓ ସାର୍ ସର୍ବପଲ୍ଲୀ ରାଧାକୃଷ୍ଣନ୍ ଏହି ଶ୍ରୀଗୀତଗୋବିନ୍ଦ ମାଳାକୁ ଦେଖି ଭୂୟସୀ ପ୍ରଶଂସା କରିଥିଲେ ।

## କ୍ଷୁଦ୍ର ମତ୍ସ୍ୟାକୃତ ଶ୍ରୀଗୀତଗୋବିନ୍ଦ ପୋଥି—

ପୁରୀରୁ ସଂଗୃହୀତ କ୍ଷୁଦ୍ର ମତ୍ସ୍ୟାକୃତ ଶ୍ରୀଗୀତଗୋବିନ୍ଦ ପୋଥିଟି ମଧ୍ୟ ଏକ ଉତ୍କୃଷ୍ଟ ଦର୍ଶନୀୟ ବସ୍ତୁ । (Ext/9) ଲିପିକାର ଅତି ଯତ୍ନରେ ଅତି କ୍ଷୁଦ୍ର କ୍ଷୁଦ୍ର ଓଡ଼ିଆ ବର୍ଣ୍ଣମାଳାରେ ସମଗ୍ର ଗୀତଗୋବିନ୍ଦକୁ ଏହି ପୋଥିରେ ଲିପିବଦ୍ଧ କରିଅଛି ।

---

(୩୪) Hunter's Orissa, 1872 Vol. I. Chapter V. p 168
*"Three pages of an illuminated palm leaf book in the Oriyac haracters".*

(୩୫) A Des. Cat. of Sans Mss, Vol. II. by Sri K. N. Mahapatra.

## ଦଶାବତାର ଚିତ୍ରାବଳି—

ଏକତ୍ର ସୂତାରେ ଗୁନ୍ଥା ହୋଇଥିବା ଏକ ତାଳପତ୍ର ଗୁଚ୍ଛ ଦେହରେ ଦଶାବତାର ଚିତ୍ରାବଳି ଅଙ୍କନ କରିବା ପ୍ରଥା ଏ ଦେଶରେ ବହୁ ପୂର୍ବକାଳରୁ ପ୍ରଚଳିତ । ମିଉଜିୟମ ପୋଥିଭଣ୍ଡାରରେ ଏପରି ବହୁ ଦଶାବତାର ଚିତ୍ରାବଳି ସଂରକ୍ଷିତ । କିନ୍ତୁ ସଂଗୃହୀତ ଅଧିକାଂଶର ସମସ୍ତ ଅଙ୍କିତ । ସେଥିମଧ୍ୟରୁ 'ସମାଜ'ର ବାର୍ତ୍ତା ସଂପାଦକ ଶ୍ରୀ ଉଦୟନାଥ ଷଡ଼ଙ୍ଗୀଙ୍କ ଦ୍ୱାରା ଜଗତ୍ସିଂହପୁର ଅଞ୍ଚଳରୁ ସଂଗୃହୀତ ଓ ମିଉଜିୟମକୁ ଉପହାର ସ୍ୱରୂପ ପ୍ରଦତ୍ତ ଦଶାବତାର ଚିତ୍ରଗୁଚ୍ଛ ଅତି ଉତ୍କୃଷ୍ଟ । (Ext/47) ଏହି ଗୁଚ୍ଛରେ ଥିବା ୧୨ଟି ତାଳପତ୍ରରେ ଦଶାବତାର ସ୍ତୁତି ଲିଖିତ ଏବଂ ସେମାନଙ୍କ ଆକୃତି ଗୁଡ଼ିକ ଚିତ୍ତାକର୍ଷକ ଭାବରେ ଅଙ୍କିତ ହୋଇଛି । ତାଳପତ୍ରରେ ଦଶାବତାର ଚିତ୍ରସମୂହ ଅଙ୍କନ କରିବା ପ୍ରଥା ଏବେମଧ୍ୟ ଲୁପ୍ତ ହୋଇନାହିଁ ।

## ବାଉଁଶ ପତ୍ରରେ ଶ୍ରୀଗୀତଗୋବିନ୍ଦର ପ୍ରତିଲିପି—

ଶ୍ରୀଗୀତଗୋବିନ୍ଦ ଉତାରିବା ଏ ଓଡ଼ିଆ ଜାତିକୁ କିପରି ପାଗଳ କରିଥିଲା, ଅତି କ୍ଷୁଦ୍ରାକାର, ଭଙ୍ଗୁର, ଅପ୍ରଶସ୍ତ, କ୍ଷୀଣ ଓ ଶୁଷ୍କ ବାଉଁଶପତ୍ର ଦେହରେ ଲୁହା ଲେଖନ ସାହାଯ୍ୟରେ ଶ୍ରୀଗୀତଗୋବିନ୍ଦର ଲିପିକରଣ ତାହାର ଏକ ଜ୍ୱଳନ୍ତ ନିଦର୍ଶନ । ଭଗ୍ନପୃଷ୍ଠକଟୀଗ୍ରୀବ ହୋଇ ମନ, ମୁନ ଚିତ୍ତ ଚୈତନ୍ୟ ଠିକ୍ ନ ରଖିଲେ ସୂକ୍ଷ୍ମ ବାଉଁଶ ପତ୍ରରେ ଲେଖିବା ଏକ ଅସମ୍ଭବ ବ୍ୟାପାର । କିନ୍ତୁ ଓଡ଼ିଆ ଲିପିକାରଙ୍କର ଶ୍ରୀଗୀତଗୋବିନ୍ଦରେ ଅଚଳାଭକ୍ତି ଅତ୍ୟନ୍ତ ଆୟାସସାଧ୍ୟ, ବହୁ ସମୟ ସାପେକ୍ଷ ଏହି ଅସମ୍ଭବକୁ ସମ୍ଭବ କରିବାରେ ସମର୍ଥ କରିଥିଲା । ଏପରି ତିନୋଟି ସ୍ୱତନ୍ତ୍ର ବାଉଁଶପତ୍ର (Ext/10) (Ext/11), (Ext/48) ଓ ୨୫ଟି ବାଉଁଶପତ୍ରର ଏକ ପୋଥି (Ext/39) ମିଉଜିୟମରେ ସଂରକ୍ଷିତ । ଗୋଟିକିଆ ବାଉଁଶପତ୍ର ମଧ୍ୟରୁ ଗୋଟିକରେ ଦଶାବତାର ସ୍ତୁତି ଲିପିବଦ୍ଧ କରାଯାଇଛି । ବାଉଁଶପତ୍ର ପୋଥିଟି ପୂର୍ବତନ ତିଗିରିଆ ଗଡ଼ଜାତର ଚନ୍ଦ୍ରଧର ମହାନ୍ତିଙ୍କ ଠାରୁ ସଂଗୃହୀତ ହୋଇଅଛି ।

## ଶ୍ରୀଗୀତଗୋବିନ୍ଦ ଖଣ୍ଡୁଆ—

ବଡ଼ସିଂହାର (ବଡ଼ଶୃଙ୍ଗାର) ସମୟରେ କେନ୍ଦୁଲୀରେ ବୁଣାଯାଉଥିବା ଶ୍ରୀଗୀତଗୋବିନ୍ଦ ଶ୍ଳୋକାବଳୀ ମଣ୍ଡିତ ଖଣ୍ଡୁଆ ବା ଉତ୍ତରୀୟରେ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ଶ୍ରୀଅଙ୍ଗ ଆଚ୍ଛାଦନ କରିବା ପ୍ରଥା ଏପର୍ଯ୍ୟନ୍ତ ଶ୍ରୀମନ୍ଦିରରେ ପ୍ରଚଳିତ ଅଛି । (୩୬) ଖଣ୍ଡୁଆ ଦେହରେ ଶ୍ରୀଗୀତଗୋବିନ୍ଦ ଶ୍ଳୋକାବଳୀ ବୁଣିବା ବୟନ ଶିଳ୍ପର ଚରମ

---

(୩୬) ଜୟଦେବ ଓ ଗୀତଗୋବିନ୍ଦ—ପଣ୍ଡିତ ଶ୍ରୀ ସଦାଶିବ ରଥ ଶର୍ମା, ପୃ ୫୯-୬୦

ଉନ୍ନତର ପରିଚୟ୍ସୂଚକ । ଶ୍ରୀ ଜୟଦେବଙ୍କ ଜନ୍ମଭୂମି କେନ୍ଦୁଳୀ ବୟନ ଶିଳ୍ପ ପାଇଁ ପ୍ରସିଦ୍ଧି ଲାଭ କରିଥିବା କବିସମ୍ରାଟ ଉପେନ୍ଦ୍ରଙ୍କ ଠାରୁ କନିଷ୍ଠ (୩୭) ଓ ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମାଙ୍କ ପୂର୍ବବର୍ତ୍ତୀ (୩୮) ଦ୍ୱିଜ ଶ୍ରୀଧରକୃତ 'କାଞ୍ଚନଲତା' କାବ୍ୟପାଠରୁ ଜଣାଯାଏ । ଏହାର ପଞ୍ଚମ ଛାନ୍ଦରେ କବି ଦ୍ୱିଜକୁମାରୀର ବେଶ ବର୍ଣ୍ଣନା ପ୍ରସଙ୍ଗରେ ଲେଖିଛନ୍ତି—

"ସହଚେ ଦ୍ୱିଜନନ୍ଦିନୀ ତେଜଧାମା କନକକାନ୍ତି
**କଳା କେନ୍ଦୁଳୀ ଶାଢୀଏ ଭିଡ଼ି ପିନ୍ଧିଛି ମୋତିଦନ୍ତୀ"**

ଅର୍ଥାତ୍ କନକକାନ୍ତି, ତେଜଧାମା, ମୋତିଦନ୍ତୀ ଦ୍ୱିଜନନ୍ଦିନୀ କଳା କେନ୍ଦୁଳୀ ଶାଢ଼ୀ ପିନ୍ଧିଥିବାରୁ ତାହାର ସୌନ୍ଦର୍ଯ୍ୟ ଓ ଆକର୍ଷଣ ଶକ୍ତି ବୃଦ୍ଧି ପାଇଥିଲା ।

ବର୍ତ୍ତମାନ ସାରା ଦେଶରେ ସମ୍ବଲପୁରୀ ଶାଢୀର ଯେପରି ପ୍ରସିଦ୍ଧି ଅଛି, ଦ୍ୱିଜ ଶ୍ରୀଧରଙ୍କ ସମୟରେ ଅର୍ଥାତ୍ ଅଷ୍ଟାଦଶ ଶତାବ୍ଦୀ ପ୍ରାରମ୍ଭ ବେଳକୁ କେନ୍ଦୁଳୀ ଶାଢୀ ସେହିପରି ଖ୍ୟାତି ଓ ଲୋକପ୍ରିୟତା ଅର୍ଜନ କରିଥିଲା । ବ୍ରିଟିଶ ରାଜତ୍ୱରେ ଓଡ଼ିଶାର ଅନ୍ୟାନ୍ୟ ବୟନ କେନ୍ଦ୍ର ପରି କେନ୍ଦୁଳୀ ମ୍ରିୟମାଣ ହୋଇଥିଲେ ମଧ୍ୟ ଜଗନ୍ନାଥ ମହାପ୍ରଭୁ ତାଙ୍କର ଅତି ପ୍ରିୟ କେନ୍ଦୁଳୀ ବୁଣା ଶ୍ରୀଗୀତଗୋବିନ୍ଦ ଖଣ୍ଡୁଆରେ ଅଙ୍ଗ ଆଚ୍ଛାଦନ ପୂର୍ବକ ସୁଖଶାନ୍ତିରେ ନିଦ୍ରା ଉପଭୋଗ କରୁଥିବାରୁ ଏହାର ବୟନ ଶିଳ୍ପ କୌଣସିମତେ ବଞ୍ଚିଗଲା । ଅକ୍ଷତରେ ଶ୍ରୀଗୀତଗୋବିନ୍ଦର ଲୋକପ୍ରିୟତା କପରି ଓଡ଼ିଶାର ବୟନ ଶିଳ୍ପର ଅଭିବୃଦ୍ଧିରେ ସହାୟକ ଥିଲା, ତାହା ଉପରୋକ୍ତ ଆଲୋଚନା ଦ୍ୱାରା ପ୍ରମାଣିତ ହୁଏ ।



(୩୭) 'କାଞ୍ଚନଲତା ଓ କବି ଶ୍ରୀଧର', ଝଙ୍କାର, ୧୯ଶ ବର୍ଷ ୭ମ ସଂଖ୍ୟା ପୃ ୫୦୭–୫୧୨

(୩୮) ପଣ୍ଡିତ ଶ୍ରୀ ସୂର୍ଯ୍ୟ ନାରାୟଣ ଦାସ କୃତ 'ଓଡ଼ିଆ ସାହିତ୍ୟର ଇତିହାସ' ତୃତୀୟଖଣ୍ଡ ।

# ଅ ଷ୍ଟ ମ  ଅ ଧ୍ୟା ୟ

## ଭାରତର ଅନ୍ୟାନ୍ୟ ପ୍ରାନ୍ତୀୟ ସାହିତ୍ୟ ଓ ସଂଗୀତରେ ଶ୍ରୀଗୀତଗୋବିନ୍ଦର ପ୍ରଭାବ

### —ହିନ୍ଦୀ ସାହିତ୍ୟ—

ହିନ୍ଦୀ ବର୍ତ୍ତମାନ ଭାରତର ରାଷ୍ଟ୍ରଭାଷା ରୂପେ ଗୃହୀତ ହୋଇଥିବାରୁ ପ୍ରଥମେ ପ୍ରାଚୀନ ହିନ୍ଦୀ ସାହିତ୍ୟ ଉପରେ ଉତ୍କଳୀୟ ଭକ୍ତକବି ଶ୍ରୀ ଜୟଦେବଙ୍କ ଅମର କୃତି ଶ୍ରୀଗୀତଗୋବିନ୍ଦର ପ୍ରଭାବ ଆଲୋଚନୀୟ ।

**ଚାନ୍ଦ ବରଦାଇ—** ଦିଲ୍ଲୀର ଶେଷ ସ୍ୱାଧୀନ ହିନ୍ଦୁସମ୍ରାଟ ଚୌହାନ ବଂଶୀୟ ପୃଥ୍ୱୀରାଜ (୧୧୬୯—୧୧୯୨ ଖ୍ରୀଷ୍ଟାବ୍ଦ) ସଭାରେ ଚାନ୍ଦବରଦାଇ ନାମକ ଜନୈକ ଖ୍ୟାତନାମା ରାଜପୁତ କବି ଥିଲେ। ୧୧୯୨ ଖ୍ରୀଷ୍ଟାବ୍ଦରେ ପ୍ରସିଦ୍ଧ ଦ୍ୱିତୀୟ ତାରାଇଣ ଯୁଦ୍ଧରେ ପୃଥ୍ୱୀରାଜଙ୍କ ମୃତ୍ୟୁ ଘଟିବାରୁ ସେ ସ୍ୱୀୟ ଆଶ୍ରୟଦାତାଙ୍କ ବୀରତ୍ୱ ଗାଥା 'ପୃଥ୍ୱୀରାଜ-ରାସୋ' ନାମକ ପ୍ରାଚୀନ ରାଜସ୍ଥାନୀ ଭାଷାରେ ଲିଖିତ ଏକ ବିରାଟ ଗ୍ରନ୍ଥରେ ବର୍ଣ୍ଣନା କରିଥିଲେ । ସେ ଉକ୍ତ ଗ୍ରନ୍ଥରେ ତାଙ୍କର ପୂର୍ବବର୍ତ୍ତୀ ଆଠଜଣ ପ୍ରଖ୍ୟାତ କବିଙ୍କ ମଧ୍ୟରେ କବିରାଜ ଶ୍ରୀ ଜୟଦେବଙ୍କ ନାମ କବିସୁଲଭ ବିନୟ ସହ-କାରେ ଉଲ୍ଲେଖ କରିଛନ୍ତି । ଯଥା—

"କବି କତ୍ତି କର୍ତ୍ତୀ ଭକତ ସୁଦିକ୍‌ଖୀ
ନନୈକା ଉଚିଷ୍ଟୀ କବିଚନ୍ଦ୍ର ଭିକ୍‌ଖୀ।
**"ଜୟଦେବ ଅଠଂ କବୀ କବିରାୟଂ**
ଜନୈଂ କେବଲଂ କତ୍ତି ଗୋବିନ୍ଦ ଗାୟଂ" (୧)

ଉକ୍ତ ଦ୍ୱିତୀୟ ଉଦ୍ଧୃତିରେ 'କବୀ କବିରାୟଂ' ଓ 'କତ୍ତିଗୋବିନ୍ଦ ଗାୟଂ' ପ୍ରଭୃତି ପଦ-ଗୁଡ଼ିକର ବ୍ୟବହାର ଦ୍ୱାରା ଚାନ୍ଦକବି ଏଥିରେ ଶ୍ରୀଗୀତଗୋବିନ୍ଦକାର ଭକ୍ତକବି ଶ୍ରୀ ଜୟଦେବଙ୍କ ପ୍ରତି ସମ୍ମାନ ପ୍ରଦର୍ଶନ କରିଥିବା ସ୍ପଷ୍ଟ ଜଣାଯାଉଅଛି । ଶ୍ରୀଗୀତ-

---

(୧) କବିଚନ୍ଦ୍ର ଶ୍ରୀ କାଳୀଚରଣ ପଟ୍ଟନାୟକ କୃତ 'ଶ୍ରୀଗୀତଗୋବିନ୍ଦ'ରୁ ଉଦ୍ଧୃତ ପୃ ୩୪

ଗୋବିନ୍ଦର ଅନୁକରଣରେ ସେ ସ୍ୱୀୟ 'ରାସୋ'ର ପ୍ରଥମ ସର୍ଗରେ ଦଶାବତାରଙ୍କୁ ବନ୍ଦନା କରିଛନ୍ତି । (୨)

ଉକ୍ତ ଗ୍ରନ୍ଥରେ ଅନ୍ୟତ୍ର ବର୍ଣ୍ଣିତ ଅଛି ଯେ, କାନ୍ୟକୁବ୍‌ଜାଧୀଶ୍ୱର ଶ୍ରୀ ବିଜୟ ପାଳ ଦକ୍ଷିଣାପଥ ବିଜୟ ସମୟରେ ଉତ୍କଳରେ ଉପଗତ ହୋଇ ଏଠାର ସୋମବଂଶୀ ରାଜାଧିରାଜ ଜଗନ୍ନାଥ ଭକ୍ତ ମୁକୁନ୍ଦଦେବଙ୍କ ଆତିଥ୍ୟ ଗ୍ରହଣ କରିଥିଲେ । ମୁକୁନ୍ଦ ଦେବ ତାଙ୍କ କନ୍ୟାକୁ ବିଜୟପାଳଙ୍କ ଜ୍ୟେଷ୍ଠ ଦୌହିତ୍ରଙ୍କୁ ପ୍ରଦାନ କରିବାରୁ ଉଭୟଙ୍କ ମଧ୍ୟରେ ଘନିଷ୍ଠ ବନ୍ଧୁତା ସ୍ଥାପିତ ହୋଇଥିଲା । ପରେ ଉକ୍ତ କନ୍ୟାଙ୍କ ଗର୍ଭରୁ ସୁନ୍ଦରୀ ଲଲିମଭୂତା ସଂଯୁକ୍ତା ଜନ୍ମଗ୍ରହଣ କରିଥିଲେ । (୩) ସମୁଦ୍ର ତୀରବର୍ତ୍ତୀ କଟକରେ ଅବସ୍ଥିତ ଶ୍ରୀଜଗନ୍ନାଥଙ୍କ ସେବକ ମୁକୁନ୍ଦଦେବଙ୍କ ଐଶ୍ୱର୍ଯ୍ୟ ଓ ବିଭବର ପ୍ରାଞ୍ଜଳ ବର୍ଣ୍ଣନା ଶ୍ରୀକ୍ଷେତ୍ର ସମ୍ବନ୍ଧରେ ତାଙ୍କର ସମ୍ୟକ ଜ୍ଞାନର ପରିଚାୟକ । ତୀର୍ଥଦର୍ଶନ ଉଦ୍ଦେଶ୍ୟରେ ଶ୍ରୀକ୍ଷେତ୍ରରେ ଅବସ୍ଥାନ ସମୟରେ ବୃନ୍ଦାବନରଦାଇ ଶ୍ରୀଜଗନ୍ନାଥଙ୍କ ନିକଟରେ ନିତ୍ୟ ଗୀତ ହେଉଥିବା ଶ୍ରୀଗୀତଗୋବିନ୍ଦ ଶ୍ରବଣକରି ଏହାର ମାଧୁର୍ଯ୍ୟ ଓ ଲାଳିତ୍ୟରେ ମୁଗ୍‌ଧ ହୋଇଥିବା ସର୍ବଥା ସମ୍ଭବପର । ତେଣୁ ତାଙ୍କ ରାସୋରେ ଶ୍ରୀଗୀତଗୋବିନ୍ଦର ପ୍ରଭାବ ସ୍ପଷ୍ଟ ପରିଲକ୍ଷିତ ହୁଏ ।

**ବିଦ୍ୟାପତି ଠାକୁର—** ପ୍ରାୟ ସମଗ୍ର ଉତ୍ତର ଭାରତରେ ୧୨୦୬ ଖ୍ରୀଷ୍ଟାବ୍ଦରେ ମୁସଲମାନ ଆଧିପତ୍ୟ ପ୍ରତିଷ୍ଠିତ ହୋଇଥିଲେ ମଧ୍ୟ ବର୍ତ୍ତମାନ ବିହାର ପ୍ରଦେଶର ଉତ୍ତରାଂଶରେ ଅବସ୍ଥିତ ମିଥିଳା ରାଜ୍ୟ ପ୍ରାୟ ୩୦୦ ବର୍ଷ କାଳ ସ୍ୱାଧୀନତା ରକ୍ଷା କରିପାରିଥିଲା । ତେଣୁ ଆରଙ୍ଗା ଗୋଦାବରୀ ବିସ୍ତୃତ ଏବଂ ମୁସଲମାନ ସାମ୍ରାଜ୍ୟ ପ୍ରସାରର ପ୍ରଧାନ ପ୍ରତିରୋଧକ ଶକ୍ତିଶାଳୀ ଉତ୍କଳଖଣ୍ଡ ପରି ମିଥିଳାରେ ମଧ୍ୟ ସଂସ୍କୃତ ସାହିତ୍ୟର ବିଶେଷ ଚର୍ଚ୍ଚା ହେଉଥିଲା । ସେ ଯୁଗରେ ଉତ୍କଳୀୟ ଓ ମୈଥିଳ ପଣ୍ଡିତ-ମାନଙ୍କ ମଧ୍ୟରେ ସଂସ୍କୃତରେ ନାନାବିଷୟକ ଗ୍ରନ୍ଥରଚନା କ୍ଷେତ୍ରରେ ବିଶେଷ ପ୍ରତି-ଯୋଗିତା ଚାଲିଥିଲା । ତେଣୁ ଶ୍ରୀକ୍ଷେତ୍ରରେ 'ଶ୍ରୀଗୀତଗୋବିନ୍ଦ' ରଚିତ ହେବାର ପ୍ରାୟ ଦେଢ଼ଶହ ବର୍ଷ ମଧ୍ୟରେ ପ୍ରସିଦ୍ଧ ମୈଥିଳ ପଣ୍ଡିତ ଜଗଦ୍ଧର ଏହାର 'ସାରଦୀପିକା' ନାମକ ଟୀକା ରଚନା କରିଥିଲେ । ତାଙ୍କର ସମସାମୟିକ ପ୍ରଖ୍ୟାତ ଶିବଭକ୍ତ ମୈଥିଳ ପଣ୍ଡିତ ଭାନୁଦତ୍ତ ମିଶ୍ର ଶ୍ରୀଗୀତଗୋବିନ୍ଦ ଆଦର୍ଶରେ ଶିବଗୌରୀଙ୍କ ରାସଲୀଳା

---

(୨) 'ପୃଥ୍ୱୀରାଜ ରାସୋ' ପ୍ରଥମ ଖଣ୍ଡ

(୩) ସ୍ୱର୍ଗତଃ ଟିକିଲିର ରାଜବାହାଦୁର ଲକ୍ଷ୍ମୀନାରାୟଣ ହରିଚନ୍ଦନ ଜଗଦେବ 'ନବଭାରତ' ପତ୍ରିକାର ୧୩୪୧, କନ୍ୟା ସଂଖ୍ୟାରେ 'ପୃଥ୍ୱୀରାଜ ରାସୋ'ରୁ ପଦଗୁଡ଼ିକ ଉଦ୍ଧାର କରି ପ୍ରବନ୍ଧ ଲେଖିଥିଲେ ।

ବର୍ଣ୍ଣନାତ୍ମକ **ଗୀତଗୌରୀଶ** ବା 'ଗୀତଗୌରୀପତି' ନାମକ କାବ୍ୟ ପ୍ରଣୟନ କରିଥିଲେ (ଆ ୧୩୬୦ ଖ୍ରୀଷ୍ଟାବ୍ଦ)। ମିଥିଳାର ଦୁଇଜଣ ପ୍ରସିଦ୍ଧ ପଣ୍ଡିତଙ୍କ ଦ୍ୱାରା ଯଥାକ୍ରମେ ଶ୍ରୀଗୀତଗୋବିନ୍ଦର ବିବୃତି (ଟୀକା) ଓ ଅନୁକୃତି ନିର୍ମିତ ହେବାରୁ ମୈଥିଳ ସୁଧୀସମାଜରେ ଏହାର ଆଦର ଓ ସମ୍ମାନ ବୃଦ୍ଧି ଲାଭ କରିଥିଲା । ସେମାନଙ୍କ ଆଦର୍ଶରେ ଅନୁପ୍ରାଣିତ ହୋଇ ମିଥିଳାର ଜନୈକ ଶ୍ରେଷ୍ଠ କବି ଓ ସ୍ମୃତିକାର ବିଦ୍ୟାପତି ଠାକୁର (ଆ: ୧୩୬୮-୧୪୭୨ ଖ୍ରୀଷ୍ଟାବ୍ଦ) ସ୍ୱ ମାତୃଭାଷାରେ ଶ୍ରୀଗୀତଗୋବିନ୍ଦର ମଧୁର-କୋମଳ-କାନ୍ତ ପଦାବଳୀର ଅନୁକରଣରେ ବହୁ ସରଳ-ସୁନ୍ଦର ପଦାବଳୀ ରଚନା କରିଥିଲେ । ସେଗୁଡ଼ିକ ତାଙ୍କ ଜୀବନର ବିଭିନ୍ନ ଅବସ୍ଥାରେ ପ୍ରଣୀତ ହୋଇଥିଲା । ବିଷୟବସ୍ତୁର ବିଚାରରେ ସେଗୁଡ଼ିକୁ ତିନିଭାଗରେ ବିଭକ୍ତ କରାଯାଇପାରେ । ଯଥା— ଶୈବ, ବୈଷ୍ଣବ ଓ ତତ୍କାଳୀନ ଐତିହାସିକ ସମ୍ବନ୍ଧୀୟ । ବିଦ୍ୟାପତି ପରମ ଶୈବ ଥିବାରୁ ତାଙ୍କର ଶୈବ ପଦାବଳୀ ଶିବ ଭକ୍ତି-ରସରେ ଓତଃପ୍ରୋତ ଭାବରେ ଆପ୍ଲୁତ । ତତ୍କୃତ ଶ୍ରୀରାଧା-କୃଷ୍ଣ ପ୍ରେମଲୀଳା ବିଷୟକ ବୈଷ୍ଣବ ପଦାବଳୀ ଶ୍ରୀଗୀତଗୋବିନ୍ଦ ପରି ଶୃଙ୍ଗାର ରସରେ ଆପ୍ଲୁତ । କିନ୍ତୁ ସେଗୁଡ଼ିକ ବିକ୍ଷିପ୍ତ ଭାବରେ ଲିଖିତ ହୋଇଥିବାରୁ ଶ୍ରୀଗୀତଗୋବିନ୍ଦ ପରି ଏକ ସ୍ୱତନ୍ତ୍ର ଗ୍ରନ୍ଥର ଅନ୍ତର୍ଭୁକ୍ତ ନୁହେଁ । ଶୃଙ୍ଗାର ରସର ବାସନାମୟୀ ପ୍ରବୃତ୍ତି ଏଗୁଡ଼ିକର ପ୍ରଧାନ ଆଧାର । ସେଗୁଡ଼ିକରେ ଭଗବଦ୍ ଭକ୍ତିର ସ୍ଥାନ ଗୌଣ । (୪)

ତାଙ୍କର ବୈଷ୍ଣବ ପଦାବଳୀମାନଙ୍କ ମଧ୍ୟରୁ କେତେକ ତାଙ୍କ ଆଶ୍ରୟଦାତା ମିଥିଳା-ନରେଶ ଶିବସିଂହଙ୍କ ନାମରେ ଭଣିତ ହୋଇଅଛି । ଦ୍ୱାରଭଙ୍ଗା ସହରର ଚାଳିଶମାଇଲ ଦକ୍ଷିଣ-ପୂର୍ବ କୋଣରେ ତାଙ୍କ ରାଜଧାନୀ ଶିବସିଂହପୁର ଅବସ୍ଥିତ ଥିଲା । ସେଠାରେ ସେ ବିଦ୍ୟାପତିଙ୍କୁ **ଅଭିନବ ଜୟଦେବ** ପଦବୀରେ ମଣ୍ଡିତ କରି ତାଙ୍କର ଭରଣପୋଷଣ ନିମନ୍ତେ 'ବିସପି' ନାମକ ଏକ ଗ୍ରାମ ଦାନ କରିଥିଲେ । ଉକ୍ତ ଅଗ୍ରହାରରେ ଅଦ୍ୟାପି ବିଦ୍ୟାପତିଙ୍କ ବଂଶଧରମାନେ ବାସ କରୁଛନ୍ତି । ଶିବସିଂହ ମୁସଲମାନ ଆକ୍ରମଣକାରୀଙ୍କ ସହ ଯୁଦ୍ଧକରି ୧୪୧୪ ବା ୧୪୧୬ ଖ୍ରୀଷ୍ଟାବ୍ଦରେ ପ୍ରାଣ ହରାଇଥିବା ନିଶ୍ଚିତ ଭାବରେ ଜଣାଯାଏ । (୫) ତେଣୁ ଏହି ସମୟ ପୂର୍ବରୁ ତାଙ୍କର ବହୁ ବୈଷ୍ଣବ ପଦାବଳୀ ରଚିତ ହୋଇଥିବା ସୁନିଶ୍ଚିତ । ପାଠକମାନଙ୍କ ରସାସ୍ୱାଦନ ପାଇଁ ତାଙ୍କର ଦୁଇଟି ଗୀତ ତଳେ ଉଦ୍ଧାର କରାଗଲା ।

---

(୪) 'ହିନ୍ଦୀ ସାହିତ୍ୟକା ଆଲୋଚନାତ୍ମକ ଇତିହାସ'
ଲେଖକ ଡକ୍ଟର ରାମକୁମାର ବର୍ମା— ପୃ ୫୦୩-୫୧୦

(୫) History of Mithila ପୃ ୩୧୨-୩୧୫
ଏହି ଗ୍ରାମଦାନ ସମ୍ବନ୍ଧୀୟ ସନନ୍ଦରେ ସନ ବ୍ୟବହୃତ ହୋଇଥିବାରୁ ଏହା ଜାଲ ବୋଲି ଅନେକେ ସନ୍ଦେହ କରନ୍ତି ।

— ଶ୍ରୀକୃଷ୍ଣ ପୂର୍ବରାଗ —

"ମାଧବକ କହବ ସୁନ୍ଦରି ରୂପେ କତେକ ଯତନ ବିହି ଆନ
ସମାରଲ ଦେଖଲ ନୟନ ସରୂପେ (୧)

ପଲ୍ଲବରାଜ ଚରଣଯୁଗ ସୋଭିତ ଗତି ଗଜରାଜକ ଭାନେ
କନକ କଦଲି ପର ସିଂହ ସମାରଲ ତାପର ମେରୁ ସମାନେ । ୨

ମେରୁ ଉପର ଦୁଇକମଲ ଫୁଲାୟଲ ନାଲ ବିନା ରୁଚି ପାଇ
ମନମୟ ହାର ଧାର ବହୁ ସୁରସରିତଓ ନହି କମଲ ସୁଖାଇ । ୩

ଅଧର ବିମ୍ବ ସମ ଦସନ ଦାଡ଼ିମ ବିଜୁ ରବି ସସି ଉଗଥିକ ପାସେ
ରାହୁ ଦୂରବସି ନୟରେ ନ ଆବଥି ତେଁ ନହିଁ କରଥି ଗରାସେ । ୪

ସାଂରଗ ନୟନ ବୟନ ପୁନ ସାଂରଗ ସାଂରଗ ତସୁ ସମଧାନେ
ସାଂରଗ ଉପର ଉଗଲ ଦସ ସାଂରଗ କେଲି କରଥି ମଧୁପାନେ । ୫

ଭନଇ ବିଦ୍ୟାପତି ସୁନ ବର ଜୌବତି ଏହନ ଜଗତ ନହିଁ ଆନେ
ରାଜା ସିବସିଂହ ରୂପନରାୟନ ଲଖିମାଦେଇପତି ଭାନେ । ୬

ଏହି ଗୀତରେ ସାରଙ୍ଗ ପଦ ବହୁଅର୍ଥରେ ବ୍ୟବହୃତ ହୋଇଅଛି (୨)

— ବସନ୍ତ ଲୀଳା —

"ଆଏଲ ଋତୁପତି ରାଜବସନ୍ତ, ଧାଓଲ ଅଲିକୁଲ ମାଧବ ପନ୍ଥ
ଦିନକର କିରନ ଭେଲ ପୌଗଣ୍ଡ, କେସର କୁସୁମ ଧଏଲ ହେମଦଣ୍ଡ । ୧

ନୃପ ଆସନ ନବ ପୀଠଲ ପାତ, କାଞ୍ଚନ କୁସୁମ ଛତ୍ର ଧରୁ ମାଥ
ମୌଲି ରସାଲ-ମୁକୁଳ ଭେଲତାୟ, ସମୁଖହି କୋକିଲ ପଞ୍ଚମ ଗାୟ । ୨

ସିଖିକୁଳ ନାଚତ ଅଲିକୁଲ ଯନ୍ତ୍ର, ଦ୍ୱିଜକୁଲ ଆନପଢ ଆସିଷମନ୍ତ୍ର
ଚନ୍ଦ୍ରାତପ ଉଡ଼େ କୁସୁମ ପରାଗ, ମଲୟ ପବନ ସହ ଭେଲ ଅନୁରାଗ । ୩

କୁନ୍ଦବଲ୍ଲୀ ତରୁ ଧଏଲ ନିସାନ, ପାଟଲତୂନ ଅସୋକ-ଦଲ ବାନ୍ ।
କିଂସୁକ ଲବଙ୍ଗଲତା ଏକସଙ୍ଗ, ହେରି ଶିଶିର ଋତୁ ଆଗେ ଦଲ ଭଙ୍ଗ । ୪
ସୈନ ସାଜଲ ମଧୁମଖିକାକୂଲ, ସିସିରକ ସବହୁ କଏଲ ନିରମୂଲ ।
ଉଧାରଲ ସରସିଜ ପାଓଲ ପ୍ରାନ, ନିଜ ନବଦଲ କରୁ ଆସନ ଦାନ । ୫
ନବ ବୃନ୍ଦାବନ ରାଜ ବିହାର, ବିଦ୍ୟାପତି କହ ସମୟକ ସାର । ୬

---

(୨) ପଣ୍ଡିତ ଲକ୍ଷ୍ମୀନାରାୟଣ ମିଶ୍ରଙ୍କ ସଂକଳିତ 'ବିଦ୍ୟାପତି ପଦାବଳୀ', ଓଡ଼ିଶା ସାହିତ୍ୟ ଏକାଡେମୀ ଦ୍ୱାରା ପ୍ରକାଶିତ ପୃ ୧୮ ଓ ପୃ ୨୫

ଉକ୍ତ ଗୀତଟି ଶ୍ରୀଗୀତଗୋବିନ୍ଦର ବସନ୍ତ ବର୍ଣ୍ଣନାତ୍ମକ ତୃତୀୟ ଗୀତ ଦ୍ୱାରା ବିଶେଷ ଭାବରେ ପ୍ରଭାବିତ । ତାଙ୍କର ବୈଷ୍ଣବ ପଦାବଳୀରେ ଆଦିରସର ପ୍ରାଚୁର୍ଯ୍ୟ ପରିଲକ୍ଷିତ ହୁଏ ।

ବିଦ୍ୟାପତି ଠାକୁର ଜଣେ ଭାଗ୍ୟବାନ ଓ ଦୀର୍ଘଜୀବୀ କବି ଥିଲେ । ଶିବ ସିଂହଙ୍କ ମୃତ୍ୟୁ ପରେ ସେ କ୍ରମାନ୍ୱୟରେ ତାଙ୍କର ବିଧବା ରାଣୀ ଲଖିମା ଦେବୀ (ଆ: ୧୪୧୭—୧୪୩୦ ଖ୍ରୀଷ୍ଟାବ୍ଦ), ପଦ୍ମସିଂହ, ବିଶ୍ୱାସ ଦେବୀ (ଆ ୧୪୩୧—୧୪୪୩) ହରିସିଂହ, ନରସିଂହଦେବ, ଧୀରସିଂହ ଏବଂ ଭୈରବେନ୍ଦ୍ର ସିଂହ, ଏପରି ଆଠଜଣ ମିଥିଳା ଶାସକ ଓ ଶାସିକାଙ୍କ ପୃଷ୍ଠପୋଷକତା ଲାଭକରି ପ୍ରାଚୀନ ମୈଥିଳ ସାହିତ୍ୟକୁ ନିଜର ବିରାଟ ଅବଦାନ ଦ୍ୱାରା ସମୃଦ୍ଧ କରିଥିଲେ । ଏପରି ଅଖଣ୍ଡ ସୌଭାଗ୍ୟ ଅତି ଅଳ୍ପ କବି-ପଣ୍ଡିତଙ୍କ ଭାଗ୍ୟରେ ଘଟିଥାଏ ।

ପ୍ରାଚୀନ ହିନ୍ଦୀ ସାହିତ୍ୟରେ ସେ ଜଣେ ମହାକବି । ପରବର୍ତ୍ତୀ କାଳରେ ତାଙ୍କର ମଧୁର ବୈଷ୍ଣବ ପଦାବଳୀ ଦ୍ୱାରା ବିଶେଷ ଭାବରେ ଅନୁପ୍ରାଣିତ ହୋଇ ଶ୍ରୀ ବଲ୍ଲଭାଚାର୍ଯ୍ୟଙ୍କ ପୁଷ୍ଟିମାର୍ଗାବଲମ୍ବୀ ସୁରଦାସ ପ୍ରଭୃତି ଅଷ୍ଟଛାପ (ଅଷ୍ଟଭକ୍ତ) ବ୍ରଜଭାଷାରେ ବହୁ ସରଳ କୋମଳ ପଦାବଳୀ ରଚନା କରିଥିଲେ । ଶ୍ରୀଚୈତନ୍ୟଦେବ ଶ୍ରୀକ୍ଷେତ୍ର ଅବସ୍ଥାନ କାଳରେ ବିଦ୍ୟାପତି, ଚଣ୍ଡୀଦାସ ଓ ରାୟ ରାମାନନ୍ଦଙ୍କ ବୈଷ୍ଣବ ଗୀତିକବିତା ଗୁଡ଼ିକ ଅତ୍ୟନ୍ତ ତନ୍ମୟ ଚିତ୍ତରେ ଶ୍ରବଣ କରୁଥିବାରୁ ତାଙ୍କର ମତାବଲମ୍ବୀ ବୈଷ୍ଣବମାନଙ୍କ ମଧ୍ୟରେ ବିଦ୍ୟାପତି ପଦାବଳୀର ଆଦର ଯଥେଷ୍ଟ ବୃଦ୍ଧିଲାଭ କରିଥିଲା ।

**ସନ୍ଥ କବୀର —** ପ୍ରାଚୀନ ହିନ୍ଦୀ ସାହିତ୍ୟର ଜଣେ ପ୍ରସିଦ୍ଧ କବି ସନ୍ଥ କବୀର ପଞ୍ଚଦଶ ଶତାବ୍ଦୀର ଦ୍ୱିତୀୟ ଭାଗରେ ଦିଲ୍ଲୀ ସୁଲତାନ ସିକନ୍ଦର ଲୋଦୀ (୧୪୮୮—୧୫୧୩ ଖ୍ରୀଷ୍ଟାବ୍ଦ)ଙ୍କ ରାଜତ୍ୱ କାଳରେ ନିହତ ହୋଇଥିଲେ । ସେ ଶ୍ରୀଗୀତଗୋବିନ୍ଦକାର ଭକ୍ତକବି ଜୟଦେବଙ୍କ ଦ୍ୱାରା ପ୍ରଭାବିତ ହୋଇଥିଲେ । ତେଣୁ ତାଙ୍କ ରଚନାରେ ଶ୍ରୀ ଜୟଦେବଙ୍କ ଭକ୍ତିପୂର୍ଣ୍ଣ ଉଲ୍ଲେଖ ଦେଖାଯାଏ ।

'ଗୁରପ୍ରସାଦି **ଜୈଦେଉ**ନାମା, ଭଗତିକେ ପ୍ରେମି ଇନହି ହୈ ଜାନା' (୭)
(ରାଗୁ ଗଉଡ଼ୀ ୩୭)

**ଶ୍ରୀବଲ୍ଲଭାଚାର୍ଯ୍ୟ—** ଉତ୍ତର ଭାରତରେ ଶ୍ରୀଗୀତଗୋବିନ୍ଦର ମାହାତ୍ମ୍ୟ ଓ ଲୋକପ୍ରିୟତା ବଲ୍ଲଭାଚାର୍ଯ୍ୟ, ତଦୀୟ ପୁତ୍ର ବିଠଲନାଥଜୀ ଏବଂ 'ଅଷ୍ଟଛାପ' ନାମରେ

---

(୭) ହି: ସା: ଆ: ଇତିହାସ, ପୃ ୨୦୩

ପରିଚିତ ସେ ତୁଳସୀଙ୍କ ପ୍ରଧାନ ଅଷ୍ଟଶିଷ୍ୟଙ୍କ ଦ୍ୱାରା ସୁପ୍ରତିଷ୍ଠିତ ହୋଇଥିଲା । ଶ୍ରୀ ବଲ୍ଲଭାଚାର୍ଯ୍ୟ ଆନ୍ଧ୍ର ପ୍ରଦେଶରେ ୧୪୭୯ ଖ୍ରୀଷ୍ଟାବ୍ଦରେ ଜନ୍ମଗ୍ରହଣ କରିଥିଲେ । ସଂସ୍କୃତ ସାହିତ୍ୟରେ ତାଙ୍କର ପ୍ରଗାଢ଼ ପାଣ୍ଡିତ୍ୟ ଥିଲା । ସେ ଶୁଦ୍ଧାଦ୍ୱୈତବାଦର ପ୍ରତିପାଦକ ଥିଲେ ଏବଂ ଶ୍ରୀକୃଷ୍ଣଙ୍କୁ ବ୍ରହ୍ମ ଓ ଶ୍ରୀରାଧାଙ୍କୁ ତାଙ୍କର ସ୍ତ୍ରୀ ରୂପେ ସ୍ୱୀକାର କରିଥିଲେ । ତାଙ୍କର ପ୍ରଗାଢ ଭକ୍ତି ଓ ମାହାତ୍ମ୍ୟ ଯୋଗୁଁ ସେ କର୍ଣ୍ଣାଟାଧିପ ପ୍ରଖ୍ୟାତ କୃଷ୍ଣଦେବ ରାୟ (୧୫୦୯—୧୫୨୯ ଖ୍ରୀଷ୍ଟାବ୍ଦ)ଙ୍କ ସଭାରେ ମହାପ୍ରଭୁ ରୂପେ ଘୋଷିତ ହୋଇଥିଲେ । ସେ ଶ୍ରୀକ୍ଷେତ୍ରରେ କେତେକାଳ ଅବସ୍ଥାନ କରିଥିଲେ ଏବଂ ସେଠାରେ ଶ୍ରୀଚୈତନ୍ୟଦେବଙ୍କ ସହିତ ତାଙ୍କର ସାକ୍ଷାତ୍ ଓ ଆଲୋଚନା ହୋଇଥିବାର ଏକ ବିବରଣ ମିଳେ ।

ସେ ଦ୍ୱୈତାଦ୍ୱୈତବାଦ ଓ ଶ୍ରୀରାଧାକୃଷ୍ଣ ଉପାସନାର ପ୍ରଥମ ପ୍ରବର୍ତ୍ତକ ଦ୍ୱାଦଶ ଶତାବ୍ଦୀରେ ଆନ୍ଧ୍ରଦେଶରେ ଆବିର୍ଭୂତ ଆଚାର୍ଯ୍ୟ ନିମ୍ବାର୍କଙ୍କ ପରି ବୃନ୍ଦାବନକୁ ନିଜର ପ୍ରଧାନ କର୍ମକ୍ଷେତ୍ର କରିଥିଲେ । ତାଙ୍କର ନିର୍ଦ୍ଦେଶରେ ତଦୀୟ ଶିଷ୍ୟ ପୂରଣମଲ୍ଲ କ୍ଷତ୍ରି ଲକ୍ଷ ଲକ୍ଷ ମୁଦ୍ରା ବ୍ୟୟ କରି ଗିରିଗୋବର୍ଦ୍ଧନ ଉପରେ ଶ୍ରୀନାଥଜୀଙ୍କ ପାଇଁ ଏକ ବଡ଼ ମନ୍ଦିର ନିର୍ମାଣ କରିଥିଲେ । ୧୫୭୩ ସମ୍ବତ୍ ବା ୧୫୧୬ ଖ୍ରୀଷ୍ଟାବ୍ଦରେ ଏହି ମନ୍ଦିର ନିର୍ମାଣ ସଂପୂର୍ଣ୍ଣ ହୋଇଥିଲା । ମନ୍ଦିର ନିର୍ମାଣ ପରେ ଠାକୁରଙ୍କ ପାଇଁ ବହୁପ୍ରକାର ଭୋଗରାଗ ଓ ବିଳାସ ସାମଗ୍ରୀ ଖଞ୍ଜା ଯାଇଥିଲା । ଏହି ଭୋଗବିଳାସ ଜନିତ ଆକର୍ଷଣର ପ୍ରଭାବ ସେବକ ଓ ସେବିକାମାନଙ୍କ ଉପରେ ବିଶେଷ ଭାବରେ ପଡ଼ିଥିଲା । ବଲ୍ଲଭାଚାର୍ଯ୍ୟ ଉକ୍ତ ପୀଠ ପ୍ରତିଷ୍ଠା ଏବଂ ଏହାର ନାନାବିଧ ଉନ୍ନତି ବିଧାନ କରି ୧୫୩୦ ଖ୍ରୀଷ୍ଟାବ୍ଦରେ ମୃତ୍ୟୁବରଣ କରିଥିଲେ । ସେ 'ପୁଷ୍ଟିମାର୍ଗ'ର ପ୍ରବର୍ତ୍ତକ ଥିଲେ । କେବଳ ପ୍ରେମ ସାଧନା ଦ୍ୱାରା ଭଗବାନଙ୍କ ଅନୁଗ୍ରହ ଲାଭ ବା 'ପୁଷ୍ଟି' ହୋଇପାରିବ ବୋଲି ସେ ଶିକ୍ଷା ଦେଇଥିଲେ । ଏହା ଫଳରେ ଶ୍ରୀଗୀତଗୋବିନ୍ଦ ବର୍ଣ୍ଣିତ ଶ୍ରୀରାଧା-କୃଷ୍ଣଙ୍କ ପ୍ରେମଲୀଳାର ମାହାତ୍ମ୍ୟ ଓ ଗୌରବ ତାଙ୍କ ଦ୍ୱାରା ଧର୍ମଭିତ୍ତିରେ ସୁପ୍ରତିଷ୍ଠିତ ହୋଇଥିଲା । (୮)

**ବିଠ୍ଠଲନାଥଜୀ—** ବଲ୍ଲଭାଚାର୍ଯ୍ୟଙ୍କ ମୃତ୍ୟୁ ପରେ ତଦୀୟ ପୁତ୍ର ବିଠ୍ଠଲନାଥଜୀ ଉକ୍ତ ପୀଠର ଅଧିକାରୀ ହୋଇଥିଲେ । ସେ ଶ୍ରୀଗୀତଗୋବିନ୍ଦର ଅନୁକରଣରେ ଶ୍ରୀରାଧାକୃଷ୍ଣ ଲୀଳା ସମ୍ବଳିତ **'ଶୃଙ୍ଗାରରସମଣ୍ଡନ'** ନାମକ ଗ୍ରନ୍ଥ

---

(୮) (କ) ହି: ସା: ଆ: ଇତିହାସ, ପୃ ୧୧୧

(ଖ) 'ହିନ୍ଦୀ ସାହିତ୍ୟକା ଇତିହାସ'—

ଲେଖକ— ଶ୍ରୀ ରାମଚନ୍ଦ୍ର ଶୁକ୍ଳ ପୃ ୧୬୬

ରଚନା କରିଥିଲେ । ପ୍ରସିଦ୍ଧ ଉତ୍କଳୀୟ ଭକ୍ତକବି ରାୟରାମାନନ୍ଦଙ୍କ 'ଜଗନ୍ନାଥବଲ୍ଲଭ ନାଟକ' (ଆ: ୧୫୦୦ ଖ୍ରୀଷ୍ଟାବ୍ଦ) ଆଦର୍ଶରେ ସେ ଏଥିରେ କେତେକ ମଧୁର କୋମଳ ପଦାବଳୀ ସନ୍ନିବିଷ୍ଟ କରିଥିଲେ । ସେ ପୁଷ୍ଟିମାର୍ଗୀ କବିମାନଙ୍କ ମଧ୍ୟରୁ ସ୍ୱ ପିତାଙ୍କ ଚାରି ପ୍ରଧାନ ଶିଷ୍ୟ ଓ ନିଜର ଚାରି ପ୍ରଧାନ ଶିଷ୍ୟଙ୍କୁ ନେଇ **ଅଷ୍ଟଛାପ** ସ୍ଥାପନା କରିଥିଲେ । ଏମାନେ ସମସ୍ତେ ବ୍ରଜଭାଷାରେ ବିଶେଷ ବ୍ୟୁତ୍ପନ୍ନ ଥିଲେ ଏବଂ ଶ୍ରୀଗୀତଗୋବିନ୍ଦ ବର୍ଣ୍ଣିତ ଶ୍ରୀରାଧା-କୃଷ୍ଣଙ୍କ ପ୍ରେମଲୀଳା ସମ୍ବନ୍ଧରେ ବହୁ ଲଳିତ କୋମଳ ସଂଗୀତ ବ୍ରଜବୋଲି ଭାଷାରେ ରଚନା କରିଥିଲେ ।

ବିଠ୍‌ଠଲଙ୍କ ଶିଷ୍ୟ ଶ୍ରୀ ଶିବଦାସ ପଣ୍ଡିତାତ୍ମଜ ବନମାଳୀ ଭଟ୍ଟ ଶ୍ରୀ ବୃନ୍ଦାବନ ଧାମରେ ଅବସ୍ଥାନ କାଳରେ 'ଶ୍ରୀଗୀତଗୋବିନ୍ଦ'ର ସଂଗୀତମଣି ନାମକ ଟୀକା ରଚନା କରିଥିଲେ । ବିଠ୍‌ଠଲନାଥଙ୍କ ଦ୍ୱାରା ଶ୍ରୀଗୀତଗୋବିନ୍ଦର ଏକ ଅନୁକୃତ ସଂପାଦନ ତଦୀୟ ଶିଷ୍ୟ ପଣ୍ଡିତ ବନମାଳୀ ଭଟ୍ଟଙ୍କ ଦ୍ୱାରା ଏହାର ଏକ 'ବିବୃତି' ପ୍ରଣୟନ ଏବଂ ଅଷ୍ଟଛାପଙ୍କ ଦ୍ୱାରା ବ୍ରଜଭାଷାର ରଚନାବଳୀ ମାଧ୍ୟମରେ ଶ୍ରୀଗୀତଗୋବିନ୍ଦ ବର୍ଣ୍ଣିତ ଶ୍ରୀରାଧାକୃଷ୍ଣ ପ୍ରେମଲୀଳାର ପ୍ରଚାର ଫଳରେ ଉତ୍ତର ଭାରତରେ ଶ୍ରୀଗୀତଗୋବିନ୍ଦର ଆଦର ଓ ଗୌରବ ବଦ୍ଧମୂଳ ହୋଇଥିଲା । ହିନ୍ଦୀଭାଷାରେ ଶ୍ରୀଗୀତଗୋବିନ୍ଦର ପ୍ରାଣ-ପ୍ରତିଷ୍ଠାତା ବିଠ୍‌ଠଲନାଥଜୀଙ୍କର ୧୫୮୫ ଖ୍ରୀଷ୍ଟାବ୍ଦରେ ମହାପ୍ରୟାଣ ଘଟିଥିଲା ।

## ଭକ୍ତକବି ସୁର୍‌ଦାସ—

'ଅଷ୍ଟଛାପ'ଙ୍କ ମଧ୍ୟରେ ଭକ୍ତକବି ସୁର୍‌ଦାସ ଥିଲେ ସର୍ବଶ୍ରେଷ୍ଠ । ସେ ପ୍ରାୟ ୧୫୩୦ ଖ୍ରୀଷ୍ଟାବ୍ଦରେ ଶ୍ରୀ ବଲ୍ଲଭାଚାର୍ଯ୍ୟଙ୍କ ଶିଷ୍ୟତ୍ୱ ଗ୍ରହଣ କରି ଶ୍ରୀନାଥଜୀଙ୍କ ମନ୍ଦିରରେ କୀର୍ତ୍ତନ ଭାର ପାଇଥିଲେ । ସେ ଶ୍ରୀଗୀତଗୋବିନ୍ଦ ଓ ବିଦ୍ୟାପତିଙ୍କ ବୈଷ୍ଣବ ପଦାବଳୀ ଦ୍ୱାରା ବିଶେଷ ଭାବରେ ଅନୁପ୍ରାଣିତ ହୋଇ ସ୍ୱୀୟ ଗୀତିକାବ୍ୟରେ ଶ୍ରୀରାଧା-କୃଷ୍ଣଙ୍କ ନାୟିକା ନାୟକ ରୂପେ ଗ୍ରହଣ କରି ଶ୍ରୀରାଧାଙ୍କ ଠାରେ ଶୃଙ୍ଗାର ରସର ଉତ୍କର୍ଷ ପ୍ରକଟନ କରିଥିଲେ । ଶ୍ରୀମଦ୍‌ଭାଗବତରେ ରାଧାଙ୍କ ଉଲ୍ଲେଖ ଦେଖାଯାଏ ନାହିଁ । କିନ୍ତୁ ଭକ୍ତକବି ସୁର୍‌ଦାସଙ୍କ ପ୍ରସିଦ୍ଧ ଗ୍ରନ୍ଥ 'ସୁର-ସାଗର' ଶ୍ରୀମଦ୍‌ଭାଗବତ ଅବ-ଲମ୍ବନରେ ଲିଖିତ ହୋଇଥିଲେ ମଧ୍ୟ ଏଥିରେ ଶ୍ରୀରାଧାଙ୍କୁ ଏକ ମୁଖ୍ୟ ସ୍ଥାନ ଦିଆଯାଇଛି ଏବଂ ଶ୍ରୀରାଧା-କୃଷ୍ଣଙ୍କ ରତିଭାବ ବର୍ଣ୍ଣିତ ହୋଇଛି ।

**ନନ୍ଦ ଦାସ —** ନନ୍ଦ ଦାସ 'ଅଷ୍ଟଛାପ'ଙ୍କ ମଧ୍ୟରେ ଏକତମ ପ୍ରସିଦ୍ଧ କବି । ତାଙ୍କର ଗ୍ରନ୍ଥମାନଙ୍କ ମଧ୍ୟରେ 'ରାସପଞ୍ଚାଧ୍ୟାୟୀ' ପ୍ରଧାନ । ଏହା ଶ୍ରୀମଦ୍ ଭାଗବତ ଦଶମ ସ୍କନ୍ଧର ପାଞ୍ଚଟି ଅଧ୍ୟାୟ (୨୯-୩୩)ର ଅନୁବାଦ ହେଲେମଧ୍ୟ ଏଥିରେ ହରିବଂଶ ଓ ଶ୍ରୀଗୀତଗୋବିନ୍ଦରୁ ବହୁ ବିଷୟ ଆହରଣ କରାଯାଇଛି । ସେ

ଶ୍ରୀ ଜୟଦେବଙ୍କ ଦ୍ୱାରା ବିଶେଷ ଭାବରେ ପ୍ରଭାବିତ ହୋଇ ଏଥିରେ ଯମକ ଓ ଅନୁପ୍ରାସର ବହୁଳ ବ୍ୟବହାର କରିଛନ୍ତି । ତେଣୁ ବିଦ୍ୟୋଗୀ ହରି ଏହାକୁ ଯଥାର୍ଥରେ **ହିନ୍ଦୀକା ଗୀତଗୋବିନ୍ଦ** ଆଖ୍ୟା ପ୍ରଦାନ କରିଛନ୍ତି । (୯)

**କୃଷ୍ଣଦାସ—** ଅଷ୍ଟଛାପର ଅନ୍ୟତମ ପ୍ରସିଦ୍ଧ କବି କୃଷ୍ଣଦାସଙ୍କ ପଦାବଳୀରେ ସଂଭୋଗ ଶୃଙ୍ଗାର ବର୍ଣ୍ଣିତ ହୋଇଛି । ତାଙ୍କର ଦୁଇ ପ୍ରସିଦ୍ଧ କୃତି ହେଉଛି 'ଭ୍ରମରଗୀତ' ଓ 'ପ୍ରେମତତ୍ତ୍ୱନିରୂପଣ' । (୧୦) 'ଅଷ୍ଟଛାପ'ର ଅବଶିଷ୍ଟ ପାଞ୍ଚଜଣ କବି ହେଉଛନ୍ତି ପରମାନନ୍ଦ ଦାସ, କୁମ୍ଭନ ଦାସ, ଚତୁର୍ଭୁଜ ଦାସ, ଛୀତ ସ୍ୱାମୀ ଓ ଗୋବିନ୍ଦ ସ୍ୱାମୀ ।

**ମୀରାବାଈ—** ପ୍ରସିଦ୍ଧ ନାରୀକବି ମୀରାବାଈ ସ୍ୱୀୟ ରଚନାବଳୀ ଦ୍ୱାରା ରାଜସ୍ଥାନ ଓ ଗୁଜୁରାଟ ଅଞ୍ଚଳରେ ଶ୍ରୀଗୀତଗୋବିନ୍ଦର ଲୋକପ୍ରିୟତା ବୃଦ୍ଧି କରିଥିଲେ । ତାଙ୍କର ଜନ୍ମକାଳ ପ୍ରାୟ ୧୪୯୮ ଖ୍ରୀଷ୍ଟାବ୍ଦ । ସେ ଯୋଧପୁର ରାଜ୍ୟର ରାଠୋର ବଂଶୀୟ ରତ୍ନସିଂହଙ୍କ କନ୍ୟା ଥିଲେ । ତାଙ୍କର ସ୍ୱାମୀ ଥିଲେ ପ୍ରସିଦ୍ଧ ଚିତୋର ଦୁର୍ଗର ଗୁହିଲୋଟବଂଶୀୟ ସ୍ୱନାମଧନ୍ୟ ରାଣା କୁମ୍ଭକର୍ଣ୍ଣଙ୍କ ବଂଶଧର ରାଣା ସଂଗ୍ରାମସିଂହଙ୍କ ପୁତ୍ର ଭୋଜରାଜ । ବାଲ୍ୟକାଳରୁ ମାତୃହୀନା ମୀରାଙ୍କର ବିବାହ (୧୫୧୬ ଖ୍ରୀଷ୍ଟାବ୍ଦ)ର ପ୍ରାୟ ଛଅ ସାତବର୍ଷ ପରେ ସ୍ୱାମୀଙ୍କ ବିୟୋଗ ଘଟିଥିଲା । ମୋଗଲ ସମ୍ରାଟ ବାବରଙ୍କ ସଙ୍ଗେ ଯୁଦ୍ଧ କରି ତାଙ୍କ ପିତା ୧୫୨୭ରେ ପ୍ରାଣତ୍ୟାଗ କଲେ । ଏହାର ଅଳ୍ପଦିନ ପରେ ତାଙ୍କ ଶ୍ୱଶୁର ପ୍ରସିଦ୍ଧ ରାଣା ସଂଗ୍ରାମ ସିଂହ (ରାଣାସଂଗ)ଙ୍କ ମଧ୍ୟ ଦେହାନ୍ତ ଘଟିଥିଲା ।

ଏହିପରି ବାରମ୍ବାର ଶୋକାଭିଭୂତ ଓ ପରିବାରରେ ନିର୍ଯ୍ୟାତିତ ବିଧବା ମୀରାଙ୍କ ବୈରାଗ୍ୟ ଜାତ ହେଲା ଏବଂ ସେ ସ୍ୱୀୟ ଇଷ୍ଟଦେବ ଶ୍ରୀକୃଷ୍ଣଙ୍କ ପଦାରବିନ୍ଦରେ ଆତ୍ମସମର୍ପଣ କରିଥିଲେ । ସାଧୁସନ୍ଦର୍ଶନ, ଆଧ୍ୟାତ୍ମିକ ଚିନ୍ତା ଓ ଶ୍ରୀକୃଷ୍ଣ ଗୁଣକୀର୍ତ୍ତନରେ ତାଙ୍କର କାଳାତିପାତ ହେଉଥିଲା । ମାଧୁର୍ଯ୍ୟ ଭାବରେ ଆପ୍ଳୁତ ଏହି ନାରୀକବି ନିଜକୁ ବିରହିଣୀ ମନେକରି ପ୍ରାଣପ୍ରିୟ ଶ୍ରୀକୃଷ୍ଣଙ୍କ ପ୍ରଣୟ ଭିକ୍ଷା କରୁଥିଲେ । ନାରୀକବି ହୋଇଥିବାରୁ ତାଙ୍କର ବିରହ ନିବେଦନରେ ସ୍ୱାଭାବିକତା ଚରମ ସୀମାରେ ପହଞ୍ଚିଥିଲା ।

ତାଙ୍କ ରଚନାବଳୀରେ ସ୍ଥାନେ ସ୍ଥାନେ ଭକ୍ତ ଉଦ୍ଧବ ଓ ଶ୍ରୀକୃଷ୍ଣବଲ୍ଲଭା ରାଧାଙ୍କ ବର୍ଣ୍ଣନା ଥିଲେ ମଧ୍ୟ ସେ ସ୍ୱକୃତ କୌଣସି ଗ୍ରନ୍ଥରେ ଶ୍ରୀରାଧାକୃଷ୍ଣଙ୍କ ପ୍ରେମଲୀଳା

---

(୯) ହି: ସା: ଆ: ଇତିହାସ ପୃ ୫୫୩
(୧୦) ,, ,, ପୃ ୫୨୪

ସମ୍ପ୍ରଦାୟରେ ବର୍ଣ୍ଣନା କରିନାହାନ୍ତି । କେବଳ ତାଙ୍କ ହୃଦୟର ସମସ୍ତ ଭାବନାକୁ ଭକ୍ତିସୂତ୍ରରେ ଗ୍ରଥିତ କରି ଶ୍ରୀକୃଷ୍ଣଙ୍କ ଠାରେ ଅର୍ପଣ କରିଛନ୍ତି । ତାଙ୍କ କବିତାବଳୀ କୀର୍ତ୍ତନ ଉଦ୍ଦେଶ୍ୟରେ ରଚିତ ହୋଇଥିବାରୁ ସେଗୁଡ଼ିକରେ ବିଭିନ୍ନ ରାଗରାଗିଣୀର ପ୍ରୟୋଗ ଦେଖାଯାଏ । ସେ ରାଜସ୍ଥାନୀ ହିନ୍ଦୀଭାଷାରେ **ଗୀତଗୋବିନ୍ଦକୀ ଟୀକା** (୧୧) ରଚନା କରି ଉକ୍ତ ଅଞ୍ଚଳରେ ଏହାର ବହୁଳ ପ୍ରଚାର ସୁଗମ କରିଥିଲେ । ହିନ୍ଦୀ ସାହିତ୍ୟର ଇତିହାସ ପ୍ରଣେତା ପଣ୍ଡିତ ରାମଚନ୍ଦ୍ର ଶୁକ୍ଳଙ୍କ ମତରେ ସେ **ରାଗ-ଗୋବିନ୍ଦ** ନାମକ ଏକ ଗ୍ରନ୍ଥ ମଧ୍ୟ ରଚନା କରିଥିଲେ । (୧୨)

**ହିତହରିବଂଶ**— ହିତହରିବଂଶ ୧୫୦୨ ଖ୍ରୀଷ୍ଟାବ୍ଦରେ ଜନ୍ମଗ୍ରହଣ କରିଥିଲେ । ସେ ପ୍ରଥମେ ମାଧ୍ୱାଚାର୍ଯ୍ୟଙ୍କ ଦ୍ୱୈତସଂପ୍ରଦାୟର ସମର୍ଥକ ଥିଲେ । ପରେ ସେ ରାଧାବଲ୍ଲଭୀ ନାମକ ଏକ ନୂତନ ସଂପ୍ରଦାୟ ପ୍ରବର୍ତ୍ତନ କରିଥିଲେ । ଶୁଣାଯାଏ ଶ୍ରୀରାଧା ସ୍ୱପ୍ନରେ ଆବିର୍ଭୂତା ହୋଇ ଏହାଙ୍କୁ ମନ୍ତ୍ରଦାନ କରିଥିଲେ । ସେଦିନୁ ସେ ଶ୍ରୀଗୀତଗୋବିନ୍ଦ ପ୍ରବର୍ତ୍ତିତ ଶ୍ରୀରାଧା ଉପାସନାର ପ୍ରାଧାନ୍ୟ ପ୍ରତିଷ୍ଠାରେ ବ୍ରତୀ ହେଲେ । ବ୍ରଜଭାଷାରେ ତାଙ୍କର ବିଶେଷ ପାଣ୍ଡିତ୍ୟ ଥିଲା । ଏହାଙ୍କ ପ୍ରସିଦ୍ଧ ଗ୍ରନ୍ଥର ନାମ 'ହିତ-ଚୌରାସୀ' ।

**ଭକ୍ତକବି ନାଭା ଦାସ** — ଭକ୍ତକବି ନାଭା ଦାସ ରାଜସ୍ଥାନ ଅନ୍ତର୍ଗତ ଜୟପୁର ରାଜ୍ୟର ଗଲତା ନାମକ ସ୍ଥାନର ଅଧିବାସୀ ଥିଲେ । ତାଙ୍କର ପୂର୍ବ ନାମ ନାରାୟଣ ଦାସ ଓ ତାଙ୍କ ଗୁରୁଙ୍କ ନାମ ସ୍ୱାମୀ ଅଗ୍ରଦାସ । ନାଭା ପରମ ରାମଭକ୍ତ ଥିଲେ ଏବଂ ରାମଭକ୍ତି ସମ୍ବନ୍ଧରେ ବହୁ ସୁନ୍ଦର ପଦ ରଚନା କରିଥିଲେ । ସେ ୧୬୪୨ ସମ୍ବତ୍ ବା ୧୫୮୫ ଖ୍ରୀଷ୍ଟାବ୍ଦରେ ପ୍ରାଚୀନ ହିନ୍ଦୀ ସାହିତ୍ୟର ବହୁଳ ପ୍ରଚଳିତ **ଭକ୍ତମାଳ** ଗ୍ରନ୍ଥ ରଚନା କରିଥିଲେ । ଏଥିରେ ଦୁଇଶତ ଭକ୍ତଙ୍କ ଜୀବନ ଚରିତ ୩୧୬ ଛପୟ (ହିନ୍ଦୀ ଷଟ୍‌ପଦୀ) କବିତାରେ ବର୍ଣ୍ଣିତ ହୋଇଅଛି । ସାଧାରଣତଃ ପ୍ରତ୍ୟେକ ଭକ୍ତଙ୍କ ସମ୍ବନ୍ଧରେ ଅନ୍ୟୂନ ଗୋଟିଏ ଛପୟ ଲେଖାଯାଇଛି । ବର୍ଣ୍ଣିତ ଭକ୍ତମାନଙ୍କ ମଧ୍ୟରେ କେତେକ କବିଭାବରେ ମଧ୍ୟ ପ୍ରଖ୍ୟାତ ଥିଲେ । (୧୩) ସେଥିରେ ଭାରତ ପ୍ରସିଦ୍ଧ ଉତ୍କଳୀୟ ଭକ୍ତକବି ଶ୍ରୀ ଜୟଦେବଙ୍କ ସମ୍ପର୍କରେ ନିମ୍ନୋଦ୍ଧୃତ 'ଛପୟ' ମିଳେ । ଯଥା—

"ଜୟଦେବ କବି ଚକ୍ରବେ, ଖଂଡ଼ମଂଡ଼ଳେଶ୍ୱର ଆନ କବି ।
ପ୍ରଚୁର ଭୟୋ ତିହୁଁ ଲୋକ, ଗୀତଗୋବିନ୍ଦ ଉଜାଗର ।

---

(୧୧) ହି: ସା: ଅ: ଇତିହାସ, ପୃ ୫୮୨
(୧୨) ହିନ୍ଦୀ ସାହିତ୍ୟକା ଇତିହାସ ପୃ ୧୮୪
(୧୩) ହି: ସା: ଆ: ଇତିହାସ ପୃ ୪୬୩

କୋକକାବ୍ୟ ନବ-ରସ-ସରସ ସିଂଗାରକୋ ସାଗର ।
ଅଷ୍ଟପଦୀ ଅଭ୍ୟାସ କରେ ତେହ୍ବ ବୁଦ୍ଧି ବଢ଼ାବେ ।
ରାଧାରମନ ପ୍ରସନ୍ନ ସୁନନ ନିଶ୍ଚୟ ତହଁ ଆବେ ।
ସଂତ ସରୋରୁହ ଷଂଡକୋ ପଦମାପତି ସୁଖ-ଜନକ-ରବି ।
ଜୟଦେବ କବିନୃପ ଚକ୍କବେ, ଖଂଡମଂଡ଼ଲେଶ୍ୱର ଆନ କବି ।"
(ଭକ୍ତମାଳ, ଛପୟ ୩୯) (୧୪)

**ପ୍ରିୟା ଦାସ—** ଭାରତର ବିଭିନ୍ନ ପ୍ରାନ୍ତରେ 'ଭକ୍ତମାଳ'ର ବହୁଳ ପ୍ରଚାର ଯୋଗୁଁ ପ୍ରିୟା ଦାସ ନାମକ ବୃନ୍ଦାବନବାସୀ ଜନୈକ ଭକ୍ତକବି ୧୭୬୯ ସମ୍ବତ୍ ବା ୧୭୧୨ ଖ୍ରୀଷ୍ଟାବ୍ଦରେ ଏହାର ଏକ ବିସ୍ତୃତ ଟୀକା ରଚନା କରିଥିଲେ । ଯଥା—

"ସଂବତ ପ୍ରସିଦ୍ଧ ଦସ ସାତ ସାତ ଉନହତର
ଫାଗୁନ ମାସ ବଦୀ ସପ୍ତମୀ ବତାୟ କୈ ।" (୧୫)

ସେଥିରେ ନାଭାଜୀ କୃତ 'ଭକ୍ତମାଳ' ଅପେକ୍ଷା ଶ୍ରୀ ଜୟଦେବଙ୍କ ସମ୍ବନ୍ଧରେ ଅଧିକ ବିବରଣ ମିଳେ ।

ନାଭାଜୀଙ୍କ ଆଦର୍ଶରେ ଅନୁପ୍ରାଣିତ ହୋଇ ବିଖ୍ୟାତ ମୈଥିଳ ପଣ୍ଡିତ ଚନ୍ଦ୍ରଦତ୍ତ ସଂସ୍କୃତ ଭାଷାର ଏକ ବୃହତ୍ 'ଭକ୍ତମାଳା' ଗ୍ରନ୍ଥ ପ୍ରଣୟନ କରି ସେଥିରେ ଶ୍ରୀ ଜୟଦେବ ଚରିତ ତିନୋଟି ଦୀର୍ଘ ଅଧ୍ୟାୟରେ ବର୍ଣ୍ଣନା କରିଥିଲେ । ପ୍ରିୟାଦାସଙ୍କ 'ଭକ୍ତମାଳ' ଅବଲମ୍ବନରେ ମହୀପତି ନାମକ କବି ୧୭୬୨ ଖ୍ରୀଷ୍ଟାବ୍ଦରେ ମରହଟ୍ଟୀ ଭାଷାରେ 'ଭକ୍ତବିଜୟ' ଓ କୃଷ୍ଣଦାସ ବାବାଜୀ ବଂଗଳାରେ 'ଭକ୍ତମାଳ' ଗ୍ରନ୍ଥ ପ୍ରଣୟନ କରିଥିଲେ । ଏ ଉଭୟ ଗ୍ରନ୍ଥରେ ଭକ୍ତକବି ଜୟଦେବ ଚରିତ ବିସ୍ତୃତ ଭାବରେ ବର୍ଣ୍ଣିତ ହୋଇଅଛି । ଅତଏବ ନାଭାଜୀଙ୍କ ହିନ୍ଦୀ ଭକ୍ତମାଳ ଓ ତାହାର ଟୀକା ବିଭିନ୍ନ ପ୍ରାନ୍ତୀୟ ଭାଷା ଓ ସଂସ୍କୃତରେ ଏହାର ଅବଲମ୍ବନରେ ଲିଖିତ ଗ୍ରନ୍ଥଗୁଡ଼ିକର ପ୍ରସାର ଓ ଲୋକପ୍ରିୟତା ବୃଦ୍ଧି ସଙ୍ଗେ ସଙ୍ଗେ ଶ୍ରୀଗୀତଗୋବିନ୍ଦକାର ଭକ୍ତପ୍ରବର ଶ୍ରୀ ଜୟଦେବଙ୍କ ଯଶଃ ଓ ମହିମା ଚତୁର୍ଦ୍ଦିଗରେ ଘୋଷିତ ହୋଇଥିଲା ।

## —ଗୁଜରାଟୀ ସାହିତ୍ୟ—

ଗୁଜୁରାଟ ପ୍ରାନ୍ତରେ ଭଗବାନ ଶ୍ରୀକୃଷ୍ଣଙ୍କ ଜୀବନ ଚରିତ ସହିତ ଘନିଷ୍ଠ ଭାବରେ ସଂପୃକ୍ତ ଦ୍ୱାରକା ଓ ପ୍ରଭାସପତ୍ତନ ନାମକ ଦୁଇଟି ଭାରତ ପ୍ରସିଦ୍ଧ ତୀର୍ଥର

(୧୪) ହି: ସା: ଆ: ଇତିହାସ, ପୃ ୨୦୯
(୧୫) " ପୃ ୪୭୮

ଅବସ୍ଥିତ ଯୋଗୁଁ ଉକ୍ତ ଅଞ୍ଚଳରେ ଶ୍ରୀକୃଷ୍ଣ ଉପାସନା ବହୁ ପ୍ରାଚୀନ କାଳରୁ ସୁପ୍ରତିଷ୍ଠିତ ଥିଲା । ବୌଦ୍ଧପୀଠ 'ଗିରନଗର' ବା ଚର୍ଣ୍ଣାର ନିକଟରେ ୪୫୫ ଖ୍ରୀଷ୍ଟାବ୍ଦରେ ଶ୍ରୀକୃଷ୍ଣ ଉପାସନା ଉଦ୍ଦେଶ୍ୟରେ ଏକ ମନ୍ଦିର ନିର୍ମିତ ହୋଇଥିବାର ଜଣାଯାଏ । (୧୬)

ଗୁଜୁରାଟ ରାଜା ବସ୍ତୁପାଳଙ୍କ ସଭାକବି ସୋମେଶ୍ୱର (ଆ: ୧୧୭୯-୧୨୬୨ ଖ୍ରୀଷ୍ଟାବ୍ଦ) ସ୍ୱୀୟ **ସୁରଥୋତ୍ସବ** ନାମକ ମହାକାବ୍ୟରେ ଚଣ୍ଡୀଙ୍କ କୃପାରୁ ରାଜା ସୁରଥ ସ୍ୱୀୟ ଅପହୃତ ରାଜ୍ୟ ଉଦ୍ଧାର କରିଥିବା ବିଷୟ ବର୍ଣ୍ଣନା କରିଛନ୍ତି । କିନ୍ତୁ ଚଣ୍ଡୀ ମାହାତ୍ମ୍ୟ ଜ୍ଞାପକ ଉକ୍ତ ଗ୍ରନ୍ଥରେ ମଧ୍ୟ ଶ୍ରୀରାଧା-କୃଷ୍ଣଙ୍କ ପ୍ରେମଲୀଳାର ଉଲ୍ଲେଖ ଦେଖାଯାଏ । (୧୭)

ଭଗବାନ ଶଙ୍କରାଚାର୍ଯ୍ୟଙ୍କ ସମୟରୁ (ଆ ୭୮୮—୮୨୦ ଖ୍ରୀଷ୍ଟାବ୍ଦ) ଚତୁର୍ଦ୍ଧାମର ଅନ୍ତର୍ଗତ ଶ୍ରୀକ୍ଷେତ୍ର ଓ ଦ୍ୱାରକା ମଧ୍ୟରେ ଘନିଷ୍ଠ ସାଂସ୍କୃତିକ ସଂପର୍କ ବିଦ୍ୟମାନ ଥିଲା । ତେଣୁ ଶ୍ରୀକ୍ଷେତ୍ରରେ ଶ୍ରୀଗୀତଗୋବିନ୍ଦ ରଚିତ ହେବାର ପ୍ରାୟ ଏକ ଶତାବ୍ଦୀ ମଧ୍ୟରେ ଏହା ଦ୍ୱାରକା ଅଞ୍ଚଳରେ ଆଦୃତ ଓ ପ୍ରଚଳିତ ହୋଇଥିଲା । ଏହାର ପ୍ରସିଦ୍ଧ ଦଶାବତାର ସ୍ତୁତିର ଅତ୍ୟନ୍ତ ଲୋକପ୍ରିୟତା ଯୋଗୁଁ ଗୁଜୁରାଟ ଅନ୍ତର୍ଗତ ଅନହିଲ୍ଲପତ୍ତନର ବଘେଲ ବଂଶୀୟ ମହାରାଜ ଶାରଙ୍ଗଦେବ ୧୩୪୮ ବିକ୍ରମ ସମ୍ବତ୍ ବା ୧୨୯୧ ଖ୍ରୀଷ୍ଟାବ୍ଦରେ ଉତ୍କୀର୍ଣ୍ଣ ତାଙ୍କର ଏକ ଶିଳାଲେଖରେ ଶ୍ରୀଗୀତଗୋବିନ୍ଦର 'ବେଦାନୁଦ୍ଧରତେ' ଶ୍ଲୋକକୁ ପ୍ରଥମ ମଙ୍ଗଳାଚରଣ ଶ୍ଲୋକରୂପେ ଗ୍ରହଣ କରିଛନ୍ତି । କିନ୍ତୁ ଏହାର ତୃତୀୟ ପଂକ୍ତିରେ 'ପୌଲସ୍ତ୍ୟଂ ଜୟତେ' ପରିବର୍ତ୍ତରେ 'ସେତୁଂ ବନ୍ଧୟତେ' ପଦଦ୍ୱୟ ବ୍ୟବହୃତ ହୋଇଅଛି । (୧୮) ପ୍ରାଚୀନ ଭାରତୀୟ ଅଭିଲେଖରେ ଶ୍ରୀଗୀତଗୋବିନ୍ଦର ଏକ ଶ୍ଲୋକୋଦ୍ଧାରର ଏହାହିଁ ଏପର୍ଯ୍ୟନ୍ତ ଜ୍ଞାତ ଏକମାତ୍ର ନିଦର୍ଶନ । ଏ ଦିଗରୁ ବିଚାର କଲେ ଏହାର ବିଶେଷ ଗୁରୁତ୍ୱ ରହିଛି । ଏହାଦ୍ୱାରା ଶ୍ରୀଗୀତଗୋବିନ୍ଦକୁ ରାଜକୀୟ ସମ୍ମାନ ପ୍ରଦର୍ଶିତ ହୋଇଥିଲା ।

ଚତୁର୍ଦ୍ଦଶ ଶତାବ୍ଦୀ ପୂର୍ବରୁ ଗୁଜୁରାଟରେ ଶ୍ରୀମଦ୍‌ଭାଗବତ, ଶ୍ରୀଗୀତଗୋବିନ୍ଦ ଏବଂ ବୋପଦେବ କୃତ 'ହରିଲୀଳାମୃତ' ପ୍ରଭୃତି ଗ୍ରନ୍ଥର ବହୁଳ ପ୍ରଚଳନ ଫଳରେ ପରବର୍ତ୍ତୀ ଯୁଗରେ ପ୍ରାଚୀନ ଗୁଜୁରାଟୀ ଭାଷାରେ ଶ୍ରୀରାଧାକୃଷ୍ଣଙ୍କ ପ୍ରେମଲୀଳା ସମ୍ବନ୍ଧରେ ବହୁ ଗ୍ରାମ୍ୟ ଗୀତ ରଚିତ ହୋଇଥିଲା । ସେଥିମଧ୍ୟରେ ବସନ୍ତକାଳୀନ ପ୍ରଧାନ ଉତ୍ସବ

(୧୬) Gujrat and its literature by Dr. K M. Munshi p124
(୧୭) " " " p 125
(୧୮) Journal of the University of Bombay,
Vol VI, part VI, pp 123-137.

ଫଗୁଖେଳ ସଂପର୍କରେ ଲିଖିତ 'ଫାଗୁ ଗୀତ' ଗୁଡ଼ିକ ଅତ୍ୟନ୍ତ ଲୋକପ୍ରିୟ ଥିଲା । (ଫାଗୁ=ଓଡ଼ିଆ ଫଗୁ) **ନର୍ଷି** ନାମକ ଜଣେ ପ୍ରାଚୀନ କବି (ଆ: ୧୪୩୯ ଖ୍ରୀଷ୍ଟାବ୍ଦ)ଙ୍କ ଦ୍ୱାରା ରଚିତ ଏକ ଉତ୍କୃଷ୍ଟ ଫାଗୁ ଗୀତର କେତେକପଦ ନିମ୍ନରେ ଉଦ୍ଧାର କରାଗଲା ।

— ଫାଗୁ —

"ଆବ୍ୟୁ ମାସ ବସଂତକ, ସଂତ କରଇ ଉଚ୍ଛାହ
ମଲୟାନଲ ମନ୍ଦ ବାୟୁଓ, ଆୟୁଓ କାମଗି ଦାହ ॥
ରାସକ
ବଣବର ଆବ୍ୟୁ ପ୍ରଭୁ ବାନବଉ, ନବ ଦସଇ ଦସାଖରେ
ମାଧବ ମାଧବ ଭେଟଣ ଆବଇ, ଆବତ ଦେବ ମୁରାରି ରେ ॥

× × ×

ଥଣଭର ନମତ ତରୁଣୀ କରୁଣୀ, ବରୁଣୀ ଚରଣ ସଂଚାର ରେ
ରୂଲଇ ଚମକତ ଝମକତ ନେଓର, କେଉର କଟକ ବଶାଳ ରେ ॥"

ଏହି ଫାଗୁ ଗୀତରେ ଶ୍ରୀଗୀତଗୋବିନ୍ଦସ୍ଥ ବସନ୍ତ ଋତୁ ବର୍ଣ୍ଣନାର ପ୍ରଭାବ ସ୍ପଷ୍ଟ ପରିଲକ୍ଷିତ ହୁଏ । (୧୯)

ଷୋଡ଼ଶ ଶତାବ୍ଦୀର ପ୍ରଥମ ପାଦରେ ଶୁଦ୍ଧାଦ୍ୱୈତବାଦର ପ୍ରତିପାଦକ ଓ ପୁଷ୍ଟିମାର୍ଗର ପ୍ରବର୍ତ୍ତକ ବଲ୍ଲଭାଚାର୍ଯ୍ୟ ଗୁଜୁରାଟରେ ନିଜର ଧର୍ମମତ ପ୍ରଚାର କରିଥିଲେ । ବହୁ ଲୋକ ତାଙ୍କର ଶିଷ୍ୟତ୍ୱ ଗ୍ରହଣ କରିବାରୁ ସେ ଉକ୍ତ ରାଜ୍ୟରେ ଅନେକ ମଠ ମନ୍ଦିର ନିର୍ମାଣ କରାଇଥିଲେ । ସେ ତାଙ୍କର ଶିଷ୍ୟମାନଙ୍କୁ ପରମାରାଧ୍ୟ ଶ୍ରୀକୃଷ୍ଣଙ୍କ ନିକଟରେ ନିଜର ଦେହ, ମନ, ଆତ୍ମା, ହୃଦୟ, ସମସ୍ତ କର୍ମ; ଏପରିକି ନିଜର ଧନ, ଦାରା, ଗୃହ ଓ ପରିବାର ସହିତ ସର୍ବସ୍ୱ ଅର୍ପଣ କରିବା ପାଇଁ ଉପଦେଶ ଦେଉଥିଲେ । ତାଙ୍କର ପୁତ୍ର ବିଠ୍‌ଠଳନାଥଜୀ ପିତାଙ୍କ ଉପଦେଶକୁ ଆହୁରି ବ୍ୟାପକ ଭାବରେ ଅର୍ଥକରି କହୁଥିଲେ ଯେ, ଶିଷ୍ୟପତ୍ନୀ ଓ ଶିଷ୍ୟମାନେ ଗୁରୁଙ୍କ ପତ୍ନୀ ସ୍ୱରୂପା । ସେ ନିଜକୁ କିଶୋର କୃଷ୍ଣ ଓ ଶିଷ୍ୟାମାନଙ୍କୁ ଗୋପୀଭାବରେ ସଜାଇ ରାସଲୀଳାର ଅଭିନୟ କରୁଥିଲେ । ଏହି ଧର୍ମମତରେ ଶୃଙ୍ଗାର ରସାତ୍ମକ ସଂଗୀତ ଓ ନୃତ୍ୟ ପ୍ରଭୃତିକୁ ବିଶେଷ ପ୍ରାଧାନ୍ୟ ଦିଆଯାଉଥିବାରୁ ଏହା ଗୁଜୁରାଟରେ କ୍ରମଶଃ ଲୋକପ୍ରିୟତା ଅର୍ଜନ କରିଥିଲା । ପରବର୍ତ୍ତୀ କାଳରେ ଉକ୍ତ ବିବାହ ପୂର୍ବରୁ ନିଜର ପତ୍ନୀକୁ ପ୍ରଥମେ ଗୁରୁଙ୍କ ନିକଟରେ ସମର୍ପଣ କରିବା ପ୍ରଥା ପ୍ରଚଳିତ ହୋଇଥିଲା ।

---

(୧୯) Gujrat and its literature, ପୃ ୧୪୦ ।

ଏ ଯୁଗର ଗୁଜୁରାଟରେ ପ୍ରସିଦ୍ଧ କବିଙ୍କ ନାମ **ନରସିଂହ ମହେତା ।** ତାଙ୍କର ଆବିର୍ଭାବ କାଳ ସମ୍ବନ୍ଧରେ ମତଦ୍ୱୈଧ ଦେଖାଯାଏ । ପ୍ରସିଦ୍ଧ ଐତିହାସିକ ଡକ୍ଟର ମୁନ୍‌ସିଙ୍କ ମତରେ ସେ ଆ: ୧୫୦୦ରୁ ୧୫୮୦ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ଜୀବିତ ଥିଲେ । ସେ ଶ୍ରୀରାଧାକୃଷ୍ଣଙ୍କ ପ୍ରେମଲୀଳା ସମ୍ବନ୍ଧରେ ବହୁ ପଦ ଓ ଭଜନ ରଚନା କରିଥିଲେ । ସେ ଘରଆଡ଼େ ବୁଲି କରତାଳ ବଜାଇ ନିଜେ ମଧୁର କଣ୍ଠରେ ସେଗୁଡ଼ିକ ଗାନ କରୁଥିଲେ । ଏହିପରି ତାଙ୍କର ଦିନକାଳ କଟିଯାଉଥିଲା । ତେଲ୍ଲିଖିତ ପଦସଂଗ୍ରହର ନାମ **ଶୃଙ୍ଗାରମାଳା ।**

ସେ ମୁଖ୍ୟତଃ ଭାଗବତର 'ରାସପଞ୍ଚାଧ୍ୟାୟୀ'ର ଅବଲମ୍ବନରେ ଗୁଜୁରାଟୀ ଭାଷାରେ 'ରାସସହସ୍ରପଦୀ' ରଚନା କରିଥିଲେ । ସେ 'ବ୍ରହ୍ମବୈବର୍ତ୍ତ ପୁରାଣ'ରୁ ମଧ୍ୟ ବିଷୟବସ୍ତୁ ଆହରଣ କରିଥିଲେ । ଏଥିରେ ପ୍ରଦତ୍ତ **ଚାତୁରୀ** ଗୁଡ଼ିକରେ ଶ୍ରୀଗୀତ-ଗୋବିନ୍ଦର ପ୍ରଭାବ ସୁସ୍ପଷ୍ଟ । ତାଙ୍କର ପ୍ରସିଦ୍ଧ ଗ୍ରନ୍ଥ **ସୁରତ ସଂଗ୍ରାମ** ଶ୍ରୀଗୀତଗୋବିନ୍ଦ ଦ୍ୱାରା ବିଶେଷ ଭାବରେ ପ୍ରଭାବିତ ହୋଇଥିଲା । ଏହାର ବିଷୟବସ୍ତୁ ସଂକ୍ଷେପରେ ନିମ୍ନରେ ବର୍ଣ୍ଣିତ ହେଲା ।

ଏକଦା ବସନ୍ତ କାଳର ପ୍ରଦୋଷ ସମୟରେ ଶ୍ରୀରାଧା ଦଶଜଣ ଗୋପୀଙ୍କ ସହ ଦହି ବିକିବାକୁ ଯାଇଥିଲେ । ଏହି ସମୟରେ ଶ୍ରୀକୃଷ୍ଣ ଦଶଜଣ ସଖାଙ୍କ ସହ ସେମାନଙ୍କ ନିକଟରେ 'ତୋଳା' ଆଦାୟ କରିବା ପାଇଁ ପହଞ୍ଚିଲେ । ଗୋପୀମାନେ ତୋଳା ନ ଦେବାରୁ ଉଭୟ ପକ୍ଷ ମଧ୍ୟରେ ପ୍ରଥମେ କଳହ ହୋଇ ପରେ ଯୁଦ୍ଧ ଲାଗି-ଗଲା । ଏହି ସମୟରେ ହଠାତ୍ ସେଠାରେ ନନ୍ଦରାଜଙ୍କ ଆଗମନ ଯୋଗୁଁ ଉଭୟପକ୍ଷ ଭୟରେ ପଳାଇଗଲେ । ପୂର୍ଣ୍ଣିମା ନିଶିରେ ପୁନର୍ବାର ଉଭୟ ପକ୍ଷ ମଧ୍ୟରେ ଯୁଦ୍ଧ ହେବାର ସ୍ଥିର ହେଲା ।

ଜ୍ୟୋତ୍ସ୍ନାବିଧୌତ ପୂର୍ଣ୍ଣିମା ରଜନୀରେ ଉଭୟ ପକ୍ଷ ମଧ୍ୟରେ ଯୁଦ୍ଧ ହେବା ପୂର୍ବରୁ ଶ୍ରୀରାଧା କବି ନରସିଂହଙ୍କ ହସ୍ତରେ ଶ୍ରୀକୃଷ୍ଣଙ୍କ ନିକଟକୁ ଆତ୍ମସମର୍ପଣ ପାଇଁ ଏକ ପତ୍ର ପଠାଇଲେ । କବି ନରସିଂହ ଶ୍ରୀକୃଷ୍ଣଙ୍କୁ ଉକ୍ତ ପତ୍ର ଅର୍ପଣ କରିଥିଲେ । ବେଦପାଠ ପରେ ଗୋପବାଳମାନେ ଶ୍ରୀରାଧାଙ୍କ ନିର୍ଦ୍ଦେଶକୁ ଉପେକ୍ଷା କରି ଯୁଦ୍ଧ ପାଇଁ ଅଗ୍ରସର ହେଲେ । ଶ୍ରୀକୃଷ୍ଣ ଶ୍ରୀଗୀତଗୋବିନ୍ଦକାର **ଜୟଦେବଙ୍କ** ହସ୍ତରେ ଶ୍ରୀରାଧାଙ୍କ ନିକଟକୁ ବଶ୍ୟତା ସ୍ୱୀକାର ପାଇଁ ପତ୍ର ପ୍ରେରଣ କରିଥିଲେ । କିନ୍ତୁ ଶ୍ରୀରାଧା ଉକ୍ତ ପ୍ରସ୍ତାବକୁ ଅଗ୍ରାହ୍ୟ କରିବାରୁ ଉଭୟପକ୍ଷ ମଧ୍ୟରେ ଯୁଦ୍ଧ ହେଲା । ଏଥିରେ କଟାକ୍ଷପାତ, ଚୁମ୍ବନ, ଆଲିଙ୍ଗନ ପ୍ରଭୃତି ଅସ୍ତ୍ରଶସ୍ତ୍ର ପ୍ରୟୋଗ କରାଗଲା । ଶ୍ରୀକୃଷ୍ଣ ଶ୍ରୀରାଧାଙ୍କ ଦ୍ୱାରା ପ୍ରେରିତ କାମଶର ଦ୍ୱାରା ମୂର୍ଚ୍ଛିତ ହୋଇ ପରାଜୟ ସ୍ୱୀକାର କଲେ । ଏହାପରେ ସେ

ଗୋପାଳ ବାଳକମାନଙ୍କ ସହ ଯୁଦ୍ଧକ୍ଷେତ୍ରରୁ ପଳାୟନ କଲେ । ଗୋପୀଗଣ ସେମାନଙ୍କୁ ବ୍ରଜର ସୀମା ପର୍ଯ୍ୟନ୍ତ ତଡ଼ିନେଇ ଉକ୍ତ ରାଜ୍ୟ ଅଧିକାର କରିନେଲେ ।

ଶୃଙ୍ଗାର ରସାପ୍ଳୁତ 'ସୁରତ ସଂଗ୍ରାମ' କାବ୍ୟର କବି ଶ୍ରୀରାଧା-କୃଷ୍ଣଙ୍କ କନ୍ଦର୍ପ ଯୁଦ୍ଧରେ ନିଜକୁ ତଥା ପ୍ରସିଦ୍ଧ ଶୃଙ୍ଗାର କାବ୍ୟ 'ଶ୍ରୀଗୀତଗୋବିନ୍ଦ'କାର ଶ୍ରୀଜୟଦେବଙ୍କୁ ଦୂତ ରୂପେ ଚିତ୍ରିତ କରିଥିଲେ । * ଏଥିରେ କବି କଳ୍ପନା ବୈଶିଷ୍ଟ୍ୟ ତଥା ଉଭୟଙ୍କ ଭକ୍ତିବୈଭବର ଏକ ମନୋରମ ଚିତ୍ର ପ୍ରଦାନ କରିଛନ୍ତି । (୨୦)

୧୬୬୪ ସମ୍ବତ୍ ବା ୧୬୦୭ ଖ୍ରୀଷ୍ଟାବ୍ଦରେ ନକଲ ହୋଇଥିବା ଏକ ପୋଥିରେ ଶ୍ରୀଗୀତଗୋବିନ୍ଦର ଗୁଜୁରାଟୀ ଗଦ୍ୟରେ ଲିଖିତ ଏକ ଟୀକା ମିଳେ । ଏହି ଗଦ୍ୟର ନମୁନା ତଳେ ଉଦ୍ଧାର କରାଗଲା ।

'ବେଦାନୁଦ୍ଧରତେ—ଏହନୁ ଅର୍ଥ, ହେ— ପରମେଶ୍ୱରଂ ମଛାବତାର କରୀନଂ ଶଙ୍ଖାସୁର ଦୈତ୍ୟ ହଣ୍ୟ × × ବୌଦ୍ଧାବତାରଂ ଦୟାକରୀ ପଶୁଯାଗନୀ ନିଂଦା କଧି । ଜୈନ୍ୟଧର୍ମ ରାଖିଓ । କଳି ପରମେଶ୍ୱରଂ କଲକିନୁ ଅବ-ତାର ଲେଇନ ମ୍ଳେଚ୍ଛହଣ୍ୟା । ଇଣିପରିଂ ପରମେଶ୍ୱରଂ ଦଶ ଅବତାର ଲୀଧା । ତେହନଂ ନମସ୍କାର" ।

ଶ୍ରୀଗୀତଗୋବିନ୍ଦର ଦଶାବତାର ଚିତ୍ରାବଳୀ ଗୁଜୁରାଟ ଅଞ୍ଚଳରେ ଲୋକ-ପ୍ରିୟତା ଅର୍ଜନ କରିଥିଲା । (୨୧)

ପ୍ରାଚୀନ ଗୁଜୁରାଟୀ ସାହିତ୍ୟର ଶ୍ରୀବୃଦ୍ଧି ପାଇଁ ସୁଦୂର ଶ୍ରୀକ୍ଷେତ୍ରରେ ରଚିତ ଶ୍ରୀଗୀତଗୋବିନ୍ଦର ଅବଦାନ ଅତ୍ୟନ୍ତ ମହତ୍ତ୍ୱପୂର୍ଣ୍ଣ ଓ ଗୌରବମୟ ।

## — ପଞ୍ଜାବୀ ସାହିତ୍ୟ —

ଶିଖଧର୍ମର ପଞ୍ଚମ ଗୁରୁ ଶ୍ରୀ ଅର୍ଜୁନଦେବ ସମ୍ବତ୍ ୧୬୬୧ ବା ୧୬୦୪ ଖ୍ରୀଷ୍ଟାବ୍ଦରେ ଶିଖ ସଂପ୍ରଦାୟର ପ୍ରଧାନ ଧର୍ମଗ୍ରନ୍ଥ 'ଶ୍ରୀଗୁରୁ ଗ୍ରନ୍ଥସାହିବ' ସଂକଳନ

---

* "ଏ ଜୟଦେବୋ ଗୁଲସ୍ତୋ, ମନମାଂହି ହାଲ୍ୟସ୍ତୋ, ଅବସ୍ତୋ ଜ୍ୟାଂ ଈହୀଗୋପନାସୀ ରାଧେନ ପୂଛତୋ, ମରଦତୋ, ମୂଛତୋଗୁପ୍ତ କ୍ୟାଂ ଗୋପୀ ଭଟନୀ ଦୂଲସୀ"

(୨୦) Gujrat and its literature—Munshi, p 184-195

(୨୧) A 15th century Gitagovinda manuscript with Gujrati paintings
"Journal of the University of Bombay, Vol. VI, pt. VI, pp 129-130.

କରିଥିଲେ । ସେଥିରେ ଶିଖଧର୍ମର ପ୍ରତିଷ୍ଠାତା ଗୁରୁ ନାନକଙ୍କ ବ୍ୟତୀତ ଅନ୍ୟ ଷୋଳ-ଜଣ ସନ୍ଥଙ୍କ କବିତା ମଧ୍ୟ ସଂଗୃହୀତ ହୋଇଥିବାର ଦେଖାଯାଏ । ସେମାନେ ହେଲେ **ଜୈଦେବ (ଜୟଦେବ)**, ନାମଦେବ, ତ୍ରିଲୋଚନ, ପରମାନନ୍ଦ, ସଦନା, ବେଣୀ, ରାମାନନ୍ଦ, ଧନା, ପୀପା, ସେନ, କବୀର, ରୈଦାସ, ସୂରଦାସ, ଫରିଦ୍, ଭିଖନ ଓ ମୀରା । (୨୨) ଏହାର ନିମ୍ନୋକ୍ତ ପଦଦ୍ୱୟରେ ମଧ୍ୟ ଜୟଦେବଙ୍କ ଭକ୍ତିପୂର୍ଣ୍ଣ ଉଲ୍ଲେଖ ଦେଖାଯାଏ । (୨୩)

(୧) "ନାମା **ଜୈଦେବ** କବୀରୁ ତ୍ରିଲୋଚନୁ ଅଉଜାତି ରବିଦାସ ଚମିଆରୁ
ଚଲଇଆ (ନାନକ, ରାଗୁ ବିଲାବଲୁ)

(୨) ଗୁଣ ଗାଵୈ ରବି ଦାସୁ ଭଗତୁ **ଜୈଦେବ** ତ୍ରିଲୋଚନ ।
ନାମା ଭଗତୁ କବୀରୁ ସଦା ଗାବହି ସମ ଲୋଚନ ॥

ଏଥିରେ ଅନ୍ତର୍ଭୁକ୍ତ ହୋଇଥିବା ଜୟଦେବଙ୍କ ଭଣିତାଯୁକ୍ତ ଦୁଇଟି ହିନ୍ଦୀ ଗୀତ ପାଠକ ମାନଙ୍କ ଅବଗତି ନିମିତ୍ତ ନିମ୍ନରେ ଉଦ୍ଧାର କରାଗଲା ।

(ବାଣୀ ଜୈଦେବ ଜୀଉକୀ—ରାଗ ମାରୁ)

"ଚଂଦ ସତ ଭେଦିଆ ନାଦସତ ପୂରିଆ ସୂରସତ ଖୋଡ଼ସାଦତୁ କୀଆ
ଅବଲବଲୁ ତୋଡ଼ିଆ ଅଚଲ ଚଲୁଥାପିଆ ଅଘଡୁ ଘଡ଼ିଆ
ତାହା ଅମିଉ ପୀଆ
ମନ ଆଦି ଗୁଣ ଆଦି ବଖାନିଆ, ତେରୀ ଦୁବିଧା ଦ୍ରିସଟି ସମାନିଆ
ଅରଧି କୌ ଅରଧିଆ ସରଧିକୌ ସରଧିଆ
ସଲିଲ କୌ ସଲିଲ ସଂମାନ ଆଇଆ
ବଦତି ଜୈଦେବ ଜୟଦେବ କୌ ରଂମିଆ
ବ୍ରହ୍ମ ନିର୍ବାଣ ଲିବଲୀନ ପାଇଆ ॥
(ଆଦି ଶ୍ରୀଗୁରୁ ଗ୍ରନ୍ଥସାହିବଜୀ ପୃ ୫୯୮)

ଅର୍ଥାତ୍ ପୂରକ, କୁମ୍ଭକ ଓ ରେଚକ କାଳରେ ଷୋଡ଼ଶ ବାର ପ୍ରଣବ ବା ଓଁକାର ଉଚ୍ଚାରଣ ପୂର୍ବକ ପ୍ରାଣାୟାମ କରାଯାଇଛି । ଚଞ୍ଚଳ ମନକୁ ସଂଯତ କରି ବ୍ରହ୍ମରେ ସ୍ଥାପନା କରାଯାଇଛି । ଶତ୍ରୁବୃତ୍ତିକୁ ଦମନ କରି ଅମୃତ ପାନ କରାଯାଇଛି । ହେ ବ୍ରହ୍ମ, ତ୍ରିଗୁଣାତ୍ମକ ମନର ଦ୍ୱିବିଧା ଦୃଷ୍ଟି ଅବଲୁପ୍ତ ହୋଇଛି । ଆରାଧ୍ୟକୁ

---

(୨୨) ହି: ସା: ଆ: ଇତିହାସ, ପୃ ୨୧୬-୨୧୭

(୨୩) ,, ,, ପୃ ୨୨୧

ଆରାଧନା ଓ ଶ୍ରଦ୍ଧାର ପାତ୍ରକୁ ଶ୍ରଦ୍ଧା କରାଯାଇଛି । ସଲିଳକୁ ସଲିଳରେ ପ୍ରବେଶ କରାଯାଇଛି । ଜୟଦେବ କଣ୍ଠଛନ୍ଦ, ପରମେଶ୍ୱରଙ୍କ ଠାରେ ରତି ବା ଆସକ୍ତି ଦୃଢ଼ ହୋଇଛି । ନିଜର ସତ୍ତା ଲୋପ ପାଇଛି । ତେଣୁ ବ୍ରହ୍ମ ନିର୍ବାଣ ପାଇବ ।

ଉପରେ ଉଦ୍ଧୃତ ଗୀତରେ ଶ୍ରୀଗୀତଗୋବିନ୍ଦ ପଦାବଳୀର ଭାଷା ମାଧୁର୍ଯ୍ୟ ବା ଭାବ ସୌନ୍ଦର୍ଯ୍ୟ ନାହିଁ । ଶ୍ରୀରାଧାକୃଷ୍ଣଙ୍କ ପ୍ରେମଲୀଳାର କୋମଳ ଓ ବିଳାସପୂର୍ଣ୍ଣ ବର୍ଣ୍ଣନା ଏଥିରେ ନାହିଁ । ଏଥିରେ ପୂରକ, କୁମ୍ଭକ, ରେଚକ, ପ୍ରାଣାୟାମ ଓ ପ୍ରଣବ ଉଚ୍ଚାରଣ ଦେହ-ମନର ସଂଯମ, ବ୍ରହ୍ମରେ ରତି ଓ ନିର୍ବାଣଲାଭ ପ୍ରଭୃତି ଯୋଗମାର୍ଗର ବିଷୟ ବର୍ଣ୍ଣିତ ହୋଇଛି । ନିର୍ଗୁଣବ୍ରହ୍ମଙ୍କ ଶକ୍ତିସଂପନ୍ନତା ପ୍ରକଟିତ ହୋଇଛି । ପ୍ରାଚୀନ ଉଡ୍ଡୀୟାନ ପୀଠ ଉତ୍କଳରେ ହଠଯୋଗ ସାଧନର ଏକ ପ୍ରଧାନ କେନ୍ଦ୍ର ଥିଲା । ତେଣୁ ଉତ୍କଳୀୟ ଭକ୍ତପ୍ରବର ଶ୍ରୀ ଜୟଦେବ ପରଂପରା କ୍ରମେ ଉତ୍କଳରେ ପ୍ରଚଳିତ ଯୋଗ-ସାଧନ ପ୍ରଣାଳୀ ସମ୍ବନ୍ଧରେ ଅପଭ୍ରଂଶ ଭାଷାରେ କେତେକ ପଦ ରଚନା କରିଥିବା ଅସମ୍ଭବ ନୁହେଁ । କିନ୍ତୁ ଏ ସମ୍ପର୍କରେ ସ୍ଥିର ସିଦ୍ଧାନ୍ତ ଅଧିକ ପ୍ରମାଣ ସାପେକ୍ଷ । ତାଙ୍କର ଅନ୍ୟ ପଦଟି ହେଉଛି—

॥ ଶ୍ରୀ ଜୈଦେବ ଗାଉକା ପଦ (ରାଗ ଗୁର୍ଜରୀ) ॥

"ପରମାନ୍ଦ ପୁରୁଖ ମନୋପିମଂ   ସନ୍ତି ଆନ୍ଦ ଭାବରତଂ
ପରମଭୁତଂ ପରହିତି ପରଂ   ଜନ୍ଦ ଚନ୍ଦ୍ରସରବ ଗତଂ । ୧

ରାହାଉ-କେବଳ ରାମନାମ ମନୋରମଂ ବନ୍ଦ ଅମୃତ-ତତ-ମଣ୍ଡତଂ
ନ ଦନୋନ୍ତି ଜସ ମରଣେନ ଜନମ ଜରାଧି-ମରଣ ଭଇଅଂ

ଇଚ୍ଛସି ଜମାନ୍ଦ-ପରାଭୟଂ ଜସ୍ମୁସ୍ୱସନ୍ତି ସୁହିତ-ହିତଂ
ଭବ-ଭୂତ-ଭାବ ସମନ୍ୱୟଂ ପରମଂ ପରସନ୍ନମିଦଂ । ୨

ଲୋଭାଦିଦ୍ରିଷ୍ଟି ପରଗ୍ରିହଂ ଜନ୍ଦ ବିଧି ଆଚରଣଂ ।
ତଜ୍ଜ ସକଳ ଦୁହୃହଂତ ଦୁରମତି ଭଜୁ ଚକ୍ରଧର ସରଣଂ । ୩

ହରି ଭଗତ ନଜ ନିହକେବଳା ଶିଦ କରମଣା ବଚସା
ଜୋଗେନ କିଂ ଜଗେନ କିଂ ଦାନେନ କିଂ ତପସା । ୪

ଗୋବିନ୍ଦ ଗୋବିନ୍ଦେତି ଜପି ନର ସକଳ-ସିଦ୍ଧି-ପଦଂ
**ଜୈଦେବ** ଆଇଉ ସସପୁଟଂ ଭବ-ଭୂତ-ସର୍ବଗତଂ । ୫

ଏହି ପଦଟି ପ୍ରଥମେ ଅପଭ୍ରଂଶ ଭାଷାରେ ରଚିତ ହୋଇଥିଲା । କାଳକ୍ରମେ ଏହାର ଭାଷା ଲିପିକରମାନଙ୍କ ଦ୍ୱାରା ବିକୃତ ସଂସ୍କୃତରେ ପରିଣତ ହୋଇଅଛି । ମାନମୀୟ

ଓଲ୍ଡର ଶ୍ରୀ ସୁମନ୍ତ କୁମାର ଗୁର୍ଜ୍ଜ୍ଜୀ ଏହି ପଦର ନିମ୍ନୋକ୍ତ ସଂସ୍କୃତାନୁବାଦ ପ୍ରଦାନ କରିଛନ୍ତି । (୨୪)

"ପରମାଦ ପୁରୁଷଂ ଅନୁପମଂ ସଦ୍‌ଆଦିଶ୍ରୀବରଡମ୍
ପରମାଦ୍ଭୁତଂ ପ୍ରକୃତିପରଂ ଯଦ୍ ଅଚିନ୍ତ୍ୟଂ ସର୍ବଗତମ୍ ॥ ୧ ॥

— ଦୋହା —

କେବଳଂ ରାମନାମ ମନୋରମଂ ବଦ ଅମୃତତତ୍ତ୍ୱମୟମ୍
ନ ଦୁନୋତି ଯତ୍ତୁ ସ୍ମରଣେନ ଜନ୍ମଜରାଦିମରଣଭୟମ୍ ॥
ଇଚ୍ଛସି ଯମାଦପରାଭବଂ ଯଶଃ ସ୍ୱସ୍ତି ସୁକୃତକୃତମ୍ (ସୁକୃତଂ କୁରୁ)
ଭବଭୂତଂଶ୍ରୀବସମବ୍ୟୟଂ ପରମଂ ପ୍ରସନ୍ନଂ ଇଦମ୍
ଲୋଭାଦ-ଦୃଷ୍ଟି ପରଗୃହଂ ଯଦ୍‌ଅବଧି ଆଚରଣମ୍ ॥
ତ୍ୟଜ ସକଳ ଦୁଷ୍କୃତଂ ଦୁର୍ମତିଂ ଭଜ ଚକ୍ରଧର ଶରଣମ୍ ॥
ହରିଭକ୍ତିଃ ନିଜା ନିଷ୍କେବଳା ହୃଦ୍ କର୍ମଣା ବଚସା
ଯୋଗେନ କିଂ ଯଜ୍ଞେନ କିଂ ଦାନେନ କିଂ (କିଂ) ତପସା
ଗୋବିନ୍ଦ ଗୋବିନ୍ଦେତି ଜପ, ନର ସକଳ ସିଦ୍ଧି-ପଦମ୍
ଜୟଦେବଃ ଆୟାତଃ ତସ୍ୟ ସ୍ଫୁଟମ୍ ଭବ-ଭୂତ-ସର୍ବ-ଗତମ୍"

ଏହି ପଦରେ ଗୋବିନ୍ଦ ଭକ୍ତିର ମାହାତ୍ମ୍ୟ କୀର୍ତ୍ତିତ ହୋଇଛି । ଶିଖ ସଂପ୍ରଦାୟର ପ୍ରଧାନ ଧର୍ମପୁସ୍ତକ 'ଗ୍ରନ୍ଥସାହେବ'ର ସଂକଳୟିତା ଗୁରୁ ଅର୍ଜ୍ଜୁନ ଜୟଦେବଙ୍କ ଆବିର୍ଭାବ କାଳର ପ୍ରାୟ ୪୫୦ ବର୍ଷ ପରେ ତତ୍ପ୍ରଣୀତ ଏହି ପଦଦ୍ୱୟ ଲିପିବଦ୍ଧ କରିଥିବାରୁ ମନରେ ସ୍ୱତଃ ଧାରଣା ଜାତହୁଏ ଯେ, କବିରାଜ ଜୟଦେବ, ରାଜଶେଖର ଓ ଆଚାର୍ଯ୍ୟ ହେମଚନ୍ଦ୍ରଙ୍କ ପରି ଉଭୟ ସଂସ୍କୃତ ତଥା ଅପଭ୍ରଂଶ ଭାଷାରେ କୌଣସି ଗ୍ରନ୍ଥ ରଚନା କରିଥିଲେ । ସେ ପରମ ଭକ୍ତ ଥିବାରୁ ଯୋଗମାର୍ଗ ଓ ଭକ୍ତିମାର୍ଗ ସମ୍ବନ୍ଧରେ ପଦରଚନା କରିଥିବା ସମ୍ଭବପର । ସେଗୁଡ଼ିକ ଲିପିବଦ୍ଧ ଥିବା ମୂଳ ଗ୍ରନ୍ଥ ବର୍ତ୍ତମାନ ଦୁଷ୍ପ୍ରାପ୍ୟ ହେଲେମଧ୍ୟ ସେଥିରୁ କେତେକ ବିଶିଷ୍ଟ ପଦ ପୁରୁଷାନୁକ୍ରମେ ଲୋକମୁଖରେ ପ୍ରଚଳିତ ଥିଲା । ଗୁରୁ ଅର୍ଜ୍ଜୁନ ସେଥିମଧ୍ୟରୁ ଦୁଇଟି ମାତ୍ର ସ୍ୱ ଧର୍ମ-ଗ୍ରନ୍ଥରେ ସ୍ଥାନ ଦେଇଛନ୍ତି । ଗଭୀର ଅନୁସନ୍ଧାନ କଲେ ଅନ୍ୟ କେତେକ ପଦ ମିଳିପାରେ ।

---

(୨୪) କବି ଜୟଦେବ ଓ ଶ୍ରୀଗୀତଗୋବିନ୍ଦ,
ଶ୍ରୀ ହରେକୃଷ୍ଣ ମୁଖୋପାଧ୍ୟାୟ ପୃ ୪୩

## —ବଙ୍ଗଳା ସାହିତ୍ୟ—

ଉତ୍କଳରେ ଗଙ୍ଗସାମ୍ରାଜ୍ୟର ପ୍ରତିଷ୍ଠାତା ଚୋଳଗଙ୍ଗଦେବଙ୍କ ଦ୍ୱାରା ମନ୍ଦାର ଦୁର୍ଗ ଅଧିକାର (ପ୍ରାୟ ୧୧୩୫ ଖ୍ରୀଷ୍ଟାବ୍ଦ) ସମୟରୁ ଶେଷ ସ୍ୱାଧୀନ ଗଜପତି ମୁକୁନ୍ଦ ଦେବଙ୍କ ମୃତ୍ୟୁ ପର୍ଯ୍ୟନ୍ତ (୧୫୬୮ ଖ୍ରୀଷ୍ଟାବ୍ଦ) ପ୍ରାୟ ଦୀର୍ଘ ଚାରି ଶତାବ୍ଦୀ କାଳ ବଙ୍ଗଳାର ଦକ୍ଷିଣ ପଶ୍ଚିମାଂଶ ଉତ୍କଳ ସାମ୍ରାଜ୍ୟର ଅନ୍ତର୍ଭୁକ୍ତ ଥିବାରୁ ଏବଂ ଓଡ଼ିଆ ଓ ବଙ୍ଗଳା ଭାଷା ମଧ୍ୟରେ ବିଶେଷ ସାମଞ୍ଜସ୍ୟ ଥିବା ହେତୁ ଭାରତର ଅନ୍ୟ ପ୍ରାନ୍ତ ଅପେକ୍ଷା ବଙ୍ଗ ସହିତ ଉତ୍କଳର ଅଧିକ ଘନିଷ୍ଠ ରାଜନୈତିକ ଓ ସାଂସ୍କୃତିକ ସଂପର୍କ ବିଦ୍ୟମାନ ଥିଲା। ନବଦ୍ୱୀପଚନ୍ଦ୍ର ଶ୍ରୀଚୈତନ୍ୟଙ୍କ ମହାପ୍ରୟାଣ ପର୍ଯ୍ୟନ୍ତ ଶ୍ରୀକ୍ଷେତ୍ରରେ ଅବସ୍ଥାନ ଏହି ସାଂସ୍କୃତିକ ସଂପର୍କକୁ ଅଧିକ ନିବିଡ଼ କରିପକାଇଥିଲା। ଶ୍ରୀକ୍ଷେତ୍ରରେ ରଚିତ, ଜଗନ୍ନାଥ ମହାପ୍ରଭୁଙ୍କ ନିକଟରେ ନିତ୍ୟ ଆବୃତ୍ତ ଏବଂ ଶ୍ରୀଚୈତନ୍ୟଦେବଙ୍କ ଦ୍ୱାରା ବିଶେଷ ଆଦୃତ ଗୀତଗୋବିନ୍ଦ ଜଗନ୍ନାଥ ଭକ୍ତ ବଙ୍ଗାଳୀମାନଙ୍କ ମଧ୍ୟରେ ପ୍ରସାରଲାଭ କରିଥିବା ସ୍ୱାଭାବିକ। ତେଣୁ ଏହି ପରିପ୍ରେକ୍ଷୀରେ ବଙ୍ଗଳା ସାହିତ୍ୟରେ ଗୀତଗୋବିନ୍ଦର ପ୍ରଭାବ ବର୍ଣ୍ୟ।

### ବଡ଼ୁ ଚଣ୍ଡୀଦାସ କୃତ ଶ୍ରୀକୃଷ୍ଣକୀର୍ତ୍ତନ ? (୨୫)

ଶ୍ରୀଗୀତଗୋବିନ୍ଦର ପ୍ରଭାବ ହୋଇଥିବା ବଙ୍ଗଳା ଗ୍ରନ୍ଥ ଗୁଡ଼ିକ ମଧ୍ୟରେ ବଡ଼ୁ ଚଣ୍ଡୀଦାସ କୃତ 'ଶ୍ରୀକୃଷ୍ଣ କୀର୍ତ୍ତନ' ପ୍ରାଚୀନତମ। କିନ୍ତୁ ଏହାର ଯେଉଁ ଖଣ୍ଡିଏମାତ୍ର ପୋଥି ମିଳିଛି, ତାହା ଆଦ୍ୟନ୍ତ ବିହୀନ ଏବଂ ଏଥିରେ କବିଙ୍କ ପରିଚୟ, ରଚନାକାଳ ଓ ଲିପିକାଳ ପ୍ରଭୃତି କିଛି ନାହିଁ। ଏପରିକି ଗ୍ରନ୍ଥର ନାମ ପର୍ଯ୍ୟନ୍ତ ଏଥିରୁ ମିଳୁନାହିଁ। କେବଳ ପୂର୍ବ ଧାରଣାର ବଶବର୍ତ୍ତୀ ହୋଇ ଏହାର ଏପରି ନାମକରଣ ଏବେ କରାଯାଇଛି। ତେବେ ଗ୍ରନ୍ଥର ନାମ ଯାହାହେଉ, ଏହା ଯେ ବଡ଼ୁ ଚଣ୍ଡୀଦାସଙ୍କ କୃତି ଏଥିରେ ସନ୍ଦେହ ନାହିଁ।

ଏହାର ଅଧିକାଂଶ ପଦ ଶ୍ରୀକୃଷ୍ଣ, ଶ୍ରୀରାଧା ବା ବଡ଼ାଇ (ଦୂତୀ)ର ଉକ୍ତି। ବର୍ଣ୍ଣନୀୟ ବିଷୟ ହେଉଛି ଶ୍ରୀକୃଷ୍ଣଙ୍କ କୈଶୋର ଲୀଳା। ଏହି ଗ୍ରନ୍ଥରେ ଉପମାର ପ୍ରୟୋଗ ବାହୁଲ୍ୟ, ବିଭିନ୍ନ ରାଗର ସମାବେଶ ଓ କବି ରଚିତ ପ୍ରାୟ ୧୨୫ ଶ୍ଳୋକର ସନ୍ନିବେଶ ଯୋଗୁଁ ଏହାର ଉପାଦେୟତା ଯଥେଷ୍ଟ ବୃଦ୍ଧିଲାଭ କରିଛି। କିନ୍ତୁ ଏହି

---

(୨୫) ବଡ଼ୁ ଚଣ୍ଡୀଦାସଙ୍କ "ଶ୍ରୀକୃଷ୍ଣ କୀର୍ତ୍ତନ"
ବସନ୍ତରଞ୍ଜନ ରାୟଙ୍କ ଦ୍ୱାରା ସଂପାଦିତ ଓ ବଙ୍ଗୀୟ ସାହିତ୍ୟ ପରିଷଦ ଦ୍ୱାରା ପ୍ରକାଶିତ, ୨ୟ ସଂସ୍କରଣ, ସନ ୧୩୪୨ ସାଲ।

ଗ୍ରନ୍ଥରେ ଶୁଦ୍ଧ ଶବ୍ଦ ଖାଣ୍ଟି ଓଡ଼ିଆ ପଦର ବିଶେଷତଃ ହିନ୍ଦୀ ପଦର ପ୍ରୟୋଗ ଏବଂ ଶ୍ରୀକୃଷ୍ଣଙ୍କ ପରିବର୍ତ୍ତରେ ଜଗନ୍ନାଥଙ୍କ ନାମର ବହୁଳ ଉଲ୍ଲେଖ ଯୋଗୁଁ ଗ୍ରନ୍ଥକର୍ତ୍ତାଙ୍କ ବଙ୍ଗୀୟତ୍ୱ ସମ୍ବନ୍ଧରେ ସନ୍ଦେହ ଜାତ ହେଉଅଛି । ଏହି ପୁସ୍ତକରେ **କାମାଣ (କମାଣ),** ମଜୁରି, ମଜୁରିଆ, ଖରମୁଜା ପ୍ରଭୃତି ପାରସୀ ଶବ୍ଦ ଓ ଆରବୀ ବାକୀ ଶବ୍ଦର ବ୍ୟବହାର ଏହାର ବିଶେଷ ପ୍ରାଚୀନତ୍ୱ ଜ୍ଞାପକ ନୁହେଁ ।

ଏହା ସବମୋଟରେ ୧୩ ଖଣ୍ଡରେ ବିଭକ୍ତ—ଜନ୍ମ ଖଣ୍ଡ, ତାମ୍ବୁଳ ଖଣ୍ଡ, ଦାନ ଖଣ୍ଡ, ନୌକା ଖଣ୍ଡ, ଭାରଖଣ୍ଡ, ଛତ୍ର ଖଣ୍ଡ, ବୃନ୍ଦାବନ ଖଣ୍ଡ, କାଳିୟ-ଦଳନ-ଖଣ୍ଡ, ଯମୁନା ଖଣ୍ଡ, ହାର ଖଣ୍ଡ, ବାଣ ଖଣ୍ଡ, ବଂଶୀ ଖଣ୍ଡ ଓ ଶ୍ରୀରାଧାଙ୍କ ବିରହ ଖଣ୍ଡ । ଜନ୍ମଖଣ୍ଡରେ ଭୂଭାର ହରଣ ନିମିତ୍ତ ଦେବଗଣଙ୍କ ପ୍ରାର୍ଥନାରେ ରାଧାକୃଷ୍ଣଙ୍କ ଜନ୍ମଲୀଳା ବର୍ଣ୍ଣିତ ହୋଇଛି । ତାମ୍ବୁଳ ଖଣ୍ଡରେ ଶ୍ରୀରାଧାଙ୍କ ପାଇଁ ଶ୍ରୀକୃଷ୍ଣଙ୍କ ଦ୍ୱାରା ତାମ୍ବୁଳାଦି ଉପହାର ପ୍ରେରଣ, ଦାନଖଣ୍ଡରେ ଶ୍ରୀରାଧା ପ୍ରାପ୍ତି ନିମିତ୍ତ ଶ୍ରୀକୃଷ୍ଣ କର୍ତ୍ତୃକ ଦାମୀର ଅଭିନୟ, ରାଧାକୃଷ୍ଣଙ୍କ ମିଳନ ଓ ସମ୍ଭୋଗ, ନୌକାଖଣ୍ଡରେ ଶ୍ରୀକୃଷ୍ଣ କାଣ୍ଡାରୀ ବେଶରେ ଗୋପୀମାନଙ୍କୁ ଯମୁନା ପାର-କରଣ ଓ ରାଧାକୃଷ୍ଣଙ୍କ ଯମୁନା ବିହାର, ଭାରଖଣ୍ଡରେ ଭାରବାହୀ ରୂପେ ଶ୍ରୀମତୀଙ୍କ ସେବା ବହନ, ଛତ୍ର ଖଣ୍ଡରେ ଶ୍ରୀକୃଷ୍ଣଙ୍କ ଦ୍ୱାରା ରାଧାଙ୍କ ମସ୍ତକରେ ଛତ୍ରଧାରଣ; ବୃନ୍ଦାବନ ଖଣ୍ଡରେ ଗୋପୀମାନଙ୍କ ସହ ବନବିହାର ଓ ଶ୍ରୀରାଧାଙ୍କ ସହ ରାସ, କାଳିୟ ଦଳନ ଖଣ୍ଡରେ କାଳୀୟ ମର୍ଦ୍ଦନ, ଯମୁନା ଖଣ୍ଡରେ ଗୋପୀଗଣ ସହ ଶ୍ରୀକୃଷ୍ଣଙ୍କ ଜଳବିହାର ଏବଂ କୃଷ୍ଣ କର୍ତ୍ତୃକ ଗୋପୀମାନଙ୍କ ବସ୍ତ୍ର ହରଣ; ହାରଖଣ୍ଡରେ ଶ୍ରୀକୃଷ୍ଣଙ୍କ ବିରୁଦ୍ଧରେ ଯଶୋଦାଙ୍କ ନିକଟରେ ହାର ଚୋରି ଅଭିଯୋଗ; ବାଣଖଣ୍ଡରେ ପ୍ରତିଶୋଧ ନିମିତ୍ତ ରାଧାଙ୍କ ପ୍ରତି ମଦନ ବାଣ ତ୍ୟାଗ, ରାଧାଙ୍କ ମୋହ, ବଡ଼ାଇ କର୍ତ୍ତୃକ ଶ୍ରୀକୃଷ୍ଣଙ୍କ ବନ୍ଧନ ଓ ଶ୍ରୀମତୀଙ୍କ ସମ୍ଭୋଗ, ବଂଶୀଖଣ୍ଡରେ ଶ୍ରୀରାଧାଙ୍କ ବଂଶୀ ଅପହରଣ ଓ କୃଷ୍ଣଙ୍କ କାକୁତି ପରେ ପ୍ରତ୍ୟର୍ପଣ, ବିରହ ଖଣ୍ଡରେ ରାଧାଙ୍କ ବିରହ, ରାଧାକୃଷ୍ଣଙ୍କ ମିଳନ ଓ ସମ୍ଭୋଗ, ଶ୍ରୀମତୀଙ୍କ ଶ୍ରାନ୍ତି ଓ ଶ୍ରୀ କୃଷ୍ଣଙ୍କ ମଥୁରା ଗମନ ବର୍ଣ୍ଣିତ ହୋଇଛି ।

## ଚଣ୍ଡୀଦାସଙ୍କ ବୈଷ୍ଣବ ପଦାବଳୀ—

ପ୍ରସିଦ୍ଧ ମୈଥିଳ କବି ବିଦ୍ୟାପତିଙ୍କ ପଦାଙ୍କ ଅନୁସରଣ କରି ଚଣ୍ଡୀଦାସ ନାମକ ପ୍ରସିଦ୍ଧ ବଙ୍ଗୀୟ ବୈଷ୍ଣବ କବି ଶ୍ରୀରାଧାକୃଷ୍ଣଙ୍କ ପ୍ରେମଲୀଳା ବର୍ଣ୍ଣନାତ୍ମକ ବହୁ ସରଳ ସୁନ୍ଦର ପଦାବଳୀ ରଚନା କରିଥିଲେ । ଏଗୁଡ଼ିକ ଶ୍ରୀଚୈତନ୍ୟଦେବଙ୍କ ଶ୍ରୀକ୍ଷେତ୍ର ଅବସ୍ଥାନ ପୂର୍ବରୁ (୧୫୦୯—୧୫୩୩) ଯେ ରଚିତ ହୋଇଥିଲା, ତାହା କୃଷ୍ଣ ଦାସ କବିରାଜ କୃତ 'ଶ୍ରୀଚୈତନ୍ୟ ଚରିତାମୃତ' ପାଠରୁ ଜଣାଯାଏ । କିନ୍ତୁ ଚଣ୍ଡୀଦାସଙ୍କ ନାମର ମାହାତ୍ମ୍ୟ ବିଶେଷ ଭାବରେ ବଢ଼ିଯିବାରୁ ବହୁ ଅଖ୍ୟାତ କବି ମଧ୍ୟ ସ୍ୱ ରଚିତ ପଦର ଗୌରବ ବୃଦ୍ଧି ନିମିତ୍ତ ଚଣ୍ଡୀଦାସ ନାମରେ ଭଣିତା କରିଦେଲେ । ତେଣୁ

ପ୍ରକୃତ ଚଣ୍ଡୀଦାସଙ୍କ ପ୍ରାଚୀନ ପଦାବଳୀ ସଂଗ୍ରହ ଏକ ଦୁରୂହ ବ୍ୟାପାର । ତଥାପି ଚଣ୍ଡୀଦାସଙ୍କ ପଦାବଳୀରେ ଶ୍ରୀଗୀତଗୋବିନ୍ଦର ପ୍ରଭାବ ସର୍ବଥା ସ୍ୱୀକାର୍ଯ୍ୟ ।

**ଅନ୍ୟାନ୍ୟ ବଙ୍ଗୀୟ ପଦକର୍ତ୍ତାଗଣ —**

ଚଣ୍ଡୀଦାସଙ୍କ ଠାରୁ ଆରମ୍ଭ କରି ପ୍ରାୟ ତିନିଶତ ବଙ୍ଗୀୟ ମହାଜନ ଶ୍ରୀରାଧାକୃଷ୍ଣ ଲୀଳା ଗର୍ଭିତ ମଧୁର କୋମଳ ପଦାବଳୀ ରଚନା କରି ବଙ୍ଗ ସାହିତ୍ୟ ଭଣ୍ଡାରକୁ ସମୃଦ୍ଧ କରିଥିଲେ । ସେମାନଙ୍କ ମଧ୍ୟରେ ମୁରାରି ଗୁପ୍ତ, ଗୋବିନ୍ଦ ଘୋଷ, ରୂପ ଗୋସ୍ୱାମୀ, ବାସୁଦେବ ଘୋଷ, ରାମାନନ୍ଦ ବସୁ, ଯଦୁନାଥ ଦାସ, ବଂଶୀ ଦାସ ଓ ବଳରାମ ଦାସ ପ୍ରଭୃତିଙ୍କ ନାମ ଉଲ୍ଲେଖଯୋଗ୍ୟ ।

**—ବଙ୍ଗଳାରେ ଶ୍ରୀଗୀତଗୋବିନ୍ଦର ପଦ୍ୟାନୁବାଦ—**

**ଶ୍ରୀ ଗିରିଧର ଦାସଙ୍କ ପଦ୍ୟାନୁବାଦ—**

ବଙ୍ଗଳା ଭାଷାରେ ଶ୍ରୀଗୀତଗୋବିନ୍ଦର ପଦ୍ୟାନୁବାଦ ଗୁଡ଼ିକ ମଧ୍ୟରେ ଗିରିଧର ଦାସଙ୍କ ପଦ୍ୟାନୁବାଦ ପ୍ରାଚୀନତମ । ଏହାର ରଚନା ସମୟ ହେଉଛି ଶକାବ୍ଦ ୧୬୫୮ ବା ୧୭୩୭ ଖ୍ରୀଷ୍ଟାବ୍ଦ । ଯଥା—

"ସମାପ୍ତ କରିଲ ଗଜ ଇଷୁ, ରସ ସୋମେ,
କୃଷ୍ଣପକ୍ଷ ଆଷାଢ଼େର ଦିବସ ପଞ୍ଚମେ" ।

ତତ୍କୃତ ଅନୁବାଦରେ ମୂଳ ଶ୍ରୀଗୀତଗୋବିନ୍ଦର ବିଷୟବସ୍ତୁ ଓ ରାଗ ତାଳ ଆଦି ଅନୁସୃତ ହୋଇଅଛି ।

**ରସମୟ ଦାସ କୃତ ପଦ୍ୟାନୁବାଦ—**

ରସମୟ ଦାସ କୃତ ପଦ୍ୟାନୁବାଦ ଅତ୍ୟନ୍ତ ଲୋକପ୍ରିୟ ଥିବାରୁ ବହୁବାର ମୁଦ୍ରିତ ଓ ପ୍ରକାଶିତ ହୋଇଛି ।

**ଦ୍ୱିଜ ପ୍ରାଣକୃଷ୍ଣ କୃତ 'ଜୟଦେବ ପ୍ରସାଦାବଳୀ' —**

ମୁର୍ଶିଦାବାଦ ନିକଟବର୍ତ୍ତୀ ଚୈତୋଆ ଗ୍ରାମ ନିବାସୀ ଦ୍ୱିଜ ପ୍ରାଣକୃଷ୍ଣ ଶ୍ରୀଗୀତ ଗୋବିନ୍ଦର ଏକ ପଦ୍ୟାନୁବାଦ କରିଥିଲେ । ଏହାର ନାମ ଜୟଦେବ ପ୍ରସାଦାବଳୀ ।

**ବୈଦ୍ୟ କବିଚନ୍ଦ୍ର କୃତ ପଦ୍ୟାନୁବାଦ —**

ବୈଦ୍ୟବିଶାରଦଙ୍କ ପୌତ୍ର, କବି କର୍ଣ୍ଣପୁରଙ୍କ ପୁତ୍ର ବୈଦ୍ୟ କବିଚନ୍ଦ୍ର ତାଙ୍କର ପୃଷ୍ଠପୋଷକ ସେଖ୍ ଫରିଦଙ୍କ ସନ୍ତୋଷ ବିଧାନ ନିମିତ୍ତ ଶ୍ରୀଗୀତଗୋବିନ୍ଦର ପଦ୍ୟାନୁବାଦ କରିଥିଲେ ।

**ଜଗତସିଂହଙ୍କ ପଦ୍ୟାନୁବାଦ —**

ଜଗତସିଂହ ନାମକ କବିଙ୍କ କୃତ ପଦ୍ୟାନୁବାଦର ପୋଥି କୁଚବିହାର ଦରବାର ଦ୍ୱାରା ସଂଗୃହୀତ ପୋଥିଭଣ୍ଡାରରେ ସଂରକ୍ଷିତ । (୨୬)

ପ୍ରାଚୀନ ଓଡ଼ିଆ ଓ ବଙ୍ଗଳା ସାହିତ୍ୟର ତୁଳନାତ୍ମକ ଆଲୋଚନା କଲେ ଦେଖାଯାଏ ଯେ, ଓଡ଼ିଆରେ ଷୋଡ଼ଶ ଶତାବ୍ଦୀର ପ୍ରଥମାର୍ଦ୍ଧରେ ଶ୍ରୀଗୀତଗୋବିନ୍ଦର ପ୍ରଥମ ପଦ୍ୟାନୁବାଦ ହୋଇଥିବା ବେଳେ ବଙ୍ଗଳାରେ ତାର ପ୍ରାୟ ଦୁଇଶତ ବର୍ଷ ପରେ ଏହାର ପଦ୍ୟାନୁବାଦ କରାଯାଇଥିଲା । ଆଉମଧ୍ୟ ବଙ୍ଗଳା ଅନୁବାଦ ଗୁଡ଼ିକ ଅପେକ୍ଷା ଓଡ଼ିଆ ପଦ୍ୟ ଓ ଗଦ୍ୟାନୁବାଦ ଗୁଡ଼ିକର ସଂଖ୍ୟା ଅଧିକ । ଏତଦ୍‌ବ୍ୟତୀତ ଓଡ଼ିଶାର ପ୍ରସିଦ୍ଧ କୃଷ୍ଣକାବ୍ୟ, ଯଥା— ଗୋପକେଳି, ରସକଲ୍ଲୋଳ, ରହସ୍ୟମଞ୍ଜରୀ, ବ୍ରଜବିହାର, ମଥୁରାମଙ୍ଗଳ, ବିଦଗ୍‌ଧଚିନ୍ତାମଣି, କିଶୋରଚନ୍ଦ୍ରାନନ୍ଦଚମ୍ପୂ ତଥା ଅନ୍ୟାନ୍ୟ କାବ୍ୟସମୂହରେ ଶ୍ରୀଗୀତଗୋବିନ୍ଦର ଗଭୀର ପ୍ରଭାବ ଫଳରେ ଯେପରି ବିଭିନ୍ନ ରାଗ, ତାଳ ନିବଦ୍ଧ ସଂଗୀତମୟତ୍ୱ ଓ ଗେୟତ୍ୱ ତଥା ଯମକ, ଅନୁପ୍ରାସାଦି ଅଳଙ୍କାର ବ୍ୟବହାରର ପ୍ରାଚୁର୍ଯ୍ୟ ପରିଲକ୍ଷିତ ହୁଏ ପ୍ରାଚୀନ ବଙ୍ଗଳା ସାହିତ୍ୟରେ ସେପ୍ରକାର ରଚନାଶୈଳୀ ପରିଦୃଷ୍ଟ ହୁଏ ନାହିଁ । ପ୍ରାଚୀନ ବଙ୍ଗଳା ସାହିତ୍ୟର ଶ୍ରୀଗୀତଗୋବିନ୍ଦ ପ୍ରଭାବ ବିହୀନ ଏହି ବିକାଶଧାରା ଏହାର ରଚୟିତା ପ୍ରତି ବଙ୍ଗର ଦାବୀକୁ ସଂପୂର୍ଣ୍ଣରୂପେ ଅପ୍ରମାଣିତ କରେ ।

**— ଆସାମୀ ସାହିତ୍ୟ —**

ଆସାମରେ ଶ୍ରୀ ଶଙ୍କରଦେବ ପ୍ରବର୍ତ୍ତିତ ଶ୍ରୀମଦ୍‌ଭାଗବତାନୁସାରୀ ବୈଷ୍ଣବ ଧର୍ମର ଗଭୀର ପ୍ରଭାବ ଓ ପ୍ରତିପତ୍ତି ଥିବାରୁ ଶ୍ରୀଗୀତଗୋବିନ୍ଦ ବର୍ଣ୍ଣିତ ଶ୍ରୀରାଧା-କୃଷ୍ଣ ପ୍ରେମଲୀଳା ବିଶେଷ ଲୋକପ୍ରିୟତା ଅର୍ଜ୍ଜନ କରିପାରି ନ ଥିଲା । ତଥାପି ଶ୍ରୀଗୀତ-ଗୋବିନ୍ଦ ଦ୍ୱାରା ଅନୁପ୍ରାଣିତ ହୋଇ **ରାମାନନ୍ଦ ଦ୍ୱିଜ** ନାମକ କବି ଆହୋମ ରାଜା ଚନ୍ଦ୍ରଧ୍ୱଜ ସିଂହ (ମୃତ୍ୟୁ ୧୬୭୯ ଖ୍ରୀଷ୍ଟାବ୍ଦ)ଙ୍କ ରାଜତ୍ୱ କାଳରେ ଶ୍ରୀରାଧାକୃଷ୍ଣ ପ୍ରେମଲୀଳା ବର୍ଣ୍ଣନାତ୍ମକ କେତେକ ପଦାବଳୀ ରଚନା କରିଥିଲେ । (୨୭)

ଆହୋମ ରାଜା ରୁଦ୍ରସିଂହ (୧୬୯୭—୧୭୧୪ ଖ୍ରୀଷ୍ଟାବ୍ଦ)ଙ୍କ ସଭାକବି **ରାମନାରାୟଣ କବିରାଜ ସରସ୍ୱତୀ** ଶ୍ରୀଗୀତଗୋବିନ୍ଦର ଏକ ମର୍ମାନୁବାଦ ରଚନା କରିଥିଲେ । ଯଥା—

(୨୬) ବାଙ୍ଗଲା ସାହିତ୍ୟେର ଇତିହାସ, ପ୍ରଥମ ଖଣ୍ଡ, ଅପରାର୍ଦ୍ଧ ।
ଡକ୍ଟର ଶ୍ରୀ ସୁକୁମାର ସେନଙ୍କ ପ୍ରଣୀତ ପୃ ୩୭୩-୩୭୨

(୨୭) History of Assamese Literature by Dr. B. K. Barua p 53

"ହେନ କୃଷ୍ଣ ପଦପଙ୍କଜର ମଧୁକର
ପୃଥିବୀ ପାଳିଲ୍ଲ ରୁଦ୍ରସିଂହ ନରେଶ୍ବର ।

× × ×

ହେନ ନୃପତର ଆଜ୍ଞା ଶିରେହେଗତ କର
କୃଷ୍ଣପଦ ପଙ୍କଜକ ହୃଦୟତ ଧର ॥
ନନ୍ଦଗଞ୍ଜ ଦ୍ଵିଜବର ଶୁନା ସଭାସଦ
ନିବନ୍ଧ କରିବା ଗୀତଗୋବିନ୍ଦର ପଦ ॥" (୨୮)

ଓଡ଼ିଆରେ ଦୀନକୃଷ୍ଣ ଦାସଙ୍କ 'ଅମୃତ ସାଗର ବୋଲି' ପରି ଏହି ଅନୁବାଦରେ ଆସାମରେ ଅତ୍ୟନ୍ତ ଲୋକପ୍ରିୟ ଶ୍ରୀମଦ୍‌ଭାଗବତ ପୁରାଣର କେତେକ ଆଖ୍ୟାୟିକା ଅନ୍ତର୍ଭୁକ୍ତ ହୋଇଅଛି । ଆଜନ୍ମ ଏହା ଶ୍ରୀଗୀତଗୋବିନ୍ଦର ଉତ୍କୃଷ୍ଟ ଆଦିରସ ପ୍ରକାଶରୁ ବହୁ ପରିମାଣରେ ମୁକ୍ତ ।

ଅଳ୍ପଦିନ ପୂର୍ବେ ୫ଟି ଚିତ୍ର ସମ୍ବଳିତ ଖଣ୍ଡିଏ ଗୀତଗୋବିନ୍ଦ ପୋଥି ମିଳିଅଛି । ଏଥିରୁ ଗୋଟିକରେ ରୁଦ୍ରସିଂହଙ୍କ ଦରବାର ଓ ଅନ୍ୟ ଗୁଡ଼ିକରେ ବୃନ୍ଦାବନରେ ଶ୍ରୀରାଧା ଓ ଗୋପୀମାନଙ୍କ ସହିତ ଶ୍ରୀକୃଷ୍ଣଙ୍କ ରାସଲୀଳା ପ୍ରଦର୍ଶିତ ହୋଇଅଛି । (୨୯)

ଧର୍ମଦେବ ଭଟ୍ଟ ନାମକ ଅନ୍ୟ ଜଣେ ଆସାମୀୟ କବି ତାଙ୍କର ପୂର୍ବବର୍ତ୍ତୀ ଅନୁବାଦକ 'ରାମ ସରସ୍ୱତୀ'ଙ୍କ ଶ୍ରୀଗୀତଗୋବିନ୍ଦ ପଦ୍ୟାନୁବାଦ ଓ ଶ୍ରୀ ଶଙ୍କର ଦେବଙ୍କ ଭାଗବତ ଦଶମସ୍କନ୍ଧର ରାସକ୍ରୀଡ଼ା ଅବଲମ୍ବନରେ ଶ୍ରୀଗୀତଗୋବିନ୍ଦର ଏକ ପଦ୍ୟାନୁବାଦ ରଚନା କରିଥିଲେ । ତାହା ଛଡ଼ା ତାଙ୍କ ରଚିତ 'ଧର୍ମୋଦୟ' ନାମକ ନାଟକରେ ଶ୍ରୀଗୀତଗୋବିନ୍ଦର ପ୍ରଭାବ ପରିଲକ୍ଷିତ ହୁଏ । (୩୦)

## — ମଣିପୁରୀ ସାହିତ୍ୟ —

ଭାରତର ଉତ୍ତରପୂର୍ବ ସୀମାନ୍ତରେ ଅବସ୍ଥିତ ମଣିପୁର ରାଜ୍ୟରେ ଶ୍ରୀଚୈତନ୍ୟୋତ୍ତର ଯୁଗରେ ବୈଷ୍ଣବମାନଙ୍କ ପ୍ରଧାନ ଧର୍ମଗ୍ରନ୍ଥ ଭାଗବତ ଓ ଗୋସ୍ୱାମୀ କୃଷ୍ଣ

---

(୨୮) Typical Selections from Assamese Literature Vol, II part IV, 1924, edited by HemaChandra Gosvāmi.

(୨୯) Indian Historical Quarterly, Vol. XXVIII, p. 296.

(୩୦) ଓଡ଼ିଆ ସାହିତ୍ୟରେ ଶ୍ରୀ ଜୟଦେବ,
—ଅଧ୍ୟାପକ ଶ୍ରୀ ନରେନ୍ଦ୍ରନାଥ ପ୍ରଧାନ ପୃ ୨୦୮

ଦାସ କବିରାଜ କୃତ 'ଶ୍ରୀଚୈତନ୍ୟ ଚରିତାମୃତ'ର ବିଶେଷ ପ୍ରସାର ଶ୍ରୀଗୀତଗୋବିନ୍ଦର ଲୋକପ୍ରିୟତା ବୃଦ୍ଧି ପାଇଁ ପଥ ସୁଗମ କରିଥିଲା । ମଣିପୁରର ପରମ ବୈଷ୍ଣବ ଶାସକ **ରାଜର୍ଷି ଭାଗ୍ୟଚନ୍ଦ୍ର** (୧୭୬୪—୧୭୯୮ ଖ୍ରୀଷ୍ଟାବ୍ଦ) ତାଙ୍କର ଇଷ୍ଟଦେବ ଗୋବିନ୍ଦଙ୍କ ପ୍ରୀତିବିଧାନ ନିମିତ୍ତ ନିଜ ରାଜ୍ୟ, ନିଜର ପ୍ରିୟତମା କନ୍ୟା ଓ ଶ୍ରୀଗୀତଗୋବିନ୍ଦ ଗାନ ଉତ୍ସର୍ଗ କରିଥିଲେ । ସମଗ୍ର ଜୀବନ ଶ୍ରୀକୃଷ୍ଣ ସେବାନିରତା ତାଙ୍କର ଅବିବାହିତା କନ୍ୟା ମଣିପୁରର ମୀରାବାଈ ନାମରେ ପ୍ରଖ୍ୟାତ । ଶ୍ରୀ ଭାଗ୍ୟଚନ୍ଦ୍ର ଶ୍ରୀଗୀତଗୋବିନ୍ଦ ଗାନ ସମ୍ପର୍କରେ **ଗୋବିନ୍ଦ ସଙ୍ଗୀତ ଲୀଳାବିଳାସ** ନାମକ ଗ୍ରନ୍ଥ ରଚନା କରିଥିଲେ । ମଣିପୁରରେ ତାଙ୍କ ଦ୍ୱାରା ପ୍ରଚଳିତ ଶ୍ରୀଗୀତଗୋବିନ୍ଦର ଅଷ୍ଟପଦୀ ଗାନ 'ନଟ କୀର୍ତ୍ତନ' ନାମରେ ଅଭିହିତ ହୁଏ ।

ମଣିପୁରର ମନ୍ଦିରମାନଙ୍କରେ ବିଭିନ୍ନ ନୃତ୍ୟ ସହ ଅଭିନୀତ **ବସନ୍ତ ରାସ ଲୀଳା** ବିଭିନ୍ନ ଲୋକପ୍ରିୟ ବୈଷ୍ଣବ ପଦାବଳୀ ଓ ଶ୍ରୀଗୀତଗୋବିନ୍ଦର ଦଶଟି ଅଷ୍ଟପଦୀର ସମାବେଶରେ ରଚିତ । ସେଗୁଡ଼ିକ ହେଲା, 'ଲଳିତଲବଙ୍ଗଲତା', ହରିରିହ ମୁଗ୍ଧବଧୂନିକରେ, କଂସାରିରପିସଂସାର, ହରିହରି ହତାଦରତୟାଗତା ସା କୁପିତେବ, ମାମିୟଂ ଚଳିତାବିଲୋକ୍ୟ, ରାସେହରିମିହ ବିହିତ ବିଳାସମ୍, ଯମୁନାତୀରବାନୀରନିକୁଞ୍ଜେ ହରିହରି ଯାହିମାଧବ ଯାହି କେଶବ, ମା ବଦ କୈତବବାଦମ୍, ବଦସିଯଦିକିଞ୍ଚିଦପି ଦନ୍ତରୁଚି କୌମୁଦୀ, ସ୍ମରଗରଳଖଣ୍ଡନଂ ମମଶିରସି ମଣ୍ଡନଂ' । ଅଭିନୟ ସହ ଏହି ଶେଷ ଗୀତର ଗାନ ସମୟରେ ଦର୍ଶକମଣ୍ଡଳ ଭାବବିହ୍ୱଳ ହୋଇ ଅଶ୍ରୁପୂର୍ଣ୍ଣ ଲୋଚନରେ ସାଷ୍ଟାଙ୍ଗ ପ୍ରଣିପାତ କରନ୍ତି ।

ପାଞ୍ଚଦିନ ବ୍ୟାପୀ ଦୋଳ ଉତ୍ସବ ସମୟରେ ମଣିପୁର ରାଜଧାନୀ ଇମ୍ଫାଲ ସ୍ଥିତ ଗୋବିନ୍ଦଜୀ ଓ ବିଜୟ ଗୋବିନ୍ଦଜୀଙ୍କ ମନ୍ଦିରରେ ବିଭିନ୍ନ ଦୋଳ ଗୀତ ସହ ଶ୍ରୀଗୀତଗୋବିନ୍ଦର 'ଲଳିତଲବଙ୍ଗଲତା' ଓ 'ହରିରିହମୁଗ୍ଧବଧୂନିକରେ' ଅଷ୍ଟପଦୀ ଦ୍ୱୟ ଗୀତ ଓ ଅଭିନୀତ ହୋଇଥାଏ ।

ଚୈତ୍ର ପୂର୍ଣ୍ଣିମା ରାତିରେ ମଣିପୁର ରାଜବାଟୀରେ ଅଭିନୀତ ବସନ୍ତ ରାସଲୀଳାରେ ବୈଷ୍ଣବ ପଦାବଳୀ ସହ ଦୁଇଟି ଅଷ୍ଟପଦୀ ଶିଖୟତି କମପି ଚୁମ୍ବତି କମପି, ଓ କଂସାରିରପି ସଂସାର ସହ ଭାଗବତର ରାସପଞ୍ଚାଧ୍ୟାୟୀର କେତେକ ଶ୍ଳୋକ ଆବୃତ୍ତ ଓ ଅଭିନୀତ ହୋଇଥାଏ ।

**ମଣିପୁରୀ ପାଲାସଂକୀର୍ତ୍ତ**'ନ ସମୟରେ ବୃନ୍ଦାବନରେ ଶ୍ରୀରାଧାକୃଷ୍ଣ ପ୍ରେମଲୀଳା ଅଭିନୟ ପ୍ରଦର୍ଶନ ସହ ଶ୍ରୀଗୀତଗୋବିନ୍ଦର "ଧୀରେ ସମୀରେ ଯମୁନା ତୀରେ" ଓ 'ସା ବିରହେ ତବ ଦୀନା' ଏହି ଅଷ୍ଟପଦୀ ଦ୍ୱୟ ଗୀତ ହୋଇଥାଏ ।

ବହୁ ଲୋକ ସମାଗମ ଓ ବିପୁଳ କୋଳାହଳ ମଧ୍ୟରେ ଅନୁଷ୍ଠିତ ରଥଯାତ୍ରା ଶ୍ରୀଗୀତଗୋବିନ୍ଦର ପ୍ରଥମ ଗୀତ ଦଶାବତାର ସ୍ତୁତି ଗାନରେ ଆରମ୍ଭ ହୋଇ ଦ୍ୱିତୀୟ ଗୀତର "ମଙ୍ଗଳମୁଜ୍ଜ୍ୱଳଗୀତଂ ଜୟ ଜୟ ଦେବ ହରେ" ଗାନରେ ସମାପ୍ତ ହୁଏ । ଏହି ଗୀତଦ୍ୱୟର ବିଶେଷ ଲୋକପ୍ରିୟତା ଯୋଗୁଁ ଏହାକୁ ଜୟଦେବ ଯାତ୍ରା ବୋଲି କୁହାଯାଏ । ରଥଯାତ୍ରା ଗୀତର ଶେଷଭଣିତା ହେଉଛି—

"କାନ୍ଦେ ଭାଗ୍ୟଚନ୍ଦ୍ର ଦାସ ଚରଣ ଶରଣ ହେ"

ମଣିପୁରର ମହାରାଜ ଚନ୍ଦ୍ରକୀର୍ତ୍ତିଙ୍କ ରାଜତ୍ୱ କାଳରେ (୧୮୫୧ ଖ୍ରୀଷ୍ଟାବ୍ଦ) ପ୍ରତି ଏକାଦଶୀ ଦିନ ରାଜପ୍ରାସାଦରେ ଅଷ୍ଟପଦୀ ଗାନ ପ୍ରଚଳିତ ହୋଇଥିଲା । ଉଚ୍ଚପ୍ରଶଂସିତ ମଣିପୁରୀ ନୃତ୍ୟର ବିକାଶ ସାଧନ-ଧାରାରେ ଶ୍ରୀଗୀତଗୋବିନ୍ଦର ପ୍ରଭାବ ନିହିତ ।

ଦୁର୍ଗମ ପର୍ବତ ବେଷ୍ଟିତ, ଗଭୀର ଅରଣ୍ୟାନୀ ଆଚ୍ଛାଦିତ, ପାର୍ବତ୍ୟ ଜାତି ଅଧ୍ୟୁଷିତ ସୁଦୂର ମଣିପୁର ରାଜ୍ୟରେ ଶ୍ରୀଗୀତଗୋବିନ୍ଦର ଏପରି ବ୍ୟାପକ ପ୍ରଭାବ ଓ ଲୋକପ୍ରିୟତା ବିଚାର କଲେ ସ୍ୱତଃ ହୃଦୟରେ ଦୃଢ଼ ଧାରଣା ଜାତହୁଏ ଯେ, ଅମର କବି ଶ୍ରୀ ଜୟଦେବଙ୍କ ଅମୃତନିସ୍ୟନ୍ଦୀ ଅଷ୍ଟପଦୀ ସମୂହ ଆକୁମାରୀ ହିମାଳୟ ଆବ୍ରହ୍ମଦେଶ ପଞ୍ଜାବ ପର୍ଯ୍ୟନ୍ତ ବିସ୍ତୃତ ବିଶାଳ ଭାରତବର୍ଷକୁ ଏକ ଶାଶ୍ୱତ ପ୍ରେମ ବନ୍ଧନରେ ଆବଦ୍ଧ କରିଥିଲା । (୩୧)

## —ମରହଟ୍ଟି ସାହିତ୍ୟ—

ବିଶାଳ ମହାରାଷ୍ଟ୍ର ରାଜ୍ୟରେ ଶ୍ରୀକୃଷ୍ଣ, ରୁକ୍ମିଣୀରମଣ, ରୁକ୍ମିଣୀଧବ ବା ରୁକ୍ମିଣୀପତି ଭାବରେ ବିଶେଷ ଭାବରେ ପୂଜିତ ହେଉଥିବାରୁ ସେଠା ଧର୍ମମତରେ ରାଧା ଉପାସନାର ସ୍ଥାନ ନ ଥିଲା । ଲୋକକଥାରେ ରାହି (ରାଧା)ଙ୍କ ବର୍ଣ୍ଣନା ମିଳିଲେ ମଧ୍ୟ ତାହାଦ୍ୱାରା ସାଧାରଣଙ୍କ ଧର୍ମମାର୍ଗ ପ୍ରଭାବିତ ହୋଇ ନ ଥିଲା । (୩୨) ମହାରାଷ୍ଟ୍ରରେ ଶ୍ରୀରାଧାକୃଷ୍ଣ ଉପାସନାର ପ୍ରସାର ନ ଥିଲେ ମଧ୍ୟ ଏହାର ଜଣେ ପ୍ରଧାନ ସମର୍ଥକ ଭକ୍ତକବି ଶ୍ରୀ ଜୟଦେବଙ୍କ ମହାତ୍ମ୍ୟ ସୁପ୍ରଚାରିତ ଥିଲା । ମହାରାଷ୍ଟ୍ର ଅଞ୍ଚଳର

---

(୩୧) କେନ୍ଦ୍ର ସଂଗୀତ ନାଟକ ଏକାଡେମୀ ଓ ଲଳିତ କଳା ଏକାଡେମୀ ଦ୍ୱାରା ୧୯୭୭ ମସିହା ମାର୍ଚ୍ଚ ୧୮-୨୦ ତାରିଖରେ ଆୟୋଜିତ ଶ୍ରୀଗୀତଗୋବିନ୍ଦ ଆଲୋଚନା ସଭାରେ (Geet Govinda Celebrations) ପଠିତ ପ୍ରବନ୍ଧରୁ ଗୃହୀତ ।

(୩୨) 'Vaisnavism, Saivism and minor religious systems', by Sri R. G. Bhandarkar, p 89

ଗଦାଧର ଦ୍ୱିବେଦୀ ଓ ସନ୍ଥକବି ମହୀପତି ସ୍ୱ ସ୍ୱ ଗ୍ରନ୍ଥରେ ଶ୍ରୀ ଜୟଦେବଙ୍କ ମାହାତ୍ମ୍ୟ କୀର୍ତ୍ତନ କରିଥିଲେ ।

**ସଂପ୍ରଦାୟ ପ୍ରଦୀପ—** ପଶ୍ଚିମ ଭାରତରେ ଶ୍ରୀରାଧା ଉପାସନାର ପ୍ରଧାନ ପ୍ରଚାରକ ବଲ୍ଲଭାଚାର୍ଯ୍ୟଙ୍କ ପୁତ୍ର ବିଠ୍ଠଲନାଥଙ୍କ ଶିଷ୍ୟ ଗଦାଧର ଦ୍ୱିବେଦୀଙ୍କ ଦ୍ୱାରା ୧୫୫୩ ଖ୍ରୀଷ୍ଟାବ୍ଦରେ ସଂକଳିତ ସଂପ୍ରଦାୟ ପ୍ରଦୀପରେ ଶ୍ରୀ ଜୟଦେବଙ୍କ ଚରିତ ବର୍ଣ୍ଣିତ ହୋଇଛି । ଏଥିରୁ ଜଣାଯାଏ ଯେ, ଦାକ୍ଷିଣାତ୍ୟରେ ଅତ୍ୟନ୍ତ ଲୋକପ୍ରିୟ 'ଶ୍ରୀକୃଷ୍ଣ କର୍ଣ୍ଣାମୃତମ୍'ର ପ୍ରଣେତା ଶ୍ରୀ ବିଲ୍ୱମଙ୍ଗଳ ସ୍ୱାମୀ, ଶ୍ରୀ ଜୟଦେବ ରୂପରେ ଜନ୍ମଗ୍ରହଣ କରିଥିଲେ । (୩୬)

**ଭକ୍ତବିଜୟ—** ଗୋସ୍ୱାମୀ ଶ୍ରୀ ନାଭାଜୀ କୃତ ବିଶେଷ ଲୋକପ୍ରିୟ ହିନ୍ଦୀ 'ଭକ୍ତମାଳ' ଗ୍ରନ୍ଥ ପାଠରେ ଅନୁପ୍ରାଣିତ ହୋଇ ମହୀପତି ନାମକ ମହାରାଷ୍ଟ୍ରର ଜଣେ ପ୍ରସିଦ୍ଧ ସନ୍ଥକବି ୧୬୮୪ ଶକାବ୍ଦ, ଚିତ୍ରଭାନୁ ସମ୍ବତ୍ସରରେ ବା ୧୭୬୨ରେ 'ଭକ୍ତ-ବିଜୟ' ନାମକ ଏକ ଉତ୍କୃଷ୍ଟ ଗ୍ରନ୍ଥ ରଚନା କରିଥିଲେ । ଏଥିରେ ବ୍ୟାସାବତାର ରୂପେ ଗୃହୀତ ଶ୍ରୀ ଜୟଦେବଙ୍କ ଚରିତ ଗ୍ରନ୍ଥାଦ୍ୟରେ ଅତି ଭକ୍ତିସହକାରେ ବର୍ଣ୍ଣିତ ହୋଇଅଛି । ମହାରାଷ୍ଟ୍ରରେ ଏହି ଗ୍ରନ୍ଥର ବିଶେଷ ପ୍ରସାର ଫଳରେ ଶ୍ରୀ ଜୟଦେବଙ୍କ ମାହାତ୍ମ୍ୟ ଲୋକସାଧାରଣଙ୍କ ମଧ୍ୟରେ ପ୍ରଚାରିତ ହୋଇଥିଲେ ମଧ୍ୟ ତାଙ୍କର ଅମରକୃତି ଶ୍ରୀଗୀତଗୋବିନ୍ଦ ମରହଟ୍ଟି ସାହିତ୍ୟକୁ କିପରି ଭାବରେ ପ୍ରଭାବିତ କରିଥିଲା, ସେ ସମ୍ପର୍କରେ କୌଣସି ତଥ୍ୟ ମିଳେ ନାହିଁ ।

## —ଆନ୍ଧ୍ରଦେଶର ସାହିତ୍ୟ ଓ ସଂଗୀତ—

ଉତ୍କଳରେ ଗଙ୍ଗସାମ୍ରାଜ୍ୟର ପ୍ରତିଷ୍ଠା ସମୟରୁ ମୁସଲମାନ ଅଧିକାର (୧୫୬୮ ଖ୍ରୀଷ୍ଟାବ୍ଦ) ପର୍ଯ୍ୟନ୍ତ ଗୋଦାବରୀ ନଦୀକୁ ସ୍ପର୍ଶ କରୁଥିବା ଉପକୂଳବର୍ତ୍ତୀ ଦକ୍ଷିଣାଞ୍ଚଳ ଓଡ଼ିଶା ସାମ୍ରାଜ୍ୟର ଅନ୍ତର୍ଭୁକ୍ତ ଥିବାରୁ ଓଡ଼ିଶା ଓ ଆନ୍ଧ୍ର ମଧ୍ୟରେ ଘନିଷ୍ଠ ସାଂସ୍କୃତିକ ସଂପର୍କ ପ୍ରତିଷ୍ଠିତ ହୋଇପାରିଥିଲା । ପ୍ରବଳ ପରାକ୍ରାନ୍ତ ଗଙ୍ଗସମ୍ରାଟ ନରସିଂହଦେବ କାକତୀୟମାନଙ୍କୁ ପରାସ୍ତ କରି କୃଷ୍ଣାନଦୀ ପର୍ଯ୍ୟନ୍ତ ରାଜ୍ୟର ଦକ୍ଷିଣସୀମା ବଢ଼ାଇ ଦେଇଥିଲେ । ସେହି ସମୟରେ ସେ କୃଷ୍ଣାନଦୀ ତୀରବର୍ତ୍ତୀ ଶ୍ରୀକାକୁଳମ୍‌ର ଆନ୍ଧ୍ରବିଷ୍ଣୁ ମନ୍ଦିରର ଜୀର୍ଣ୍ଣସଂସ୍କାର ସାଧନ କରିଥିଲେ । ତାଙ୍କର ଓ ତାଙ୍କ ପୁତ୍ର ପ୍ରଥମ ଭାନୁଦେବଙ୍କ ରାଜତ୍ୱ କାଳରେ (୧୨୬୪—୧୨୭୮) ମାଧ୍ୱାଚାର୍ଯ୍ୟଙ୍କ ପ୍ରଧାନ ଶିଷ୍ୟ **ଶ୍ରୀ ନରହରି ତୀର୍ଥ** ଉତ୍କଳର ଶାସନ କ୍ଷେତ୍ରରେ ଏକ ବିଶିଷ୍ଟ ସ୍ଥାନ ଅଧି-

---

(୩୬) Contribution of Kerala to Sanskrit literature, p 43.

କାର କରଥିଲେ । ସେ ଶ୍ରୀକୃଷ୍ଣ ଉପାସନାର ପ୍ରଧାନ ସମର୍ଥକ ଥିବାରୁ ଶ୍ରୀକ୍ଷେତ୍ରସ୍ଥ ଜଗନ୍ନାଥ ମନ୍ଦିରରେ ନିତ୍ୟ ଆବୃତ୍ତ ଶ୍ରୀଗୀତଗୋବିନ୍ଦ ଶ୍ରୀକାକୂଳସ୍ଥ ଆନ୍ଧ୍ର ବିଷ୍ଣୁ ମନ୍ଦିରରେ ଗାନ କରିବାର ବ୍ୟବସ୍ଥା କରିଥିଲେ । ଶ୍ରୀକାକୂଳରେ ତାଙ୍କର ପ୍ରାୟ ଦଶବର୍ଷ କାଳ ଅବସ୍ଥାନ ସମୟରେ ଶ୍ରୀଗୀତଗୋବିନ୍ଦ ଆନ୍ଧ୍ରପ୍ରଦେଶରେ ପ୍ରସାରଲାଭ କରିଥିଲା । ଶ୍ରୀକାକୂଳବାସୀ ତାଙ୍କର ଶିଷ୍ୟ ଗୋପାଳକୃଷ୍ଣ ଭାରତୀ, ଶ୍ରୀଗୀତଗୋବିନ୍ଦ ଅନୁକରଣରେ ଭାଗବତକୁ ୧୦୮ଟି ନୃତ୍ୟୋପଯୋଗୀ ସଙ୍ଗୀତ ଆକାରରେ ରଚନା କରିଥିଲେ । ତାଙ୍କ ଦ୍ୱାରା ପ୍ରଚଳିତ ନୃତ୍ୟର ନାମ ଥିଲା **ଗୋପାଳକୃଷ୍ଣବୃତ୍ତି** ।

ଆନ୍ଧ୍ରଦେଶରେ ପରବର୍ତ୍ତୀ କାଳରେ ନୃତ୍ୟ ଓ ସଂଗୀତ ଚର୍ଚ୍ଚା ପାଇଁ ବିଶେଷ ପ୍ରସିଦ୍ଧିଲାଭ କରିଥିବା **କୁଚପୁଡ଼ିଗ୍ରାମ** ଶ୍ରୀକାକୂଳମ୍‌ଠାରୁ ୭ ମାଇଲ ଦୂରରେ ଅବସ୍ଥିତ । ସପ୍ତଦଶ ଶତାବ୍ଦୀର ଅର୍ଦ୍ଧଭାଗରେ ଆବିର୍ଭୂତ ଓ ୧୭୪୫ ଖ୍ରୀଷ୍ଟାବ୍ଦରେ ନାରାୟଣ ପ୍ରାପ୍ତ **ଯତୀନ୍ଦ୍ର ନାରାୟଣ ତୀର୍ଥ** ଶ୍ରୀକ୍ଷେତ୍ର ଅବସ୍ଥାନ କାଳରେ ଶ୍ରୀଗୀତ-ଗୋବିନ୍ଦ ଦ୍ୱାରା ବିଶେଷ ଅନୁପ୍ରାଣିତ ହୋଇ ଏହା ଅନୁକରଣରେ ସଂସ୍କୃତରେ ଦ୍ୱାଦଶ ତରଙ୍ଗ ବିଶିଷ୍ଟ 'ଶ୍ରୀକୃଷ୍ଣ ଲୀଳା ତରଂଗିଣୀ' ନାମକ ଏକ ଉପାଦେୟ ଗୀତ-କାବ୍ୟ ରଚନା କରିଥିଲେ । ଏହାର ପ୍ରଥମ ତରଙ୍ଗରେ ସେ ନିଖିଳଭୁବନନାଥ ଶ୍ରୀଜଗନ୍ନାଥଙ୍କ ସ୍ତୁତିଗାନ କରିଛନ୍ତି । ତାଙ୍କର ପ୍ରଧାନ ଶିଷ୍ୟ ସାହିତ୍ୟ-ସଙ୍ଗୀତବିତ୍ ସିଦ୍ଧେନ୍ଦ୍ରଯୋଗୀ 'କୁଚପୁଡ଼ି' ଗ୍ରାମକୁ ନିଜର କର୍ମକେନ୍ଦ୍ରରେ ପରିଣତ କରିଥିଲେ । ଗୁରୁଙ୍କ ଆଦର୍ଶ ଅନୁସରଣ କରି ସେ ତେଲୁଗୁ ଭାଷାରେ ଶ୍ରୀଗୀତଗୋବିନ୍ଦର ଅନୁରୂପ **ଭାମା-କଲାପମ୍** ନାମକ ଗୀତିକାବ୍ୟ ରଚନା କରିଥିଲେ । ଶ୍ରୀଗୀତଗୋବିନ୍ଦରେ ଶ୍ରୀରାଧା ନାୟିକା କିନ୍ତୁ ଏଥିରେ ଶ୍ରୀକୃଷ୍ଣ ମହିଷୀ ଭାମା ବା ସତ୍ୟଭାମା ନାୟିକା । ସେ କୁଚପୁଡ଼ିଠାରେ ଶ୍ରୀଗୀତଗୋବିନ୍ଦର ଦଶାବତାର ନୃତ୍ୟକୁ ସଂଗଠିତ କରିଥିଲେ । କ୍ରମଶଃ ଆନ୍ଧ୍ରର ବହୁ ଦେବମନ୍ଦିରରେ କୁଚପୁଡ଼ିର **ଦଶାବତାର ନୃତ୍ୟ** ପ୍ରଚଳିତ ହୋଇଥିଲା ।

ପେଡ଼ ପୁଲିବାରୁ ରଙ୍ଗ ଦାସ ନାମକ ଜନୈକ ଆନ୍ଧ୍ର କବି ଶ୍ରୀଦଶାବତାର ନୃତ୍ୟ ଅବଲମ୍ବନରେ ତେଲୁଗୁ ବା ତେଲେଙ୍ଗା ଭାଷାରେ 'ଦଶାବତାର ଶବ୍ଦମ୍' ନାମକ ନାଟ୍ୟ ପ୍ରଚଳନ କରିଥିଲା । ଦାକ୍ଷିଣାତ୍ୟରେ ଜୟଦେବ ନାମରେ ବିଖ୍ୟାତ କ୍ଷେତ୍ରଜ୍ଞ ସିଦ୍ଧେନ୍ଦ୍ର ଯୋଗୀଙ୍କ ପ୍ରଣୀତ କୁଚୁପୁଡ଼ି ନାଟକ ସମୂହ, ତାଳପକ୍କମ୍ ଅନାମା-ଚାର୍ଯ୍ୟଙ୍କ କୀର୍ତ୍ତନ ଓ ପଦାବଳୀ, ସୁବ୍ରହ୍ମଣ୍ୟ କବିଙ୍କ ଅଧ୍ୟାତ୍ମରାମାୟଣ କୀର୍ତ୍ତନାବଳୀ ପ୍ରସିଦ୍ଧ ସଙ୍ଗୀତଜ୍ଞ ତ୍ୟାଗରାଜ କୃତ 'ନୌକାଚରିତମ୍' ଓ 'ପ୍ରହ୍ଲାଦ ଭକ୍ତିବିଜୟମ୍' ନାମକ ଗୀତିନାଟ୍ୟ ଓ ତେଲୁଗୁ କୀର୍ତ୍ତନାବଳୀରେ ଶ୍ରୀଗୀତଗୋବିନ୍ଦର ପ୍ରଭାବ ପରିଲକ୍ଷିତ ହୁଏ ।

ଶ୍ରୀକ୍ଷେତ୍ର ସହିତ ସଂପୃକ୍ତ ଯତିବର ଶ୍ରୀ ନରହରି ତୀର୍ଥ ଓ ଯତୀନ୍ଦ୍ର ନାରାୟଣ ତୀର୍ଥ ଶ୍ରୀନୀଳାଚଳକନ୍ଦର ନିର୍ଗତ ଶ୍ରୀଗୀତଗୋବିନ୍ଦର ପ୍ରେମପୀୟୂଷପ୍ରବାହ ଆନ୍ଧ୍ର

ଦେଶରେ ବୃଦ୍ଧି ହୋଇ ଥିବାରୁ ଉଭୟ ରାଜ୍ୟର ସାଂସ୍କୃତିକ ଇତିହାସରେ ଚିରସ୍ମରଣୀୟ । (୩୩)

## —ତାମିଲନାଡ଼ୁର ସାହିତ୍ୟ—

ଭଗବାନ ଶ୍ରୀ ଶଙ୍କରାଚାର୍ଯ୍ୟଙ୍କ ଦ୍ୱାରା ଶ୍ରୀକ୍ଷେତ୍ରରେ ପ୍ରତିଷ୍ଠିତ ଗୋବର୍ଦ୍ଧନ ମଠ ସହିତ ସଂପୃକ୍ତ କାଞ୍ଚୀ କାମକୋଠୀ ପୀଠର ଜଗଦ୍‌ଗୁରୁ ଶଙ୍କରାଚାର୍ଯ୍ୟମାନଙ୍କ ଉଦ୍ୟମରେ ଖ୍ରୀଷ୍ଟୀୟ ସପ୍ତଦଶ ଓ ଅଷ୍ଟାଦଶ ଶତାବ୍ଦୀରେ ଶ୍ରୀଗୀତଗୋବିନ୍ଦ ତାମିଲନାଡ଼ୁରେ ବିଶେଷ ଲୋକପ୍ରିୟତା ଅର୍ଜ୍ଜନ କରିପାରିଥିଲା । ଏଯୁଗରେ ଆବିର୍ଭୂତ ମାରିମୁତ୍ତୁ ପିଲାଇ, ଅରୁଣାଚଳ କବି, କବିକୁଞ୍ଜର ଭାରତୀ, ଗୋପାଳକୃଷ୍ଣ ଭାରତୀଙ୍କ ଦ୍ୱାରା ରଚିତ ତାମିଲ କୀର୍ତ୍ତନ ସମୂହ ଏବଂ ମହାରାଜ ସ୍ୱାତି ତିରୁନାଲଙ୍କ ରଚନାବଳୀରେ ଶ୍ରୀଗୀତଗୋବିନ୍ଦର ପ୍ରଭାବ ମୁଦ୍ରିତ ହୋଇଥିବାର ଦେଖାଯାଏ । (୩୪)

## — କର୍ଣ୍ଣାଟକୀ ସାହିତ୍ୟ —

ଉତ୍କଳାଧିପ ପ୍ରସିଦ୍ଧ ଗଙ୍ଗସମ୍ରାଟ ନରସିଂହଦେବ ଓ ପ୍ରଥମ ଭାନୁଙ୍କ ସଚିବତ୍ୱ ଲାଭ କରିଥିବା ପଣ୍ଡିତବର ଶ୍ରୀ ନରହରି ତୀର୍ଥ ଆନ୍ଧ୍ର ପରି କର୍ଣ୍ଣାଟକରେ ମଧ୍ୟ ଶ୍ରୀଗୀତଗୋବିନ୍ଦ ଗାନ ପ୍ରବର୍ତ୍ତନ କରିଥିଲେ । ତାଙ୍କ ପରବର୍ତ୍ତୀ ଶ୍ରୀପାଦ ରାୟ, ଶ୍ରୀ ପୁରୁଷୋତ୍ତମ ଦାସ, ଶ୍ରୀ କନକ ଦାସ ପ୍ରମୁଖ ସନ୍ଥ କବିମାନେ ନିଜ ନିଜ ରଚନାବଳୀ ଦ୍ୱାରା କର୍ଣ୍ଣାଟକରେ ଶ୍ରୀଗୀତଗୋବିନ୍ଦର ଲୋକପ୍ରିୟତା ବୃଦ୍ଧିରେ ସାହାଯ୍ୟ କରିଥିଲେ । କାନାଡ଼ୀ ଭାଷାରେ ରଚିତ ଦେବର ନାମ (ଦେବସ୍ଥଳୀମାନଙ୍କରେ ଆବୃତ୍ତ) ସଙ୍ଗୀତ ସମୂହରେ ଶ୍ରୀଗୀତଗୋବିନ୍ଦର ପ୍ରଭାବ ପରିଲକ୍ଷିତ ହୁଏ ।

## —କେରଳର ସାହିତ୍ୟ ଓ ସଙ୍ଗୀତ—

ଦକ୍ଷିଣ ଭାରତରେ ରାଜ୍ୟଗୁଡ଼ିକ ମଧ୍ୟରେ ଭାରତର ସୁଦୂର ଦକ୍ଷିଣ ସୀମାନ୍ତବର୍ତ୍ତୀ କେରଳରେ ଶ୍ରୀଗୀତଗୋବିନ୍ଦର ଆଦର ଓ ପ୍ରସାର ସର୍ବାଧିକ । କଥିତ

---

(୩୩) କ) ଶ୍ରୀ ନାରାୟଣ ତୀର୍ଥ ଯତୀନ୍ଦ୍ର ବିରଚିତ 'ଶ୍ରୀକୃଷ୍ଣ ଲୀଳା ତରଙ୍ଗିଣୀ' ପେରି ନରସିଂହ ଶାସ୍ତ୍ରୀଙ୍କ ଦ୍ୱାରା ସଂପାଦିତ ଓ ୧୯୨୯ରେ ପ୍ରକାଶିତ ।

ଖ) ୧୯୬୭ରେ କେନ୍ଦ୍ର ସଙ୍ଗୀତ ଏକାଡେମୀର ଆଲୋଚନା ସଭାରେ ପଠିତ ନାଟ୍ୟାଚାର୍ଯ୍ୟ କନକ ଲିଙ୍ଗେଶ୍ୱର ରାଓଙ୍କ ପ୍ରବନ୍ଧ ।

(୩୪) ୧୯୬୭ ମସିହାରେ କେନ୍ଦ୍ର ସଙ୍ଗୀତନାଟକ ଏକାଡେମୀ ଦ୍ୱାରା ଅନୁଷ୍ଠିତ ଆଲୋଚନା ସଭାରେ ପଠିତ ସଙ୍ଗୀତ ଅଧ୍ୟାପକ ଏନ୍. ଏସ୍ ରାମଚନ୍ଦ୍ରନଙ୍କ ପ୍ରବନ୍ଧ ।

ଅଛି । ସପ୍ତଦଶ ଶତାବ୍ଦୀରେ ଆବିର୍ଭୂତ କେରଳର ପ୍ରସିଦ୍ଧ ରାଜା ରବିବର୍ମା ନିଜ ରାଜ୍ୟରେ ଶ୍ରୀଗୀତଗୋବିନ୍ଦ ଗାନ ପ୍ରଚଳନ କରିଥିଲେ । କେରଳ ଅନ୍ତର୍ଗତ ବେନାଡ଼ର ରାଜବଂଶ ଓ କୋଝିକୋଡ଼ ରାଜ୍ୟର ଜାମୋରିନ୍ ଉପାଧିଧାରୀ ରାଜାମାନେ ଦେବାଳୟ ମାନଙ୍କରେ ଦେବାର୍ଚ୍ଚନ ସମୟରେ ଶ୍ରୀଗୀତଗୋବିନ୍ଦ ଅଷ୍ଟପଦୀ ଗାନର ବ୍ୟବସ୍ଥା କରିଥିଲେ । ଅଷ୍ଟପଦୀ ଗୁଡ଼ିକର ଲୋକପ୍ରିୟତା ବୃଦ୍ଧି ଫଳରେ ପରବର୍ତ୍ତୀ କାଳରେ କେରଳର ସାହିତ୍ୟ ଓ ସଂଗୀତ ବିଶେଷ ଭାବରେ ପ୍ରଭାବିତ ହୋଇଥିଲା । କୋଝିକୋଡ଼ର ରାଜା **ମାନବେଦନ୍** ୧୬୫୨ ଖ୍ରୀଷ୍ଟାବ୍ଦରେ ଶ୍ରୀଗୀତଗୋବିନ୍ଦ ଆଦର୍ଶରେ ଆଠ ଅଧ୍ୟାୟ ବିଶିଷ୍ଟ **କୃଷ୍ଣଗୀତି** ବା **କୃଷ୍ଣଆଟ୍ଟମ୍** ରଚନା କରିଥିଲେ । (୩୬) ଏହା ଆମ ଓଡ଼ିଆ କୃଷ୍ଣଲୀଳା ପରି ଅଭିନୟ ଉଦ୍ଦେଶ୍ୟରେ ରଚିତ ହୋଇଥିଲା । ଏଥିରେ ମାଲୟାଳ ଗୀତ ଓ ଆଳାପର ମଝିରେ ମଝିରେ ଅଷ୍ଟପଦୀ ଅନୁରୂପ ସଂସ୍କୃତ ପଦାବଳୀ ରହିଛି । ଏହି କୃଷ୍ଣଆଟ୍ଟମ୍(ନାଟ୍ଟମ୍) କେରଳରେ ବିଶେଷ- ଲୋକପ୍ରିୟତା ଅର୍ଜ୍ଜନ କରିଥିଲା ଏବଂ ଅଦ୍ୟାପି ବିଭିନ୍ନ ଦେବସ୍ଥାନ ବିଶେଷତଃ ଗୁରୁବାୟୂରସ୍ଥ ମନ୍ଦିରମାନଙ୍କରେ ଓ ବିଭିନ୍ନ ରାଜପ୍ରାସାଦରେ ଅଭିନୀତ ହେଉଅଛି ।

ସପ୍ତଦଶ ଶତାବ୍ଦୀରେ ଆବିର୍ଭୂତ କୋଟ୍ଟରକର ଅଞ୍ଚଳର ସାମନ୍ତରାଜା ବୀର କେରଳବର୍ମା କେରଳର ଭାରତ ପ୍ରସିଦ୍ଧ **କଥକାଳୀ** ନୃତ୍ୟର ପ୍ରବର୍ତ୍ତକ ଥିଲେ । ତତ୍ପ୍ରଣୀତ ରାମାନାଟ୍ଟମ୍ (ଚେନ୍ନାଇ)ରେ ଅଷ୍ଟପଦୀ ଅନୁରୂପ ପଦମାନ ଦର୍ଶନୀୟ । କେରଳର ପ୍ରସିଦ୍ଧ କଥକାଳୀ ନୃତ୍ୟ ଗ୍ରନ୍ଥ ଯଥା କାର୍ତ୍ତିକ ତିରୁନଲ୍ କୃତ 'କଲ୍ୟାଣ ସୌଗନ୍ଧିକମ୍' ଅଶ୍ୱତି ତିରୁନଲ ରଚିତ 'ରୁକ୍ମିଣୀସ୍ୱୟମ୍ବରମ୍', ଉନାୟି ଭାରିୟର ରଚିତ 'ନଳଚରିତମ୍' ଇରୟିମନ୍ ତାଂପି ପ୍ରଣୀତ 'ସୁଭଦ୍ରା ହରଣମ୍' ପ୍ରଭୃତିରେ ଶ୍ରୀଗୀତଗୋବିନ୍ଦର ରଚନାଶୈଳୀ ଓ ରାଗତାଳାଦି ଅନୁସୃତ ହୋଇଅଛି । କେରଳରେ ପ୍ରଚଳିତ 'ନିତ୍ୟଭଜନ ପଦ୍ଧତି' ଓ 'ରାଧାକଲ୍ୟାଣ ଉତ୍ସବ ପଦ୍ଧତି' ଶ୍ରୀଗୀତଗୋବିନ୍ଦ-ଅଷ୍ଟପଦୀ ଗାନର ସମାଦର ବୃଦ୍ଧିରେ ସହାୟକ ଥିଲା । (୩୭)

ମୂଳତଃ ସମଗ୍ର ଭାରତରେ ବ୍ରିଟିଶ୍ ଆଧିପତ୍ୟ ପରିବ୍ୟାପ୍ତ ହେବା ପୂର୍ବରୁ ଶ୍ରୀକ୍ଷେତ୍ରର ସନ୍ଥ-ଶିରୋମଣି ଶ୍ରୀ ଜୟଦେବଙ୍କ ଏହି କ୍ଷୁଦ୍ରାବୟବ ଅମର ଗୀତିକାବ୍ୟ ନିଜର ମହୀୟସୀ ଶକ୍ତି ଦ୍ୱାରା ବିଭିନ୍ନ ପ୍ରାନ୍ତୀୟ ସାହିତ୍ୟ ଓ ସଙ୍ଗୀତକୁ ବିଶେଷ ଭାବରେ ପ୍ରଭାବିତ କରି ସମଗ୍ର ଭାରତବାସୀଙ୍କ ମଧ୍ୟରେ ଧର୍ମ ଓ ସଂସ୍କୃତିକ କ୍ଷେତ୍ରରେ ମୈତ୍ରୀ ଓ ସଦ୍ଭାବ ପ୍ରତିଷ୍ଠା କରିଥିଲା ।

---

(୩୬) Contribution of Kerala to Sanskrit literature

(୩୭) ୧୯୬୭ରେ କେନ୍ଦ୍ର ସଂଗୀତ ନାଟକ ଏକାଡ଼େମୀ ଦ୍ୱାରା ଅନୁଷ୍ଠିତ ଆଲୋଚନା ସଭାରେ ପଠିତ ସଙ୍ଗୀତ ଅଧ୍ୟାପକ ଏନ୍. ଏସ୍. ରାମଚନ୍ଦ୍ରନ୍ଙ୍କ ପ୍ରବନ୍ଧ ।

# ନବମ ଅଧ୍ୟାୟ

## ଶ୍ରୀ ଜୟଦେବ ଓ ଲକ୍ଷ୍ମଣ ସେନ

### —ମହାକବି ପରଂପରା—

**ମହାକବି କାଳିଦାସ**—ପ୍ରାଚୀନ ସଂସ୍କୃତ ସାହିତ୍ୟ ଅନୁଧ୍ୟାନ କଲେ ଜଣାଯାଏ ଯେ, ଖ୍ୟାତନାମା ସଂସ୍କୃତ କବିଗଣ ନିଜର କବିତ୍ୱ ଓ ପାଣ୍ଡିତ୍ୟ ସମ୍ବନ୍ଧରେ ପାଠକମାନଙ୍କ ମନରେ ସମ୍ୟକ୍ ଧାରଣା ଜାତ କରିବା ନିମିତ୍ତ ପୂର୍ବ ସୂରିମାନଙ୍କ କବିପ୍ରତିଭା ସଂପର୍କରେ ଆଲୋକପାତ କରିଥାନ୍ତି । ମହାକବି କାଳିଦାସ ନିଜର ପ୍ରଗାଢ଼ ପାଣ୍ଡିତ୍ୟ ଓ ଅନନ୍ୟସାଧାରଣ କବିତ୍ୱ ସତ୍ତ୍ୱେ ବିନୀତ ଓ ନିରହଙ୍କାର ଭାବରେ ସ୍ୱ ପ୍ରସିଦ୍ଧ 'ରଘୁବଂଶ' ମହାକାବ୍ୟରେ ସେ ପୂର୍ବ ସୂରିମାନଙ୍କ ଦ୍ୱାରା ଉଦ୍‌ଘାଟିତ ଦ୍ୱାରରେ ପ୍ରବେଶ କରି ଉକ୍ତ ଗ୍ରନ୍ଥ ରଚନା କରିଥିବା ପ୍ରକାଶ କରିଛନ୍ତି । ଯଥା—

"ଅଥବା କୃତବାଗ୍‌ଦ୍ୱାରେ-ବଂଶେଽସ୍ମିନ୍ ପୂର୍ବସୂରିଭିଃ ।
ମଣୌ ବଜ୍ରସମୁତ୍କୀର୍ଣ୍ଣେ ସୂତ୍ରସ୍ୟେବାସ୍ତି ମେ ଗତିଃ ॥ (୧)

**ରବିକୀର୍ତ୍ତି**— ଚାଲୁକ୍ୟବଂଶୀୟ ଦିଗ୍‌ବିଜୟୀ ସମ୍ରାଟ ଦ୍ୱିତୀୟ ପୁଲକେଶୀଙ୍କ ସଭାକବି ରବିକୀର୍ତ୍ତି ନିଜକୁ ମହାକବି କାଳିଦାସ ଓ ପ୍ରସିଦ୍ଧ କବି ଭାରବୀଙ୍କ ପରି କୀର୍ତ୍ତିଶାଳୀ ବୋଲି ଘୋଷଣା କରିଛନ୍ତି । ଯଥା—

"ସ ବିଜୟତାଂ ରବିକୀର୍ତ୍ତିଃ କବିତାଶ୍ରିତ କାଳିଦାସଭାରବୀ କୀର୍ତ୍ତିଃ" (୨)

**କବିସାର୍ବଭୌମ ବାଣଭଟ୍ଟ**— ସପ୍ତମ ଶତାବ୍ଦୀର ପ୍ରଥମାର୍ଦ୍ଧରେ ଆବିର୍ଭୂତ ମହାରାଜାଧିରାଜ ହର୍ଷବର୍ଦ୍ଧନଙ୍କ ସଭାକବି ବାଣଭଟ୍ଟ ସ୍ୱକୃତ 'ହର୍ଷଚରିତ'ର ପ୍ରଥମ ଉଚ୍ଛ୍ୱାସରେ କେତେକ ପ୍ରସିଦ୍ଧ କବି ଓ ଗ୍ରନ୍ଥର ନାମୋଲ୍ଲେଖ କରିଛନ୍ତି । ଯଥା :

"କବୀନାମଗଲଦ୍‌ଦର୍ପୋ ନୂନଂ **ବାସବଦତ୍ତୟା**
**ଶକ୍ତ୍ୟେବ ପାଣ୍ଡୁପୁତ୍ରାଣାଂ** ଗତୟା କର୍ଣ୍ଣଗୋଚରମ୍ । ୧୧

---

(୧) 'ରଘୁବଂଶ ମହାକାବ୍ୟମ୍'— ପ୍ରଥମ ସର୍ଗ, ୪ର୍ଥ ଶ୍ଳୋକ ।
(୨) ଅହ୍ଲୋଳ ପ୍ରଶସ୍ତି, ୩୭ ଶ୍ଳୋକ, Epigraphia Indica, VI. Vol
p 7

ପଦବନ୍ଧୋଜ୍ଜ୍ୱଳାଦ୍ଧ ଷ ଜ୍ଞ୍ଚିତବର୍ଣ୍ଣ କ୍ରମସ୍ଥିତଃ,
**ଭଟ୍ଟାରହରିଚନ୍ଦ୍ରସ୍ୟ** ଗଦ୍ୟବନ୍ଧୋ ନୃପାୟତେ । ୧୨
ଅବିନାଶିନମଗ୍ରାମ୍ୟ ମକରୋତ୍ **ସାତବାହନଃ**
ବିଶୁଦ୍ଧ ଜାତିଭିଃ କୋଶଂ ରତ୍ନୈରିବ ସୁଭାଷିତୈଃ । ୧୩
କୀର୍ତ୍ତିଃ **ପ୍ରବରସେନସ୍ୟ** ପ୍ରୟାତା କୁମୁଦୋଜ୍ଜ୍ୱଳା
ସାଗରସ୍ୟ ପରଂ ପାରଂ କପିସେନେବ ସେତୁନା । ୧୪
ସୂତ୍ରଧାରକୃତାରମ୍ଭୈ ର୍ନାଟକୈର୍ବହୁଭୂମିକୈଃ
ସପତାକୈ ର୍ଯଶୋ ଲେଭେ **ଭାସୋ** ଦେବକୁଳୈରିବ । ୧୫
ନିର୍ଗତାସୁ ନ ବାକସ୍ୟ **କାଳିଦାସସ୍ୟ** ସୂକ୍ତିଷୁ
ପ୍ରୀତିମଧୁରସାନ୍ଦ୍ରାସୁ ମଞ୍ଜରୀଷ୍ୱିବ ଜାୟତେ । ୧୬
ସମୁଦ୍ଦୀପିତକନ୍ଦର୍ପା କୃତଗୌରୀ ପ୍ରସାଧନା
ହରଲୀଳେବ ନୋକସ୍ୟ ବିସ୍ମୟାୟ **ବୃହତ୍‌କଥା** । ୧୭
**ଆଢ୍ୟରାଜ** କୃତୋତ୍ସାହୈ ର୍ହୃଦୟସ୍ଥୈଃ ସ୍ମୃତୈରପି
ଜିହ୍ୱାନ୍ତଃ କୃଷ୍ୟମାଣେବ ନ କବିତ୍ୱେ ପ୍ରବର୍ତ୍ତତେ । ୧୮
ତଥାପି ନୃପତେର୍ଭକ୍ତ୍ୟା ଭୀତୋ ନିର୍ବହଣାକୁଳଃ
କରୋମ୍ୟାଖ୍ୟାୟିକାମ୍ଭୋଧୌ ଜିହ୍ୱାପ୍ଲବନଚାପଳମ୍" । ୧୯

ଉଦ୍ଧୃତ ଶ୍ଳୋକ ଗୁଡ଼ିକରେ ବାଣଭଟ୍ଟ 'ବାସବଦତ୍ତା'ର କବି ସୁବନ୍ଧୁ, 'ମହାଭାରତ'ର ରଚୟିତା ମହର୍ଷି ବ୍ୟାସ, ଏକ ଗଦ୍ୟକାବ୍ୟର ପ୍ରଣେତା ଭଟ୍ଟାର ହରିଚନ୍ଦ୍ର, 'ଗାଥାସପ୍ତଶତୀ'ର ଲେଖକ ହାଳ ସାତବାହନ, 'ସେତୁବନ୍ଧ' କାବ୍ୟକାର ପ୍ରବର ସେନ, ବହୁ ନାଟକ କର୍ତ୍ତା ମହାକବି ଭାସ, ମହାକବି କାଳିଦାସ, 'ବୃହଦ୍‌-କଥା'ର ପ୍ରଣେତା ଗୁଣାଢ୍ୟ କବି ଆଢ୍ୟରାଜ ପ୍ରଭୃତି ପୂର୍ବ ସୂରିମାନଙ୍କ ମହିମା କୀର୍ତ୍ତନ କରିଛନ୍ତି ।

'ପାର୍ବତୀ ପରିଣୟ ନାଟକ'ରେ ବାଣଭଟ୍ଟ ତାଙ୍କ ରସନାରେ ସରସ୍ୱତୀ ନୃତ୍ୟ କରୁଥିବାର ପ୍ରକାଶ କରି ଗର୍ବ ଅନୁଭବ କରିଛନ୍ତି । ଯଥା—

"ଅସ୍ତି କବିସାର୍ବଭୌମୋ ବତ୍ସାନ୍ୱୟ ଜଳଧି ସମ୍ଭବଃ ବାଣଃ
ନୃତ୍ୟତି ଯଦ୍ ରସନାୟାଂ ବେଧୋମୁଖଲାସିକା ବାଣୀ" (୩)

(୩) ମହାମହୋପାଧ୍ୟାୟ ପାଣ୍ଡୁରଙ୍ଗ ବାମନ କାଣେଙ୍କ ଦ୍ୱାରା ସଂପାଦିତ 'ହର୍ଷଚରିତମ୍'

**ଆଚାର୍ଯ୍ୟ ଦଣ୍ଡୀ**—ଆଚାର୍ଯ୍ୟ ଦଣ୍ଡୀ ତତ୍କୃତ 'ଅବନ୍ତୀ ସୁନ୍ଦରୀକଥା'ରେ ସେତୁବନ୍ଧ କାବ୍ୟର ପ୍ରଣେତା ପ୍ରବର ସେନ ଓ 'ବେଣୀସଂହାର' ନାଟକ ପ୍ରଣେତା ନାରାୟଣଙ୍କ କୀର୍ତ୍ତିର ଉଲ୍ଲେଖ କରିଛନ୍ତି ।

"ସେତୁରୂପେଣ ତସ୍ମିନ୍ତୋ ଲୋକେ ସଦ୍‌ବସ୍ତୁଦର୍ଶିନଃ
ଷଟ୍‌ପଞ୍ଚାଶତ୍‌ପ୍ରମାଣେଷ୍ଟଂ ଗତାନଃ କବିପୁଙ୍ଗବାଃ ॥

× × ×

ବ୍ୟାପ୍ତୁଂ ପଦତ୍ରୟେଣାପି ଯଶ୍ଶକ୍ତୋ ଭୁବନତ୍ରୟଂ
ତସ୍ୟ କାବ୍ୟତ୍ରୟଂ ଚକ୍ରଂ ନାରାୟଣସ୍ୟ କମ୍"

**ବାଲବାଲ୍ମୀକି ମୁରାରି** — 'ଅନର୍ଘ ରାଘବ ନାଟକମ୍' ପ୍ରଣେତା ମୁରାରି ନଟମୁଖରେ 'ବାଲବାଲ୍ମୀକି' ନାମରେ ସଗୌରବରେ ଅଭିହିତ ହୋଇଛନ୍ତି । ଯଥା—

"ନଟଃ—(ସହର୍ଷମ୍) ଏବ ତତ୍ରପ୍ରସୂତୃଣାଂ ଅସ୍ୟତ୍ରମୌଦ୍‌ଗଲ୍ୟାନାଂ
ବ୍ରହ୍ମର୍ଷିଣାମନ୍ୱୟମୂର୍ଦ୍ଧନସ୍ୟ **ମୁରାରିନ ମଧ୍ୟେୟସ୍ୟ ବାଲବାଲ୍ମୀକେଃ**

**କବିରାଜ ରାଜଶେଖର** — କନୌଜର ପ୍ରତିହାର ବଂଶୀୟ ମହେନ୍ଦ୍ରପାଳ ଓ ମହୀପାଳଙ୍କ ସଭାମଣ୍ଡନକାରୀ କବିରାଜ ରାଜଶେଖର ନିଜକୁ ବାଲ୍ମୀକି, ଭର୍ତ୍ତୃହରି, ମେଣ୍ଠ ଓ ଭବଭୂତିଙ୍କ ସମକକ୍ଷ କବି ରୂପେ ଘୋଷଣା କରିଛନ୍ତି । ଯଥା—

"ବଭୂବ **ବଲ୍ମୀକଭବଃ** କବି ପୁରା
ତତଃ ପ୍ରପେଦେ ଭୁବି **ଭର୍ତ୍ତୃମେଣ୍ଠତାମ୍** ॥
ସ୍ଥିତଃ ପୁନର୍ଯୋ **ଭବଭୂତି** ରେଖୟା
ସ ବର୍ତ୍ତତେ ସଂପ୍ରତି **ରାଜଶେଖରଃ**" (୪)

**କବିରାଜ ସୂରି**—କର୍ଣ୍ଣାଟକର ଜୟନ୍ତୀପୁର ବା ବନବାସୀରେ ରାଜତ୍ୱ କରୁଥିବା କାଦମ୍ବ ବଂଶୀୟ ରାଜା କାମଦେବଙ୍କ ସଭାକବି କବିରାଜ ସୂରି ସ୍ୱକୃତ 'ରାଘବ ପାଣ୍ଡବୀୟ ମହାକାବ୍ୟ'ରେ ଲେଖିଛନ୍ତି ଯେ, ସୁବନ୍ଧୁ, ବାଣଭଟ୍ଟ ଓ ସେ ଏହି ତିନିଜଣଙ୍କ ପରି ବକ୍ରୋକ୍ତିମାର୍ଗନିପୁଣ ଅନ୍ୟ ଚତୁର୍ଥ କବି ନ ଥିଲେ । ଯଥା—

(୪) 'History of Sanskrit poetics' by Dr. P. V Kane, p. 203
(୫) ମିହିଜସ୍ୱମରେ ସଂରକ୍ଷିତ ପୋଥିରୁ ଉଦ୍ଧୃତ ।

"ଶ୍ରୀମଦ୍‌ରାମାପୂଣ ଗଙ୍ଗା ସରତଂ ସାଗରେ ମହାନ୍
ତତ୍ତ୍ୱସଂଯୋଜନକର୍ମଜ୍ଞଃ କବିରାଜଃ ଭଗୀରଥଃ ।
ସୁବନ୍ଧୁ ବାଣଭଟ୍ଟଶ୍ଚ କବିରାଜ ଇତି ତ୍ରୟଃ
ବକ୍ରୋକ୍ତିମାର୍ଗନିପୁଣାଃ ଚତୁର୍ଥ ବିଦ୍ୟତେ ନବା" (୫)

**କବିରାଜ ଶ୍ରୀହର୍ଷ** — ବାଗ୍‌-ବିଳାସପ୍ରିୟ ଉତ୍କଳୀୟ କବିରାଜ ଶ୍ରୀହର୍ଷ ସ୍ୱକୃତ 'ନୈଷଧୀୟ ଚରିତମ୍' ମହାକାବ୍ୟର ବହୁ ଶ୍ଳୋକରେ ନିଜର ପ୍ରୌଢ଼ି ପ୍ରଦର୍ଶନ କରିଛନ୍ତି । ଯଥା—

'କବିକୁଳାଦୃଷ୍ଟାଧ୍ୱପାନ୍ଥେ'— ଅର୍ଥାତ୍ କାଳିଦାସାଦି ମହାକବି ସମୂହ ଦ୍ୱାରା ଅଦୃଷ୍ଟ ପଥରେ ପଥିକ ଶ୍ରୀହର୍ଷ । (ଅଷ୍ଟମ ସର୍ଗ)

'ତର୍କେଷ୍ୱପ୍ୟସମଶ୍ରମସ୍ୟ'— ଅର୍ଥାତ୍ ସେ କେବଳ କାବ୍ୟ ନିର୍ମାଣରେ କୁଶଳ ନ ଥିଲେ, ତର୍କଶାସ୍ତ୍ରରେ ସେ ଅସମ ବା ଅପ୍ରତିଦ୍ୱନ୍ଦ୍ୱୀ ଥିଲେ । (ଦଶମ ସର୍ଗ)

'ଶରଦିଜଜ୍ୟୋତ୍ସ୍ନାଚ୍ଛସୂକ୍ତେଃ'— ଅର୍ଥାତ୍ ଶ୍ରୀହର୍ଷଙ୍କ ସୂକ୍ତିସମୂହ ଶରତ କାଳୀନ ଚନ୍ଦ୍ରିକା ପରି ନିର୍ମଳ, ନିର୍ଦ୍ଦୋଷ ଓ ଆହ୍ଲାଦ-ଜନକ ଥିଲା । (ଚତୁର୍ଦ୍ଦଶ ସର୍ଗ) ।

'କାଶ୍ମୀରୈର୍ମହିତେ ଚତୁର୍ଦ୍ଦଶତୟୀଂବିଦ୍ୟାବିଦଦ୍ଭିଃ' — ଅର୍ଥାତ୍ ଶ୍ରୀହର୍ଷ ସରସ୍ୱତୀଙ୍କ ଅଧିଷ୍ଠାନ କାଶ୍ମୀର ଦେଶରେ ଚତୁର୍ଦ୍ଦଶ ବିଦ୍ୟାରେ ପରୀକ୍ଷା ଦେଇ ସମ୍ମାନିତ ହୋଇଥିଲେ । (ଷୋଡ଼ଶ ସର୍ଗ)

ଶ୍ରୀହର୍ଷ 'ନୈଷଧୀୟ ଚରିତମ୍‌ର' ଶେଷସର୍ଗର ଶେଷ ଦୁଇ ଶ୍ଳୋକରେ ବିଶେଷ ପ୍ରୌଢ଼ି ପ୍ରଦର୍ଶନ କରିଛନ୍ତି । ଯଥା—

"ଗ୍ରନ୍ଥଗ୍ରନ୍ଥିରିହ କ୍ୱଚିତକ୍ୱଚିଦପି ନ୍ୟାସି ପ୍ରଯତ୍ନାନ୍ମୟା
ପ୍ରାଜ୍ଞଂମନ୍ୟମନା ହଠେନ ପଠିତା ମାସ୍ମିନ୍ ଖଳଃ ଖେଳତୁ ।
ଶ୍ରଦ୍ଧାରାଦ୍ଧଗୁରୁ ଶ୍ଲଥୀକୃତ ଦୃଢ଼ଗ୍ରନ୍ଥିଃ ସମାସାଦୟଃ—
ତ୍ୱେତତ୍କାବ୍ୟରସୋର୍ମିମଜ୍ଜନ ସୁଖବ୍ୟାସଜ୍ଜନଂ ସଜ୍ଜନଃ । ୧୫୨

ତାମ୍ବୁଲଦ୍ୱୟମାସନଞ୍ଚ ଚ ଲଭତେ ଯଃ କାନ୍ୟକୁବ୍‌ଜେଶ୍ୱରା-
ଦ୍‌ଯଃ ସାକ୍ଷାତ୍ କୁରୁତେ ସମାଧିଷୁ ପରଂବ୍ରହ୍ମ ପ୍ରମୋଦାର୍ଣ୍ଣବମ୍
ତତ୍କାବ୍ୟଂ ମଧୁବର୍ଷି ଧର୍ଷିତପରାସ୍ତର୍କେଷୁ ଯସ୍ୟୋକ୍ତୟଃ
ଶ୍ରୀ ଶ୍ରୀ ହର୍ଷକବେଃ କୃତିଃ କୃତିମୁଦେ ତସ୍ୟାଭ୍ୟୁଦୀୟାଦିୟମ୍" । ୧୫୩

**କବୀନ୍ଦ୍ର ଗୋବର୍ଦ୍ଧନାଚାର୍ଯ୍ୟ —** କବିସାର୍ବଭୌମ ବାଣଭଟ୍ଟଙ୍କ ପରେ ଉତ୍କଳୀୟ କବୀନ୍ଦ୍ର ଗୋବର୍ଦ୍ଧନ ଆଚାର୍ଯ୍ୟ ସ୍ୱକୃତ 'ଆର୍ଯ୍ୟାସପ୍ତଶତୀ'ରେ ମହର୍ଷି ବାଲ୍ମୀକି, ମହର୍ଷି ବ୍ୟାସ, 'ବୃହତ୍କଥା' ପ୍ରଣେତା ଗୁଣାଢ୍ୟ, ମହାକବି କାଳିଦାସ, ମହାକବି ଭବଭୂତି, କବିସାର୍ବଭୌମ ବାଣଭଟ୍ଟ, ବୃହସ୍ପତି ପ୍ରତିମ ସ୍ୱପିତା ନୀଳାମ୍ବର, ସେନକୁଳତିଳକ ପ୍ରବର ସେନ ପ୍ରଭୃତି ପୂର୍ବ ସୂରୀମାନଙ୍କ ଗୁଣକୀର୍ତ୍ତନ ପୂର୍ବକ ସ୍ୱ ପ୍ରୌଢ଼ି ପ୍ରଦର୍ଶନ ନିମିତ୍ତ ନିଜକୁ 'କବି ସମର ସିଂହ' ରୂପେ ଆଖ୍ୟାତ କରିଥିଲେ । ଯଥା:—

"**ଶ୍ରୀରାମାୟଣ-ଭାରତ-ବୃହତ୍କଥାନାଂ** କବୀନ୍ନମସ୍କୁର୍ମଃ
ତ୍ରିସ୍ରୋତା ଇବ ସରସା ସରସ୍ୱତୀ ସ୍ଫୁରତି ଯୈ ର୍ଭିନ୍ନା । ୩୪
ସାକୂତ ମଧୁର କୋମଳ ବିଳାସିନୀ-କଣ୍ଠକୂଜିତ ପ୍ରାୟେ
ଶିକ୍ଷାସମୟେଽପି ମୁଦେରତିଲୀଳା **କାଳିଦାସୋକ୍ତିଃ** । ୩୫
**ଭବଭୂତେଃ** ସଂବେଦାକ୍ତ ଭୂଧର ଭୂରିବ ଭାରତୀ ଭାତି
ଏତତ୍କୃତ କାରୁଣ୍ୟେ କିମନ୍ୟଥାରୋଦିତି ଗ୍ରାବା । ୩୬
ଜାତା ଶିଖଣ୍ଡିନୀ ପ୍ରାକ୍ ଯଥାଶିଖଣ୍ଡୀ ତଥାଽବଗଚ୍ଛାମି
ପ୍ରାଗଲ୍ଭ୍ୟ ମଧିକ ମାପ୍ତୁଂ ବାଣୀ **ବାଣୋ** ବଭୂବେତି । ୩୭
ଯଂ ଗଣୟତି ଗୁରୋରନୁଯସ୍ୟାଽସ୍ତେ ଧର୍ମକର୍ମ ସଂକୁଚିତମ୍
କବିମହ ମୁନେସ ମିବ ତଂ **ତାତଂ ନୀଳାମ୍ବରଂ** ବନ୍ଦେ । ୩୮
ସକଳକଳାଃ କଳୟିତୁଂ ପ୍ରଭୁଃ ପ୍ରବନ୍ଧସ୍ୟ ତାତଂ କୁମୁଦବନବନ୍ଧୋଃ
**ସେନକୁଳତିଳକ ଭୂପତି**ରେକୋ ରାକାପ୍ରଦୋଷଶ୍ଚ । ୩୯

× × ×

ପୁଷ୍ପୈର୍ବିଭଲବୃନ୍ତଂ **ଗୁଣାଢ୍ୟ ଭବଭୂତି ବାଣରଘୁକାରୈଃ**
ବାଗ୍‌ଦେବୀଂ ଭଜତୋ ମମ ପଶ୍ୟନ୍ତୁ କୋ ଦୋଷଃ । ୬୯୭

× × ×

**କବିସମରସିଂହ**ନାଦ ସ୍ୱରାନୁବାଦଃ ସୁଧୈକ ସମ୍ବାଦଃ
ବିଦ୍ୱଦ୍ ବିନୋଦକନ୍ଦ ସନ୍ଦର୍ଭୋଽୟଂ ମୟା ସୃଷ୍ଟଃ । ୭୦୦ (୭)

**କବିରାଜ ଶ୍ରୀ ଜୟଦେବ—** କବିରାଜ ଶ୍ରୀ ଜୟଦେବ ତାଙ୍କ ପୂର୍ବ ସୂରିବର୍ଗ 'କବିସାର୍ବଭୌମ' ବାଣଭଟ୍ଟ, 'ବାଲବାଲ୍ମୀକି' ମୁରାରି, 'କବିରାଜ' ଶ୍ରୀହର୍ଷ, 'କବି

---

(୭) ମିଢ଼ଳକ୍ଷ୍ମୀରେ ସଂରକ୍ଷିତ ପୋଥିରୁ ଉଦ୍ଧୃତ ।

ସମର ସିଂହ' ଗୋବର୍ଦ୍ଧନ ଆଚାର୍ଯ୍ୟଙ୍କ ପଦାଙ୍କ ଅନୁସରଣ କରି ସ୍ୱ ଅମର କୃତି ଶ୍ରୀଗୀତଗୋବିନ୍ଦର ମହତ୍ତ୍ୱ ଓ ଉତ୍କର୍ଷ ଉପଲବ୍ଧି ନିମିତ୍ତ ପାଠକମାନଙ୍କୁ ଉକ୍ତ ଶ୍ଳୋକ ଦ୍ୱାରେ ସମ୍ବୋଧନ କରିଛନ୍ତି ।

"ଯଦି ହରିସ୍ମରଣେ ସରସଂ ମନୋ
ଯଦି ବିଳାସ କଳାସୁ କୁତୂହଳମ୍ ।
ମଧୁର କୋମଳକାନ୍ତ ପଦାବଳୀଂ
ଶୃଣୁ ତଦା ଜୟଦେବସରସ୍ୱତୀମ୍" ॥ ୩

ହେ ପାଠକବୃନ୍ଦ ! ଯଦି ଶ୍ରୀହରି ସ୍ମରଣ ଦ୍ୱାରା ମନକୁ ସରସ କରିବାର ବାସନା ଅଛି, ଯଦି ଶ୍ରୀହରିଙ୍କ ବସନ୍ତ-ରସଲୀଳାର ବିଳାସକଳା ବା ରସଚାତୁର୍ଯ୍ୟ ଜାଣିବା ପାଇଁ କୌତୂହଳ ରହିଛି, ତେବେ ଶ୍ରୀ ଜୟଦେବ ରଚିତ ଏହି ଗ୍ରନ୍ଥର ମଧୁର-କୋମଳ-କାନ୍ତ ପଦାବଳୀ ଶ୍ରବଣ କର । ଏତିକରେ ସନ୍ତୁଷ୍ଟ ନ ହୋଇ ସେ ପରବର୍ତ୍ତୀ ଶ୍ଳୋକରେ ଉମାପତିଧର, ଶରଣ, ଗୋବର୍ଦ୍ଧନ ଆଚାର୍ଯ୍ୟ ଓ କବିରାଜ ଧୋୟୀ ନାମକ ଚାରିଜଣ ପ୍ରସିଦ୍ଧ କବିଙ୍କ ରଚନାରେ ଦୋଷ ପ୍ରଦର୍ଶନ ପୂର୍ବକ ନିଜର ପ୍ରୌଢ଼ି ପ୍ରଦର୍ଶନ କରି-ଛନ୍ତି । ଯଥା—

"ବାଚଃ ପଲ୍ଲବୟତ୍ୟୁ**ମାପତିଧରଃ** ସନ୍ଦର୍ଭଶୁଦ୍ଧିଂ ଗିରାଂ
ଜାନୀତେ **ଜୟଦେବ** ଏବ **ଶରଣଃ** ଶ୍ଳାଘ୍ୟୋ ଦୁରୂହଦ୍ରୁତେ
ଶୃଙ୍ଗାରୋତ୍ତରସତ୍ପ୍ରମେୟରଚନୈରା**ଚାର୍ଯ୍ୟ ଗୋବର୍ଦ୍ଧନ**
ସ୍ପର୍ଦ୍ଧୀ କୋଽପି ନ ବିଶ୍ରୁତଃ ଶ୍ରୁତିଧରୋ **ଧୋୟୀ** କବିକ୍ଷ୍ମାପତିଃ"

ଭାରତର ବିଭିନ୍ନ ପ୍ରାନ୍ତରେ ବିଭିନ୍ନ ଯୁଗରେ ଆବିର୍ଭୂତ ପ୍ରସିଦ୍ଧ ଟୀକାକାରମାନେ ଏହି ଶ୍ଳୋକର ଯେଉଁ ବ୍ୟାଖ୍ୟାନ କରିଛନ୍ତି ସେଥିରୁ ନିଃସନ୍ଦେହରେ ପ୍ରତିପାଦିତ ହୁଏ ଯେ, ଉକ୍ତ ଶ୍ଳୋକରେ ଶ୍ରୀ ଜୟଦେବ ଆଦୌ ଲକ୍ଷ୍ମଣସେନଙ୍କ ନାମୋଲ୍ଲେଖ କରି-ନାହାନ୍ତି । ପରନ୍ତୁ ଉମାପତିଧର ଓ ଧୋୟୀଙ୍କ ନିନ୍ଦାବାଦ ଦ୍ୱାରା ସେ ପ୍ରକାରାନ୍ତରେ ସେ ଦୁହିଁଙ୍କ ଆଶ୍ରୟଦାତା ଲକ୍ଷ୍ମଣସେନଙ୍କ ପ୍ରତି ଆକ୍ଷେପ କରିଛନ୍ତି ।

## ଜଗଦ୍ଧର କୃତ 'ସାରଦୀପିକା ଟୀକା'—

ଚତୁର୍ଦ୍ଦଶ ଶତାବ୍ଦୀରେ ମିଥିଳାରେ ଆବିର୍ଭୂତ ପ୍ରସିଦ୍ଧ ଟୀକାକାର ଜଗଦ୍ଧର ସ୍ୱ କୃତ 'ସାରଦୀପିକା ଟୀକା'ରେ ଏହି ଶ୍ଳୋକର ବ୍ୟାଖ୍ୟାନରେ ଶ୍ରୀ ଜୟଦେବଙ୍କ ଦ୍ୱାରା ତାଙ୍କ କବିତ୍ୱର ଗୁଣାଧିକ୍ୟ ଓ ତତ୍କୃତ ଗ୍ରନ୍ଥର ମାହାତ୍ମ୍ୟ ବର୍ଣ୍ଣିତ ହୋଇଥିବା ଉଲ୍ଲେଖ କରିଛନ୍ତି । ଯଥା—

କବିରଧୁନା ମହାକବି ପ୍ରଶଂସାବସରେ ଲକ୍ଷ୍ମଣସେନଦେବେନାପ × × ରୁପିତା ଇତି ମହାପୁ କବିଃଭି ଗୁଣାଧିକ୍ୟମସ୍ତ୍ୟେତି ଦେଖାଇଥିଲେ ନିଜ ଗ୍ରନ୍ଥ ମହାତ୍ମ୍ୟମାହ" । (୭)

## କବିରାଜ ନାରାୟଣ ଦାସଙ୍କ 'ସର୍ବାଙ୍ଗ ସୁନ୍ଦରୀ ଟୀକା'—

ଚତୁର୍ଦ୍ଦଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ ଆବିର୍ଭୂତ ପ୍ରସିଦ୍ଧ ଉତ୍କଳୀୟ କବିରାଜ ନାରାୟଣ ଦାସ ସ୍ୱ କୃତ 'ସର୍ବାଙ୍ଗ ସୁନ୍ଦରୀ ଟୀକା'ରେ ଉକ୍ତ ଶ୍ଳୋକର ଅତି ପ୍ରାଞ୍ଜଳ, ସରଳ ଓ ପ୍ରମାଣମୂଳକ ବ୍ୟାଖ୍ୟା ପ୍ରଦାନ କରିଛନ୍ତି । ଯଥା—

"ସଂପ୍ରତି କବୀନାଂ ପ୍ରଶଂସାବ୍ୟାଜେନ ନିଜାଂକୁର୍ବନ୍ନାତ୍ମନଃ ପ୍ରୌଢ଼ିଂ ମାହ, ବାଚଃ······ କବିକ୍ଷ୍ମାପତିଃ

ଉମାପତିଧର ନାମା ସାନ୍ଧିବିଗ୍ରହିକୋ ବାଚଃ ପଲ୍ଲବୟତି, ବିସ୍ତାରୟତୀତ୍ୟର୍ଥଃ । ଏତେନାସ୍ୟ ବ୍ୟାଖ୍ୟାଶକ୍ତିର୍ଦର୍ଶିତା । ନିନ୍ଦାତ୍ୱ ପଲ୍ଲବଗ୍ରାହିଣୀସ୍ୟାତ୍ । ଯଦୁକ୍ତଂ—

ପଲ୍ଲବଗ୍ରାହିପାଣ୍ଡିତ୍ୟଂ କ୍ରୟକ୍ରୀତଂ ଚ ମୈଥୁନଂ
ଭୋଜନଂଚ ପରାୟତ୍ତଂ ତ୍ରୟଃ ପୁଂସାଂ ବିଡ଼ମ୍ବନେତି ।

ଶରଣ ଶ୍ଳାଘ୍ୟୋ ଦୁରୂହଦ୍ରୁତେ ଇତି । ଦୁରୂହେ ପ୍ରମେୟେ ସମସ୍ୟାଦୌ ଦ୍ରୁତେ ଶୀଘ୍ରତ୍ୱେ ଶ୍ଳାଘ୍ୟୋ, ଦ୍ରୁତକବିରିତ୍ୟର୍ଥଃ । ଦ୍ରୁତ ଦୁଃଖୋହପକେ୍ୟା ବା । ନିନ୍ଦାତ୍ତୁ ଦୁରୂହଦ୍ରୁତ ଏବ ଶ୍ଳାଘ୍ୟୋ ନାନ୍ୟତ୍ରେବ ଧାରଣାତ୍ୱ ବେଦ୍ୟା ।

ଶୃଙ୍ଗାରୋତ୍ତର ସତ୍-ପ୍ରମେୟରଚନୈରାଚାର୍ଯ୍ୟ ଗୋବର୍ଦ୍ଧନ ସ୍ପର୍ଦ୍ଧୀ କୋଽପି ନ ବିଶ୍ରୁତ ଇତି । ଶୃଙ୍ଗାର ପ୍ରଧାନ ସତ୍ପ୍ରମେୟ ପ୍ରଥନାୟା ମାଚାର୍ଯ୍ୟ ଗୋବର୍ଦ୍ଧନଂ ସ୍ପର୍ଦ୍ଧିତୁଂ ତମଭିଭବିତୁଂ କୋଽପି ନ ଶକ୍ତଃ ଇତ୍ୟର୍ଥଃ । ଅତ୍ରାପି ଅବଧାରଣେ ନ୍‌ ରସାନ୍ତରଭିପ୍ରାୟାନନ୍ଦା ଜ୍ଞେୟା ।

ଶ୍ରୁତିଧରଃ ଧୋୟୀ କବିକ୍ଷ୍ମାପତିରିତି । ଧୋୟୀନାମା କବିରାଜଃ ଶ୍ରୁତିଧରଃ । ଶ୍ରବଣମାତ୍ରାଦେବ ଗୃହ୍ଣାତି ଗ୍ରନ୍ଥ ଇତ୍ୟର୍ଥଃ । ନିନ୍ଦାତ୍ତୁ ଶ୍ରୁତିଧରତ୍ୱୟା, ହେୟୋପାଦେୟ ବୁଦ୍ଧିରହିତତ୍ୱାତ୍ ପଶୁତ୍ୱାପତ୍ତେଃ ॥ ଯଦୁକ୍ତଂ—

---

(୭) ମାନ୍ଦ୍ରାଜସ୍ଥ ପ୍ରାଚ୍ୟବିଦ୍ୟା ପୋଥିଭଣ୍ଡାରରେ ସଂରକ୍ଷିତ ପୋଥିର ପ୍ରତିଲିପିରୁ ଉଦ୍ଧୃତ । ପ୍ରତିଲିପିରେ 'ରୁପିତା' ପୂର୍ବରୁ କେତେକ ଅକ୍ଷର ନ ଥିଲେ ମଧ୍ୟ ଶ୍ଳୋକର ବ୍ୟାଖ୍ୟା ସ୍ପଷ୍ଟ ରହିଛି ।

"ଉଦାରତାର୍ଥଃ ପଶୁନାମି ଗୃହ୍ୟତେ
ହ୍ୟାଷ୍ଟନାଗାଷ୍ଟ ବହ୍ୱଷ୍ଟ ଗ୍ରେଦତାଃ"

ଅନୁକ୍ରମପ୍ୟୁହ୍ବ ପଣ୍ଡିତୋ ଜନଃ ପରେଙ୍ଗିତ ଜ୍ଞାନଫଳାହ୍ଵବୁଦ୍ଧୟଃ ଇତି । ଅତଏବ ତେ ଗିରାଂ ସନ୍ଦର୍ଭଂ ଗୃହ୍ଣବଶେଷଂ ନ ଜାନତେ । କସ୍ତର୍ହି ଜାନାତୀତ୍ୟାହ ଜୟଦେବ ଏବେତି" (୮)

ଏହ୍ଵ ଶ୍ଳୋକରେ ଶ୍ରୀ ଜୟଦେବ ପ୍ରଶଂସା ଛଳରେ ସାନ୍ଧିବିଗ୍ରହିକ ଉମାପତି ଧରଙ୍କ ବିପୁଳୀତ ମୈଥୁନ ତୁଲ୍ୟ ହେୟ ପଲ୍ଲବଗ୍ରାହି ପାଣ୍ଡିତ୍ୟ, ଶରଣଙ୍କର ନୀରସ କବିତା ରଚନା ଶକ୍ତି ବ୍ୟତୀତ ଅନ୍ୟ ପ୍ରକାର କବିତ୍ୱର ଅଭାବ, ଅପ୍ରତିଦ୍ୱନ୍ଦୀ ଶୃଙ୍ଗାର କବି ଆଚାର୍ଯ୍ୟ ଗୋବର୍ଦ୍ଧନଙ୍କ ରସାନ୍ତର ଅଜ୍ଞତା, ତଥା ଜଣାଅଛି କବିରାଜ ଧୋୟୀଙ୍କ ପଶୁସୁଲଭ ଶ୍ରୁତିଧରତା ପ୍ରତି ତୀବ୍ର କଟୂକ୍ତି କରି ନିଜର ଅସାଧାରଣ ପାଣ୍ଡିତ୍ୟ, କବିତ୍ୱ ଓ ରସଗ୍ରାହକତା ପ୍ରତିପାଦନ କରିଛନ୍ତି । ବଙ୍ଗସମ୍ରାଟ ଲକ୍ଷ୍ମଣସେନଙ୍କ ଆଶ୍ରିତ କବି ଶ୍ରୀ ଜୟଦେବଙ୍କ କଟୁ ସମାଲୋଚନାର ଶରବ୍ୟ ହୋଇଥିବାରୁ ତାଙ୍କୁ ଲକ୍ଷ୍ମଣ ସେନଙ୍କ ସଭାକବି ବୋଲି କହିବା ସତ୍ୟର ଘୋର ଅପଳାପ ମାତ୍ର । ପରନ୍ତୁ ଏହି କଟୂକ୍ତିମାଳା ଭିତ୍ତିରେ ତାଙ୍କୁ ଲକ୍ଷ୍ମଣ ସେନଙ୍କ ପ୍ରତିଦ୍ୱନ୍ଦୀ ଉତ୍କଳାଧୀଶଙ୍କ ଆଶ୍ରିତ ରୂପେ ଗ୍ରହଣ କରିବା ସର୍ବଥା ଯୁକ୍ତିସିଦ୍ଧ ।

## ମହାମହୋପାଧ୍ୟାୟ ଶଙ୍କର ମିଶ୍ରଙ୍କ 'ରସମଞ୍ଜରୀ ଟୀକା'—

କବିରାଜ ନାରାୟଣ ଦାସଙ୍କ ପରବର୍ତ୍ତୀ ପ୍ରସିଦ୍ଧ ମୈଥିଳ ପଣ୍ଡିତ ମହାମହୋପାଧ୍ୟାୟ ଶଙ୍କର ମିଶ୍ର ସ୍ୱ ରଚିତ 'ରସମଞ୍ଜରୀ ଟୀକା'ରେ ଏହି ଶ୍ଳୋକଟି ବିସ୍ତୃତ ଓ ପ୍ରାଞ୍ଜଳ ଭାଷାରେ ବ୍ୟାଖ୍ୟାନ କରିଛନ୍ତି । ଯଥା —

"**ଉମାପତି ଧର ନାମ୍ନାଲକ୍ଷ୍ମଣସେନାମାତ୍ୟୋ** ବାଚଃ ପଲ୍ଲବୟତି ବିସ୍ତାରୟତି । ତଥା ଚୈମାପତିଧରସ୍ୟ ବାଙ୍ମାଧୁର୍ଯ୍ୟଶୂନ୍ୟଂ ଶବ୍ଦାର୍ଥ ଗୁଣଂଶୂନ୍ୟଂ ସଚ୍ଛିଦ୍ରାଖ୍ୟମଧମକାବ୍ୟଂ ନ ସହୃଦୟହୃଦୟାହ୍ଲାଦ ଜନକ ମିତି ଭାବଃ ॥

ଶରଣ ନାମା କବି ଦୁରୂହସ୍ୟ କାବ୍ୟସ୍ୟ ଶୀଘ୍ରରଚନେ ଶ୍ଳାଘ୍ୟଃ ସ୍ତୁତ୍ୟଃ ॥ ତଥା ଚ ଶରଣକବେରପି କାବ୍ୟଂ ଗୂଢାର୍ଥତ୍ୱାଦ ଦୋଷଯୁକ୍ତଂ ପ୍ରସାଦାଦିଗୁଣରହିତଂ ଚେତି, ତଦପି ନ ବିଦଗ୍ଧମନବିନୋଦନାତ୍ପଦମିତି ଭାବଃ ॥

---

(୮) ମିଥିଳାସ୍ଥାନରେ ସଂରକ୍ଷିତ 'ସର୍ବାଙ୍ଗ ସୁନ୍ଦରୀ ଟୀକା' ପୋଥିରୁ ଉଦ୍ଧୃତ ।

ତଥା ଶୃଙ୍ଗାରୋତ୍ତରେତି ଶୃଙ୍ଗାର ରସ ଏବୋତ୍ତରଃ ଶ୍ରେଷ୍ଠୋ ଯସ୍ୟ ଶୃଙ୍ଗାରୋତ୍ତରଂ ପ୍ରଧାନଂ ବା ଯତ୍ର ପ୍ରମେୟ ମୁତ୍ତମଂ ବସ୍ତୁ ତସ୍ୟ ରଚନୈଃ କବିତାୟାଂ ଗ୍ରନ୍ଥନୈରାଚାର୍ଯ୍ୟ ଗୋବର୍ଦ୍ଧନସ୍ପର୍ଦ୍ଧୀ ଗୋବର୍ଦ୍ଧନାଚାର୍ଯ୍ୟେଣ ସହସ୍ପର୍ଦ୍ଧାବାନ୍ କୋଽପି ନ ବିଶ୍ରୁତଃ ଖ୍ୟାତଃ । ଅତ ଶୃଙ୍ଗାରେତ୍ୟାହନା ଶୃଙ୍ଗାର ରସକାବ୍ୟ ରଚନାୟାମେବ ତସ୍ୟ ସାମର୍ଥ୍ୟମ୍, ରସାନ୍ତର ବର୍ଣ୍ଣନେତୁ ସୋଽପ୍ୟ ପ୍ରୌଢ଼ ଏବେତି । ତତ୍କାବ୍ୟେ ବର୍ଣ୍ଣନୀୟାର୍ଥସ୍ୟ ଶୁଦ୍ଧତ୍ୱେଽପି ମାଧୁର୍ଯ୍ୟଗୁଣସଂପନ୍ନ ପଦରଚନାୟାଂ ସୋଽପ୍ୟଶକ୍ତ ଇତି ଧ୍ୱନିତମ୍ ॥ ଇତରବିଦ୍ୟାଧିଷୁନାହନା ଆଚାର୍ଯ୍ୟତ୍ୱଂ ସତ୍କାବ୍ୟରଚନାୟାମପ୍ରୟୋଜକମିତି ସୋପହାସ ମୁକ୍ତ ମାଚାର୍ଯ୍ୟେତି ଭାବଃ ॥

ଧୋୟୀ କବିକ୍ଷ୍ମାପତିଃ । ଧୋୟୀନାମ କବିରାଜଃ ଶ୍ରୁତିଧରଃ ଶ୍ରୁତିଃ ଶ୍ରବଣ ତନ୍ମାତ୍ରାଦେବ ଗ୍ରନ୍ଥଗ୍ରାହୀ । ତସ୍ୟୋଚ୍ଚାରିତମାତ୍ର ଗ୍ରାହିତ୍ୱମେବ ନ ସତ୍କବିତାୟାଂ କୌଶଲ୍ୟମିତି ଭାବଃ । ମହାହଂକାର କଥନାୟ ରାଜୋପମା, ତଥାହଂକାରାଦେବ ତସ୍ୟ କବିରାଜପଦବୀ ମାମ୍ନାତବାନ୍ ॥ ସତ୍କବି ମଧ୍ୟେ ତସ୍ୟ ଗଣନାପି ନେତି ଭାବଃ ॥

ଗିରାଂ ବଚସାଂ ସନ୍ଦର୍ଭଶୁଦ୍ଧିଃ ଗୁଣାଲଙ୍କାରସଂପନ୍ନ ଗ୍ରନ୍ଥରଚନା ବିଶେଷଂ ଜୟଦେବ ଏବ ଜାନୀତେ ନାନ୍ୟଃ । ଅତୋଽନ୍ୟକାବ୍ୟ ଶ୍ରବଣେ ତଥା ନ ସଂତୋଷୋ ଯଥା ଜୟଦେବ କବିତା ଶ୍ରବଣେନେତ୍ୟେତଦେବ ଶ୍ରୋତବ୍ୟମିତି ଭାବଃ । (୯)

ମହାମହୋପାଧ୍ୟାୟ ଶଙ୍କର ମିଶ୍ରଙ୍କ ଟୀକାର ସାରମର୍ମ ହେଉଛି— "ଲକ୍ଷ୍ମଣ ସେନଙ୍କ ଅମାତ୍ୟ ଉମାପତିଧରଙ୍କ ବାକ୍‌ମାଧୁର୍ଯ୍ୟରହିତ ଶବ୍ଦାର୍ଥଗୁଣଶୂନ୍ୟ କାବ୍ୟ ସହୃଦୟମାନଙ୍କ ଆହ୍ଲାଦଜନକ ନ ଥିଲା । ଶରଣଙ୍କ କାବ୍ୟ କ୍ଲିଷ୍ଟ ଓ ପ୍ରସାଦଗୁଣ ରହିତ ହୋଇଥିବାରୁ ପଣ୍ଡିତମାନଙ୍କ ଚିତ୍ତବିନୋଦନ ପାଇଁ ଅନୁପଯୁକ୍ତ ଥିଲା । ଇତର ବିଦ୍ୟାରେ ପାଣ୍ଡିତ୍ୟ ଯୋଗୁଁ ଆଚାର୍ଯ୍ୟ ପଦବୀ ମଣ୍ଡିତ ଗୋବର୍ଦ୍ଧନ ଶୃଙ୍ଗାରରସ କାବ୍ୟ ରଚନାରେ ଅପ୍ରତିଦ୍ୱନ୍ଦୀ ଥିଲେମଧ୍ୟ ରସାନ୍ତର ବର୍ଣ୍ଣନା ଓ ମାଧୁର୍ଯ୍ୟ ଗୁଣସମ୍ପନ୍ନ ପଦ ରଚନାରେ ସେ ଅସମର୍ଥ ଥିଲେ । ତେଣୁ ତାଙ୍କୁ ଉପହାସରେ ଆଚାର୍ଯ୍ୟ ବୋଲି କୁହାଯାଉଥିଲା । ଶ୍ରୁତିଧର ଧୋୟୀଙ୍କ ସତ୍କାବ୍ୟ ରଚନାରେ କୁଶଳତାର ଅଭାବ ଯୋଗୁଁ ତାଙ୍କଦ୍ୱାରା କବିରାଜ ପଦବୀ ଧାରଣ କେବଳ ଅହଂକାର ସୂଚକ ଥିଲା । ଅର୍ଥାତ୍ ସେ କବିରାଜ ବିରୁଦ ମଣ୍ଡିତ ହେବାପାଇଁ ଯୋଗ୍ୟ ନ ଥିଲେ । କେବଳ ଜୟଦେବ-

---

(୯) ବମ୍ବେ ନିର୍ଣ୍ଣୟ ସାଗର ପ୍ରେସ ଦ୍ୱାରା ମୁଦ୍ରିତ ଓ ପ୍ରକାଶିତ ରାଣା କୁମ୍ଭଙ୍କ 'ରସିକ ପ୍ରିୟା ଟୀକା' ଓ ମହାମହୋପାଧ୍ୟାୟ ଶଙ୍କର ମିଶ୍ରଙ୍କ 'ରସମଞ୍ଜରୀ' ଟୀକାଯୁକ୍ତ ଗୀତଗୋବିନ୍ଦ, ପୃ ୯-୧୦

ଙ୍କର ଗୁଣାଳଙ୍କାର ସଂପନ୍ନ, ସରସ ଓ ଶୁଦ୍ଧ ସନ୍ଦର୍ଭ ରଚନାରେ ଅଦ୍ୱିତୀୟ ପ୍ରତିଭା ଥିବାରୁ ତାଙ୍କ କବିତା ଶ୍ରବଣରେ ଯେପରି ସନ୍ତୋଷ ଜାତହୁଏ, ଅନ୍ୟ କବିଙ୍କ ରଚନା ଶ୍ରବଣରେ ସେପରି ହୁଏ ନାହିଁ । ତେଣୁ ଜୟଦେବଙ୍କ କବିତା ସର୍ବଦା ଶ୍ରବଣୀୟ ।"

ଲକ୍ଷ୍ମଣ ସେନଙ୍କ ଦ୍ୱାରା ଅମାତ୍ୟ ପଦରେ ଅଧିଷ୍ଠିତ କବି ଉମାପତିଧର ଓ ତାଙ୍କ ଠାରୁ କବିରାଜ ପଦବୀ ପ୍ରାପ୍ତ ଧୋୟୀଙ୍କ ପ୍ରତି ଜୟଦେବଙ୍କର ଏପରି ମର୍ମନ୍ତୁଦ କଟୂକ୍ତି ପ୍ରୟୋଗ ନିଶ୍ଚିତ ଭାବରେ ଲକ୍ଷ୍ମଣ ସେନଙ୍କ ରାଜସଭା ପ୍ରତି ଶ୍ରୀ ଜୟଦେବଙ୍କ ତାଚ୍ଛଲ୍ୟ ସୂଚକ । ଏ ପରିସ୍ଥିତିରେ ତାଙ୍କୁ ଲକ୍ଷ୍ମଣ ସେନଙ୍କ ସଭାକବି ବୋଲି କହିବା ବିଡ଼ମ୍ବନା ମାତ୍ର ।

## ଚୈତନ୍ୟ ଦାସଙ୍କ 'ବାଳବୋଧିନୀ ଟୀକା'—

ମହାପ୍ରଭୁ ଶ୍ରୀଚୈତନ୍ୟଙ୍କ ପରମ ଭକ୍ତ ପୂଜାରୀ ଗୋସ୍ୱାମୀ ନାମରେ ବିଖ୍ୟାତ ବଙ୍ଗୀୟ ବୈଷ୍ଣବ କବି ଚୈତନ୍ୟ ଦାସଙ୍କ 'ବାଳବୋଧିନୀ ଟୀକା'ରେ ମଧ୍ୟ ପୂର୍ବ ସୂତ୍ରମାନଙ୍କ ବ୍ୟାଖ୍ୟାନ ସମର୍ଥିତ ହୋଇଛି । ଯଥା—

"ଉମାପତି ଧର ନାମା କବିଃ ବାଚଃ ପଲ୍ଲବୟତି ବିସ୍ତରୟତି ମାତ୍ରଂ, ନତୁ କାବ୍ୟଗୁଣଯୁକ୍ତାଃ କରୋତି । ପଲ୍ଲବ ଗ୍ରାହିତା ଦୋଷୋଽସ୍ୟ ।

ଶରଣନାମା କବିଃ ଦୁରୂହସ୍ୟ ଦୁର୍ବୋଧସ୍ୟ କାବ୍ୟସ୍ୟ ଦ୍ରୁତଂ ଶୀଘ୍ରରଚନେ ଶ୍ଲାଘ୍ୟଃ, ନତୁ ପ୍ରସାଦାଦି ଗୁଣଯୁକ୍ତଂ ।

ଶୃଙ୍ଗାରଏବୋତ୍ତରଃ ଶ୍ରେଷ୍ଠୋ ଯତ୍ର ତସ୍ୟ ସତ୍ପ୍ରମେୟସ୍ୟ ସାମାନ୍ୟନାୟକ ନାୟିକା ପ୍ରାୟ ବର୍ଣ୍ଣନସ୍ୟ ରଚନୈ ଆଚାର୍ଯ୍ୟ ଗୋବର୍ଦ୍ଧନସ୍ୟ ସ୍ପର୍ଦ୍ଧୀ କୋଽପି ନ ବିଶ୍ରୁତଃ । ନ ରସାନ୍ତରବର୍ଣ୍ଣନୈଃ ॥

ଧୋୟୀନାମା କବିରାଜଃ ଶ୍ରୁତିଧରଃ ପ୍ରସିଦ୍ଧଃ । ଶ୍ରବଣମାତ୍ରେଣ ଗ୍ରନ୍ଥାଧିକାରୀ, ନତୁ ସ୍ୱୟଂ କବିତ୍ୱ୍ୟ ॥

ଶବ୍ଦଂ ଶୁଦ୍ଧିଂ ଶୋଧନ ପ୍ରକାରଂ ଜୟଦେବ ଏବ ଜାନାତି" (୧୦)

ସମଗ୍ର ବଙ୍ଗଦେଶରେ ଲବ୍ଧପ୍ରତିଷ୍ଠ ଶ୍ରୀଚୈତନ୍ୟ ଦାସ ମଧ୍ୟ ଉକ୍ତ ଶ୍ଳୋକର ବ୍ୟାଖ୍ୟାନରେ ଉମାପତିଧରଙ୍କ ପଲ୍ଲବଗ୍ରାହିତା, ଶରଣଙ୍କ କବିତାର ଦୁର୍ବୋଧ୍ୟତା, ଗୋବର୍ଦ୍ଧନ ଆଚାର୍ଯ୍ୟଙ୍କ ଶୃଙ୍ଗାରେତର ରସ ପ୍ରକଟନରେ ଅସାମର୍ଥ୍ୟ ଏବଂ ଧୋୟୀଙ୍କ ଶ୍ରୁତିଧରତ୍ୱ ଓ ସ୍ୱୟଂ କବିତ୍ୱର ଅଭାବ ଉଲ୍ଲେଖ କରିଛନ୍ତି ।

---

(୧୦) ଶ୍ରୀ ହରେକୃଷ୍ଣ ମୁଖୋପାଧ୍ୟାୟଙ୍କ ଦ୍ୱାରା ବଙ୍ଗାକ୍ଷରରେ ସଂପାଦିତ ଓ ମୁଦ୍ରିତ, ପୃ ୬-୭

ଶ୍ଳୋକବର୍ଣ୍ଣିତ ପାଞ୍ଚଜଣ କବିଙ୍କ ବିଷୟ ଦୂରେ ଥାଉ, ସେଥିମଧ୍ୟରୁ ଜଣକୁ ମଧ୍ୟ ବଙ୍ଗସମ୍ରାଟ୍ ଲକ୍ଷ୍ମଣ ସେନଙ୍କ ସଭାମଣ୍ଡନ କରୁଥିବା ଚୈତନ୍ୟ ଦାସ ଲେଖି ନାହାନ୍ତି । ତେଣୁ ଉକ୍ତ ଶ୍ଳୋକର ଏବଂବିଧ ବ୍ୟାଖ୍ୟାନ ଦୃଷ୍ଟେ, ଏଥିରେ ବର୍ଣ୍ଣିତ କବି ପଞ୍ଚକଙ୍କୁ ଲକ୍ଷ୍ମଣ ସେନଙ୍କ ସଭାକବି ରୂପେ ନିର୍ଦ୍ଧାରଣ କରିବା ସଂପୂର୍ଣ୍ଣ ଭିତ୍ତିହୀନ ।

## ଲକ୍ଷ୍ମଣ ଭଟ୍ଟଙ୍କ 'ଶ୍ରୁତିରଞ୍ଜନୀ ଟୀକା' —

ସଙ୍କଳିତ ବିଜୟନଗର ରାଜ୍ୟର ରାଜା ତିରୁମଲ୍ଲ ରାୟ (୧୫୬୫-୧୫୮୦ ଖ୍ରୀଷ୍ଟାବ୍ଦ)ଙ୍କ ସଭାକବି ପେଦ୍ଦକୁରି ଲକ୍ଷ୍ମଣ ବା ଲକ୍ଷ୍ମୀଧର ସୂରି ଶ୍ରୀ ଗୀତଗୋବିନ୍ଦର 'ଶ୍ରୁତିରଞ୍ଜନୀ' ନାମକ ଏକ ଟୀକା ରଚନା କରିଥିଲେ । ସମଗ୍ର ଦକ୍ଷିଣ ଭାରତରେ ଏହାର ବିଶେଷ ପ୍ରଚାର ଥିଲା । ଏଥିରେ 'ବାଚଃ ପଲ୍ଲବୟତି' ଶ୍ଳୋକର ପୂର୍ବବ୍ୟାଖ୍ୟାନ୍ତ ଶେଷାଂଶ ନିମ୍ନରେ ଉଦ୍ଧାର କରାଗଲା—

"ଜୟଦେବସ୍ୟୈବ ସରସ୍ୱତୀ ଶ୍ରୋତବ୍ୟା ନତ୍ୱିମାପତିଧରପ୍ରଭୃତୀନା ମିତିଭାବଃ, ଅନ୍ୟ୍ୟାନ୍ତରଂ ବା ଉମାପତିଧରଃ ବାଚଃ ପଲ୍ଲବୟନ୍ତି, ଶରଣଃ ଦୂରୂହାଦ୍ରୁତେ ଶୃଙ୍ଗାରୋତ୍ତର ସତ୍ପ୍ରମେୟ ରଚନୈ ଶ୍ଳାଘ୍ୟଃ, ଅର୍ଥ ନିର୍ମାଣେ ଚତୁରଃ; ନତ୍ୱଳଙ୍କାରାଦି ନିର୍ମାଣେ ଚତୁରଃ ॥ ଗୋବର୍ଦ୍ଧନ ସ୍ପର୍ଦ୍ଧୀ ବିରୋଧୀ ଶ୍ରୁତିଧରଃ ତଥାପି । ଧୋୟୀ କବି ନ ବିଶ୍ରୁତଃ ॥ ସନ୍ଦର୍ଭସ୍ୟ ରସଗୁଣାଲଂକାର ବାକ୍ୟଧର୍ମ ସଂପଦସ୍ୟ ଶୁଦ୍ଧିଂ ସମ୍ୟକ୍ କାବ୍ୟ ଘଟନାସାମଗ୍ରୀଂ ଜୟଦେବ ଏବ ଜାନୀତେ, ନାନ୍ୟ ଇତ୍ୟାଦିପ୍ରୟୁଃ ॥ ଅତସ୍ତ ତସ୍ୟୈବ ବାଣୀ ଶ୍ରୋତବ୍ୟା, ନାନ୍ୟେଷାମିତିଭାବଃ; ଅତ୍ର ଜୟଦେବ କବେ ଉମାପତି ଧର ପ୍ରଭୃତିଭ୍ୟଃ କବିଭ୍ୟଃ ରୌପମ୍ୟାକ୍ଷେପ ପୂର୍ବକଂ ବ୍ୟତିରେକ ପ୍ରତିପାଦନାଦ୍ ବ୍ୟତିରେକାଲଙ୍କାରଃ" (୧୧) ।

ଉତ୍କଳୀୟ ଧନଞ୍ଜୟ ବିପ୍ର କୃତ 'ସର୍ବାଙ୍ଗସୁନ୍ଦରୀ ଟୀକା'ରେ ମଧ୍ୟ ଏହିପରି ନିନ୍ଦାବାଚକ ଅର୍ଥରେ ଉକ୍ତ ଶ୍ଳୋକର ବ୍ୟାଖ୍ୟାନ ପ୍ରଦତ୍ତ ହୋଇଛି ।

## ଲକ୍ଷ୍ମଣସେନଙ୍କ ସଭାକବି-ଗଣ—

ବଙ୍ଗର ଶେଷ ସ୍ୱାଧୀନ ହିନ୍ଦୁ ସମ୍ରାଟ ଲକ୍ଷ୍ମଣ ସେନଙ୍କ ସଭା କେଉଁ କେଉଁ ପ୍ରଖ୍ୟାତ ପଣ୍ଡିତଙ୍କ ଦ୍ୱାରା ମଣ୍ଡିତ ଥିଲା ସେ ସମ୍ପର୍କରେ ବିଭିନ୍ନ ସୂତ୍ରରୁ ଉପଲବ୍ଧ ତଥ୍ୟ ପରୀକ୍ଷା କଲେ ନିର୍ବିବାଦରେ ସ୍ଥିର କରାଯାଇପାରେ ଯେ, ଶ୍ରୀ ଗୀତଗୋବିନ୍ଦକାର କବିରାଜ ଜୟଦେବ ଓ ଆଚାର୍ଯ୍ୟ ଗୋବର୍ଦ୍ଧନଙ୍କର ସେନ ରାଜସଭା ସହିତ କୌଣସି ସଂପର୍କ ନଥିଲା । ତେଣୁ ପ୍ରତ୍ୟେକ କବି ପଣ୍ଡିତଙ୍କ ସମ୍ବନ୍ଧରେ ନିମ୍ନରେ ସଂକ୍ଷେପରେ ଆଲୋଚନା କରାଗଲା ।

---

(୧୧) ମାନ୍ଦ୍ରାଜସ୍ଥ 'ପ୍ରାଚ୍ୟ ବିଦ୍ୟାପୋଥି ଭଣ୍ଡାର'ରୁ ଆନୀତ ପ୍ରତିଲିପିରୁ ଉଦ୍ଧୃତ ।

**ଉମାପତିଧର** —

ବଙ୍ଗର ସେନବଂଶୀୟ ଅଧିପତି ବିଜୟ ସେନଙ୍କ **ଦେଓପାଡ଼ା ପ୍ରଶସ୍ତିର** ରଚୟିତା ଉମାପତିଧର ଓ ଶ୍ରୀ ଗୀତଗୋବିନ୍ଦ ଶ୍ଳୋକ ବର୍ଣ୍ଣିତ ଉମାପତିଧର ଏକ ଓ ଅଭିନ୍ନ । ଏହି ପ୍ରଶସ୍ତିର ଶେଷ ଆଡକୁ ଥିବା ନିମ୍ନୋକ୍ତ ଶ୍ଳୋକରେ ଉମାପତିଧରଙ୍କ ଉଲ୍ଲେଖ ଦେଖାଯାଏ ।

"ନିର୍ଣ୍ଣିକ୍ତ ସେନକୁଳ ଭୂପତିମୌକ୍ତିକାନା-
ମଗ୍ରନ୍ଥିଳଗ୍ରଥନ ପଟୁଳସ୍ତ ବଲଃ ।
ଏଷା କବେଃ ପଦପଦାର୍ଥବିଚାରଶୁଦ୍ଧ-
ବୁଦ୍ଧେଃ **ରୁମାପତିଧରସ୍ୟ** କୃତିଃ ପ୍ରଶସ୍ତିଃ ॥" (୧୨)

ଏହି ପ୍ରଶସ୍ତିରେ ଉତ୍କଳର ଗଙ୍ଗ ସମ୍ରାଟ୍ ରାଘବଦେବ (୧୧୫୬-୧୧୭୦ ଖ୍ରୀଷ୍ଟାବ୍ଦ)ଙ୍କ ସହିତ ଯୁଦ୍ଧର ବର୍ଣ୍ଣନା ଥିବାରୁ ଏବଂ ବିଜୟ ସେନଙ୍କ ୧୧୫୮ ଖ୍ରୀଷ୍ଟାବ୍ଦରେ ମୃତ୍ୟୁ ଘଟିଥିବାରୁ (୧୩) ଏହି ପ୍ରଶସ୍ତି ୧୧୫୬ରୁ ୧୧୫୮ ଖ୍ରୀଷ୍ଟାବ୍ଦ ମଧ୍ୟରେ ରଚିତ ହୋଇଥିଲା । ଏହି ପ୍ରଶସ୍ତିର ୭, ୨୩, ୨୪ ଓ ୩୦ ସଂଖ୍ୟକ ଚାରୋଟି ଶ୍ଳୋକ ଲକ୍ଷ୍ମଣ ସେନଙ୍କ ସଭାକବି ଶ୍ରୀଧର ଦାସଙ୍କ **"ସଦୁକ୍ତି କର୍ଣ୍ଣାମୃତମ୍"**ରେ ଉଦ୍ଧୃତ ହୋଇଛି । (୧୪) ଏଥିରେ ଉଦ୍ଧୃତ ଉମାପତିଧରଙ୍କ ଅନ୍ୟ ଏକ ଶ୍ଳୋକ ଲକ୍ଷ୍ମଣ ସେନଙ୍କ **ମାଧାଇ ନଗର ତାମ୍ରଶାସନସ୍ଥ** ଚତୁର୍ଥ ଶ୍ଳୋକର ଅନୁରୂପ । ତେଣୁ ଉମାପତି ଧର ଲକ୍ଷ୍ମଣ ସେନଙ୍କ ରାଜତ୍ୱ ଆରମ୍ଭରେ ତାଙ୍କ ସଭା ମଣ୍ଡନ କରୁଥିଲେ । ଦେଓପାଡ଼ା ପ୍ରଶସ୍ତି (୧୧୫୮) ଓ ମାଧାଇ ନଗର ତାମ୍ରଶାସନ (୧୧୭୯) ମଧ୍ୟରେ ବ୍ୟବଧାନ ୨୧ ବର୍ଷ ହୋଇଥିବାରୁ ଉମାପତିଧର ବିଜୟ ସେନ, ତତ୍ ପୁତ୍ର ବଲ୍ଲାଳ ସେନ ଓ ତାଙ୍କ ମୃତ୍ୟୁ ପରେ କଟୁକାଳ ବଲ୍ଲାଳ ସେନଙ୍କ ପୁତ୍ର ଲକ୍ଷ୍ମଣ ସେନଙ୍କ ସଭା ମଣ୍ଡନ କରୁଥିବା ସ୍ଥିର କରାଯାଇପାରେ । (୧୫)

ଜୈନ ପଣ୍ଡିତ ମେରୁତୁଙ୍ଗ ଆଚାର୍ଯ୍ୟଙ୍କ ଦ୍ୱାରା ୧୩୬୧ ବିକ୍ରମ ସମ୍ବତ୍ ବା ୧୩୦୪ ଖ୍ରୀଷ୍ଟାବ୍ଦରେ ରଚିତ **'ପ୍ରବନ୍ଧ ଚିନ୍ତାମଣି'**ର ପଞ୍ଚମ ଅଧ୍ୟାୟରେ ବର୍ଣ୍ଣିତ ଅଛି ଯେ

---

(୧୨) 'Inscriptions of Bengal' Vol III, p. 49.
(୧୩) History of Bengal published by the Dacca University.
(୧୪) J.P.A.S. Bengal, Vol II, No. 5, 1906, p. 160.
(୧୫) 'Inscriptions of Bengal', Vol. III.

ଗୌଡ଼ ରାଜା ଲକ୍ଷ୍ମଣ ସେନ 'ଲକ୍ଷ୍ମଣାବତୀ' ରାଜଧାନୀରେ ଦୀର୍ଘକାଳ ରାଜତ୍ୱ କରିଥିଲେ ଏବଂ ତାଙ୍କ ମନ୍ତ୍ରୀ ଉମାପତିଙ୍କର ଅତ୍ୟନ୍ତ ବୁଦ୍ଧିମାନ ଥିଲେ । ଯଥା "ଅଥ ଗୌଡ଼ଦେଶେ ଲକ୍ଷ୍ମଣାବତ୍ୟାଂ ନଗର୍ଯ୍ୟାଂ ଶ୍ରୀ ଲକ୍ଷ୍ମଣସେନୋ ନାମ ନୃପତି ରୁମାପତିଧରନାମା ସଚିବେନ ସର୍ବବୁଦ୍ଧିନିଧାନେନ ଚନ୍ତ୍ୟମାନଶ୍ଚିରଂ ରାଜ୍ୟଂ ଚକାର" । (୧୬)

ମହାମହୋପାଧ୍ୟାୟ ଶ୍ରୀ ଶଙ୍କର ମିଶ୍ର ତତ୍କୃତ ଶ୍ରୀଗୀତଗୋବିନ୍ଦର 'ରସ ମଞ୍ଜରୀ ଟୀକା'ରେ "ବାଚଃ ପଲ୍ଲବୟତି......" ଶ୍ଳୋକର ବ୍ୟାଖ୍ୟାନ ପ୍ରସଙ୍ଗରେ ଲେଖିଛନ୍ତି—

'ଉମାପତିଧର ନାମ୍ନା ଲକ୍ଷ୍ମଣସେନାମାତ୍ୟୋ ବାଚଃ ପଲ୍ଲବୟତି ବିସ୍ତାରୟତି" ଏହି ସମସ୍ତ ପ୍ରମାଣ ବଳରେ ଉମାପତିଧର ଲକ୍ଷ୍ମଣ ସେନଙ୍କ ରାଜତ୍ୱ ଆରମ୍ଭରେ ତାଙ୍କର ଅମାତ୍ୟ ଥିବା ନିର୍ବିବାଦରେ ସ୍ଥିର କରାଯାଇପାରେ ।

**ଶରଣ—** କବି ଶରଣ କୃତ କୌଣସି ରଚନା ଏପର୍ଯ୍ୟନ୍ତ ଆବିଷ୍କୃତ ହୋଇନାହିଁ । 'ସଦୁକ୍ତି କର୍ଣ୍ଣାମୃତମ୍' ଉଦ୍ଧୃତ ଶରଣଙ୍କ ଗୋଟିଏ ଶ୍ଳୋକରେ (୧୭) ସେନ ରାଜାଙ୍କ ପ୍ରଶସ୍ତି ବର୍ଣ୍ଣିତ ହୋଇଥିବାର ଦେଖାଯାଏ । କିନ୍ତୁ ଏଥିରେ ରାଜାଙ୍କ ନାମ ଦିଆଯାଇ ନ ଥିବାରୁ ସେ କେଉଁ ସେନରାଜାଙ୍କ ସଭାମଣ୍ଡନ କରିଥିଲେ ତାହା ନିର୍ଦ୍ଦିଷ୍ଟ ରୂପେ କୁହାଯାଇ ପାରିବ ନାହିଁ ।

**ଗୋବର୍ଦ୍ଧନ ଆଚାର୍ଯ୍ୟ—** ଗୋବର୍ଦ୍ଧନ ଆଚାର୍ଯ୍ୟ ସ୍ୱ 'ଆର୍ଯ୍ୟାସପ୍ତଶତୀ' ଗ୍ରନ୍ଥର ଆଦ୍ୟରେ ପୂର୍ବ ସୂରିମାନଙ୍କ ମାହାତ୍ମ୍ୟ କୀର୍ତ୍ତନ ପ୍ରସଙ୍ଗରେ ଜଣେ 'ସେନକୁଳ-ତିଳକ ଭୂପତି'ଙ୍କ କବିତ୍ୱକୁ ପ୍ରଶଂସା କରିଛନ୍ତି । ଯଥା—

"ସକଳକଳାଃକଳୟିତୁଂ ପ୍ରଭୁଃ ପ୍ରବନ୍ଧସ୍ୟତାତଂ **କୁମୁଦବନବନ୍ଧୋଃ**
**ସେନ-କୁଳ-ତିଳକ ଭୂପତିରେକୋ** ରାକାପ୍ରଦୋଷଶ୍ଚ" (୩୯ ଶ୍ଳୋକ)

ଉଦ୍ଧୃତ ଶ୍ଳୋକରେ ପ୍ରଶଂସିତ 'ସେନକୁଳତିଳକ ଭୂପତି' ବଙ୍ଗାଧିପ ଲକ୍ଷ୍ମଣ ସେନ ନୁହଁନ୍ତି । ସେ ହେଉଛନ୍ତି, ପ୍ରସିଦ୍ଧ ପ୍ରାକୃତ କାବ୍ୟ 'ସେତୁବନ୍ଧ' ବା 'ରାବଣ ବାହୋ'ର ପ୍ରଣେତା ବକାଟକ ବଂଶୀୟ ପ୍ରସିଦ୍ଧ ନରପତି ପ୍ରବର ସେନ ଆଚାର୍ଯ୍ୟ ଦଣ୍ଡୀ ତତ୍କୃତ **କାବ୍ୟାଦର୍ଶ** ନାମକ ପ୍ରସିଦ୍ଧ ଅଳଙ୍କାର ଗ୍ରନ୍ଥ ଓ **ଅବନ୍ତୀ ସୁନ୍ଦରୀ କଥା**ରେ ପ୍ରବର ସେନ କୃତ ସେତୁବନ୍ଧର ଭୂୟସୀ ପ୍ରଶଂସା କରିଛନ୍ତି । ଯଥା—

---

(୧୬) ମେରୁତୁଙ୍ଗ କୃତ 'ପ୍ରବନ୍ଧ ଚନ୍ତାମଣି'
(୧୭) 'ସଦୁକ୍ତିକର୍ଣ୍ଣାମୃତମ୍'...

**ସେତୁରୂପେଣ** ତସ୍ମୁନ୍ତୋ ଲୋକେ ସଦ୍‌ବସ୍ତୁଦର୍ଶିନଃ
ଷଟ୍‌ପଞ୍ଚାଶତ୍‌ ପ୍ରମାଣତ୍ୱଂ ଗତାନଃ କବିପୁଙ୍ଗବାଃ ॥
(ଅବନ୍ତୀ ସୁନ୍ଦରୀ କଥା)

ମହାରାଷ୍ଟ୍ରାଶ୍ରୟାଂ ଭାଷାଂ ପ୍ରକୃଷ୍ଟଂ ପ୍ରାକୃତଂ ବିଦୁଃ
ସାଗରଂ ସୂକ୍ତିରତ୍ନାନାଂ **ସେତୁବନ୍ଧାଦ୍ଧି** ଯନ୍ମୟମ୍‌
(କାବ୍ୟାଦର୍ଶ)

କବିସାର୍ବଭୌମ ବାଣଭଟ୍ଟ ତଦୀୟ 'ହର୍ଷଚରିତ'ରେ ପ୍ରବର ସେନଙ୍କ କୀର୍ତ୍ତି ଗାନ କରିଛନ୍ତି ।

କୀର୍ତ୍ତିଃ **ପ୍ରବରସେନସ୍ୟ** ପ୍ରୟାତା **କୁମୁଦୋଜ୍ଜ୍ୱଳା**
ସାଗରସ୍ୟ ପରଂପାରଂ କପିସେନେବ **ସେତୁନା**''
(ହର୍ଷଚରିତ, ପ୍ରଥମୋଚ୍ଛ୍ୱାସ, ୧୪ଶ ଶ୍ଳୋକ)

ପ୍ରବରସେନସ୍ୟ କୁମୁଦୋଜ୍ଜ୍ୱଳା (କୁମୁଦବତ୍‌ ଉଜ୍ଜ୍ୱଳା) କୀର୍ତ୍ତିଃ
କପିସେନା ସେତୁନା ସାଗରସ୍ୟ ପରଂ ପାରମିବ ପ୍ରୟାତା ।

ଏଠାରେ କୁମୁଦ ପଦ ବାନର ସେନାପତି କୁମୁଦ ଓ ପୁଷ୍ପ ଦୁଇ ଅର୍ଥରେ ବ୍ୟବହୃତ ହୋଇଅଛି । ସେତୁ ମଧ୍ୟ ଦ୍ୱିଅର୍ଥ ବୋଧକ, ଯଥା ସେତୁବନ୍ଧ ଓ ସେତୁବନ୍ଧ କାବ୍ୟ ।

ଅର୍ଥାତ୍‌ ସେନାପତି କୁମୁଦଙ୍କ ଦ୍ୱାରା ପରିଚାଳିତ କପିସେନା ସେତୁ ସାହାଯ୍ୟରେ ସାଗର ପାରହୋଇ ଲଙ୍କାରେ ପ୍ରବେଶ କରିଥିଲା ପରି ସେତୁବନ୍ଧ କାବ୍ୟ ର[illegible]ନା ଯୋଗୁଁ ପ୍ରବର ସେନଙ୍କ ଶୁଭ୍ରଯଶଃ ସାଗର ପାରରେ ମଧ୍ୟ ବ୍ୟାପିଯାଇଥିଲା । ଗୋବର୍ଦ୍ଧନ ଆଚାର୍ଯ୍ୟ ବାଣଭଟ୍ଟଙ୍କ ଦ୍ୱାରା ବ୍ୟବହୃତ 'କୁମୁଦୋଜ୍ଜ୍ୱଳା' ପଦକୁ 'କୁମୁଦବନବନ୍ଧୋଃ' ଭାବରେ ଉଦ୍ଧୃତ ଶ୍ଳୋକରେ ବ୍ୟବହାର କରିଛନ୍ତି । ସଂସ୍କୃତ ସାହିତ୍ୟର ଦୁଇଜଣ ପ୍ରାଚୀନ ମହାରଥୀ ଆଚାର୍ଯ୍ୟ ଦଣ୍ଡୀ ଓ ବାଣଭଟ୍ଟଙ୍କ ଦ୍ୱାରା ପ୍ରବର ସେନଙ୍କ ଅକ୍ଷର କୀର୍ତ୍ତିର ଏପରି ଉଚ୍ଛ୍ୱସିତ ପ୍ରଶଂସା ସତ୍ତ୍ୱେ ଗୋବର୍ଦ୍ଧନ ଆଚାର୍ଯ୍ୟଙ୍କ ଦ୍ୱାରା ପ୍ରଶଂସିତ ସେନକୁଳତିଳକ ଭୂପତିଙ୍କୁ କୌଣସି ଗ୍ରନ୍ଥ ରଚନା କରି ନ ଥିବା ଲକ୍ଷ୍ମଣ ସେନଙ୍କ ସହିତ ଚିହ୍ନିତ କରିବା ଐତିହାସିକ ସତ୍ୟର ଘୋର ଅପଳାପ ମାତ୍ର ।

'ଆର୍ଯ୍ୟାସପ୍ତଶତୀ'ର ମହାରାଷ୍ଟ୍ରୀୟ ଅନନ୍ତ ପଣ୍ଡିତ କୃତ **ବ୍ୟଙ୍ଗାର୍ଥଦୀପିକା** ନାମକ ପ୍ରସିଦ୍ଧ ଟୀକାରେ ମଧ୍ୟ ଏହା ସମର୍ଥିତ ହୋଇଛି । ଯଥା—

"କୁମୁଦବନବନ୍ଧୋଶ୍ଚନ୍ଦ୍ରସ୍ୟେତ ଷୋଡ଼ଶକଳାଃକଳୟିତୁଂ ବକ୍ତୁଂ, କର୍ତ୍ତୁଂ ବା ପକ୍ଷେ ଦର୍ଶୟିତୁଂ ସେନକୁଳତିଳକ ଭୂପତିଃ **ସେତୁକର୍ତ୍ତା ପ୍ରବରସେନନାମା ରାଜା,** ପୌର୍ଣ୍ଣମାସୀପ୍ରଦୋଷ ଏକଃ ପ୍ରଭୁଃ ସମର୍ଥଃ, ନାନ୍ୟ ଇତ୍ୟର୍ଥଃ'' (୧୮)

(୧୮) ଚୌଖମ୍ବା ସଂସ୍କୃତ ସିରିଜରେ ପ୍ରକାଶିତ ଆର୍ଯ୍ୟାଶପ୍ତଶତୀ

'ଆର୍ଯ୍ୟାସପ୍ତଶତୀ' ରଚିତ ହେବାର ଅଳ୍ପ କେତେବର୍ଷ ମଧ୍ୟରେ ଏହାର ଖ୍ୟାତି ସୁଦୂର ମାଳବ ରାଜ୍ୟରେ ବ୍ୟାପିଯାଇଥିବାରୁ ସେଠାର ରାଜା ଅର୍ଜ୍ଜୁନବର୍ମଦେବ (୧୨୧୧—୧୨୧୫ ଖ୍ରୀଷ୍ଟାବ୍ଦ) ସ୍ୱକୃତ 'ଅମରୁଶତକମ୍' ଟୀକାରେ ଏହାର ଗୋଟିଏ ଶ୍ଳୋକ "ଅନ୍ୟମୁଖେଦୁର୍ବା······ ଧୂର୍ତ୍ତଃ" ଉଦ୍ଧାର କରିଥିଲେ । (୧୯) କିନ୍ତୁ ଏହାର ଛଅବର୍ଷ ପୂର୍ବରୁ ୧୨୦୫ ଖ୍ରୀଷ୍ଟାବ୍ଦରେ ଲକ୍ଷ୍ମଣ ସେନଙ୍କ ସଭାକବି ଶ୍ରୀଧର ଦାସଙ୍କ ଦ୍ୱାରା ରଚିତ 'ସଦୁକ୍ତିକର୍ଣ୍ଣାମୃତମ୍'ରେ ଆର୍ଯ୍ୟାସପ୍ତଶତୀର କୌଣସି ଶ୍ଳୋକ ଉଦ୍ଧୃତ ହୋଇଥିବାର ଦେଖାଯାଏ ନାହିଁ । ଏହା ମଧ୍ୟ ବହୁ ପ୍ରସିଦ୍ଧ ଅଧ୍ୟାପକଙ୍କ ସହ-ଯୋଗିତାରେ ରଚିତ ବାଂଗଲା ଇତିହାସରେ ସ୍ୱୀକୃତ ହୋଇଅଛି ।

"None of the stanzas of the Arya Saptasati is found quoted in the Saduktikarnamrtam. A poet Govardhana is quoted six times, but these verses can not be traced in the Arya Saptasati". (୨୦)

ସୁଦୂର ମାଳବ ରାଜ୍ୟରେ ପ୍ରଚଳିତ ଗୋବର୍ଦ୍ଧନ ଆଚାର୍ଯ୍ୟଙ୍କ 'ଆର୍ଯ୍ୟାସପ୍ତଶତୀ' ସମ୍ବନ୍ଧରେ ଲକ୍ଷ୍ମଣ ସେନଙ୍କ ସଭାକବି ଶ୍ରୀଧର ଦାସଙ୍କ ଏପରି ଅଜ୍ଞତା ଦ୍ୱାରା ଉଭୟଙ୍କ ଏକ ରାଜସଭାରେ ଅବସ୍ଥିତି ଅପ୍ରମାଣିତ ହେଉଅଛି । ଅତଏବ ଗୋବର୍ଦ୍ଧନ ଲକ୍ଷ୍ମଣ ସେନଙ୍କ ସଭାକବି ନ ଥିଲେ ।

**ଉଦୟନ ଓ ଗୋବର୍ଦ୍ଧନ—** ଗୋବର୍ଦ୍ଧନ ଆଚାର୍ଯ୍ୟ ଗ୍ରନ୍ଥର ଶେଷ ଶ୍ଳୋକରେ ରବି-ଚନ୍ଦ୍ରପ୍ରତିମ ତାଙ୍କର ଦୁଇ କନିଷ୍ଠ ସହୋଦର ଉଦୟନ ଓ ବଳଭଦ୍ର ତାଙ୍କ ଗ୍ରନ୍ଥର ଉନ୍ନତି ବିଧାନରେ ବିଶେଷ ସାହାଯ୍ୟ କରିଥିବାରୁ କୃତଜ୍ଞତା ଜ୍ଞାପନ କରିଛନ୍ତି । ଯଥା—

**ଉଦୟନବଳଭଦ୍ରାଭ୍ୟାଂ** ସପ୍ତଶତୀଶିଷ୍ୟସୋଦରାଭ୍ୟାଂ ନଃ
ଦ୍ୟୌରିବ ରବିଚନ୍ଦ୍ରାଭ୍ୟାଂ ପ୍ରକାଶିତା ନିର୍ମଳୀ କୃତ୍ୟ (୭୦୧ ଶ୍ଳୋକ)
ଇତିଶ୍ରୀ କବିପଣ୍ଡିତ ଗୋବର୍ଦ୍ଧନାଚାର୍ଯ୍ୟ କୃତା ସପ୍ତଶତୀ ସମାପ୍ତା

ଗୋବର୍ଦ୍ଧନ ଆଚାର୍ଯ୍ୟଙ୍କ କନିଷ୍ଠ ସହୋଦର ଉଦୟନ ଆଚାର୍ଯ୍ୟ ପ୍ରାଚୀନ ଉତ୍କଳର ଜଣେ ଖ୍ୟାତନାମା କବିପଣ୍ଡିତ । ତାଙ୍କ ଦ୍ୱାରା ରଚିତ ନିଆଳୀସ୍ଥ

(୧୯) Proceedings of the Indian History Congress, Sixth Session, Aligarh, 1943, p 171

(୨୦) "History of Bengal"— Published by the Dacca University, Vol. I, p 307.

ଶୋଭନେଶ୍ୱର ମନ୍ଦିର ପ୍ରଶସ୍ତି (୨୧) ଓ ଭୁବନେଶ୍ୱରସ୍ଥ ମେଘେଶ୍ୱର ମନ୍ଦିର ପ୍ରଶସ୍ତି (୨୨) ପ୍ରକାଶିତ ଓ ବହୁ ସ୍ଥାନରେ ଆଲୋଚିତ ହୋଇଅଛି । ସେ ପ୍ରଥମେ ବ୍ରାହ୍ମଣ ବଂଶୀୟ ସାମନ୍ତ ରାଜା ବୈଦ୍ୟନାଥଙ୍କ ସଭାମଣ୍ଡନ କରୁଥିଲେ । ପରେ ସେ ଗଙ୍ଗସମ୍ରାଟ ରାଜରାଜ ଦେବ (୧୧୭୦ – ୧୧୯୦ ଖ୍ରୀଷ୍ଟାବ୍ଦ)ଙ୍କ ଶ୍ୟାଳକ ଓ ଭୁବନେଶ୍ୱରସ୍ଥ ସାମନ୍ତ ରାଜା ସ୍ୱପ୍ନେଶ୍ୱର ଦେବଙ୍କ ପୃଷ୍ଠପୋଷକତା ଲାଭ କରିଥିଲେ । ତତ୍କୃତ ମେଘେଶ୍ୱର ପ୍ରଶସ୍ତିରେ ଗଙ୍ଗବଂଶୀୟ ଚୋଳଗଙ୍ଗଦେବ, ରାଜରାଜଦେବ ଓ ଅନିୟଙ୍କ ଭୀମଦେବଙ୍କ ଗୌରବଗାଥା ଏକାଦଶଟି ଶ୍ଳୋକରେ ବର୍ଣ୍ଣିତ ହୋଇଥିବାରୁ ସେ ଗଙ୍ଗସମ୍ରାଟମାନଙ୍କ ଅନୁଗ୍ରହ ଭାଜନ ହୋଇଥିବାର ଜଣାଯାଏ ।

ଜନଶ୍ରୁତି ଅନୁଯାୟୀ ସେ ଶ୍ରୀଗୀତଗୋବିନ୍ଦକାର ଶ୍ରୀ ଜୟଦେବଙ୍କ ଜଣେ ଅନ୍ତରଙ୍ଗ ବନ୍ଧୁ ଥିଲେ । ସେ ଶ୍ରୀଗୀତଗୋବିନ୍ଦର **ଭାବବିଭାବିନୀ** ନାମ୍ନୀ ପ୍ରଥମ ଟୀକା ରଚନା କରିଥିଲେ । ଏହାର ଖଣ୍ଡିଏ ପୋଥି ମଧ୍ୟପ୍ରଦେଶର ଏକ ଗ୍ରାମବାସୀ ଏ:ଲକ୍ଷ୍ମଣ ସାଙ୍କ ଘରେ ଐତିହାସିକ ଡକ୍ଟର କିଲହର୍ଣ୍ଣ ୧୮୭୪ ମସିହାରେ ପରୀକ୍ଷା କରିଥିଲେ । (୨୩) ଓଡ଼ିଶାରୁ ଏହି ଟୀକାର ପୋଥି ପାଇବା ପାଇଁ ଗତ କୋଡ଼ିଏ ବର୍ଷ ହେଲା ସନ୍ଧାନ କରାଯାଉଛି ।

ସେ ଉତ୍କଳୀୟ କବିରାଜରାଜ ଶ୍ରୀହର୍ଷ କୃତ ନୈଷଧୀୟ ଚରିତ ମହାକାବ୍ୟର ମଧ୍ୟ ଗୋଟିଏ ଟୀକା ରଚନା କରିଥିଲେ । ସେ ନିଜର ନାମାନୁସାରେ ଏହାର ନାମ ଦେଇଥିଲେ 'ଉଦୟନକରୀ' । ଏହି ଟୀକାର ଖଣ୍ଡିଏ ପୋଥି 'ଅଯୋଧ୍ୟା' ପ୍ରଦେଶର

---

(୨୧) J,B.O,R.S. Vol. XVII, 1931, pp 119-135

(୨୨) J A.S. Bengal, Vol. LXVI, 1897. pp 18-24

(୨୩) Bhāva-vibuāvini by Udayana Acharya, K 62.
*"A Catalogue of Sanskrit Manuscripts existing in the Central Provinces."*
Edited by Dr. F. Keilhorn, Nagpur 1874
No of leaves 100. No of lines in each page 10.
No of slokas 1000. Age of the manuscript 150.
Where deposited and in whose possession —
S. Lakshmana

ଗୋଟିଏ ଗ୍ରାମରେ ୧୮୮୧ ଖ୍ରୀଷ୍ଟାବ୍ଦରେ ପରୀକ୍ଷିତ ହୋଇଥିଲା । (୨୪) ସୁଦୂର ମଧ୍ୟପ୍ରଦେଶ ଓ ଅଯୋଧ୍ୟା ଅଞ୍ଚଳରେ ଉଦୟନାଚାର୍ଯ୍ୟ କୃତ ଟୀକାଦ୍ୱୟର ପାଣ୍ଡୁଲିପି ଉପଲବ୍ଧ ହେବାରୁ ଏ ଦୁଇଟି ଭାରତୀୟ ପଣ୍ଡିତ ସମାଜରେ ବିଶେଷ ଆଦୃତ ହୋଇ-ଥିବାର ପ୍ରତିପାଦିତ ହୁଏ ।

ଗୋବର୍ଦ୍ଧନ ଆଚାର୍ଯ୍ୟଙ୍କ ପରି କବୀନ୍ଦ୍ର ଉଦୟନାଚାର୍ଯ୍ୟ ମଧ୍ୟ ବଙ୍ଗୀୟ ପଣ୍ଡିତ ଶ୍ରୀଧର ଦାସଙ୍କ ନିକଟରେ ଅଜ୍ଞାତ ଥିଲେ । ତେଣୁ ଏହି ଭାରତ ପ୍ରସିଦ୍ଧ ପଣ୍ଡିତଙ୍କ କୌଣସି ସୂକ୍ତି ତତ୍‌କୃତ 'ସଦୁକ୍ତିକର୍ଣ୍ଣାମୃତମ୍'ରେ ସ୍ଥାନ ପାଇନାହିଁ ।

ମେଘେଶ୍ୱର ପ୍ରଶସ୍ତି ଲେଖକ କବି ଉଦୟନାଚାର୍ଯ୍ୟ ଓ 'ଆର୍ଯ୍ୟା ସପ୍ତଶତୀ'ର ଶେଷ ଶ୍ଳୋକରେ ବର୍ଣ୍ଣିତ ଗୋବର୍ଦ୍ଧନାଚାର୍ଯ୍ୟଙ୍କ ଶିଷ୍ୟ ଓ ସୋଦର ଉଦୟନାଚାର୍ଯ୍ୟଙ୍କ ଏକତ୍ୱ ଓ ଅଭିନ୍ନତ୍ୱ ବଙ୍ଗର ପ୍ରାମାଣିକ ଇତିହାସରେ ମଧ୍ୟ ସମର୍ଥିତ ହୋଇଛି ।

**"In one of the concluding verses he (Govardhana) mentions his brothers and pupils Udayana and Balabhadra who helped him in revising and publishing the poem. Udayana may be identical with Udayana Kavi, who composed the prasasati of the Meghesvara temple at Bhubaneswar in Orissa. (୨୫)**

ଉତ୍କଳରେ ପ୍ରଚଳିତ ଜନଶ୍ରୁତି ଅନୁଯାୟୀ ଗୋବର୍ଦ୍ଧନ ଆଚାର୍ଯ୍ୟ ଶ୍ରୀକ୍ଷେତ୍ରସ୍ଥ ଗୁଣ୍ଡିଚା ମନ୍ଦିର ନିକଟରେ ବାସକରୁଥିଲେ । ଗୋବର୍ଦ୍ଧନଙ୍କ କନିଷ୍ଠ ଭ୍ରାତା କବୀନ୍ଦ୍ର ଉଦୟନଙ୍କ କର୍ମକ୍ଷେତ୍ର ପ୍ରାଚୀକୂଳବର୍ତ୍ତୀ ନିଆଳି ଶାସନ ଓ ଏକାମ୍ର କାନନ ବା ଭୁବନେଶ୍ୱରରେ ଥିବା ଅଭ୍ରାନ୍ତ ସମସାମୟିକ ଲେଖଗତ ପ୍ରମାଣ ମିଳେ । ତେଣୁ ତାଙ୍କ ଜ୍ୟେଷ୍ଠ ଭ୍ରାତା କବି-ପଣ୍ଡିତ ଗୋବର୍ଦ୍ଧନ ପୁରୁଷୋତ୍ତମ କ୍ଷେତ୍ରବାସୀ ଥିବା କିମ୍ବଦନ୍ତୀ ସତ୍ୟାଶ୍ରିତ ।

---

(୨୪) (1) A Catalogue of Sanskrit Manuscripts existing in Oudh, 1881. Page 82, 'ଉଦୟନକର୍ତ୍ତ'— A commentary on the Naishadha by Udayana Achārya.

(2) "History of Sanskrit Literature' by Dr. Dasgupta and Dr. De, p. 666

(୨୫) *'History of Bengal'* published by the Dacca University, p. 366 and foot-note.

ସେ ଜଗନ୍ନାଥଙ୍କ ସ୍ତୁତିମୂଳକ 'ଗୋବର୍ଦ୍ଧନ ଶତକ' ରଚନା କରିଥିବା ଲୋକଶ୍ରୁତି ପ୍ରଚଳିତ (୨୬)

ଏହି ସମସ୍ତ ପ୍ରମାଣ ବଳରେ ସ୍ଥିର କରାଯାଇ ପାରେ ଯେ, ପ୍ରସିଦ୍ଧ ଉତ୍କଳୀୟ କବୀନ୍ଦ୍ର ଜୟଦେବାଚାର୍ଯ୍ୟ ଓ ତାଙ୍କର ଜ୍ୟେଷ୍ଠଭ୍ରାତା ସ୍ୱନାମଧନ୍ୟ କବି-ପଣ୍ଡିତ ଗୋବର୍ଦ୍ଧନ ଆଚାର୍ଯ୍ୟଙ୍କର ଲକ୍ଷ୍ମଣ ସେନଙ୍କ ରାଜସଭା ସହିତ କୌଣସି ସଂପର୍କ ନଥିଲା । ଏପରିକି'ସଦୁକ୍ତି କର୍ଣ୍ଣାମୃତମ୍'ର ପ୍ରଣେତା ଲକ୍ଷ୍ମଣଙ୍କ ସଭାକବି ଶ୍ରୀଧର ଦାସ ମଧ୍ୟ ଉଭୟଙ୍କ ରଚନାବଳୀ ସଂପର୍କରେ ଅଜ୍ଞଥିଲେ । ପରନ୍ତୁ ଏହି ପଣ୍ଡିତ ଭ୍ରାତୃ-ଯୁଗଳ ଗଙ୍ଗ ସମ୍ରାଟଙ୍କ ଅନୁଗ୍ରହ ଲାଭ କରିଥିବା ମେଘେଶ୍ୱର ମନ୍ଦିର ଶିଳାଲେଖ ଦ୍ୱାରା ପ୍ରକାରାନ୍ତରରେ ସମର୍ଥିତ ହୁଏ ।

## କବିରାଜଧୋୟୀ —

କବିରାଜ ଧୋୟୀ ଲକ୍ଷ୍ମଣ ସେନଙ୍କ ସନ୍ତୋଷ ବିଧାନ ନିମିତ୍ତ ମହାକବି କାଳିଦାସ କୃତ ସୁପ୍ରସିଦ୍ଧ 'ମେଘଦୂତମ୍'ଅନୁକରଣରେ 'ପବନଦୂତମ୍'ନାମକ ସଂସ୍କୃତ କାବ୍ୟ ରଚନା କରିଥିଲେ । (୨୭) ଯଥା—

"ଦୃଷ୍ଟ୍ୱାଦେବଂ ଭୁବନବିଜୟେ **ଲକ୍ଷ୍ମଣଂ କ୍ଷୌଣିପାଲମ୍**
ବାଲା ସଦ୍ୟଃ କୁସୁମଧନୁଷଃ ସମ୍ବିଧେୟୀବଭୂବ" (ପବନଦୂତମ୍ ୨ୟ ଶ୍ଳୋକ)

ଉକ୍ତ କାବ୍ୟର ଶେଷ ଆଡକୁ ଥିବା ଗୋଟିଏ ଶ୍ଳୋକରୁ ଜଣାଯାଏ,କବିରାଜ ଧୋୟିକ ଗୌଡରାଜାଙ୍କ ଠାରୁ ନିଜର କବିତ୍ୱ ପାଇଁ ହସ୍ତୀ, ସ୍ୱର୍ଣ୍ଣଲତା ଓ ସୁନାବେଣ୍ଟ ଥିବା ଚାମର ପୁରସ୍କାର ସ୍ୱରୂପ ପ୍ରାପ୍ତ ହୋଇଥିଲେ । ଯଥା—

"ଦନ୍ତିବ୍ୟୂହଂ କନକଲତିକାଂ ଚାମରଂ ହୈମଦଣ୍ଡଂ
ଯୋ ଗୌଡେନ୍ଦ୍ରାଦଲଭତ କବିକ୍ଷ୍ମାଭୃତାଂ ଚକ୍ରବର୍ତ୍ତୀ
ସ ଧୋୟିକଃ ସକଳରସିକ ପ୍ରୀତିହେତୋର୍ମନସ୍ୱୀ
କାବ୍ୟଂ ସାରସ୍ୱତମିବ (ସତତ୍)ମନ୍ତ୍ରମେତଜ୍ଜଗାଦ"

ଏହି ଦୁଇଟି ଶ୍ଳୋକ ବଳରେ କବିରାଜ ଧୋୟୀ ଲକ୍ଷ୍ମଣ ସେନଙ୍କ ସଭାମଣ୍ଡନ କରୁଥିବା ନିର୍ବିବାଦରେ ସ୍ଥିର କରାଯାଇ ପାରେ ।

---

(୨୬) Jayadeva, who is he ? by Dr. S. Hota, M. A. Proceedings of the A.I.O.C , 18th session, p. 174.

(୨୭) *"Pabanadūtam"* published by M M, Chakravarty, J.A.S. Bengal, Vol. I, N.S. 1905, pp. 41-71,

## ଉତ୍କଳ ରାଜସଭା-ମଣ୍ଡନକାରୀ ପଣ୍ଡିତ-କବି ଶ୍ରୀ ଜୟଦେବ—

୧୫୬୩ ଖ୍ରୀଷ୍ଟାବ୍ଦରେ କୋଟ-କାଂଗ୍ରା ରାଜ୍ୟର ସିଂହାସନ ଆରୋହଣ କରିଥିବା ମାଣିକ୍ୟଚନ୍ଦ୍ରଙ୍କର ସଭାକବି କେଶବ ମିଶ୍ର ଗୋବର୍ଦ୍ଧନ ନାମକ ପଣ୍ଡିତଙ୍କର ଗୋଟିଏ ଶ୍ଲୋକ ଉଦ୍ଧାର କରିଛନ୍ତି । ସେଥିରୁ ଜଣାଯାଏ ଉତ୍କଳ ରାଜସଭାରେ ଆଶ୍ରୟ ଲାଭ କରିଥିବା ପଣ୍ଡିତମାନଙ୍କ ମଧ୍ୟରେ ଶ୍ରୀ ଜୟଦେବ ପଣ୍ଡିତ କବି ଶ୍ରେଷ୍ଠ ଥିଲେ ।

"ପ୍ରାକ୍-ପ୍ରତ୍ୟକ୍-ପୃଥିବୀଭୃତୋଃ ପରିଷଦି ପ୍ରଖ୍ୟାତସଂଖ୍ୟାବତା
ମଶ୍ଚାଶ୍ଚର୍ଯ୍ୟତର୍କ-କର୍କଶତୟା ବଚ୍ଛିଦ୍ୟ ବିଦ୍ୟାମଦମ୍
ଯେ କେଽପ୍ୟୁତ୍କଳଭୂପତେ ! ତବ ସଭାସମ୍ଭାବିତାଃ ପଣ୍ଡିତାଃ
ପଦଂ **ଶ୍ରୀଜୟଦେବପଣ୍ଡିତକବି** ସ୍ତନ୍ମୂର୍ଦ୍ଧ୍ନି ବିନ୍ୟସ୍ୟତି"

ଅର୍ଥାତ୍ ହେ ଉତ୍କଳରାଜ ! ଆଶ୍ଚର୍ଯ୍ୟଜନକ ତର୍କରେ କର୍କଶ ହୋଇଥିବାରୁ ପୂର୍ବ ଓ ପଶ୍ଚିମର ରାଜାମାନଙ୍କ ସଭାରେ ପ୍ରସିଦ୍ଧ ପଣ୍ଡିତମାନଙ୍କର ବିଦ୍ୟାମଦକୁ ଖଣ୍ଡିତ ବିଚ୍ଛିନ୍ନ କରି, ତୁମ୍ଭ ସଭାରେ ଯେଉଁ ପଣ୍ଡିତମାନେ ଆଜି ସମ୍ମାନିତ, ଶ୍ରୀ ଜୟଦେବ ନାମକ ପଣ୍ଡିତ-କବି ସେମାନଙ୍କ ମସ୍ତକରେ ବିଜୟପଦ ବିନ୍ୟସ୍ତ କରୁଛନ୍ତି । ଅର୍ଥାତ୍ ତୁମ୍ଭ ରାଜସଭାର ପଣ୍ଡିତମାନଙ୍କ ମଧ୍ୟରେ ସେ ଶ୍ରେଷ୍ଠ ।

ଉକ୍ତ ଶ୍ଲୋକରେ ପ୍ରଶଂସିତ ଶ୍ରୀ ଜୟଦେବ ପଣ୍ଡିତ-କବି ଓ ଶ୍ରୀଗୀତଗୋବିନ୍ଦକାର ଜୟଦେବ, ଯେ କି ନିଜକୁ ପଣ୍ଡିତକବି ରୂପେ ଆଖ୍ୟାତ କରି ଗର୍ବ ଓ ଗୌରବ ଅନୁଭବ କରିଛନ୍ତି ଏକ ଓ ଅଭିନ୍ନ ବ୍ୟକ୍ତି ରୂପେ ପ୍ରତିଭାତ ହୁଅନ୍ତି । ଯଥା—

"ଯଦ୍‌ଗାନ୍ଧର୍ବକଳାସୁ କୌଶଳ ମନୁଧ୍ୟାନଂ ଚ ଯଦ୍‌ବୈଷ୍ଣବଂ
ଯଚ୍ଛୃଙ୍ଗାରବିବେକତତ୍ତ୍ୱମପି ଯତ୍ କାବ୍ୟେଷୁ ଲୀଳାୟିତଂ
ତତ୍ସର୍ବଂ **ଜୟଦେବପଣ୍ଡିତକବେଃ** କୃଷ୍ଣୈକତାନାତ୍ମନଃ
ସାନନ୍ଦାଃ ପରିଶୀଳୟନ୍ତୁ ସୁଧିୟଃ ଶ୍ରୀଗୀତଗୋବିନ୍ଦତଃ"
(ଶ୍ରୀଗୀତଗୋବିନ୍ଦମ୍ ଦ୍ୱାଦଶ ସର୍ଗ)

କେଶବ ମିଶ୍ର ଏହି ଶ୍ଲୋକ ପ୍ରଣେତା ଗୋବର୍ଦ୍ଧନଙ୍କର ଅନ୍ୟ କେତୋଟି ଉଦ୍ଧୃତ ଯଥା — ଶବ୍ଦାଳଙ୍କାର ବର୍ଣ୍ଣନା ପ୍ରସଙ୍ଗରେ ଗୋଟିଏ, ଅର୍ଥାଳଙ୍କାର ବର୍ଣ୍ଣନା ପ୍ରସଙ୍ଗରେ ଗୋଟିଏ ଓ ଯୋଷିତ୍ ବର୍ଣ୍ଣନା ପ୍ରସଙ୍ଗରେ ଆଠଟି ଶ୍ଲୋକ ଉଦ୍ଧାର କରିଛନ୍ତି । (୨୮) 'ଅଳଙ୍କାର ଶେଖର' ଗ୍ରନ୍ଥରେ ଉଦ୍ଧୃତ ଏକାଦଶଟି ସୁନ୍ଦର ଉଦ୍‌ପ୍ରେକ୍ଷା

---

(୨୮) କେଶବ ମିଶ୍ର କୃତ 'ଅଳଙ୍କାର ଶେଖର'
Chowkhamba Sanskrit Series, pp. 18,31,39,45 & 52.

ଗୋବର୍ଦ୍ଧନଙ୍କୁ ପ୍ରସିଦ୍ଧ 'ଆର୍ଯ୍ୟାସପ୍ତଶତୀ' ଗ୍ରନ୍ଥର ପ୍ରଣେତା ଆଚାର୍ଯ୍ୟ ଗୋବର୍ଦ୍ଧନ ରୂପେ ଗ୍ରହଣ କରିବା ସର୍ବଥା ସମୀଚୀନ । କାରଣ ତାଙ୍କର ଉତ୍କଳ ରାଜସଭା ସହିତ ଘନିଷ୍ଠ ସମ୍ପର୍କ ଓ ପଣ୍ଡିତ କବି ଶ୍ରୀ ଜୟଦେବଙ୍କ ସହିତ ଅନ୍ତରଙ୍ଗତା ସୁପ୍ରମାଣିତ । ଏ ସଂପର୍କରେ ସଂସ୍କୃତ ଅଳଙ୍କାରର ଇତିହାସ ପ୍ରଣେତା ପଣ୍ଡିତପ୍ରବର ଡକ୍ଟର ଏସ୍. କେ. ଦେଙ୍କ ମତ ପ୍ରାଦେଶିକତା ଦୋଷଦୁଷ୍ଟ ।

' The opinions of a writer called Govardhana are frequently cited by Kesava There is also reference to Jayadeva Pandita Kavi in the court of an Utkala king. If this person is identical with the poet Jayadeva, who is said to have lived under Lakshmana Sena of Bengal and who also calls himself Jayadeva Pandita-Kavi, in his Gitagovinda, then it is likely that Govardhana, who is quoted immediately before this reference to Jayadeva, may be the poet of that name, who was Jayadeva's contemporary referred to in the beginning of the Gitagovinda". (୨୧)

ସୁପଣ୍ଡିତ ଦେ ମହାଶୟ ଉତ୍କଳ ରାଜସଭାରେ 'ଅଳଙ୍କାରଶେଖର' ବର୍ଣ୍ଣିତ ଶ୍ରୀ ଜୟଦେବ ପଣ୍ଡିତକବିଙ୍କ ଅବସ୍ଥିତି ସ୍ୱୀକାର କରି ତାଙ୍କୁ ପୁଣି ଲକ୍ଷ୍ମଣ ସେନଙ୍କ ସଭାକବି ବୋଲି କହିବା ଦ୍ୱାରା ପରସ୍ପର ବିରୋଧୀ ମତ ପ୍ରଦାନ କରିଛନ୍ତି । ଶ୍ରୀଗୀତଗୋବିନ୍ଦକାର ପଣ୍ଡିତ କବି ଶ୍ରୀ ଜୟଦେବ ଲକ୍ଷ୍ମଣ ସେନଙ୍କ ସଭାକବି ଉମାପତି ଧର ଓ ଧୋୟୀଙ୍କ ପ୍ରତି ଯେପରି ମର୍ମନ୍ତୁଦ କଟୂକ୍ତି ପ୍ରୟୋଗ କରିଥିବା ପୂର୍ବରୁ ଆଲୋଚିତ ହୋଇଛି, ସେ ଦୃଷ୍ଟିରୁ ତାଙ୍କୁ ଉତ୍କଳ ରାଜସଭାର ଶ୍ରେଷ୍ଠ କବି ରୂପେ ଗ୍ରହଣ କରିବା ସର୍ବଥା ଯୁକ୍ତିଯୁକ୍ତ । ଏହା 'ଅଳଙ୍କାର ଶେଖର' ଗ୍ରନ୍ଥରେ ଉଦ୍ଧୃତ ଶ୍ଳୋକ ଦ୍ୱାରା ସଂପୂର୍ଣ୍ଣ ଭାବେ ସମର୍ଥିତ ହେଉଅଛି ।

## 'ଗୋବର୍ଦ୍ଧନଶ୍ଚ...ଲକ୍ଷ୍ମଣସ୍ୟଚ' ଶ୍ଳୋକ ଅର୍ବାଚୀନ—

କେତେକ ଐତିହାସିକଙ୍କ ମତରେ ମହାରାଜା ଲକ୍ଷ୍ମଣ ସେନଙ୍କ ସଭାଭବନର ଦ୍ୱାରଦେଶରେ ଗୋଟିଏ ପ୍ରସ୍ତର ଫଳକରେ ଉକ୍ତ ଶ୍ଳୋକ ଖୋଦିତ ହୋଇଥିଲା ।

(୨୧) History of Sanskrit poetics by Dr. S. K. De, p 220

"ଗୋବର୍ଦ୍ଧନଶ୍ଚ ଶରଣୋ ଜୟଦେବ ଉମାପତିଃ
କବିରାଜଶ୍ଚ ରତ୍ନାନି ପଞ୍ଚୈତେ ଲକ୍ଷ୍ମଣସ୍ୟ ଚ ।"
(ପାଠଭେଦ 'ସମିତୌ ଲକ୍ଷ୍ମଣସ୍ୟଚ୍ଚ')

ଅର୍ଥାତ୍ ଲକ୍ଷ୍ମଣସେନଙ୍କ ସଭା ଗୋବର୍ଦ୍ଧନ, ଶରଣ, ଜୟଦେବ, ଉମାପତି, କବିରାଜ (ଧୋୟୀ )ଏହି ପଞ୍ଚରତ୍ନଙ୍କ ଦ୍ୱାରା ମଣ୍ଡିତ ହୋଇଥିଲା । ଶ୍ରୀ ହରେକୃଷ୍ଣ ମୁଖୋପାଧ୍ୟାୟ ଆଉ ଟିକିଏ ଅଗ୍ରସର ହୋଇ ଲେଖିଛନ୍ତି— "ଶ୍ରୀରୂପ ସନାତନ ଶ୍ରୀଧାମ ନବଦ୍ୱୀପେ ଲକ୍ଷ୍ମଣସେନେର ସଭାଗୃହ ଦ୍ୱାରେ ନମ୍ନୋକ୍ତ ଶ୍ଳୋକଟି ଅଙ୍କିତ ଦେଖିୟାଛିଲେନ ।" ୩୦

## ମୁସଲମାନ ସେନା ଦ୍ୱାରା ନଦିୟାର ଧ୍ୱଂସସାଧନ—

ଉତ୍ତର ଭାରତରେ ମୁସଲମାନ ଆଧିପତ୍ୟ ବିସ୍ତାରର ଇତିହାସ ୧୨୬୦ ଖ୍ରୀଷ୍ଟାବ୍ଦରେ ସଂକଳିତ **ତବାକତ୍-ଇ-ନାସିର** ନାମକ ପୁସ୍ତକରେ ଲିପିବଦ୍ଧ ହୋଇଅଛି । ଏଥିରୁ ଜଣାଯାଏ ମୁସଲମାନ ସେନାପତି ମହମ୍ମଦ-ଇ-ବଖତିୟାର ଲକ୍ଷ୍ମଣ ସେନଙ୍କୁ ପରାଜିତ କରି ତାଙ୍କ ରାଜ୍ୟ ଅଧିକାର କଲା ପରେ ନଦିୟା ସହରକୁ ସଂପୂର୍ଣ୍ଣ ରୂପେ ଧ୍ୱଂସ କରିଥିଲେ । ଯଥା—

**"After Muhummad-i-Bakhtyar possessed himself of that territory (Rae Lakshmania's)** *he left the city of Nudiah in desolation*". (୩୧)

ସେହି ପୃଷ୍ଠାର ପାଦଟୀକାରେ ଲେଖାଅଛି ଯେ, "*Muhammad-i-Bakhtyar destroyed Nudiah and leaving it in desolation* passed *onwards*.

ନିଜର ଆଧିପତ୍ୟକୁ ସୁଦୃଢ଼ କରିବା ପାଇଁ ବିଜୟୀ ରାଜାମାନଙ୍କ ଦ୍ୱାରା ବିଜିତ ରାଜାଙ୍କ ପ୍ରାସାଦ ଓ ସେନାନିବାସାଦିର ଧ୍ୱଂସସାଧନ ଏକ ଐତିହାସିକ ରେଂପରା । ତେଣୁ ବିଜୟମଦୋନ୍ମତ୍ତ ଦୁର୍ଦ୍ଧର୍ଷ ମୁସଲମାନ ସେନାର ପ୍ରଚଣ୍ଡ ଆକ୍ରମଣ ସମୟରେ ଲକ୍ଷ୍ମଣସେନଙ୍କ ରାଜପ୍ରାସାଦ ଧ୍ୱସ୍ତବିଧ୍ୱସ୍ତ ହୋଇଥିବା ସୁନିଶ୍ଚିତ । ଏହାପରେ ଦୀର୍ଘ ତିନି ଶତାବ୍ଦୀ ବ୍ୟାପୀ ବଂଗଦେଶରେ ମୁସଲମାନ ଆଧିପତ୍ୟ ସୁଦୃଢ଼ ଥିବା ସମୟରେ ନଦିଆ ରାଜପ୍ରାସାଦର ଧ୍ୱଂସାବଶେଷ ଜନଶୂନ୍ୟ, ପରିତ୍ୟକ୍ତ ଓ

---

(୩୦) 'ଗୀରଭୂମ ବିବରଣ" (ବଙ୍ଗଳା)—ଶ୍ରୀ ହରେକୃଷ୍ଣ ମୁଖୋପାଧ୍ୟାୟ ପ୍ରଣୀତ ।

(୩୧) 'Tabaqat-i-Nasiri' translated by Raverty, p. 550

ଅବହେଳିତ ଅବସ୍ଥାରେ ରହିବା ଫଳରେ ଭାରତର ଅନ୍ୟାନ୍ୟ ସ୍ଥାନର ଧ୍ୱଂସାବଶେଷ ପରି ଘନବନାଚ୍ଛାଦିତ ଶ୍ୱାପଦସଂକୁଳ ଧ୍ୱଂସସ୍ତୂପରେ ପରିଣତ ହୋଇଥିବା ଅଥବା ଭାରତର ସର୍ବତ୍ର ଘଟିଥିବା ପରି ହିନ୍ଦୁ ଶାସକଙ୍କ ଧ୍ୱସ୍ତ ରାଜପ୍ରାସାଦର ଇଟା ପଥର ପ୍ରଭୃତି ବ୍ୟବହାର କରି କୌଣସି ମୁସଲମାନ କୀର୍ତ୍ତି ନିର୍ମିତ ହୋଇଥିବ । ଏପରି ଅବସ୍ଥାରେ ପ୍ରାୟ ୩୦୦ ବର୍ଷ ପରେ ଶ୍ରୀରୂପ ସନାତନଙ୍କ ଆବିର୍ଭାବ କାଳ ପର୍ଯ୍ୟନ୍ତ ଲକ୍ଷ୍ମଣ ସେନଙ୍କ ରାଜପ୍ରାସାଦର ଅସ୍ତିତ୍ୱ କଳ୍ପନାତୀତ । ତେଣୁ ଶ୍ରୀରୂପ ସନାତନ ଏହି ବନାଚ୍ଛାଦିତ ଧ୍ୱଂସସ୍ତୂପ ମଧ୍ୟରେ ପ୍ରବେଶ କରି ଏହି ଲେଖ ଆବିଷ୍କାର କରିଥିବା ଏକ କପୋଳ-କଳ୍ପିତ ବୃତ୍ତାନ୍ତ । ଆଜିମଧ୍ୟ ଶ୍ରୀରୂପ ସନାତନଙ୍କ କୌଣସି ରଚନାରେ ବା ବଙ୍ଗଳାର କୌଣସି ପ୍ରାଚୀନ ଗ୍ରନ୍ଥରେ ଏପରି ଏକ ଲେଖର ଅସ୍ତିତ୍ୱ ସମ୍ବନ୍ଧରେ ଉଲ୍ଲେଖ ମିଳେନାହିଁ ।

ଅତଏବ ଶ୍ରୀ ଜୟଦେବଙ୍କ ବଙ୍ଗୀୟତ୍ୱ ଦାବୀକୁ ସୁଦୃଢ଼ କରିବା ପାଇଁ ଶ୍ରୀଗୀତଗୋବିନ୍ଦର 'ବାଚଃ ପଲ୍ଲବୟନ୍ତି' ଶ୍ଳୋକର ଭାବକୁ ନେଇ ଗତ ଶତାବ୍ଦୀରେ କୌଣସି ଦୁରଭିସନ୍ଧି ପ୍ରଣୋଦିତ ଅନାମଧେୟ ପଣ୍ଡିତ ଏହି ଶ୍ଳୋକ ରଚନା କରିଥିବା ସର୍ବଥା ସମ୍ଭବପର । ଏପରି ଏକ ଅର୍ବାଚୀନ ଶ୍ଳୋକର ପ୍ରାଚୀନତ୍ୱ ଓ ଐତିହାସିକ ଗୁରୁତ୍ୱ ପ୍ରତିପାଦନ ନିମିତ୍ତ ବଙ୍ଗଦେଶରେ ବିଶେଷ ସମ୍ମାନିତ ଶ୍ରୀରୂପ ସନାତନଙ୍କ ଦ୍ୱାରା ଏହାର ଆବିଷ୍କାର ବାର୍ତ୍ତା ପ୍ରଚାରିତ ହୋଇଥିବାର ମନେହୁଏ । ଲକ୍ଷ୍ମଣସେନଙ୍କ ସଭା ବହୁ ପ୍ରଖ୍ୟାତ ପଣ୍ଡିତଙ୍କ ଦ୍ୱାରା ମଣ୍ଡିତ ହୋଇଥିବା ସମୟରେ ସେମାନଙ୍କ ଅବସ୍ଥିତି ସଂପର୍କରେ ଏପରି ନିକୃଷ୍ଟ ଧରଣର ଗୋଟିଏ ଶ୍ଳୋକ ନିଜ ସଭାଭବନର ଦ୍ୱାରଦେଶରେ ଉତ୍କୀର୍ଣ୍ଣ କରିଥିବା ଅସମ୍ମାନ ସୂଚକ । ଅତଏବ ଐତିହାସିକ ଭିତ୍ତିହୀନ ଏହି ଶ୍ଳୋକ ବଳରେ ଶ୍ରୀ ଜୟଦେବଙ୍କୁ ମହାରାଜ ଲକ୍ଷ୍ମଣ ସେନଙ୍କ ସଭାକବି ରୂପେ କୌଣସିମତେ ଗ୍ରହଣ କରାଯାଇ ନ ପାରେ । ଏହି ଶ୍ଳୋକଦ୍ୱାରା କେବଳ ସଂସ୍କୃତ ସାହିତ୍ୟର ଇତିହାସରେ ବିଭ୍ରାଟ ସୃଷ୍ଟି ହୋଇଛି ।

**ଜୟଦେବଙ୍କ ପ୍ରଶସ୍ତି ଶ୍ଳୋକ—**

'ସଦୁକ୍ତିକର୍ଣ୍ଣାମୃତମ୍'ରେ ଉଦ୍ଧୃତ ଜନୈକ ଜୟଦେବ କବି କୃତ' ନିମ୍ନୋକ୍ତ ୧୪୨୫ ସଂଖ୍ୟକ ଶ୍ଳୋକକୁ ଅବିଚାରିତ ଭାବରେ ଶ୍ରୀଗୀତଗୋବିନ୍ଦକାର ଶ୍ରୀ ଜୟଦେବଙ୍କ ରଚନା ରୂପେ ଗ୍ରହଣ କରି, ସେ ଲକ୍ଷ୍ମଣ ସେନଙ୍କ ସଭାକବି ଥିବାର ସ୍ଥିର କରାଯାଇଛି । ଯଥା—

"ଲକ୍ଷ୍ମୀକେଳିଭୁଜଙ୍ଗଜଙ୍ଗମହରେ ସଂକଳ୍ପକଳ୍ପଦ୍ରୁମ<br>ଶ୍ରେୟଃ ସାଧକସଙ୍ଗ ସଙ୍ଗରକଳାଗାଙ୍ଗେୟ ବଙ୍ଗପ୍ରିୟ<br>ଗୌଡେନ୍ଦ୍ର ପ୍ରତିରାଜ ରାଜକସଭାଳଙ୍କାର କର୍ଣ୍ଣାର୍ପିତ<br>ପ୍ରତ୍ୟର୍ଥିକ୍ଷିତିପାଳ ପାଳକସତାଂ ଦୃଷ୍ଟୋଽସି ତୁଷ୍ଟା ବୟଃ"

ଅର୍ଥାତ୍ "ହେ ଲକ୍ଷ୍ମୀକେଳିକାର ହରିଙ୍କ ଚଳନ୍ତ ପ୍ରତିମା, ହେ ଯାଚକମାନଙ୍କ ମନସ୍କାମନା ପୂର୍ତ୍ତିକାରୀ କଳ୍ପଦ୍ରୁମ, ହେ ମଙ୍ଗଳବିଧାୟକ, ହେ ଖାଦ୍ଵଙ୍କ ତୁଳ୍ୟ ଲକ୍ଷଣଯୁକ୍ତ ମହାବୀର, ହେ ବଙ୍ଗବାସୀଙ୍କ ପ୍ରିୟ, ହେ ଗୌଡ଼ାଧିପ, ହେ ସାମନ୍ତରାଜଚକ୍ର ମୁକୁଟମଣି, ହେ ଶତ୍ରୁନୃପତି ବନ୍ଧନକାରୀ, ହେ ସଦାଶୟ, (ବର୍ତ୍ତମାନ) ଆପଣଙ୍କ ଦର୍ଶନ ଲାଭରେ ଆମ୍ଭେମାନେ ପରମ ସନ୍ତୋଷ ଲାଭ କଲୁ" ।

ଏହି ପ୍ରଶସ୍ତି ଶ୍ଳୋକ ଭିତ୍ତିରେ ଶ୍ରୀଗୀତଗୋବିନ୍ଦକାର ଜୟଦେବ ଓ ଗୌଡ଼େନ୍ଦ୍ର ଲକ୍ଷ୍ମଣ ସେନଙ୍କ ସଂପର୍କ ନିର୍ଣ୍ଣୟ ଅତ୍ୟନ୍ତ ବିଭ୍ରାନ୍ତକର ।

ପ୍ରାଚୀନ ସଂସ୍କୃତ ସାହିତ୍ୟ ଭଣ୍ଡାର ଏପରି ଶତ ଶତ ପ୍ରଶସ୍ତି ଶ୍ଳୋକରେ ପରିପୂର୍ଣ୍ଣ । ରାଜସଭାର କବି ନ ହୋଇ ମଧ୍ୟ ଅନେକ ଆନ୍ଥୋକ ପଣ୍ଡିତ ପ୍ରାର୍ଥିତ ରାଜାଙ୍କ ଠାରୁ ଦାନପ୍ରାପ୍ତି ଆଶାରେ ତାଙ୍କର ସନ୍ତୋଷ ବିଧାନ ନିମିତ୍ତ ଏବେ ଶ୍ଳୋକ ରଚନା କରିଥିବାର ଦେଖାଯାଏ । ତେଣୁ ଏପରି ଏକ ଶ୍ଳୋକ ଉପରେ ନିର୍ଭରକରି ଶ୍ରୀ ଜୟଦେବଙ୍କ ଲକ୍ଷ୍ମଣ ସେନଙ୍କ ସଭାରେ ଅବସ୍ଥିତି ନିର୍ଣ୍ଣୟ ପ୍ରମାଦପୂର୍ଣ୍ଣ ।

ଦ୍ୱିତୀୟତଃ ଉକ୍ତ ଶ୍ଳୋକରେ ପ୍ରଶଂସିତ ଗୌଡ଼େନ୍ଦ୍ରଙ୍କୁ ଲକ୍ଷ୍ମଣ ସେନ ରୂପେ ଗ୍ରହଣ କରିବାର କୌଣସି ଯୁକ୍ତିସଂଗତ କାରଣ ନାହିଁ । କାରଣ ଏଥିରେ ଲକ୍ଷ୍ମଣ ସେନ ନାମ ବା ସେନବଂଶର ଉଲ୍ଲେଖ ନାହିଁ । ତେଣୁ ଗୌଡ଼ର ଯେ କୌଣସି ରାଜାଙ୍କ ପ୍ରତି ଏହି ଶ୍ଳୋକ ପ୍ରଯୁଜ୍ୟ ।

ତୃତୀୟତଃ 'ସଦୁକ୍ତି କର୍ଣ୍ଣାମୃତମ୍'ରେ ସମସାମୟିକ ତଥା ପ୍ରାଚୀନ କବିମାନଙ୍କ ସୂକ୍ତିସମୂହ ସଂଗୃହୀତ । ତେଣୁ ଏହା ଶ୍ରୀଗୀତଗୋବିନ୍ଦକାର ଶ୍ରୀ ଜୟଦେବଙ୍କ ଶ୍ଳୋକ ନ ହୋଇ ଜୟଦେବ ନାମଧେୟ ଅନ୍ୟ ଏକ କବିଙ୍କ ରଚନା ହୋଇପାରେ । ଦ୍ୱାଦଶ ଶତାବ୍ଦୀର ମଧ୍ୟଭାଗରେ ଆବିର୍ଭୂତ ବିଦ୍ୟାକର ପଣ୍ଡିତଙ୍କ ଦ୍ୱାରା ସଂଗୃହୀତ **ସୁଭାଷିତ ରତ୍ନକୋଷ** (୩୨) ନାମକ ସଂଗ୍ରହ ଗ୍ରନ୍ଥରେ ଜନୈକ ଜୟଦେବ କବିଙ୍କ ଦ୍ୱାରା ରଚିତ ଦୁଇଟି ଶ୍ଳୋକ ଉଦ୍ଧୃତ ହୋଇଅଛି । ଯଥା— ପ୍ରାବୃଟ୍‌ବ୍ରଜ୍ୟାର ୨୪୦ ସଂଖ୍ୟକ ଶ୍ଳୋକ ଓ ପ୍ରଶସ୍ତିବ୍ରଜ୍ୟାର ୧୫୬୭ ସଂଖ୍ୟକ ଶ୍ଳୋକ । ଏଥିମଧ୍ୟରୁ ଦ୍ୱିତୀୟ ଶ୍ଳୋକଟି ସଦୁକ୍ତି କର୍ଣ୍ଣାମୃତମ୍‌ରେ ୧୫୩୮ ସଂଖ୍ୟକ ଶ୍ଳୋକ ଭାବରେ ଜୟଦେବଙ୍କ ନାମରେ ଦେଖାଯାଇଅଛି । ତେଣୁ ଉଦ୍ଧୃତ 'ଲକ୍ଷ୍ମୀକେଳିଭୁଜଙ୍ଗ' ଶ୍ଳୋକଟି ତାଙ୍କ ଦ୍ୱାରା ରଚିତ ହୋଇଥିବାର ସ୍ଥିର କରାଯାଇପାରେ । ଶ୍ରୀଗୀତଗୋବିନ୍ଦକାର

(୩୨) ଡ଼ ଡ଼. କୋସୁମ୍ବି ଓ ବ. ବ. ଗୋଖଲେଙ୍କ ଦ୍ୱାରା ସଂପାଦିତ 'ସୁଭାଷିତ ରତ୍ନକୋଷ' ପୃ ୪୫, ଓ ପୃ ୨୭୧

ପରମ କୃଷ୍ଣଭକ୍ତ ଥିବାରୁ କୌଣସି ନରପତିଙ୍କ ଏପରି ତୋଷାମୋଦ ପୂର୍ଣ୍ଣ ପ୍ରଶସ୍ତି ଶ୍ଳୋକ ରଚନା ତାଙ୍କ ଦ୍ୱାରା ସମ୍ଭବ ବିବେଚିତ ହୋଇଥିବ ।

## ଲକ୍ଷ୍ମଣ ସେନଙ୍କ ସଭାକବି ସମୂହ—

ବଂଗର ଶେଷ ସ୍ୱାଧୀନ ନରପତି ଲକ୍ଷ୍ମଣ ସେନ ନିଜର ପାଣ୍ଡିତ୍ୟ ଓ ବଦାନ୍ୟତା ହେତୁ ପ୍ରସିଦ୍ଧି ଲାଭ କରିଥିଲେ । ତାଙ୍କର ପୃଷ୍ଠପୋଷକତା ଲାଭ କରିଥିବା ସ୍ମୃତିକାର ହଲାୟୁଧ, କବିରାଜ ଧୋୟୀ ଓ ସୂକ୍ତି ସଂଗ୍ରାହକ ଶ୍ରୀଧର ଦାସ ପ୍ରମୁଖ କବି ପଣ୍ଡିତମାନେ ସ୍ୱ ସ୍ୱ କୃତିରେ ଆଶ୍ରୟଦାତା ଲକ୍ଷ୍ମଣ ସେନଙ୍କ ପ୍ରଶଂସା କରିଥିବାର ଦେଖାଯାଏ । ଯଥା—

### ସ୍ମୃତିକାର ହଲାୟୁଧ—

"ଗୌଡ଼ଭୂମିଭୃଦମାତ୍ୟମଣ୍ଡଳମୌଳିରତ୍ନରଚିତାଂଘ୍ରି —
ରାଜପଣ୍ଡିତ ମହାମହତ୍ତକ **ଶ୍ରୀହଲାୟୁଧ** × × × ଅଜାଜନତ୍ ।

× × ×

ବିଜୟପୁରସିକମତେ **ଲକ୍ଷ୍ମଣକ୍ଷୌଣିଭର୍ତ୍ତୁଃ**
ନିତ୍ୟପ୍ରୀତିପ୍ରମୋଦା ସତତମଦୟିତା ଯସ୍ୟ ଲକ୍ଷ୍ମୀର୍ବିଭୂବ ।" (୩୩)
(ବ୍ରାହ୍ମଣସର୍ବସ୍ୱମ୍)

ମିଉଜିୟମରେ ସଂରକ୍ଷିତ ପୋଥି କୀଟଦଂଷ୍ଟ ହେଲେମଧ୍ୟ ରାଜପଣ୍ଡିତ ହଲାୟୁଧ ଓ ଲକ୍ଷ୍ମଣ କ୍ଷୌଣିଭର୍ତ୍ତୁଃ ପଦଦ୍ୱୟ ଅକ୍ଷୁର୍ଣ୍ଣ ଥିବାରୁ ଅର୍ଥବୋଧ ସ୍ପଷ୍ଟ ହେଉଅଛି ।

### କବିରାଜ ଧୋୟୀ—

"ଦୃଷ୍ଟ୍ୱା ଦେବଂ ଭୁବନବିଜୟେ **ଲକ୍ଷ୍ମଣକ୍ଷୌଣିପାଳଂ**
ବାଲା ସଦ୍ୟଃ କୁସୁମଧନୁଷଃ ସଂବିଧେୟୀବଭୂବ" (୩୪)
(ପବନଦୂତମ୍, ଦ୍ୱିତୀୟ ଶ୍ଳୋକ)

---

(୩୩) ମିଉଜିୟମରେ ସଂରକ୍ଷିତ 'ବ୍ରାହ୍ମଣ ସର୍ବସ୍ୱମ୍' ପୋଥିରୁ ଉଦ୍ଧୃତ । ପୋଥିର ପତ୍ରସବୁ ପୋକଖିଆ ହୋଇଥିବାରୁ ବହୁ ଅକ୍ଷର ଲୁପ୍ତ ।

(୩୪) ସ୍ୱର୍ଗତଃ ମନମୋହନ ଚକ୍ରବର୍ତ୍ତୀଙ୍କ ଦ୍ୱାରା 'ଏସିଅଟିକ ସୋସାଇଟି ପତ୍ରିକା'ରେ ପ୍ରକାଶିତ ।

**ସଦୁକ୍ତି ସଂଗ୍ରାହକ ଶ୍ରୀଧର ଦାସ—**

ସାମ୍ରାଜାମିବ ଯୋଗିନାମପି ଗୁରୁର୍ଯଂଶ୍ଚକ୍ଷମାମଣ୍ଡଳେ ।
**ଶ୍ରୀଲକ୍ଷ୍ମଣସେନ ଏକ ନୃପତି** ମୁକ୍ତସ୍ତ ଜୀବନ୍ନଭୂତ୍ ॥

ଗ୍ରନ୍ଥ ସମାପ୍ତି କାଳ ସମ୍ବନ୍ଧରେ ଶ୍ରୀଧର ଦାସ 'ସଦୁକ୍ତି କର୍ଣ୍ଣାମୃତମ୍'ର ଶେଷ ଶ୍ଳୋକରେ ଲେଖିଛନ୍ତି —

"ଶକେଽବ୍ଦ ସପ୍ତବିଂଶତ୍ୟଧିକ ଶତୋପେତଦଶଶତେ ଶରଦାମ୍
ଶ୍ରୀମଲ୍ଲକ୍ଷ୍ମଣସେନ କ୍ଷିତିପସ୍ୟ ରସୈକବିଂଶେଽବ୍ଦେ
ସବିତୁର୍ଗତ୍ୟା ଫାଲ୍‌ଗୁନବିଂଶେଷୁ ପରାର୍ଥହେତବେ କୁତୁକାତ୍
ଶ୍ରୀଧର ଦାସେନେଦଂ ସଦୁକ୍ତିକର୍ଣ୍ଣାମୃତଂ ଚକ୍ରେ"

ଅର୍ଥାତ୍ ୧୧୨୭ ଶକାବ୍ଦରେ (୧୨୦୫ ଖ୍ରୀଷ୍ଟାବ୍ଦ)ରେ ଲକ୍ଷ୍ମଣ ସେନଙ୍କ ରାଜତ୍ୱର ସପ୍ତବିଂଶ ଅବ୍ଦରେ ସୌରମାନ ଅନୁସାରେ ଫାଲ୍‌ଗୁନ ବିଂଶ ଦିବସରେ ପର ବା ପଣ୍ଡିତମାନଙ୍କ ଚିତ୍ତ ବିନୋଦନ ନିମିତ୍ତ କୌତୁକବଶତଃ ଶ୍ରୀଧର ଦାସ ଏହି ସଦୁକ୍ତି କର୍ଣ୍ଣାମୃତମ୍ ରଚନା ସମାପ୍ତ କରିଥିଲେ । ଏହି ଶ୍ଳୋକ ଅନୁସାରେ ୧୧୭୮ ଖ୍ରୀଷ୍ଟାବ୍ଦରେ ଲକ୍ଷ୍ମଣ ସେନଙ୍କ ରାଜତ୍ୱ ଆରମ୍ଭ ହୋଇଥିଲା ।

**ଅଦ୍ଭୁତ ସାଗର—**

"ଶକେ ଖନବଖେନ୍ଦ୍ୱବ୍ଦେ ଆରେଭେଽଦ୍ଭୁତସାଗରମ୍
ଗୌଡେନ୍ଦ୍ରକୁଞ୍ଜରାଲାନ-ସ୍ତମ୍ଭବାହୁର୍ମହୀପତିଃ ॥

× × ×

**ଶ୍ରୀମଲ୍ଲକ୍ଷ୍ମଣସେନଭୂପତିରତିଶ୍ଲାଘ୍ୟୋ** ଯଦୁଦ୍‌ଯୋଗତେ ।
ନିଷ୍ପନ୍ନୋଽଦ୍ଭୁତସାଗରଃ କୃତିରସୌ ବଲ୍ଲାଳଭୂମିଭୁଜଃ ॥"

ଅର୍ଥାତ୍ ଖ (୦), ନବ (୯), ଖ (୦) ଇନ୍ଦୁ (୧) ବା ୧୦୯୦ ଶକାବ୍ଦ (୧୧୬୮ ଖ୍ରୀଷ୍ଟାବ୍ଦ)ରେ ଯାହାଙ୍କ ବାହୁ ଗୌଡ଼ରାଜ ରୂପୀ ଗଜବନ୍ଧନ ସ୍ତମ୍ଭ ସ୍ୱରୂପ, ସେହି ରାଜା (ବଲ୍ଲାଳସେନ) 'ଅଦ୍ଭୁତ ସାଗର'କୁ ଆରମ୍ଭ କରିଥିଲେ । × × ଶ୍ରୀମତ୍ ଲକ୍ଷ୍ମଣସେନ ନୃପତି ଅତି ପ୍ରଶଂସନୀୟ ଅଟନ୍ତି । ଯାହାଙ୍କ ଉଦ୍‌ଯୋଗରୁ ସେହି ରଚନା (ଅଦ୍ଭୁତସାଗର) ନିଷ୍ପନ୍ନ (ସମାପ୍ତ ହେଲା)

**ଦାନସାଗର—**

ବଲ୍ଲାଲ ସେନ ନୃପତିଙ୍କ ଦ୍ୱାରା ସଂକଳିତ 'ଦାନସାଗର' ଗ୍ରନ୍ଥରେ ତାଙ୍କ ନାମ ଓ ଗ୍ରନ୍ଥରଚନା ସମୟ ଦିଆଯାଇଛି । ଯଥା—

"ନଖିଳଚସଭିଳକ ଶ୍ରୀମଦ୍‌ବଲ୍ଲାଳସେନେନ ମୂର୍ଣ୍ଣେ
ଶଶିନବଦଶମିତେ ଶକବର୍ଷେ ଦାନସାଗରେ ରଚିତଃ" (୩୫)

ଅର୍ଥାତ୍ ବଲ୍ଲାଳ ସେନଙ୍କ ଦ୍ୱାରା ଶଶୀ (୧) ନବ (୯) ଦଶ (୧୦) ଅର୍ଥାତ୍ ୧୦୯୧ ଶକାବ୍ଦ (୧୧୬୯ ଖ୍ରୀଷ୍ଟାବ୍ଦ)ରେ ଦାନସାଗର ସମାପ୍ତ ହୋଇଥିଲା ।

ଉପର ଲିଖିତ ଆଲୋଚନାରୁ ସ୍ପଷ୍ଟ ଜଣାଯାଏ ଯେ, ବଙ୍ଗଦେଶରେ ସେନ ରାଜତ୍ୱ କାଳରେ ଲିଖିତ ପ୍ରତ୍ୟେକ ଗ୍ରନ୍ଥରେ ସେନରାଜାଙ୍କ ନାମ ଓ ଅଧିକାଂଶରେ ରଚନାକାଳ ଲିପିବଦ୍ଧ ହୋଇଥିବାର ଦେଖାଯାଏ । କିନ୍ତୁ ଶ୍ରୀଗୀତଗୋବିନ୍ଦର କୁତ୍ରାପି କୌଣସି ସେନରାଜାଙ୍କ ନାମୋଲ୍ଲେଖ ଦେଖାଯାଏ ନାହିଁ । ପରନ୍ତୁ ଶ୍ରୀ ଜୟଦେବ ପ୍ରଶଂସା ବ୍ୟାଜରେ ସେନରାଜାଶ୍ରିତ କବି ଉମାପତିଧର ଓ କବିରାଜ ଧୋୟୀ ପ୍ରଭୃତିଙ୍କ ଶ୍ରେଷ୍ଠ ନିନ୍ଦାବାଦ କରିଥିବାରୁ ତାଙ୍କୁ ଲକ୍ଷ୍ମଣ ସେନଙ୍କ ସଭାକବି ରୂପେ ପ୍ରଚାର କରିବା ଦ୍ୱାରା ଅଯଥା ଐତିହାସିକ ବିଭ୍ରାଟ ସୃଷ୍ଟି କରାଯାଉଛି ।

## 'ସେକ୍ ଶୁଭୋଦୟା' ଗ୍ରନ୍ଥରେ ଜୟଦେବ କାହାଣୀ—

ବଙ୍ଗଦେଶରେ ପ୍ରଥମେ ଇସ୍‌ଲାମ ଧର୍ମ ପ୍ରଚାର ପାଇଁ ଆଗତ ସେଖ୍‌ଙ୍କ ଶୁଭୋଦୟ ବା ଶୁଭାବର୍ଭାବ ବିଷୟ ହଳାୟୁଧ ମିଶ୍ର ନାମକ ଜନୈକ ପଣ୍ଡିତଙ୍କ ଦ୍ୱାରା ଅତି ସାଧାରଣ ଭାଷାରେ ଲିଖିତ 'ସେକ୍ ଶୁଭୋଦୟା' ଗ୍ରନ୍ଥରେ ବର୍ଣ୍ଣିତ ହୋଇ-ଅଛି । ଏହା ଷୋଡ଼ଶ ଶତାବ୍ଦୀରେ ରଚିତ ବୋଲି କୁହାଯାଏ । ସପ୍ତବିଂଶତି ଅଧ୍ୟାୟରେ ସଂପୂର୍ଣ୍ଣ ଏହି ପୁସ୍ତକରେ ସେଖ୍‌ଙ୍କର ଅଲୌକିକ ମାହାତ୍ମ୍ୟ ସମ୍ବନ୍ଧରେ ଅଦ୍ଭୁତ କାହାଣୀମାନ ଓ ଲକ୍ଷ୍ମଣ ସେନଙ୍କ ରାଜତ୍ୱର ବହୁ ଘଟଣା ସମ୍ବନ୍ଧରେ ଉଲ୍ଲେଖ ଦେଖାଯାଏ ।

ଏହି ସେଖ୍ (ଫକୀର)ଙ୍କ ଘର 'ଅତ୍‌ଠାବ' ରାଜ୍ୟରେ । ସେ ଦରିଦ୍ରର ସନ୍ତାନ ଥିଲେମଧ୍ୟ ଆବାଲ୍ୟରୁ ଅତ୍ୟନ୍ତ ବୁଦ୍ଧିମାନ ଥିଲେ । ଧନୀ ମହାଜନ ଶ୍ରୀ ଇମଜନ ଖାଁଙ୍କ ସୁନ୍ଦରୀ କନ୍ୟା ଆୟୁଷୀଙ୍କ ସମ୍ଭୋଗ ତ୍ୟାଗକରି ସେ ଫକୀର ହୋଇଗଲେ । ଶାଳପ୍ରାଂଶୁ ମହାଭୁଜ ଏହି ଫକୀର କଳାପୋଷାକ ଓ ପଗଡ଼ି ପିନ୍ଧୁଥିଲେ । ତାଙ୍କ ଡାହାଣ ହାତରେ ଥିଲା ଜଳପୂର୍ଣ୍ଣ କରବାଳ ଓ ବାମ ହାତରେ ଆଶାବାଡ଼ି । ସେ ମନ୍ତ୍ରସିଦ୍ଧ ପାଦୁକା ପିନ୍ଧି ଅଗ୍ନି ଓ ଜଳରେ ଚାଲିପାଇ ପାରୁଥିଲେ । ଇନ୍ଦ୍ର ତାଙ୍କୁ ବଜ୍ରା-ଘାତରୁ ରକ୍ଷାପାଇବା ପାଇଁ ବର ଦେଇଥିଲେ ।

---

(୩୫) 'ବାଙ୍ଗାଲେର ଇତିହାସ' ପ୍ରଥମଭାଗ — ଶ୍ରୀ ରାଖାଲଚନ୍ଦ୍ର ବନ୍ଦ୍ୟୋପାଧ୍ୟାୟ ପ୍ରଣୀତ, ୧୩୨୦ ସାଲ, ପୃ ୩୩୩

ସେ ଇସ୍‌ଲାମ ଧର୍ମ ପ୍ରଚାର ଉଦ୍ଦେଶ୍ୟରେ ପୂର୍ବଆଡ଼କୁ ଅଗ୍ରସର ହୋଇ ଲକ୍ଷ୍ମଣ ସେନଙ୍କ ରାଜ୍ୟରେ ପ୍ରବେଶ କଲେ । ରାଜା ତାଙ୍କୁ ନିଜ ରାଜବାଟୀର ଅଦୂରରେ ଗଙ୍ଗାକୂଳବର୍ତ୍ତୀ ଜଙ୍ଗଲରେ ରଖାଇଥିଲେ । ସେଠାରେ ସେଖ୍ ନିଜର ଆଶ୍ରମ ନିର୍ମାଣ କରିଥିଲେ । ସେଠାରେ ଥିବା ସମୟରେ ନାଚୁଆ ଗଙ୍ଗୋଙ୍କ ଭାର୍ଯ୍ୟା ବିଦ୍ୟୁତ୍‌ପ୍ରଭା ଗଙ୍ଗାସ୍ନାନ ସମୟରେ କାଞ୍ଚୁଲି ଖୋଲି ତାଙ୍କ ପୀନ ଉରଜ ସେଖ୍‌ଙ୍କୁ ଦେଖାଇଥିଲେ ମଧ୍ୟ ତାଙ୍କର କାମବିକାର ଜାତ ହୋଇ ନ ଥିଲା । ସେଖ୍‌ଙ୍କ ଆଗମନରେ ବିପଦ ଆଶଙ୍କା କରି ମନ୍ତ୍ରୀ ଉମାପତିଧର ତାଙ୍କ ଖାଦ୍ୟରେ ବିଷପ୍ରୟୋଗ କରିଥିଲେ । ଭୋଜନ ପୂର୍ବରୁ ସେ ବଜ୍ରନିର୍ଘୋଷରେ ନମାଜ ପାଠ କରିବାରୁ ବିଷ ଖାଇ ମଧ୍ୟ ତାଙ୍କର କୌଣସି କ୍ଷତି ହେଲାନାହିଁ । ପରନ୍ତୁ ଏହି କୁକାର୍ଯ୍ୟ ଯୋଗୁଁ ରାଜା ଓ ମନ୍ତ୍ରୀ ହଳାୟୁଧ ମିଶ୍ର ଉମାପତିଧରଙ୍କୁ ଭର୍ତ୍ସନା କରିଥିଲେ । ସେଠାରେ ଥିବା ସମୟରେ ସେ ଏକ ଧୋବାକୁ ବିନୋଟି ବ୍ୟାଘ୍ର ଆକ୍ରମଣରୁ ରକ୍ଷା କରିଥିଲେ । ବାଘ ବିନୋଟି ତାଙ୍କୁ ସାଲାମ ବଜାଇ ଚାଲିଗଲେ । ସେ ପ୍ରଭାକର ନାମକ ବଣିକର ସମୁଦ୍ରରେ ବୁଡ଼ିଯାଉଥିବା ଜାହାଜକୁ ମନ୍ତ୍ରବଳରେ ରକ୍ଷା କରିଥିଲେ ।

ରାଜାଙ୍କ ଶଳା କୁମାରଦତ୍ତ ରାତିକାଳରେ ଜଣେ ଧନୀ ବଣିକ ଗୃହରେ ପ୍ରବେଶ କରି ବଣିକ ପତ୍ନୀ ମାଧବୀଙ୍କ ପ୍ରତି ଅତ୍ୟାଚାର କରିବାରୁ ସେ ରାଜା ଓ ରାଣୀ ବଲ୍ଲଭାଙ୍କ ନିକଟରେ ଗୁହାରି କଲେ । ରାଣୀ ନିଜର ଭାଇ ପକ୍ଷ ନେଇ ମାଧବୀର ଚୁଟି ଧରି ପିଟିବାକୁ ଲାଗିଲେ । ଏହା ଜାଣି ଜଗତ୍‌ଗୁରୁ ଗୋବର୍ଦ୍ଧନାଚାର୍ଯ୍ୟ ରାଜାଙ୍କୁ ଭର୍ତ୍ସନା କଲେ ଓ ଅଚିରେ ତାଙ୍କ ରାଜ୍ୟ ନଷ୍ଟ ହେବ ବୋଲି ଅଭିଶାପ ଦେଲେ । ସେ ରାଗରେ ଖଣ୍ଡା ଧରି ରାଣୀଙ୍କୁ ମାରିବାକୁ ଉଦ୍ୟତ ହେଲେ ଓ ଦଣ୍ଡକମଣ୍ଡଳୁ ଧରି ରାଜ୍ୟ ଛାଡ଼ି ଚାଲିଯିବାକୁ ବସିବାରୁ ରାଜା ତାଙ୍କ ପାଦବନ୍ଦନା କରି ଶାନ୍ତ କରିଥିଲେ । ପରେ ଶେଖ୍ ଏହି କଳହର ସମାଧାନ କରିଥିଲେ ଏବଂ ମାଧବୀଙ୍କ ସ୍ୱାମୀ ମଧୁକରଙ୍କୁ ଆସନ୍ନ ମୃତ୍ୟୁମୁଖରୁ ରକ୍ଷା କରିଥିଲେ ।

ଉମାପତିଧରଙ୍କ ଚକ୍ରାନ୍ତରେ ସେଖ୍‌ଙ୍କ ନିକଟକୁ ପଠାଯାଇଥିବା ବ୍ରାହ୍ମଣ ଛଦ୍ମବେଶୀ ଅନ୍ଧଙ୍କର ଦୃଷ୍ଟିଶକ୍ତି ଅପହରଣ କରି ପରେ ସମସ୍ତେ ଅନୁନୟ ବିନୟ କରିବାରୁ ସେଖ୍ ସେମାନଙ୍କୁ ଦୃଷ୍ଟିଶକ୍ତି ଦାନ କରିଥିଲେ ।

ରାଜା ଲକ୍ଷ୍ମଣସେନ ଗଙ୍ଗାକୁ ଜଳ ଆଣିବାକୁ ଯାଇଥିବା ଶୁଣ୍ଡିର ବୋହୂର କର୍ଣ୍ଣରନ୍ଧ୍ର ଭେଦ କରି ଏକ ଶର ମାରିଦେବାରୁ ସମସ୍ତେ ଧନ୍ୟ ଧନ୍ୟ କହିଲେ । କିନ୍ତୁ ମନ୍ତ୍ରୀ ଉମାପତି ଧରଙ୍କ ମଦନ ନାମକ ଜଣେ ପାଇକ ଏହାକୁ ହେୟଜ୍ଞାନ କରିବାରୁ ରାଜା ଏହା ଶୁଣି ରାଗିଗଲେ । ପରେ ରାଜାଦେଶରେ ମନ୍ତ୍ରୀ ଉମାପତିଧରଙ୍କ ଅଣ୍ଟା ଧରି ସେଠାକୁ ଅଣାଗଲେ (କଟିଂ ବଧ୍ୱା ସମାନୀତଶ୍ଚ) । ରାଜା ତାଙ୍କର

ଶିରଚ୍ଛେଦ ପାଇଁ ଆଦେଶ ଦେଲେ । କିନ୍ତୁ ସେଖ୍ ତାଙ୍କୁ ଏଥିରୁ ନିବୃତ୍ତ କରିଥିଲେ । ରାଜାଙ୍କ ହୁକୁମରେ ପାଇକ ମଦନ ଧନୁର୍ବିଦ୍ୟାରେ ଅଦ୍ଭୁତ କୌଶଳ ଦେଖାଇ ପୁରସ୍କୃତ ହେଲା । ସେଖ୍ଙ୍କ ପରାମର୍ଶରେ ମନ୍ତ୍ରୀଙ୍କୁ ସସମ୍ମାନରେ ଛାଡ଼ିଦିଆଗଲା ।

## ଜୟଦେବ କାହାଣୀ—

ଏପରି କିଛିଦିନ ଯିବା ପରେ ବୁଢନ ମିଶ୍ର ନାମକ ଜଣେ ପ୍ରସିଦ୍ଧ ଗାୟକ ରାଜସଭାରେ ଆସି ପହଞ୍ଚିଲେ । ସେ ସଙ୍ଗୀତ ବିଦ୍ୟାରେ ପାରଦର୍ଶିତା ଯୋଗୁଁ ଓଡ଼ିଶା ରାଜା କପିଳେନ୍ଦ୍ର ଦେବଙ୍କ ଠାରୁ 'ଷଡ଼ଚନ୍ଦ୍ରଗଜ' 'ଜୟପତ୍ର' ପାଇଥିଲେ । ସେ 'ପଠମଞ୍ଜରୀ' ରାଗରେ ଗୋଟିଏ ଗୀତ ବୋଲିବାରୁ ନିକଟରେ ଥିବା ଅଶ୍ୱତ୍ଥ ବୃକ୍ଷରୁ ପତ୍ର ସବୁ ତଳେ ଝଡ଼ିପଡ଼ିଲା । ସମସ୍ତେ ମିଶ୍ରଙ୍କୁ ପ୍ରଶଂସା କଲେ । ରାଜା ତାଙ୍କୁ ଷଡ଼ଚନ୍ଦ୍ର ଜୟପତ୍ର ଦେବାକୁ ସ୍ଥିର କଲେ । ବାଦ୍ୟ ଶବ୍ଦ ଶୁଣି ଗଙ୍ଗାସ୍ନାନକୁ ଯାଉଥିବା ଜୟଦେବ ମିଶ୍ରଙ୍କ ପତ୍ନୀ ପଦ୍ମାବତୀ ରାଜସଭାରେ ପହଞ୍ଚିଲେ । ( ତଦା ×

**ଜୟଦେବମିଶ୍ରସ୍ୟ ବ୍ରାହ୍ମଣୀ ପଦ୍ମାବତୀନାମା ତନ୍ତ୍ରୀନିର୍ଘୋଷାତ୍ । ଗଙ୍ଗାସ୍ନାନେ ଗଚ୍ଛେ ସତି ଝଟିତ୍ୟା ରାଜସଭାୟାଂ ସମାୟାତା ଚ)**

ସେ କହିଲେ, ମୋତେ ଓ ମୋ ସ୍ୱାମୀଙ୍କୁ ପରାସ୍ତ ନ କଲା ପର୍ଯ୍ୟନ୍ତ କାହାକୁ ଜୟପତ୍ର ଦିଆଯାଇ ପାରିବ ନାହିଁ । ସେ ତାଙ୍କ ସ୍ୱାମୀଙ୍କୁ ଡକାଇବାକୁ କହିଲେ "ମମଭର୍ତ୍ତା ସମାନୀୟତାମ୍" । କିନ୍ତୁ ସେଖ୍ ପଦ୍ମାବତୀଙ୍କୁ ପ୍ରଥମେ ଗୀତ ବୋଲିବାକୁ ଅନୁରୋଧ କରିବାରୁ ସେ ଗାନ୍ଧାର ରାଗରେ ଗୋଟିଏ ଗୀତ ବୋଲିଲେ । ଏହାର ଆକର୍ଷଣରେ ଗଙ୍ଗାର ସମସ୍ତ ନୌକା ତାଙ୍କ ନିକଟବର୍ତ୍ତୀ କୂଳରେ ଲାଗିଗଲେ । ନିର୍ଜୀବ ନୌକାଗୁଡ଼ିକ ସଙ୍ଗୀତ ଶକ୍ତି ଦ୍ୱାରା ସଜୀବ ବସ୍ତୁପରି ଗତିଶୀଳ ହେବାରେ ସମସ୍ତେ ଆଶ୍ଚର୍ଯ୍ୟ ହେଲେ । ଏହାପରେ ସେଖ୍ ବୁଢ଼ନ ମିଶ୍ରଙ୍କୁ ପଦ୍ମାବତୀଙ୍କ ସହ ପ୍ରତିଯୋଗିତା କରିବାକୁ କହିଲେ । ଜଣେ ସ୍ତ୍ରୀ ସହିତ ବିଦ୍ୟାବାଦରେ ଯୋଗଦେବାପାଇଁ ସେ କୁଣ୍ଠିତ ହେବାରୁ ପଦ୍ମାବତୀ ଜୟଦେବ ମିଶ୍ରଙ୍କୁ ଡାକିଆଣିବା ପାଇଁ ଦାସୀକୁ ପଠା-ଇଲେ (ସା ପଦ୍ମାବତୀ ଜୟଦେବ ମିଶ୍ରମାନୟିତୁଂ ଦାସୀଂ ପ୍ରେଷୟାମାସ) । ଜୟଦେବ ଆସିଲାରୁ ସେଖ୍ ବୁଢ଼ନ ମିଶ୍ରଙ୍କୁ ସଙ୍ଗୀତ ବୋଲି ଗଛରେ ପତ୍ର କଅଁଳେଇଦେବାପାଇଁ ଅନୁରୋଧ କଲେ । ସେ ନାସ୍ତି କରିବାରୁ ଜୟଦେବ ମିଶ୍ର ବସନ୍ତ ରାଗରେ ମଧୁର କଣ୍ଠରେ ଗୋଟିଏ ଗୀତ ବୋଲିବାରୁ ଅଶ୍ୱତ୍ଥ ଗଛ ପୁଣି ପଲ୍ଲବିଗଲା । ଜୟଦେବ ମିଶ୍ରଙ୍କର ଜୟ ହେଲା । ସେଖ୍ଙ୍କ ପରାମର୍ଶରେ ବୁଢନ ମିଶ୍ରଙ୍କୁ କେତେକ ସାମାନ୍ୟ ଦ୍ରବ୍ୟ ଦିଆଗଲା ।

ପରେ ଦୀପାବଳୀ ମହୋତ୍ସବ ପଡ଼ିବାରୁ ରାଜା ଲକ୍ଷ୍ମଣସେନ, ରାଣୀ ବଲ୍ଲଭା, ମନ୍ତ୍ରୀମାନେ, ସସ୍ତ୍ରୀକ ହଳାୟୁଧ ମିଶ୍ର ଏବଂ ଜୟଦେବ ମିଶ୍ର ଓ ତାଙ୍କ ପତ୍ନୀ ପଦ୍ମାବତୀ

ଗଙ୍ଗାରେ ସ୍ନାନ କରିବାକୁ ଯାଇଥିଲେ । ମଧୁକର ବଣିକ ଓ ତାଙ୍କ ପତ୍ନୀ ମାଧବୀ ମଧ୍ୟ ବସ୍ତ୍ର ମୂଲ୍ୟବାନ ଅଳଙ୍କାର ମଣ୍ଡିତ ହୋଇ ଗଙ୍ଗାସ୍ନାନକୁ ଯାଇଥିଲେ । ମାଧବୀ ପିନ୍ଧି-ଥିବା କଙ୍କଣ ଦୁଇପଟ ଓ ମଧୁକର ପିନ୍ଧିଥିବା କୁଣ୍ଡଳ ଦୁଇଟି ଅତ୍ୟନ୍ତ ଚମତ୍କାର ଓ ଚକଚକିଆ ଥିବାର ଦାସୀ ଠାରୁ ଶୁଣି ସେଗୁଡ଼ିକ ପାଇବା ପାଇଁ ରାଣୀଙ୍କର ଲୋଭ ହେଲା । ରାଣୀ ଜବରଦସ୍ତି ମାଧବୀ ହାତରୁ କଙ୍କଣ ଦୁଇପଟ କାଢ଼ିନେଇ ନିଜେ ଲଗାଇଦେଲେ । ରାଣୀଙ୍କ ହୁକୁମରେ ଜଣେ ଚାକର ମଧୁକରଙ୍କ କାନରୁ ଦୁଇଟିଯାକ କୁଣ୍ଡଳ ନେଇ ରାଜକୁମାରଙ୍କୁ ପିନ୍ଧାଇଦେଲେ ।

ବଣିକ ପତ୍ନୀ ମାଧବୀ ସେଖ୍‌ଙ୍କ ସମ୍ମୁଖରେ ରାଣୀଙ୍କୁ କଟୁଭାଷାରେ ଭର୍ତ୍ସନା କରିଥିଲେ ଏବଂ ଲକ୍ଷ୍ମଣସେନଙ୍କ ପୂର୍ବପୁରୁଷ କାଟୁରିଆ ଥିଲେ ବୋଲି ଉପାଇଦେଲେ । ରାଜା ମୁଣ୍ଡ ପୋତି ଉଭୟଙ୍କ କଳି ଶୁଣୁଥାନ୍ତି । ଶେଷରେ ସେଖ୍ କଳହର ମୀମାଂସା କରିଦେଲେ । ରାଣୀ କଙ୍କଣ ଦୁଇପଟ ପାଇଲେ ।

ସେଖ୍ ପଦ୍ମାବତୀ, ନର୍ତ୍ତକୀ ବିଦ୍ୟୁତ୍‌ପ୍ରଭା ଓ ଶଶିକଳାଙ୍କୁ ଦୁଇଟି ଲେଖାଏଁ କଙ୍କଣ; ଜୟଦେବ ମିଶ୍ର, ହଳାୟୁଧ ମିଶ୍ର, ଗୋବର୍ଦ୍ଧନ ଆଚାର୍ଯ୍ୟ ଓ ଗାଙ୍ଗୋନାଥଙ୍କୁ ଦୁଇଟି ଲେଖାଏଁ କୁଣ୍ଡଳ ଦେଇ ସନ୍ତୁଷ୍ଟ କରିଥିଲେ । ରାଜାଙ୍କୁ ମଧ୍ୟ ବୈଶିଷ୍ଟ୍ୟଯୁକ୍ତ ଦୁଇଟି କୁଣ୍ଡଳ, ଓ ସରସ୍ୱତୀଙ୍କ ଠାରୁ ବର ପାଇ କାଳିଦାସଙ୍କପରି ବଡ଼ କବି ହୋଇ-ଥିବା ଟେଲୀଜାତିର କବିରାଜ ଧୋୟୀଙ୍କୁ ଦୁଇଟି କୁଣ୍ଡଳ ଉପହାର ସ୍ୱରୂପ ଦିଆ-ଯାଇଥିଲା ।

ଏହା ପରେ ସେଖ୍‌ଙ୍କ ସମ୍ମୁଖରେ ବିଦ୍ୟୁତ୍‌ପ୍ରଭା ଓ ଶଶୀକଳା ମନ୍ତ୍ରୀ ଉମା-ପତିଧରଙ୍କ ବିରୋଧରେ ଅଭିଯୋଗ କରିଥିଲେ ଯେ ମନ୍ତ୍ରୀ ଉଭୟଙ୍କ ସଙ୍ଗେ ନାନା ପ୍ରକାର ସୁରତି କରି ରାତି ପାହିଲା ବେଳକୁ ୨୦ଟି ମୁଦ୍ରା ଦେଇଥିଲେ । "ସୁପ୍ରଭାତ ସମୟେ ଭୁକ୍ତେ ହାଭ୍ୟାଂ ନର୍ତ୍ତକୀଭ୍ୟାଂ ମୁଦ୍ରାବିଂଶତିଃ ପ୍ରଦୀୟତେ ମନ୍ତ୍ରୀ" । ଏପରି ସବୁକଥା ଖୋଲିଦେବାରୁ ମନ୍ତ୍ରୀଙ୍କ ସହିତ କଳି ଉପୁଜିଲା । ଶେଷରେ ସେଖ୍ ଏହାର ସମାଧାନ କରିଦେଲେ ।

ଏହା ପରେ ସେଖ୍ ରାଜା ଲକ୍ଷ୍ମଣ ସେନଙ୍କ ସାହାଯ୍ୟରେ ପାଣ୍ଡୁଠାରେ ଏକ ବିରାଟ ମସ୍‌ଜିଦ୍ ନିର୍ମାଣ କରି ତାର ପରିଚାଳନା ପାଇଁ ରାଜାଙ୍କ ଠାରୁ ପ୍ରଚୁର ଭୂସମ୍ପତ୍ତି ପାଇଥିଲେ । ପୀରମାନଙ୍କ ମାହାତ୍ମ୍ୟ ପ୍ରଚାରିତ ହେଲା । ମନ୍ତ୍ରୀ ହଳାୟୁଧ ମିଶ୍ରଙ୍କ ବ୍ୟବସ୍ଥା ଅନୁଯାୟୀ ସେଖ୍ ରାଜ୍ୟରେ ସର୍ବୋଚ୍ଚ ନମସ୍ୟ ବୋଲି ଘୋଷିତ ହେବାରୁ ସାତଶହ ବର୍ଷକାଳ ଭୂଗର୍ଭରେ ସମାଧିସ୍ଥ ମହାଯୋଗୀ ଚନ୍ଦ୍ରନାଥ ଅପମାନରେ ରାଜ୍ୟ ଛାଡ଼ି ପଳାଇଲେ । ଯୋଗୀ ଜ୍ଞାନନାଥ ପ୍ରଭୃତି ନିହତ ହେଲେ । ବ୍ରାହ୍ମଣ ପଣ୍ଡିତ କୃଷ୍ଣଧ୍ୱଜାଚାର୍ଯ୍ୟ ସେଖ୍‌ଙ୍କ ସେବା କରିଥିଲେ । ସମଗ୍ର ବଙ୍ଗଦେଶରେ ସେଖ୍‌ଙ୍କ ଅଖଣ୍ଡ ପ୍ରଭାବ ଓ ପ୍ରତିପତ୍ତି ପ୍ରତିଷ୍ଠିତ ହେଲା ।

ଏହି ପୁସ୍ତକରେ ସେଖ୍ ସତାଙ୍କ, ସର୍ବଦ୍ରଷ୍ଟା ଓ ସର୍ବଶକ୍ତିମାନ ବଙ୍ଗରାଜା ଲକ୍ଷ୍ମଣସେନ ସେଖ୍ଙ୍କ ବଶମ୍ବଦ ଓ ନାମମାତ୍ର ଶାସକ, ଉମାପତିଧର ଜଣେ କପଟୀ, ଲମ୍ପଟ ଅଥଚ ବୁଦ୍ଧିମାନ ସଚିବ, ଗୋବର୍ଦ୍ଧନାଚାର୍ଯ୍ୟ ଦୁର୍ବାସାତୁଲ୍ୟ କୋପୀ ଓ ନ୍ୟାୟବାଦୀ ଓ ମନ୍ତ୍ରୀ ହଲାୟୁଧ ମିଶ୍ର ସେଖ୍ଙ୍କ ଜଣେ ସ୍ତାବକ ଓ ପ୍ରଭାବ ବିସ୍ତାରରେ ସହାୟକ ରୂପେ ଚିତ୍ରିତ ହୋଇଛନ୍ତି । ଏହି ଅଲୌକିକ କାହାଣୀ ଗୁଡ଼ିକ ସଂପୂର୍ଣ୍ଣ କପୋଳକଳ୍ପିତ ଓ ଐତିହାସିକ ସତ୍ୟ ବିବର୍ଜିତ । ଏପରି କାହାଣୀରେ ମଧ୍ୟ ଜୟଦେବ ମିଶ୍ର ଲକ୍ଷ୍ମଣ ସେନଙ୍କ ସଭାରେ ଥିବା କୁତ୍ରାପି ସୂଚନା ମିଳୁ ନାହିଁ । ସେ ଅନାହୂତ ଭାବରେ ନିଜ ପତ୍ନୀ ପଦ୍ମାବତୀଙ୍କ ଠାରୁ ସମ୍ବାଦ ପାଇ ସେଖ୍ଙ୍କ ସମ୍ମୁଖରେ ଗୀତ ବୋଲିବା ପାଇଁ ଯାଇଥିଲେ । ଗ୍ରନ୍ଥକର୍ତ୍ତା ପରମ ଶ୍ରୀକୃଷ୍ଣଭକ୍ତ ଭୁବନବନ୍ଦିତ ସନ୍ଥଶିରୋମଣି ଜୟଦେବ ମିଶ୍ରଙ୍କୁ ଇସ୍‌ଲାମ ଧର୍ମ ପ୍ରଚାରକ ସେଖ୍ଙ୍କ ସମ୍ମୁଖରେ ଗୀତ ଗାନ ଦ୍ୱାରା କୁଣ୍ଡଳ ଦୁଇଟି ପୁରସ୍କାର ପାଇଥିବା ବର୍ଣ୍ଣନା କରି ପ୍ରାଚୀନ ଭାରତର ଗୌରବମୟ ଇତିହାସକୁ କଳଙ୍କିତ କରିଛନ୍ତି ।

ତେଣୁ ଏହି ଗ୍ରନ୍ଥର ସଂପାଦକ ବରେଣ୍ୟ ଐତିହାସିକ ଡକ୍ଟର ସୁକୁମାର ସେନ ବାଧ୍ୟ ହୋଇ ସ୍ୱୀକାର କରିଛନ୍ତି—

**"It indicates that Jayadeva did not originally belong to the court of Lakṣmaṇa Sena and that he had first come there as an outsider" (୩୨)**

ଡକ୍ଟର ସେନଙ୍କର ଉକ୍ତ ମତ ମଧ୍ୟ ଗ୍ରହଣୀୟ ନୁହେଁ । ଶ୍ରୀଚୈତନ୍ୟୋତ୍ତର ଯୁଗରେ ଶ୍ରୀ ଜୟଦେବଙ୍କ ଖ୍ୟାତି ବଙ୍ଗଦେଶରେ ବ୍ୟାପିଯିବାରୁ ଏପରି କପୋଳକଳ୍ପିତ କାହାଣୀ ସୃଷ୍ଟି କରାଯାଇଥିଲା ।

## ଶ୍ରୀ ଜୟଦେବ ଲକ୍ଷ୍ମଣସେନଙ୍କ ସଭାକବି ଥିବା ଜନଶ୍ରୁତିର ଉତ୍ପତ୍ତି—

ଶ୍ରୀଗୀତଗୋବିନ୍ଦର 'ବାଚଃ ପଲ୍ଲବୟତି" ଶ୍ଳୋକର ଆଧାରରେ ବର୍ଣ୍ଣିତ ଉମାପତିଧର ଲକ୍ଷ୍ମଣ ସେନଙ୍କ ଅମାତ୍ୟ ଭାବରେ ବିଶେଷ ଖ୍ୟାତିଲାଭ କରିଥିଲେ । ଏ ବିଷୟ ମେରୁତୁଙ୍ଗ ଆଚାର୍ଯ୍ୟ କୃତ ପ୍ରବନ୍ଧ ଚିନ୍ତାମଣି (୧୩୦୪ ଖ୍ରୀଷ୍ଟାବ୍ଦ) ଓ ଶ୍ରୀଗୀତଗୋବିନ୍ଦର କେତେକ ପ୍ରସିଦ୍ଧ ଟୀକାରେ ମଧ୍ୟ ବର୍ଣ୍ଣିତ ହୋଇଛି ।

---

(୩୨) 'SEKASUBHODAYA' of Halāyudha Misra Edited by Dr. Sukumar Sen M. A, Ph D., and published by the Asiatic Society, Calcutta, 1963, Introduction—P. VII

'ପ୍ରବନ୍ଧ ଚିନ୍ତାମଣି'ରେ ଗୌଡ଼ରାଜା ଲକ୍ଷ୍ମଣସେନ ଓ ତାଙ୍କ 'ସର୍ବବୁଦ୍ଧି-ନିଧାନ' ସଚିବ ଉମାପତିଧରଙ୍କ ବିପୁଳ ଖ୍ୟାତି ବ୍ୟାପୀ ଏକ ବିବରଣ ମିଳେ । ଏହି ପୁସ୍ତକରେ ଅନ୍ୟତ୍ର ବର୍ଣ୍ଣିତ 'ଜୟଦେବ ପଣ୍ଡିତ' ଲକ୍ଷ୍ମଣ ସେନଙ୍କ ସମ୍ବନ୍ଧୀୟ ଥିବା କୌଣସି ଉଲ୍ଲେଖ ନାହିଁ । ପରନ୍ତୁ ଜୈନମନ୍ତ୍ରୀ 'ବସ୍ତୁପାଳ' ଉଜ୍ଜ୍ୱଳ ତୀର୍ଥ ପର୍ଯ୍ୟଟନ ସମୟରେ 'ସୋମେଶ୍ୱରଦେବ' ଓ ଜୟଦେବ ନାମକ ଦୁଇଜଣ ପ୍ରସିଦ୍ଧ ପଣ୍ଡିତଙ୍କୁ ଗୋଟିଏ ଗୋଟିଏ ଶ୍ଳୋକର ପାଦପୂରଣ ଯୋଗୁଁ ଯଥାକ୍ରମେ ଅଷ୍ଟସହସ୍ର ଓ ଚତୁସହସ୍ର ମୁଦ୍ରା ପ୍ରଦାନ କରିଥିବା ବର୍ଣ୍ଣନା ହୋଇଛି । ଏଥିରେ ପଣ୍ଡିତ ଜୟଦେବ କେଉଁ ତୀର୍ଥରେ ଥିଲେ ତାହାର ସୂଚନା ନ ଥିଲେ ମଧ୍ୟ ସେ ତୀର୍ଥବାସୀ ପଣ୍ଡିତ ରୂପେ ଚିତ୍ରିତ ହୋଇଛନ୍ତି । (୩୭) ତେଣୁ 'ପ୍ରବନ୍ଧ ଚିନ୍ତାମଣି' ରଚନା ସମୟକୁ (୧୩୦୪ ଖ୍ରୀଷ୍ଟାବ୍ଦ) ଶ୍ରୀ ଜୟଦେବ ଲକ୍ଷ୍ମଣ ସେନଙ୍କ ସଭାକବି ଥିବା ଜନଶ୍ରୁତିର ସୃଷ୍ଟି ହୋଇ ନ ଥିଲା ।

ଚତୁର୍ଦ୍ଦଶ ଶତାବ୍ଦୀରେ ଆବିର୍ଭୂତ ପ୍ରସିଦ୍ଧ ମୈଥିଳ ଟୀକାକାର 'ଜଗଦ୍ଧର' କବିମାନଙ୍କ ନିନ୍ଦା ପ୍ରସଙ୍ଗରେ ଲକ୍ଷ୍ମଣ ସେନଙ୍କ ନାମୋଲ୍ଲେଖ କରିଛନ୍ତି । ତାଙ୍କ ପର-ବର୍ତ୍ତୀ ନାରାୟଣ ଦାସ ରାଜାଙ୍କ ନାମ ନ ଦେଇ 'ଉମାପତିଧର ନାମା' ସନ୍ଧିବିଗ୍ରହିକୋ ବୋଲି ଲେଖିଛନ୍ତି । କେବଳ ସୁଦୂର ରାଜପୁତାନା ଅନ୍ତର୍ଗତ ମିବାର ରାଜା କୁମ୍ଭକର୍ଣ୍ଣ ନରେନ୍ଦ୍ର (ପ୍ରାୟ ୧୪୫୦ ଖ୍ରୀଷ୍ଟାବ୍ଦ) ସ୍ୱକୃତ 'ରସିକପ୍ରିୟା' ଟୀକାରେ ପ୍ରଥମେ 'ବାଚଃ ପଲ୍ଲବୟତି' ଶ୍ଳୋକକୁ 'କ୍ଷେପକ' ବୋଲି କହି ଏହାର ବ୍ୟାଖ୍ୟା ଲେଖିଲାବେଳେ କବିରାଜ ଧୋୟୀଙ୍କ ବିଶେଷଣ 'ଶ୍ରୁତିଧର' ପଦକୁ ସ୍ୱତନ୍ତ୍ର ଜଣେ କବିଙ୍କ ନାମ ରୂପେ ଗ୍ରହଣ କରି ଏକ ଭ୍ରାନ୍ତ ମତ ଉପସ୍ଥାପିତ କରିଛନ୍ତି । ଏହା ଅନ୍ୟ କୌଣସି ଟୀକା-କାରଙ୍କ ଦ୍ୱାରା ଗୃହୀତ ହୋଇନାହିଁ । ସେ ମଧ୍ୟ ଏହି ଛଅଜଣ ଲକ୍ଷ୍ମଣସେନଙ୍କ ସଭାର ପ୍ରସିଦ୍ଧ ପଣ୍ଡିତ ଥିବା କିମ୍ବଦନ୍ତୀ ଉଦ୍ଧୃତ କରି ଯାଇଛନ୍ତି । ଯଥା— "ଇଦାନୀଂ କବି କବିରେଣନାମ୍ନାଂ ପରେରପି କବିଭିରିଦଂ ପଦ୍ୟଗଣିତଂ ଇତି ସ୍ୱ ପ୍ରଶଂସାର୍ଥଂ **କ୍ଷେପକମପି ତତ୍‌କୃତଂ ଶ୍ଳୋକଂ ସ୍ୱ ପ୍ରବନ୍ଧସ୍ୟ କୁର୍ବନ୍ତାହ** × × ଇତି ଷଟ୍‌ପଣ୍ଡିତାଃ ପ୍ରସ୍ୟରାଜ୍ଞୋ ଲକ୍ଷ୍ମଣସେନସ୍ୟ ପ୍ରସିଦ୍ଧା **ଇତି ରୂଢ଼ିଃ**" (୩୮) ବିକ୍ରମାଦିତ୍ୟଙ୍କ ରାଜସଭାରେ ନବରତ୍ନଙ୍କ ଅବସ୍ଥିତି ସମ୍ପ-ର୍କୀୟ କିମ୍ବଦନ୍ତୀ ଅକାଟ୍ୟ ଐତିହାସିକ ତଥ୍ୟ ଦ୍ୱାରା ଭ୍ରାନ୍ତ ବୋଲି ପ୍ରମାଣିତ ହେଲାପରି ରାଣା କୁମ୍ଭକର୍ଣ୍ଣଙ୍କ ଏହି ଭ୍ରାନ୍ତିମୂଳକ ଉଲ୍ଲେଖ ମଧ୍ୟ ଏକ ଐତିହାସିକ ପ୍ରମାଦ ।

---

(୩୭) 'ପ୍ରବନ୍ଧ ଚିନ୍ତାମଣି' ଇଂରେଜୀ ଅନୁବାଦ, ଜୟଦେବ ପୃ ୧୭୩
by C. H Tawney. ଉମାପତିଧର ପୃ ୧୮୧–୧୮୩

(୩୮) ନିର୍ଣ୍ଣୟ ସାଗର ପ୍ରେସ ଦ୍ୱାରା ମୁଦ୍ରିତ

ମହାମହୋପାଧ୍ୟାୟ ଶଙ୍କର ମିଶ୍ର ସ୍ୱ **ରସମଞ୍ଜରୀ** ଟୀକାରେ ରାଣା କୁମ୍ଭଙ୍କ ବ୍ୟାଖ୍ୟାକୁ ଅଗ୍ରାହ୍ୟ କରି କେବଳ ଉମାପତିଧରଙ୍କୁ ଲକ୍ଷ୍ମଣସେନଙ୍କ ଅମାତ୍ୟ ରୂପେ ଗ୍ରହଣ କରିଛନ୍ତି । ଯଥା—

"ଉମାପତିଧର ନାମ୍ନା ଲକ୍ଷ୍ମଣସେନାମାତ୍ୟେ।" । ମାନାଙ୍କ ନାମକ ଏକ ପ୍ରାଚୀନ ଟୀକାକାର 'କବିକ୍ଷ୍ମାପତି' ବିଶେଷଣ ପଦକୁ ଲକ୍ଷ୍ମଣସେନ ରୂପେ ବ୍ୟାଖ୍ୟା କରିଛନ୍ତି । ଯଥା—

"ଅସ୍ୟ ଶ୍ଳୋକସ୍ୟ କବିକ୍ଷ୍ମାପତି ରାଜା ଲକ୍ଷ୍ମଣସେନଃ" (୩୯)

ବନମାଳୀ ଭଟ୍ଟଙ୍କ 'ସଂଜୀବନୀ' ଟୀକାରେ (ଆନୁମାନିକ ୧୫୮୦ ଖ୍ରୀଷ୍ଟାବ୍ଦ) ଉମାପତିଧର ଲକ୍ଷ୍ମଣସେନଙ୍କ ମନ୍ତ୍ରୀ ରୂପେ ବ୍ୟାଖ୍ୟାତ ହୋଇଛନ୍ତି । ଯଥା – "ଉମାପତିଧର ସଂଜ୍ଞୋ ଲକ୍ଷ୍ମଣସେନମନ୍ତ୍ରୀ" (୪୦) ଭଗବନ୍ତ ଦାସ କୃତ 'ରସକଦମ୍ବ କଲ୍ଲୋଳିନୀ ଟୀକା' (୧୬୦୦ ଖ୍ରୀଷ୍ଟାବ୍ଦ)ରେ ଏହି ଅର୍ଥ ଗୃହୀତ ହୋଇଅଛି । (୪୧) ଯଥା—'ଉମାପତିଧରନାମା କବିଃ ଲକ୍ଷ୍ମଣସେନାମାତ୍ୟେ' ।

ପ୍ରାୟ ତିନିଶତ ବର୍ଷ ମଧ୍ୟରେ ବିଭିନ୍ନ ପ୍ରାନ୍ତରେ ରଚିତ ଶ୍ରୀଗୀତଗୋବିନ୍ଦର ବହୁ ଟୀକାରେ ଶ୍ଳୋକାଦ୍ୟରେ ଉକ୍ତ ଉମାପତିଧର ଲକ୍ଷ୍ମଣସେନଙ୍କ ସଭାକବି ଭାବରେ ସମଗ୍ର ଭାରତରେ ପ୍ରସିଦ୍ଧି ଲାଭ କରିଥିଲେ । କିନ୍ତୁ ଶ୍ଳୋକବର୍ଣ୍ଣିତ ସମସ୍ତ କବିଙ୍କୁ ଲକ୍ଷ୍ମଣସେନଙ୍କ ସଭାମଣ୍ଡନକାରୀ ରୂପେ ଅବିଚାରିତ ଭାବରେ ଗ୍ରହଣ କରିବା ଫଳରେ ଏପରି ଜନଶ୍ରୁତିର ଉଦ୍ଭବ ଘଟିଥିଲା ।

## ଶ୍ରୀ ଜୟଦେବ ଲକ୍ଷ୍ମଣସେନଙ୍କ ପୂର୍ବବର୍ତ୍ତୀ—

(କ) ଗଙ୍ଗସମ୍ରାଟ ରାଜରାଜଦେବ (୧୧୭୦—୧୧୯୦ ଖ୍ରୀଷ୍ଟାବ୍ଦ) ଓ ଅନଙ୍ଗଭୀମ (୧୧୯୦—୧୧୯୮)ଙ୍କ ସମସାମୟିକ ଗୋବର୍ଦ୍ଧନ ଆଚାର୍ଯ୍ୟଙ୍କ କନିଷ୍ଠ ସହୋଦର କବୀନ୍ଦ୍ର ଉଦୟନାଚାର୍ଯ୍ୟ କବିରାଜ ଶ୍ରୀ ଜୟଦେବ କୃତ 'ଶ୍ରୀଗୀତଗୋବିନ୍ଦମ୍'ର 'ଭାବବିଭାବିନୀ' ନାମ୍ନୀ ପ୍ରଥମ ଟୀକା ରଚନା କରିଥିଲେ । ଶ୍ରୀଗୀତଗୋବିନ୍ଦର ପ୍ରସାର

---

(୩୯) ମାନାଙ୍କ କୃତ 'ଟିପ୍ପଣୀ'— ଡକ୍ଟର ଭି' ଏମ୍ କୁଲକର୍ଣ୍ଣୀଙ୍କ ଦ୍ୱାରା ଇଂରେଜୀରେ ସଂପାଦିତ, ପୃ ୩

(୪୦) Des. Cat. of Sans Mss, B. O. R. I. Poona, Vol. XIII, pt I, Nos. 194-197, pp 234-240.

(୪୧) "Studies in Indian Literary History" by Dr. P. K. Gode, M. A., D. Litt, pp 146-153

ଏବଂ ଏହାର ଟୀକା ପ୍ରଣୟନ ପାଇଁ ଅନ୍ତତଃ କୋଡ଼ିଏ ବର୍ଷ ସମୟ ଦିଆଗଲେ ୧୧୯୮—୨୦=୧୧୭୮ ଖ୍ରୀଷ୍ଟାବ୍ଦ ବେଳକୁ ଅର୍ଥାତ୍ ଲକ୍ଷ୍ମଣସେନ ରାଜତ୍ୱ ଆରମ୍ଭ ବେଳକୁ ଏହାର ରଚନା ସମାପ୍ତ ହୋଇଥିଲା ।

(ଖ) ପଣ୍ଡିତ ଶ୍ରୀ ଭଗବତ ପ୍ରସାଦ ତ୍ରିପାଠୀ ପ୍ରତିପାଦନ କରିଛନ୍ତି ଯେ, ଶ୍ରୀଧର ଦାସ ବଲ୍ଲାଳସେନ ନୃପତିଙ୍କ ରାଜତ୍ୱରେ 'ସଦୁକ୍ତି କର୍ଣ୍ଣାମୃତମ୍' ଆରମ୍ଭ କରି-ଥିବା ବଲ୍ଲାଳ ସେନଙ୍କ ଦ୍ୱାରା ୧୦୯୧ ଶକାବ୍ଦ ବା ୧୧୬୯ ଖ୍ରୀଷ୍ଟାବ୍ଦରେ ସଙ୍କଳିତ 'ଦାନସାଗର' ଗ୍ରନ୍ଥରୁ ଜଣାଯାଏ । ତାହାହେଲେ ଲକ୍ଷ୍ମଣସେନଙ୍କ ରାଜତ୍ୱ ଆରମ୍ଭର ୯ ବର୍ଷ ପୂର୍ବରୁ 'ସଦୁକ୍ତିକର୍ଣ୍ଣାମୃତମ୍'ର ସଂକଳନ ପ୍ରାରବ୍ଧ ହୋଇଥିଲା । ଏହା ଦେବ ପ୍ରବାହ, ଶୃଙ୍ଗାର ପ୍ରବାହ, ଚାଟୁ ପ୍ରବାହ, ଅପଦେଶ ପ୍ରବାହ ଓ ଉଚ୍ଚାବଚ ପ୍ରବାହ ଏପରି ପାଞ୍ଚଟି ପ୍ରବାହରେ ବିଭକ୍ତ । ଏହାର ପ୍ରଥମ ଦୁଇ ପ୍ରବାହରେ 'ଶ୍ରୀଗୀତ-ଗୋବିନ୍ଦମ୍'ର ଶେଷ ଦୁଇସର୍ଗର ପାଞ୍ଚଟି ଶ୍ଳୋକ ଉଦ୍ଧୃତ ହୋଇଅଛି । (୪୨) ଯଥା—

| ଶ୍ରୀଗୀତଗୋବିନ୍ଦମ୍ | | ସଦୁକ୍ତିକର୍ଣ୍ଣାମୃତମ୍ |
|---|---|---|
| ୧୧ଶ ସର୍ଗ | — ଜୟଶ୍ରୀବିନ୍ୟସ୍ତୈର୍ମହିତଇବମନ୍ଦାର କୁସୁମୈଃ | ଦେବ ପ୍ରବାହ |
| ୭ଷ୍ଠ ସର୍ଗ | — ଅଙ୍ଗେଷ୍ୱାଭରଣଂ କରୋତି ବହୁଶଃ ପତ୍ରେଽପି ସଞ୍ଚାରିଣି | ଶୃଙ୍ଗାରପ୍ରବାହ |
| ୧୨ଶ ସର୍ଗ | — ପ୍ରତ୍ୟୂହପୁଲକାଙ୍କୁରେଣ ନିବିଡାଶ୍ଳେଷେ ନିମିଷେଣ ଚ | ,, |
| ,, | — ମାରାଙ୍କେ ରତିକେଳିସଙ୍କୁଳରଣାରମ୍ଭେ ତୟା ସାହସ | ,, |
| ,, | — ତସ୍ୟାଃ ପାଟଳପାଣିଜାଙ୍କିତମୁରୋ ନିଦ୍ରାକଷାୟେ ଦୃଶୀ | ,, |

ଅର୍ଥାତ୍ ବଲ୍ଲାଳ ସେନଙ୍କ ରାଜତ୍ୱର ଶେଷ ନଅବର୍ଷ ମଧ୍ୟରେ ପ୍ରାରବ୍ଧ ସ: କ: ମୃର ପ୍ରଥମ ପ୍ରବାହରେ ଯଦି ଶ୍ରୀଗୀତଗୋବିନ୍ଦର ଏକାଦଶ ସର୍ଗର ଶେଷ ଶ୍ଳୋକ ଏବଂ ତତ୍ପରବର୍ତ୍ତୀ 'ଶୃଙ୍ଗାର ପ୍ରବାହ'ରେ ଶ୍ରୀ ଗୀ: ଗୋ:ର ଦ୍ୱାଦଶ ବା ଶେଷ ସର୍ଗରୁ ଚାରୋଟି ଶ୍ଳୋକ ଉଦ୍ଧୃତ ହେଲା, ତେବେ ସଦୁକ୍ତିକର୍ଣ୍ଣାମୃତମ୍‌ର ସଂକଳନ ପ୍ରାରମ୍ଭ ସମୟକୁ (୧୧୬୯ ଖ୍ରୀଷ୍ଟାବ୍ଦ) ଶ୍ରୀଗୀତଗୋବିନ୍ଦ ରଚନା ସମାପ୍ତ ହୋଇଥିବା ସିଦ୍ଧାନ୍ତ କରାଯାଇ-ପାରେ । ଅତଏବ ଶ୍ରୀଗୀତଗୋବିନ୍ଦକାର ଶ୍ରୀ ଜୟଦେବ ଲକ୍ଷ୍ମଣସେନଙ୍କ (୧୧୭୮ରେ ରାଜତ୍ୱ ଆରମ୍ଭ) ପୂର୍ବବର୍ତ୍ତୀ ଓ ତାଙ୍କର ସଭାକବି ନ ଥିଲେ ।

(ଗ) ଭାରତର ଶେଷ ସ୍ୱାଧୀନ ନରପତି ପୃଥ୍ୱୀରାଜ (୧୧୬୯—୧୧୯୨ ଖ୍ରୀଷ୍ଟାବ୍ଦଙ୍କ) ସମସାମୟିକ, ତାଙ୍କର ବାଲ୍ୟମିତ୍ର, ମନ୍ତ୍ରୀ ଓ କବିବର ଉପାଧି ପାଇଥିବା "ଚନ୍ଦ ବରଦାଇ" ଡ଼ିଙ୍ଗଲ ବା ପ୍ରାଚୀନ ରାଜସ୍ଥାନୀ ଭାଷାରେ ଲିଖିତ 'ପୃଥ୍ୱୀରାଜ

(୪୨) 'ସଦୁକ୍ତିକର୍ଣ୍ଣାମୃତମ୍' ସୁରେଶଚନ୍ଦ୍ର ମୁଖାର୍ଜୀଙ୍କ ଦ୍ୱାରା ସଂପାଦିତ ପୃ ୮୦, ୧୩୨, ୩୦୩, ୩୦୫, ୩୧୦

ମହାକାବ୍ୟର ଆଦିପର୍ବରେ ପ୍ରାଚୀନ ସଂସ୍କୃତ କବିମାନଙ୍କ ପରଂପର ଅନୁ-
ସରଣ କରି କେତେଜଣ ପୂର୍ବତନ କବିଙ୍କର ଗୁଣଗାନ କରିଛନ୍ତି । ସେଥିରେ ସେ
ଶ୍ରୀଗୀତଗୋବିନ୍ଦକାର ଶ୍ରୀ ଜୟଦେବଙ୍କୁ ଅଷ୍ଟମ କବି ରୂପେ ସ୍ମରଣ କରି ସମ୍ମାନିତ
କରିଛନ୍ତି ।

"ଜୟଦେବ ଅଠଠଂ କବୀ କବ୍ବିରାୟଂ
ଜନେିଂ କେବଲଂ କର୍ତ୍ତି ଗୋବିନ୍ଦଗାଦ୍ୱଂ"

ଅର୍ଥାତ୍ ଅଷ୍ଟମ କବି କବିରାଜ ଜୟଦେବ ସର୍ବଦା ଗୋବିନ୍ଦଙ୍କ କୀର୍ତ୍ତିଗାନ କରନ୍ତି ।

ହିନ୍ଦୀ ସାହିତ୍ୟର ପ୍ରସିଦ୍ଧ ସମୀକ୍ଷକ ଶ୍ରୀ ହଜାରୀ ପ୍ରସାଦ ଦ୍ୱିବେଦୀ ବହୁ
ପରିଶ୍ରମ ସହକାରେ 'ପୃଥ୍ୱୀରାଜ ରାସୋ'ର ପ୍ରକ୍ଷିପ୍ତ ଅଂଶଗୁଡ଼ିକ ବାଦ୍‌ଦେଇ ଏକ ଶୁଦ୍ଧ
ଓ ସଂକ୍ଷିପ୍ତ ସଂସ୍କରଣ ୧୯୫୫ ମସିହାରେ ପ୍ରକାଶ କରିଛନ୍ତି । ଏହି ସଂସ୍କରଣରେ
ମଧ୍ୟ ମଙ୍ଗଳାଚରଣରେ ଶ୍ରୀ ଜୟଦେବଙ୍କ ସଂପର୍କୀୟ ପଦ ରହିଛି । ତେଣୁ ଚନ୍ଦକବି
ପୃଥ୍ୱୀରାଜରାସୋ ରଚନା କରିବା ବେଳକୁ (୧୧୬୯–୧୧୯୨) ଶ୍ରୀଗୀତଗୋବିନ୍ଦ
କର୍ତ୍ତା ରୂପେ ଶ୍ରୀ ଜୟଦେବଙ୍କ ଖ୍ୟାତି ସମଗ୍ର ଭାରତରେ ବ୍ୟାପିଯାଇଥିଲା ।

'ପୃଥ୍ୱୀରାଜରାସୋ' ପ୍ରଣେତା ଚନ୍ଦକବି ୧୬ ବର୍ଷ ପାଇଁ ଲକ୍ଷ୍ମଣ ସେନଙ୍କ
ସମକାଳୀନ ଥିଲେ । ଶ୍ରୀ ଜୟଦେବ ଚନ୍ଦକବିଙ୍କ ଦ୍ୱାରା ଏକ ପୂର୍ବ ସୂରି ରୂପେ ସମ୍ମା-
ନିତ ହୋଇଥିବାରୁ ସେ ମଧ୍ୟ ନିଶ୍ଚିତ ଭାବରେ ଲକ୍ଷ୍ମଣ ସେନଙ୍କ ପୂର୍ବବର୍ତ୍ତୀ । (୪୩)

## ସାଧୁପ୍ରଧାନ ଜୟଦେବ—

ଶ୍ରୀଲିଙ୍ଗରାଜ ମନ୍ଦିର ଜଗମୋହନ ପ୍ରବେଶ ଦ୍ୱାରରେ ଚୋଡ଼ଗଙ୍ଗଦେବ,
ରାଘବଦେବ, ଅନଙ୍ଗଭୀମଦେବ, ନରସିଂହଦେବ, ଭାନୁଦେବ ପ୍ରଭୃତି ପ୍ରସିଦ୍ଧ ଗଙ୍ଗ-
ସମ୍ରାଟମାନଙ୍କ ଲେଖସମୂହ ଉତ୍କୀର୍ଣ୍ଣ ହୋଇଅଛି । ସେଥିରୁ ଗୋଟିଏ ଲେଖରେ ସାଧୁ
ପ୍ରଧାନ ଜୟଦେବଙ୍କ ସଙ୍ଗେ ଆଗତ କୋମିନାୟକ ଓ ତାଙ୍କ କନ୍ୟା ମେଡ଼ମଦେବୀଙ୍କ
କୀର୍ତ୍ତିବାସେଶ୍ୱର ବା ଲିଙ୍ଗରାଜଙ୍କ ମନ୍ଦିରରେ ଅଖଣ୍ଡବର୍ତ୍ତୀ (ଦୀପ) ଜାଳିବା ପାଇଁ ଏକ
ଗ୍ରାମଦାନ ବିଷୟ ବର୍ଣ୍ଣିତ ହୋଇଅଛି । ଲେଖର ସମୟ ହେଉଛି ରାଘବ ଦେବଙ୍କ
ରାଜତ୍ୱର ୯ ଅଙ୍କ ଶ୍ରୀ.ହ ବା ୧୧୭୨ ଖ୍ରୀଷ୍ଟାବ୍ଦ । ଲେଖଟିର ବିଶେଷ ଗୁରୁତ୍ୱ ଥିବାରୁ
ତାହା ନିମ୍ନରେ ଉଦ୍ଧାର କରାଗଲା ।

---

(୪୩) ପୁରୀ 'ସଦାଶିବ ସଂସ୍କୃତ ମହାବିଦ୍ୟାଳୟ'ର ଅର୍ଦ୍ଧଶତାବ୍ଦୀ ଉତ୍ସବ 'ସ୍ମରଣିକା'ରେ
ପଣ୍ଡିତ ଶ୍ରୀ ଭଗବତ ତ୍ରିପାଠୀ ସାହିତ୍ୟାଧ୍ୟାପକଙ୍କ ପ୍ରକାଶିତ ପ୍ରବନ୍ଧ 'ଶ୍ରୀଗୀତ-
ଗୋବିନ୍ଦକାର ଜୟଦେବଙ୍କ ଜନ୍ମସ୍ଥାନ ଓ କାଳ',

"ସ୍ୱସ୍ତି ଶ୍ରୀ ରାଘବଦେବସ୍ୟ × × ପ୍ରବର୍ଦ୍ଧମାନ ସୂର୍ଦ୍ଧ ୧୦ବ,ରେ ବୁଧେ, ଶ୍ରୀକାର୍ତ୍ତିବାସେଶ୍ୱରାୟ ପ୍ରିତାୟେ ମେଡ଼ମଦେବ୍ୟା ସଦାବାଦଖଣ୍ଡକବର୍ତ୍ତି(ତ)ସ୍ୟା ମାତାପିତୋ କୋମି ନାୟକନ କୀର୍ତ୍ତିବାସେଶ୍ୱରସ୍ୟ ପ୍ରିତୟେ ଘୃତଂ ବନ୍ଦ୍ୟାତା କୂର୍ମପାଟକପର **ସାଧୁ-ପ୍ରଧାନ ଜୟଦେବ** ସମବାୟ ଦେବଧରଗ୍ରାମ ଦାସୟୁରସ୍ରେଠି ହସ୍ତାତ୍ କ୍ରୀତ୍ୱା ବାଦ୍ୱାତ୍ତା ଖଣ୍ଡଷେବ ସର୍ବକାର୍ତ୍ତିବାସେଶ୍ୱରାୟ ଧୀ (ଲ)" (୪୪)

ଲେଖୋକ୍ତ 'ସାଧୁପ୍ରଧାନ ଜୟଦେବ'ଙ୍କୁ ସାଧୁମାନଙ୍କ ମଧ୍ୟରେ ପ୍ରସିଦ୍ଧି ଲାଭ କରିଥିବା ଜୟଦେବ ଅର୍ଥରେ ଗ୍ରହଣ କରିବା ଭାଷାତତ୍ତ୍ୱ ଦୃଷ୍ଟିରୁ ସର୍ବଥା ଯୁକ୍ତିଯୁକ୍ତ । ସମାଜରେ ତାଙ୍କର ବିଶେଷ ପ୍ରଭାବ ନ ଥିଲେ ସେଯୁଗର ଏକ ରାଜକୀୟ ଲେଖରେ ସ୍ଥାନ ପାଇବା କଳ୍ପନାତୀତ । ସମୟର କୌଣସି ବ୍ୟବଧାନ ଘଟୁ ନ ଥିବାରୁ ଲେଖର ପାଠୋଦ୍ଧାରକ ପଣ୍ଡିତ ଶ୍ରୀ ସତ୍ୟନାରାୟଣ ରାଜଗୁରୁ ତାଙ୍କୁ ଭକ୍ତପ୍ରବର ଶ୍ରୀଗୀତ-ଗୋବିନ୍ଦକାର ଶ୍ରୀ ଜୟଦେବଙ୍କ ସହିତ ଚିହ୍ନିତ କରିଥିଲେ । କିନ୍ତୁ ପ୍ରସିଦ୍ଧ ଲିପିତତ୍ତ୍ୱ-ବିତ୍ ଡକ୍ଟର ଶ୍ରୀ ଦୀନେଶ ଚନ୍ଦ୍ର ସରକାର 'ସାଧୁପ୍ରଧାନ' ପଦକୁ ଜଣେ ବଡ଼ 'ସାହୁ-କାର' ବା ମହାଜନ ଅର୍ଥରେ ଗ୍ରହଣ କରି କୋମି ନାୟକ ଦେବଧର ଗ୍ରାମ ଖରିଦ୍ କରିବା ପାଇଁ ସାହୁକାର ଜୟଦେବଙ୍କୁ ସାଙ୍ଗରେ ଆଣିଥିବା ଉଲ୍ଲେଖ କରିଛନ୍ତି । (୪୫) ସମସାମୟିକ ଇତିହାସ ବିଚାରରେ ଡ଼କ୍ଟର ସରକାରଙ୍କ ମତ ଗ୍ରହଣୀୟ ନୁହେଁ ।

ଲେଖ ବର୍ଣ୍ଣିତ କୋମି ନାୟକ ଗଙ୍ଗ ରାଜବଂଶ ଅଧୀନରେ ଜଣେ ପଦସ୍ଥ ବ୍ୟକ୍ତି ଥିଲେ । ସେ ମୁଖଲିଙ୍ଗସ୍ଥ ମଧୁକେଶ୍ୱର ମନ୍ଦିରରେ ଅଖଣ୍ଡବର୍ତ୍ତି ଜାଳିବା ପାଇଁ ୧୦୩୩ ଶକାବ୍ଦ (୧୧୧୧ ଖ୍ରୀଷ୍ଟାବ୍ଦ) ଓ ୧୦୪୯ ଶକାବ୍ଦ (୧୧୨୭ ଖ୍ରୀଷ୍ଟାବ୍ଦ)ରେ ଭୂମିଦାନ କରିଥିବା ତତ୍ତ୍ୱ ଦୁଇଟି ଶିଳାଲେଖରୁ ଜଣାଯାଏ । (୪୬) ତେଣୁ ଉତ୍କଳର ଶ୍ରେଷ୍ଠ ଶୈବପୀଠ ଶ୍ରୀ ଲିଙ୍ଗରାଜ ମନ୍ଦିରରେ ଅଖଣ୍ଡଦୀପ ଜାଳିବା ପାଇଁ ଗୋଟିଏ ଗ୍ରାମ ଦାନକରିବା ତାଙ୍କ ପକ୍ଷେ ସ୍ୱାଭାବିକ ।

ଦ୍ୱାଦଶ ଶତାବ୍ଦୀ ପ୍ରଥମ ଭାଗରୁ କୂର୍ମପାଟକ ଦକ୍ଷିଣ ଓଡ଼ିଶାର ଏକ ପ୍ରଧାନ ବୈଷ୍ଣବ କ୍ଷେତ୍ର ରୂପେ ଖ୍ୟାତିଲାଭ କରିଥିବା ଅକାଟ୍ୟ ଲେଖଗତ ପ୍ରମାଣ ମିଳେ । ସେଠାରେ ଶ୍ରୀ ଜୟଦେବଙ୍କ ସମକାଳୀନ ବୃଦ୍ଧଜଣ ଗଙ୍ଗସମ୍ରାଟ ଚୋଡ଼ଗଙ୍ଗଦେବ, ମଧୁ-କାମାର୍ଣ୍ଣବ ଦେବ, ରାଘବ ଦେବ ଓ ରାଜରାଜ ଦେବଙ୍କ ରାଜତ୍ୱ କାଳର ୨୯ଟି ଲେଖ ଉତ୍କୀର୍ଣ୍ଣ ହୋଇଥିବାର ଦେଖାଯାଏ । (୪୭) ସେଥିମଧ୍ୟରୁ ପ୍ରାଚୀନତମ ଲେଖର

---

(୪୪) O. H. R J. Vol. V. pp. 180
(୪୫) E. I Vol. XXX p. 159, 1953-54
(୪୬) 'Inscriptions of Orissa', Rajaguru, Vol III, p I, p 60, p. 109.

ସମୟ ୧୦୩୫ ଶକାବ୍ଦ ବା ୧୧୧୩ ଖ୍ରୀଷ୍ଟାବ୍ଦ ଓ ଶେଷ ଲେଖର ସମୟ ୧୧୦୪ ଶକାବ୍ଦ ବା ୧୧୮୨ ଖ୍ରୀଷ୍ଟାବ୍ଦ । ଏପରି ଏକ ପ୍ରସିଦ୍ଧ ବୈଷ୍ଣବ କ୍ଷେତ୍ରରେ ସାଧୁପ୍ରଧାନ ଜୟଦେବ ୧୧୭୨ ଖ୍ରୀଷ୍ଟାବ୍ଦ ବେଳକୁ ଅବସ୍ଥାନ କରୁଥିବା ସର୍ବଥା ସମ୍ଭବପର । ସେଠାରୁ ଜଣେ ପ୍ରସିଦ୍ଧ ରାଜପୁରୁଷଙ୍କ ସଙ୍ଗରେ ଶ୍ରୀ କୀର୍ତ୍ତିବାସେଶ୍ୱର (ଲିଙ୍ଗରାଜ) ମନ୍ଦିରକୁ ଅଖଣ୍ଡଦୀପଦାନ କାର୍ଯ୍ୟୋପଲକ୍ଷେ ଆଗମନ ଏକ ଐତିହାସିକ ଘଟଣା ରୂପେ ଗ୍ରହଣୀୟ ।

**ସତ୍ୟର ପ୍ରତିଷ୍ଠା—** ନାନା ସୂତ୍ରରୁ ଉପଲବ୍ଧ ତଥ୍ୟ ସାହାଯ୍ୟରେ ନିର୍ବିବାଦରେ ନିର୍ଦ୍ଧାରଣ କରାଯାଇପାରେ ଯେ ଦ୍ୱାଦଶ ଶତାବ୍ଦୀର ପ୍ରାଚୀନଦୀ କୂଳବର୍ତ୍ତୀ କେନ୍ଦୁବିଲ୍ୱ ଶାସନରେ ଆବିର୍ଭୂତ କବିରାଜ ଶ୍ରୀ ଜୟଦେବଙ୍କ ସମସାମୟିକ ଗଙ୍ଗସମ୍ରାଟ ସମ୍ଭବତଃ ରାଘବ (୧୧୫୬—୧୧୭୦ ଖ୍ରୀଷ୍ଟାବ୍ଦ)ଙ୍କ ରାଜସଭାର ଶ୍ରେଷ୍ଠ ପଣ୍ଡିତ ଥିଲେ । ସନ୍ୟାସ ଗ୍ରହଣ ପରେ 'ସାଧୁପ୍ରଧାନ' ଜୟଦେବ ଦକ୍ଷିଣ ଓଡ଼ିଶାର ଏକ ପ୍ରଧାନ ବୈଷ୍ଣବ ତୀର୍ଥ ଶ୍ରୀକୂର୍ମମ୍‌ରେ କେତେକାଳ ଅବସ୍ଥାନ କରି ମହାପ୍ରଭୁ ଶ୍ରୀଚୈତନ୍ୟଙ୍କ ପରି ନିଜର ଶେଷଜୀବନ ଶ୍ରୀକ୍ଷେତ୍ରରେ ଅତିବାହିତ କରିଥିଲେ । ଶ୍ରୀଜଗନ୍ନାଥ ମନ୍ଦିରରେ ଲକ୍ଷ୍ମଣସେନଙ୍କ ସିଂହାସନାରୋହଣ (୧୧୭୮ ଖ୍ରୀଷ୍ଟାବ୍ଦ) ପୂର୍ବରୁ ଶ୍ରୀଗୀତଗୋବିନ୍ଦ ରଚିତ ଓ ଗୀତ ହେଉଥିଲା । କବିରାଜରାଜ ଶ୍ରୀହର୍ଷଙ୍କ ପରି ସେ 'ବାଚଃ ପଲ୍ଲବୟତି' ଶ୍ଳୋକରେ ପ୍ରସିଦ୍ଧ ଉତ୍କଳୀୟ କବିପଣ୍ଡିତ ଗୋବର୍ଦ୍ଧନାଚାର୍ଯ୍ୟ ଓ ଗୌଡ଼ ରାଜସଭା ପଣ୍ଡିତ ଉମାପତିଧର, ଶରଣ ଓ ଧୋୟୀ ପ୍ରଭୃତିଙ୍କ ଛିଦ୍ର ନିନ୍ଦାବାଦ କରି ନିଜର ପ୍ରୌଢ଼ି ପ୍ରକାଶ କରିଛନ୍ତି । ପ୍ରାୟ ଏକଶତାବ୍ଦୀ ହେଲା ଭକ୍ତପ୍ରବର କବିରାଜ ଶ୍ରୀ ଜୟଦେବଙ୍କୁ ଲକ୍ଷ୍ମଣସେନଙ୍କ ସଭାକବି ରୂପେ ଅବିଚାରିତ ଭାବରେ ଗ୍ରହଣ କରିବା ଦ୍ୱାରା ସଂସ୍କୃତ ସାହିତ୍ୟର ଇତିହାସରେ ଯେଉଁ ବିଭ୍ରାଟ ସୃଷ୍ଟି ହୋଇଛି ଉପରୋକ୍ତ ନିର୍ଦ୍ଧାରଣ ଗ୍ରହଣ ଦ୍ୱାରା ତାହା ଦୂରୀଭୂତ ହେବ ।



(୪୭) "Inscriptions of Orissa" Vol III, parts I & II Nos 598, 116, 14, 158, 167, 190, 192, 197, 200, 201 202, 203, 205, 227, 228, 233, 238, 239, 240, 248, 250, 253, 254, 261, 262, 263, 266, 270, 272.

# ଦଶମ ଅଧ୍ୟାୟ

# ଶ୍ରୀଗୀତଗୋବିନ୍ଦର ବିଭିନ୍ନ ଅନୁକୃତି

ଯୋଗଜନ୍ମା ଉତ୍କଳୀୟ କବିରାଜ ଶ୍ରୀ ଜୟଦେବ ରଚିତ 'ଶ୍ରୀଗୀତଗୋବିନ୍ଦମ୍' ସଂସ୍କୃତ ସାହିତ୍ୟ ଭଣ୍ଡାରରେ ଏକ ଚିର ଦେଦୀପ୍ୟମାନ ଅମୂଲ୍ୟ ରତ୍ନ । ଗ୍ରନ୍ଥଟି ପ୍ରଣୀତ ହେବାର ଅଳ୍ପକାଳ ମଧ୍ୟରେ ଏହା ସଂସ୍କୃତଜ୍ଞ ପଣ୍ଡିତମଣ୍ଡଳୀ ତଥା ଜନ-ସାଧାରଣଙ୍କ ମଧ୍ୟରେ ଅଭୂତପୂର୍ବ ଆଦର ଓ ପ୍ରସାରଲାଭ କରିଥିବାରୁ ଭାରତର ବିଭିନ୍ନ ପ୍ରାନ୍ତର ବହୁ ପ୍ରଖ୍ୟାତ ଗୀର୍ବାଣବାଣୀ ପଣ୍ଡିତ ଏହାର ସମକକ୍ଷ ଗ୍ରନ୍ଥ ରଚନା ଦ୍ୱାରା ଶ୍ରୀ ଜୟଦେବଙ୍କ ତୁଲ୍ୟ ଅମର ଯଶଃଲାଭର ଆଶା ପୋଷଣ କରିଥିଲେ । ଅନ୍ୟ କେତେକ ସ୍ୱନାମଧନ୍ୟ କବିପଣ୍ଡିତ ଏହି ଅନବଦ୍ୟ କୃତିର ମଧୁର-କୋମଳ-କାନ୍ତ ପଦାବଳୀରେ ମୁଗ୍ଧ ଓ ତନ୍ମୟ ହୋଇ ଏହାର ଅଷ୍ଟପଦୀ ଅନୁକରଣରେ ଗୀତମାନ ରଚନା କରିଥିଲେ । ଏହା ଏକ କ୍ଷୁଦ୍ର ମହାକାବ୍ୟ ହେଲେମଧ୍ୟ ଭାରତରେ ବିଭିନ୍ନ ପ୍ରାନ୍ତରେ ରଚିତ ଏହାର ବହୁସଂଖ୍ୟକ ଅନୁକୃତି ଓ ଟୀକା ପରିଦୃଷ୍ଟ ହୁଏ ! ସଂସ୍କୃତ ସାହିତ୍ୟ ଭଣ୍ଡାର ବହୁ ଅନବଦ୍ୟ ମହାକାବ୍ୟରତ୍ନ ଦ୍ୱାରା ସମୃଦ୍ଧ ହେଲେମଧ୍ୟ ସେଥିମଧ୍ୟରୁ ଅନ୍ୟ କୌଣସିଟିର ଏପରି ସୌଭାଗ୍ୟ ଘଟିନଥିଲା ।

ସର୍ବନାଶୀ କାଳର ପ୍ରଭାବରେ ସେଥିମଧ୍ୟରୁ କେତେକ ଚିରଲୁପ୍ତ, କେତେ-କର ମୂଳ ଗ୍ରନ୍ଥ ଏକାନ୍ତ ଦୁର୍ଲ୍ଲଭ ହେଲେମଧ୍ୟ ପରବର୍ତ୍ତୀ କାଳରେ ପ୍ରଣୀତ ବିଭିନ୍ନ 'ଟୀକା', 'ଅଳଙ୍କାର' ଓ 'ସୁଭାଷିତ ସଂଗ୍ରହ' ଗ୍ରନ୍ଥଗୁଡ଼ିକରେ ଉଦ୍ଧୃତ ଶ୍ଳୋକାବଳି ଦ୍ୱାରା ସେଗୁଡ଼ିକର ଅସ୍ତିତ୍ୱ ସୂଚିତ ହୁଏ । କେତେକର ନାମମାତ୍ର ଜ୍ଞାତ, କିନ୍ତୁ ମୂଳଗ୍ରନ୍ଥ ଅଦ୍ୟାବଧି ଦୁଷ୍ପ୍ରାପ୍ୟ । ବିଭିନ୍ନ ପ୍ରାନ୍ତରୁ ସଂଗୃହୀତ ଏବଂ ବିଭିନ୍ନ ପୋଥି-ଭଣ୍ଡାରରେ ସଂରକ୍ଷିତ ବହୁ ଗ୍ରନ୍ଥ ସମୀକ୍ଷା ଅଭାବରୁ ଏପର୍ଯ୍ୟନ୍ତ ଗବେଷକମାନଙ୍କ ଦୃଷ୍ଟିପଥକୁ ଆସିନାହିଁ । ତେଣୁ ଭାରତର ବିଭିନ୍ନ ପ୍ରାନ୍ତରେ ଅବସ୍ଥିତ ଗବେଷଣା ସଂସ୍ଥା ଓ ସଂଗ୍ରହାଳୟ ଦ୍ୱାରା ପ୍ରକାଶିତ ପତ୍ରପତ୍ରିକା ଏବଂ ବର୍ଣ୍ଣନାତ୍ମକ ସୂଚୀଗ୍ରନ୍ଥ **(Descriptive Catalogue)** ସମ୍ପୃକ୍ତରେ ଆଲୋଚିତ ଶ୍ରୀଗୀତଗୋବିନ୍ଦର ଅନୁକୃତି ଗୁଡ଼ିକ ସମ୍ବନ୍ଧରେ ଆଲୋକପାତ କରାଯାଉଛି ।

### (୧) ଉତ୍କଳାଧିପଙ୍କ ଦ୍ୱାରା ରଚିତ ଏହାର ପ୍ରଥମ ଅନୁକୃତି—

ଭାରତର ବହୁ ଅଞ୍ଚଳରେ ପ୍ରଚଳିତ ଜନଶ୍ରୁତି ଅନୁଯାୟୀ ଶ୍ରୀଜଗନ୍ନାଥ ମନ୍ଦିରରେ ନିତ୍ୟ ସେବ୍ୟରୂପେ ପ୍ରଚଳିତ ଶ୍ରୀଗୀତଗୋବିନ୍ଦର ବିଶେଷ ଆଦର ଓ

ଲୋକପ୍ରିୟତାରେ ଅସୂୟାପରବଶ ହୋଇ ଜନୈକ ଉତ୍କଳୀୟ ନରପତି ଏକ ନୂତନ ଗୀତଗୋବିନ୍ଦ ରଚନା କରି ଶ୍ରୀମନ୍ଦିରରେ ତାହାର ପ୍ରଚଳନ ପାଇଁ ଉଦ୍ୟମ କରିଥିଲେ । କିନ୍ତୁ ରାଜରଚିତ ଗ୍ରନ୍ଥ ମହାପ୍ରଭୁଙ୍କ ଦ୍ୱାରା ଗୃହୀତ ନ ହେବାରୁ ଶ୍ରୀଜଗନ୍ନାଥଭକ୍ତ ରାଜକବି ଅତ୍ୟନ୍ତ କ୍ଷୁବ୍ଧ ଓ ହତାଶ ହୋଇ ମହାପ୍ରଭୁଙ୍କ ଶରଣାପନ୍ନ ହେଲେ । ମହାପ୍ରଭୁଙ୍କ ସ୍ୱପ୍ନାଦେଶରେ ତତ୍‌କୃତ ଗ୍ରନ୍ଥର କେତୋଟି ଶ୍ଳୋକ ଶ୍ରୀଗୀତଗୋବିନ୍ଦର ଅନ୍ତର୍ଭୁକ୍ତ ହେବାରୁ ଉତ୍କଳାଧୀଶ ଆଶ୍ୱସ୍ତ ହୋଇଥିଲେ । ଶ୍ରୀଗୀତଗୋବିନ୍ଦର ଏହି ପ୍ରକ୍ଷିପ୍ତ ଶ୍ଳୋକର ସଂଖ୍ୟା ସମ୍ବନ୍ଧରେ ମତାନୈକ୍ୟ ପରିଦୃଷ୍ଟ ହୁଏ ।

ଭକ୍ତକବି ମହୀପତିଙ୍କ ଦ୍ୱାରା ପ୍ରାଚୀନ ମରହଟ୍ଟୀ ଭାଷାରେ ୧୬୮୪ ଶକାବ୍ଦ, ଅର୍ଥାତ୍ ସମ୍ବତ ୧୮୧୯ ବା ୧୭୬୨ ଖ୍ରୀଷ୍ଟାବ୍ଦରେ ପ୍ରଣୀତ 'ଭକ୍ତବିଜୟ' ନାମକ ଗ୍ରନ୍ଥରୁ ଜଣାଯାଏ ଯେ, ରାଜରଚିତ ଗୀତଗୋବିନ୍ଦରୁ ୨୪ଟି ଶ୍ଳୋକ ନେଇ ଶ୍ରୀଗୀତଗୋବିନ୍ଦର ଦ୍ୱାଦଶ ସର୍ଗର ଅଙ୍ଗୀଭୂତ କରିବା ପାଇଁ ଶ୍ରୀଜଗନ୍ନାଥ ମହାପ୍ରଭୁ ଆଦେଶ ଦେଇଥିଲେ । (୧) ଯଥା—

"ଏସେଂ ଏକୋନି କରୁଣାବଚନ । ପ୍ରସନ୍ନ ହାଲେ ନାରାୟଣ ।
ରାଜୟାଚେ ଗ୍ରଂଥାଂତୂନ । ଚୋବୀସ ଶ୍ଳୋକ ଘେତଲେ । ୪୭
ଜୟଦେବାଚେ ଗ୍ରଂଥୀ ଲିହୂନ ॥ ତତ୍କାଳ ଠେବୀ ଜଗଜ୍ଜୀବନ
ରାଜୟାଚେଁ ସମାଧାନ, ଇତୁକେନ ହାଲେଁ ତେଧବାଂ" । ୪୮

ନାଭାଜୀ ରଚିତ ଉତ୍ତର ଭାରତରେ ବହୁଳ ପ୍ରଚଳିତ 'ଭକ୍ତମାଳ' ଗ୍ରନ୍ଥର ଗୋଟିଏ ଟୀକା ବୃନ୍ଦାବନବାସୀ ଭକ୍ତକବି ପ୍ରିୟାଦାସ ୧୭୬୯ ସମ୍ବତ୍ ବା ୧୭୧୨ ଖ୍ରୀଷ୍ଟାବ୍ଦରେ ରଚନା କରିଥିଲେ । ସେଥିରୁ ଜଣାଯାଏ ଯେ 'ନୀଳାଚଳ ଧାମର ପଣ୍ଡିତ ନୃପତି'ଙ୍କ ଦ୍ୱାରା ରଚିତ ଗ୍ରନ୍ଥରୁ ବାରଟି ଶ୍ଳୋକ 'ଶ୍ରୀଗୀତଗୋବିନ୍ଦ'ର ଅନ୍ତର୍ଭୁକ୍ତ କରାଯାଇଥିଲା । ଯଥା—

"ନୀଳାଚଳଧାମ-ତାମେଁ ପଂଡିତ-ନୃପତି ଏକ,
କରି ସନ୍ଧି ନାମଧରି ପୋଥି ସୁଖ ଦାଇୟେ ॥

× × ×

ଆଜ୍ଞା ପ୍ରଭୁ ଦଇ "ମତବୁଡ଼େ ତୁ ସମୁଦ୍ରମାହିଁ
ଦୁସରେ ନ ଗ୍ରନ୍ଥ ଏସୋ, ବୃଥା ତନୁପାତ ହ୍ୱୈ ॥

(୧) ବମ୍ବେ ନିର୍ଣ୍ଣୟ ସାଗର ପ୍ରେସ୍ ଦ୍ୱାରା ୧୯୦୮ରେ ପ୍ରକାଶିତ 'ଭକ୍ତବିଜୟ' ଗ୍ରନ୍ଥ ।

ଦ୍ୱାଦଶ ସୁତଶ୍ଳୋକ ଲଖି ଦୀଳେ ସର୍ଗ ଦ୍ୱାଦଶ ମୈଂ
ତାକୁ ସଂଗ ଚଳେ ଜାକା ଖ୍ୟାତ ପାଚ ପାର ହେ ॥" (୨)

ଭକ୍ତକବି ରାମଦାସ ସ୍ୱକୃତ ଲୋକପ୍ରିୟ 'ଦାର୍ଢ୍ୟତାଭକ୍ତିରସାମୃତ'ରେ ଶ୍ରୀଗୀତଗୋବିନ୍ଦରେ ରାଜକୃତ ଉକ୍ତଲ ବାରଟି ଶ୍ଳୋକ ଅନ୍ତର୍ଭୁକ୍ତ ହୋଇଥିବାର ଉଲ୍ଲେଖ କରିଛନ୍ତି । ଯଥା :—

"ଶୁଭିଲ ଆକାଶ ବଚନ । ତୋ ଗ୍ରନ୍ଥ କଲି ମୁଁ ଗ୍ରହଣ ॥
ଦ୍ୱାଦଶ ସର୍ଗ ପରିମାଣ । ଜୟଦେବର ଗ୍ରନ୍ଥ ଜାଣ ॥
ବାର ସର୍ଗର ଆଦ୍ୟେ ତାର । ରହିବ ବାର ଶ୍ଳୋକ ତୋର ॥
ରାଜା ହୋଇଣ ଏଥେଁ ତୋଷ । ଗମିଲ ଆପଣା ଉଆସ ॥" (୩)

ପ୍ରସିଦ୍ଧ ମୈଥିଳ ପଣ୍ଡିତ ଚନ୍ଦ୍ରଦତ୍ତ କୃତ ସଂସ୍କୃତ 'ଭକ୍ତମାଳା' ଗ୍ରନ୍ଥପାଠରୁ ଜଣାଯାଏ ଯେ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ଦ୍ୱାରା ଶ୍ରୀକ୍ଷେତ୍ରାଧିପ କୃତ ଗ୍ରନ୍ଥ ଅନାଦୃତ ଓ ଭକ୍ତକବି ଶ୍ରୀ ଜୟଦେବ କୃତ ଶ୍ରୀଗୀତଗୋବିନ୍ଦ ସ୍ୱୀକୃତ ହୋଇଥିଲା । କିନ୍ତୁ ନିରାଶ ଓ ହତୋତ୍ସାହ ରାଜକବିଙ୍କୁ ଶ୍ରୀଜଗନ୍ନାଥଙ୍କ ସ୍ୱପ୍ନାଦେଶ ହେବାରୁ ସେ ସାନ୍ତ୍ୱନା ଲାଭ କରି ପ୍ରତ୍ୟହ ଭକ୍ତିପୂର୍ବକ ଶ୍ରୀଗୀତଗୋବିନ୍ଦ ପାଠ କରିଥିଲେ ଏବଂ ଦେଶବିଦେଶରେ ଏହା ପ୍ରଚାର କରିଥିଲେ ।

"ଉଭୟଂ ସ୍ଥାପୟାମାସ ଜଗନ୍ନାଥାଗ୍ରତଃ ସ୍ୱୟଂମ୍

× × ×

ବାଦ୍ରୁଶ୍ରୁତ୍ୱ ତେ ସର୍ବେ ଜୟଦେବେନ ନିର୍ମିତମ୍
ଉପରିଷ୍ଟାତ୍ ସ୍ଥାପିତଂ ତୁ ତଦଧୋ ରାଜନିର୍ମିତମ୍ ॥

× × ×

ନୃପଃ ସ୍ୱପ୍ନେନ ଦର୍ଶାଥ ପୁରୁଷୋତ୍ତମରୂପଧୃକ୍
କଶ୍ଚିଦ୍ ସମାଗତୋ ବ୍ରୁତେ କମର୍ଥଂ ଶୋଚସେ ବୃଥା
ଗୀତଗୋବିନ୍ଦସଦୃଶଂ ନାନ୍ୟତ୍ କାବ୍ୟଂ ପ୍ରିୟଂ ମମ

× × ×

---

(୨) 'ଶ୍ରୀ ଭକ୍ତମାଳ' 'ଶ୍ରୀ ପ୍ରିୟାଦାସଜୀ ଟୀକା କବିତା'
ପ୍ରକାଶକ— ତେଜକୁମାର ପ୍ରେସ ବୁକଡ଼ିପୋ, ଲକ୍ଷ୍ନୌ ପୃ ୩୬୧

(୩) ଦାର୍ଢ୍ୟତାଭକ୍ତି, ପଞ୍ଚପଞ୍ଚାଶତ ଅଧ୍ୟାୟ ପୃ ୪୨୬ । ୧୯୩୧ରେ ରାଧାରମଣ ପୁସ୍ତକାଳୟ ଦ୍ୱାରା ମୁଦ୍ରିତ ।

ତଦାରଭ୍ୟ ନୃପୋ ଜାତୋ ଜୟଦେବେଽତିଭକ୍ତିମାନ୍ ।
ସ୍ୱୟଂ ତୁ ଗୀତଗୋବିନ୍ଦଂ ପ୍ରପଠନ୍‌ଭକ୍ତିପୂର୍ବକମ୍"
ପ୍ରଖ୍ୟାପୟାମାସ ପୁନର୍ଦେଶେ ଦେଶେ ନୃପୋତ୍ତମଃ (୪)

ଏଥିରୁ ସ୍ପଷ୍ଟ ଜଣାଯାଏ ଯେ, ଉତ୍କଳାଧୀଶ ଶ୍ରୀଗୀତଗୋବିନ୍ଦର ଏକ ଅନୁକୃତି ରଚନା କରିଥିଲେ । ଏଦ୍ୱାର ଦ୍ୱାଦଶ ବା ଚତୁର୍ବିଂଶତି ଶ୍ଳୋକ ଶ୍ରୀଗୀତଗୋବିନ୍ଦରେ ସନ୍ନିବେଶ ସମ୍ବନ୍ଧରେ ଚନ୍ଦ୍ରଦତ୍ତ କୌଣସି ଉଲ୍ଲେଖ କରିନାହାନ୍ତି ।

ମିବାରର ପ୍ରସିଦ୍ଧ ରାଣା କୁମ୍ଭକର୍ଣ୍ଣ ନରେନ୍ଦ୍ର (୧୪୫୦ ଖ୍ରୀଷ୍ଟାବ୍ଦରେ) ଶ୍ରୀଗୀତ-ଗୋବିନ୍ଦର ଯେଉଁ 'ରସିକ ପ୍ରିୟା' ଟୀକା ରଚନା କରିଛନ୍ତି ତାହାର ଶେଷ ସର୍ଗରେ ଥିବା ନିମ୍ନୋକ୍ତ ଶ୍ଳୋକଟି ପରିଦୃଷ୍ଟ ହୁଏ । ଯଥା—

"ଇତ୍ଥଂ କେଳିତତୀର୍ବିହୃତ୍ୟ ଯମୁନାକୂଳେ ସମଂ ରାଧୟା
ତଦ୍ରୋମାବଳି ମୌକ୍ତିକାବଳିଯୁଗେ ବେଣୀଭ୍ରମଂ ବିଭ୍ରତି ।
ତତ୍ରାହ୍ଲାଦିକୁଚପ୍ରୟାଗଫଳୟୋର୍ଲିପ୍ସାବତୋର୍ହସ୍ତୟୋ-
ର୍ବ୍ୟାପାରାଃ ପୁରୁଷୋତ୍ତମସ୍ୟ ଦଦତୁ ସ୍ଫୀତାମୁଦାଂ ସଂପଦମ୍"

ପୁରୁଷୋତ୍ତମ (ଜଗନ୍ନାଥ) ଓ ଶ୍ରୀକୃଷ୍ଣଙ୍କ ଅଭିନ୍ନତ୍ୱ ପ୍ରକାଶକ ଉକ୍ତ ଶ୍ଳୋକ ପୁରୁଷୋ-ତ୍ତମ କ୍ଷେତ୍ରାଧିପଙ୍କ ଦ୍ୱାରା ରଚିତ ହୋଇ ଶ୍ରୀ ଜୟଦେବ କୃତ ଶ୍ରୀଗୀତଗୋବିନ୍ଦ ଶେଷରେ ସନ୍ନିବିଷ୍ଟ ହୋଇଥିବାର ଜଣାଯାଏ । ଉତ୍କଳରେ ଗୃହୀତ ଶ୍ରୀଗୀତ ଗୋବିନ୍ଦରେ ଉକ୍ତ ଶ୍ଳୋକ ପରିଦୃଷ୍ଟ ହୁଏନାହିଁ । ଏହାପରି ରାଣା କୁମ୍ଭଙ୍କ ରସିକ-ପ୍ରିୟା ଟୀକାରେ ବ୍ୟାଖ୍ୟାତ ୧୬ଟି ଶ୍ଳୋକ ପ୍ରାୟ ୧୬୫୦ରେ ରଚିତ କବିରାଜ ନାରାୟଣ ଦାସ କୃତ 'ସର୍ବାଙ୍ଗ ସୁନ୍ଦରୀ ଟୀକା'ରେ ମିଳେ ନାହିଁ । (୫) ରାଣା କୁମ୍ଭ ମଧ୍ୟ ନିଜ ଟୀକାର ଅନ୍ୟତ୍ର ରାଜକୃତ ଗ୍ରନ୍ଥର ଉଲ୍ଲେଖ କରିଛନ୍ତି । ଯଥା— "ପ୍ରବନ୍ଧ ପୃଥ୍ୱୀଭର୍ତ୍ତ୍ରା ପ୍ରବନ୍ଧ ପ୍ରୀତୟେ ହରେଃ" । (୬) ତେଣୁ ରାଣାକୁମ୍ଭଙ୍କ ରାଜତ୍ୱ ସମୟ ଅର୍ଥାତ୍ ୧୪୫୦ ଖ୍ରୀଷ୍ଟାବ୍ଦ ପୂର୍ବରୁ ଏହି ଅନୁକୃତି ରଚିତ ହୋଇଥିବା ସୁନିଶ୍ଚିତ । ସୂର୍ଯ୍ୟବଂଶୀୟ ଗଜପତି ପୁରୁଷୋତ୍ତମଦେବ ରାଣାଙ୍କ ପରବର୍ତ୍ତୀ (୧୪୬୭-୧୪୯୭ଖ୍ରୀଷ୍ଟାବ୍ଦ) ହୋଇଥିବାରୁ ତତ୍‌କୃତ 'ଅଭିନବ ଗୀତଗୋବିନ୍ଦ' ରାଣାଙ୍କ ଦ୍ୱାରା ସୂଚିତ ହେବା ଅସ-ମ୍ଭବ । ତେଣୁ ଶ୍ରୀଗୀତଗୋବିନ୍ଦର ଏହି ପ୍ରଥମ ଅନୁକୃତି ଉତ୍କଳର କୌଣସି

---

(୪) ନିର୍ଣ୍ଣୟ ସାଗର ପ୍ରେସ ଦ୍ୱାରା ମୁଦ୍ରିତ 'ଭକ୍ତମାଳ'

(୫) ମୋର ଇଂରେଜୀ ପ୍ରବନ୍ଧ "Sarvāngasundarī Tikā on the g g." O H. R. J, Vol. XIII pp 26-41 ଦ୍ରଷ୍ଟବ୍ୟ

(୬) ରସିକପ୍ରିୟା ଟୀକା, ନିର୍ଣ୍ଣୟ ସାଗର ପ୍ରେସ ସଂସ୍କରଣ ପୃ ୭୫

ଗଙ୍ଗସମ୍ରାଟଙ୍କ ଦ୍ୱାରା ନିଶ୍ଚୟ ରଚିତ ହୋଇଥିଲା । ଶ୍ରୀଗୀତଗୋବିନ୍ଦର ପରମ ଭକ୍ତ ଉକ୍ତ ନୃପତିଙ୍କ ମୂଳ ଗ୍ରନ୍ଥ ନ ମିଳିବା ପର୍ଯ୍ୟନ୍ତ ଏ ସଂପର୍କରେ କୌଣସି ସ୍ଥିର ସିଦ୍ଧାନ୍ତ କରାଯାଇ ପାରୁନାହିଁ ।

## (୨) ମୈଥିଳ ଭାନୁକବି କୃତ 'ଗୀତଗୌରୀଶ' ବା 'ଗୀତଗୌରୀପତି'—

ଶ୍ରୀଜଗନ୍ନାଥଙ୍କ ନିତ୍ୟସେବାରେ ଶ୍ରୀଗୀତଗୋବିନ୍ଦ ଗାନର ପ୍ରଚଳନ ପରେ ତୀର୍ଥାଟନ ଉଦ୍ଦେଶ୍ୟରେ ଭାରତର ବିଭିନ୍ନ ପ୍ରାନ୍ତରୁ ଶ୍ରୀକ୍ଷେତ୍ରକୁ ଆସୁଥିବା କବିପଣ୍ଡିତ ମାନଙ୍କ ଏଥିପ୍ରତି ଆଗ୍ରହ ଜାତ ହୋଇଥିଲା । ଏହାର ଭକ୍ତିଭାବରେ ପ୍ରଣୋଦିତ ହୋଇ ଉତ୍କଳ ପରି ସଂସ୍କୃତ ସାହିତ୍ୟ ଚର୍ଚ୍ଚା ପାଇଁ ପ୍ରସିଦ୍ଧ ଗଙ୍ଗାବିଧୌତ ମିଥିଳାର ପ୍ରସିଦ୍ଧ କବି ଭାନୁଦତ୍ତ ଏହାର ଏକ ଅନୁକୃତ ରଚନା କରିଥିଲେ । ତାହାର ନାମ 'ଗୀତଗିରିଶ' ବା 'ଗୀତଗୌରୀପତି' । ଭାନୁଦତ୍ତ ପରମ ଶିବୋପାସକ ଥିବାରୁ ଶ୍ରୀରାଧାକୃଷ୍ଣ ରମଣୀୟ ରହସ୍ୟଲୀଳା ପରିବର୍ତ୍ତରେ ତାଙ୍କର ଆରାଧ୍ୟ ଦେବତା ହର (ଗୌରୀଶ ବା ଗୌରୀପତି) ଓ ଗୌରୀଙ୍କ ରାସଲୀଳା ବର୍ଣ୍ଣନା ପାଇଁ ଉକ୍ତ ଗ୍ରନ୍ଥ ରଚନା କରିଥିଲେ । ଭାନୁଦତ୍ତ ଜଣେ ପ୍ରତିଭାଶାଳୀ କବିପଣ୍ଡିତ ଥିଲେ । ସେ ସ୍ୱ କୃତ **ରସମଞ୍ଜରୀ** ନାମକ ଅଳଙ୍କାର ଗ୍ରନ୍ଥ ଓ **ପାରିଜାତ** ନାମକ ଧର୍ମଶାସ୍ତ୍ରରେ ନିଜ ପିତା ଗଣେଶ୍ୱର ଓ ନିଜ ଜନ୍ମଭୂମି ବିଦେହଭୂ ବା ମିଥିଳାର ଭୂୟସୀ ପ୍ରଶଂସା କରିଛନ୍ତି । ଯଥା —

"ତାତୋ ଯସ୍ୟ **ଗଣେଶ୍ୱରୋ** କବିକୁଳାଲଙ୍କାରଚୂଡ଼ାମଣିଃ<br>
ଦେଶୋ ଯସ୍ୟ **ବିଦେହଭୂଃ** ସୁରସରିତ୍କଲ୍ଲୋଳ କିର୍ମୀରିତା ।<br>
ପଦ୍ୟେନ ସ୍ୱକୃତେନ ତେନ **କବିନା ଶ୍ରୀଭାନୁନା** ଯୋଜିତା<br>
ବାଗ୍‌ଦେବୀ ଶ୍ରୁତି ପାରିଜାତକୁସୁମସ୍ପର୍ଦ୍ଧିକାରୀ ମଞ୍ଜରୀ" (ରସମଞ୍ଜରୀ)

'ପାରିଜାତ' ନାମକ ଧର୍ମଶାସ୍ତ୍ରର ଆଦ୍ୟରେ ଉଭୟ ପିତା-ପୁତ୍ରଙ୍କ ପାଣ୍ଡିତ୍ୟ ସୂଚକ ନିମ୍ନୋକ୍ତ ଶ୍ଳୋକ ପରିଦୃଷ୍ଟ ହୁଏ ।

"ଯଥା **ଗଣପତେଃ** କାବ୍ୟଂ କାବ୍ୟଂ **ଭାନୁକବେ**ସ୍ତଥା<br>
ଅନୟୋଃ ସଙ୍ଗମ ଶ୍ଳାଘ୍ୟଃ ଶର୍କରାକ୍ଷୀରୟୋରିବ ॥ ୨ ॥<br>
ବସୁଧା ବିବୁଧାସ୍ତକଣ୍ଠଗ୍ରାଂଶୁକର ତାପିତାଃ<br>
କବେଃ ଶ୍ରୀ ଭାନୁଦତ୍ତସ୍ୟ ପାରିଜାତୋ ନିଷେବ୍ୟତାମ୍" ॥ ୩ ॥

ପ୍ରସିଦ୍ଧ ଐତିହାସିକ ସ୍ୱର୍ଗତଃ କାଶୀପ୍ରସାଦ ଜୟସ୍ୱାଲ ତୁଳନାତ୍ମକ ଆଲୋଚନା ଦ୍ୱାରା ପ୍ରମାଣିତ କରିଅଛନ୍ତି ଯେ, ପ୍ରଥମ ପ୍ରସିଦ୍ଧ ମୈଥିଳ ଧର୍ମଶାସ୍ତ୍ର ପ୍ରଣେତା ଚଣ୍ଡେଶ୍ୱର ଠାକୁର ସ୍ୱକୃତ 'ଶୁଦ୍ଧିରତ୍ନାକର' ଓ 'ଦାନରତ୍ନାକର' ନାମକ ଗ୍ରନ୍ଥଦ୍ୱୟରେ 'ପାରିଜାତ'

ଗ୍ରନ୍ଥରୁ ଉଦ୍ଧୃତି ପ୍ରଦାନ କରିଛନ୍ତି । (୭) ଚଣ୍ଡେଶ୍ୱର ଠାକୁର ୧୩୧୪ ପରେ ତାଙ୍କର ସମସ୍ତ ଧର୍ମଶାସ୍ତ୍ର ରଚନା କରିଥିଲେ । ସ୍ୱର୍ଗତଃ ମହାମହୋପାଧ୍ୟାୟ ଡ଼କ୍ଟର ପି:ଭି କାଣେଙ୍କ ମତରେ ଭାନୁଦତ୍ତଙ୍କ ପିତା ଗଣେଶ୍ୱର ଏବଂ ଚଣ୍ଡେଶ୍ୱରଙ୍କ ପିତା ବୀରେଶ୍ୱରଙ୍କ ଭାଇ ଗଣେଶ୍ୱର ମନ୍ତ୍ରୀ ଏକ ଓ ଅଭିନ୍ନ ବ୍ୟକ୍ତି ଥିଲେ । (୮) ଚଣ୍ଡେଶ୍ୱର ଭାନୁଦତ୍ତଙ୍କ 'ପାରିଜାତ' ଗ୍ରନ୍ଥରୁ ଉଦ୍ଧୃତି ଦେଇଥିବାରୁ ସେ ତାଙ୍କର କନିଷ୍ଠ ଭ୍ରାତୃ ସ୍ୱରୂପ ଥିଲେ । ଅତଏବ ୧୩୦୦ରୁ ୧୩୫୦ ଖ୍ରୀଷ୍ଟାବ୍ଦ ମଧ୍ୟରେ ଭାନୁଦତ୍ତଙ୍କ ଦ୍ୱାରା 'ଗୀତଗିରିଶ' ମହାକାବ୍ୟ ରଚିତ ହୋଇଥିବାର ଆପାତତଃ ସ୍ଥିର କରାଯାଇପାରେ ।

## ଗୀତଗୌରୀଶ—

ଏହା ଦଶଟି ସର୍ଗରେ ବିଭକ୍ତ । ଏହାର ମଙ୍ଗଳାଚରଣରେ ଶ୍ରୀ ଶିବ-ତାଣ୍ଡବ ଓ ଶେଷସର୍ଗରେ 'ଅର୍ଦ୍ଧନାରୀଶ୍ୱର'ଙ୍କ ମାହାତ୍ମ୍ୟ କୀର୍ତ୍ତିତ ହୋଇଛି । ପାଠକ ମାନଙ୍କ ଅବଗତି ନିମିତ୍ତ ଏହାର ପ୍ରାରମ୍ଭ ଓ ଶେଷାଂଶ ନିମ୍ନରେ ଉଦ୍ଧୃତ ହେଉଅଛି ।

ପ୍ରାରମ୍ଭ— "ସନ୍ଧ୍ୟାନୃତ୍ୟବଧୌ ଭୁଜଙ୍ଗମପତେର୍ଗୀତାମୃତଂ ଶୃଣ୍ୱତଃ
ପ୍ରତ୍ୟକ୍ଷସ୍ଖଳିତ ପ୍ରମୋଦସଲିଳସ୍ତୋମେ ସମୁତ୍ତିଷ୍ଠତି ॥
ମୌଳେରୁତ୍ପଥଗା କମୁତ୍ପଥଗା ଜାତେତି ଶଙ୍କାଯୁତଃ
ଦେବସ୍ୟ ତ୍ରିପୁରାନ୍ତକସ୍ୟ ଚକିତବ୍ୟାଲୋକିତଂ ପାତୁ ନଃ । ୧
ଭାନୋର୍ଗୀତଂ ସୁଧାସ୍ଫୀତଂ ଶମ୍ଭୋର୍ମୁଦ୍ରଭୁଣ୍ଡିମଃ
ବିଦୁଷାଂ ରସନାରଙ୍ଗଭୂମିର୍ଭରତୁ ନୃତ୍ୟତାମ୍ । ୨

ସମାପ୍ତି— ଅର୍ଦ୍ଧେବକ୍ଷସି ଶୈଳରାଜଦୁହିତୁଃ ବକ୍ଷୋରୁହଃ ଫୁର୍ଜ୍ଜତଃ
ସଂବୀକ୍ଷ୍ୟ ପ୍ରତିବିମ୍ବମିନ୍ଦୁ ସୁଭଗେ ଭାଗେନଜ ବକ୍ଷସଃ ।
ସ୍ୱସ୍ୟାପି ସ୍ତନମଣ୍ଡଳାଙ୍କୁରଧିୟା ବ୍ୟାଲୋଳମାଲୋକୟନ୍
ଦେବୋ ଦୈନ୍ୟ ମପାକରୋତୁ ଗିରିଜାଦେହାର୍ଦ୍ଧହାରୀହରଃ ॥
ଭବାନୀ ବର୍ତ୍ତତେ ଯାବଦଂଗଲଗ୍ନା ପୁରଦ୍ୱିଷଃ
ତାବଦ୍ଭକଣ୍ଠଗ୍ରନ୍ଥିତା ତାବତ୍ତୁ ଭାନୋର୍ବାଣୀ ବିରାଜତାମ୍"

ଇତିଶ୍ରୀ ଭାନୁଦତ୍ତ ବିରଚିତେ ଗୀତଗୌରୀପତାବର୍ଦ୍ଧନାରୀଶ୍ୱରୋ ନାମ ଦଶମଃସର୍ଗଃ । (୯)

---

(୭) A 'Descriptive Catalogue of Manuscripts in Mithila'— Introduction—p VII.

(୮) 'Literary Studies' by Dr P K. Gode, Vol I, pp 446-448

(୯) "A Descriptive Catalogue of Manuscripts in Mithila" by Dr. K. P. Jayswal, Vol II, pp. 51-52

ଶ୍ରୀଗୀତଗୋବିନ୍ଦର 'ଦଶାବତାର ସ୍ତୁତି' ନିମ୍ନୋଦ୍ଧୃତ ଗୀତରେ ପ୍ରତି-
ବିମ୍ବିତ ହୋଇଅଛି ।

"ଭ୍ରମତି ଜଗତି ସକଳେ ପ୍ରତିଲବମବିଶେଷଂ
ଶମୟିତୁମିବ ଜନନକ୍ଳେଶମଶେଷଂ ।
ପୁରନ୍ଦରଧୃତସମୀର ଶରୀର ଜୟ ଭୁବନାଧିପତେ । ୧
ପ୍ରବହତି ମଧୁମଥନଂ ନବନୀରଦଦଳିତଂ
ମରକତମଣିରିବ ବକ୍ଷସି ଲୁଳିତଂ
ପୁରନ୍ଦରଧୃତ ଶ୍ୟାମଲତରରୂପ ଜୟଭୁବନାଧିପତେ । ୨
କ୍ଷୀରସିନ୍ଧୁଲହରୀରୁଚିରଂ ରୁଚିବରଜାଲଂ
ପରମଧାମ କମ୍ବୁ ବହସି ବିଶାଳଂ ।
ପୁରନ୍ଦରଧୃତ ଶ୍ୟାମକରରୂପ ଜୟ ଭୁବନାଧିପତେ । ୩

ଶ୍ରୀଗୀତଗୋବିନ୍ଦ ଅନୁକରଣ ପ୍ରଚେଷ୍ଟା ନିମ୍ନୋକ୍ତ ଉଦ୍ଧୃତିରେ ପ୍ରତିଫଳିତ ।

"ସଖି ହେ କେଶୀମଥନମୁଦାରମ୍
ରମୟ ମୟାସହ ମଦନମନୋରଥ ଭାବିତୟା ସବିକାରମ୍" (ଗୀ: ଗୋ:)
"ସଖିହେ ଶଙ୍କରମୁଦିତବିଳାସମ୍
ସହ ସଂଗମୟମୟା ନଟୟ ରତିକୌତୁକଦର୍ଶିତହାସମ୍" (ଗୀ: ଗୋ:)

## (୩) ଗଜପତି ପୁରୁଷୋତ୍ତମଦେବ କୃତ 'ଅଭିନବ ଗୀତଗୋବିନ୍ଦମ୍'

**ରଚନା କାଳ:** ଓଡ଼ିଶା ଇତିହାସରେ କାଞ୍ଚୀବିଜେତା ରୂପେ ପ୍ରଖ୍ୟାତ ସୂର୍ଯ୍ୟବଂଶୀୟ ଗଜପତି ପୁରୁଷୋତ୍ତମଦେବ (୧୪୬୭—୧୪୯୭ ଖ୍ରୀଷ୍ଟାବ୍ଦ) 'ଶ୍ରୀଗୀତଗୋବିନ୍ଦମ୍'ର ଅନୁକରଣରେ ଦଶସର୍ଗ ବିଶିଷ୍ଟ 'ଅଭିନବ ଗୀତଗୋବିନ୍ଦମ୍' ରଚନା କରିଥିଲେ । ଏହାର ପ୍ରତିସର୍ଗର 'ପୁଷ୍ପିକା'ରେ ପୁରୁଷୋତ୍ତମ ଗଜପତିଙ୍କ ନାମୋଲ୍ଲେଖ ଦେଖାଯାଏ । ଯଥା: "ଇତିଶ୍ରୀ ପୁରୁଷୋତ୍ତମଦେବ ଗଜପତି ମହାରାଜକୃତେଽଭିନବ ଗୀତଗୋବିନ୍ଦେ ମହାକାବ୍ୟେ ।" କିନ୍ତୁ ଏହି ଗ୍ରନ୍ଥର ପ୍ରକୃତ ପ୍ରଣେତା ହେଉଛନ୍ତି ତାଙ୍କର ସଭାକବି କବିଚନ୍ଦ୍ର ରାୟ ଦିବାକର ମିଶ୍ର ॥ ମିଉଜିୟମରେ ସଂରକ୍ଷିତ ରଣ୍ଡୀଖୋଲ ପୋଥିର ନକଲ ସମୟ ହେଉଛି ଗଜପତି ପୁରୁଷୋତ୍ତମଦେବଙ୍କ ବିଜୟ ରାଜ୍ୟ ସମ୍ବତ୍ସର ୩୪ ଅଙ୍କ ବୈଶାଖ, ଶୁକ୍ଳ ପ୍ରତିପଦ୍, ଭାନୁବାସର । ଗଣନା ଅନୁସାରେ ଏହା ହେଉଛି ୧୪୯୪ଖ୍ରୀଷ୍ଟାବ୍ଦ ଏପ୍ରିଲ ମାସ ୬ତାରିଖ ରବିବାର (୧୦) ତେଣୁ ଏହା ନିଶ୍ଚିତଭାବରେ ୧୪୯୪ ଖ୍ରୀଷ୍ଟାବ୍ଦ ପୂର୍ବରୁ ରଚିତ ହୋଇଥିଲା ।

---

(୧୦) An Indian Ephemeris, by S. K. Pillai, Vol. V, p 190

**ସର୍ଗବିଭାଗ** — ଏହା ନିମ୍ନୋକ୍ତ ଦଶଟି ସର୍ଗରେ ବିଭକ୍ତ—

ଇତିଶ୍ରୀ ପୁରୁଷୋତ୍ତମଦେବ ଗଜପତି କୃତେ ଅଭିନବ ଗୀତଗୋବିନ୍ଦ ମହା-କାବ୍ୟେ ବିରହିଣୀ ବର୍ଣ୍ଣନେ ବିଧୁରରାଧୋ ନାମ ପ୍ରଥମଃ ସର୍ଗଃ ।

ନାୟିକାଭିଳାଷବର୍ଣ୍ଣନେ ସୋତ୍କଣ୍ଠବୈକୁଣ୍ଠୋ ନାମ ଦ୍ୱିତୀୟଃ ସର୍ଗଃ

ଅଭିସାରିକାବର୍ଣ୍ଣନେ ମୁଦିତରାଧୋ ନାମ ତୃତୀୟଃ ସର୍ଗଃ ॥

କଳହାନ୍ତରିତାବର୍ଣ୍ଣନେ ମୂଢରାଧୋ ନାମ ଚତୁର୍ଥଃ ସର୍ଗଃ ॥

ବିପ୍ରଲବ୍ଧାବର୍ଣ୍ଣନେ ବିଦଗ୍ଧମାଧବୋ ନାମ ପଞ୍ଚମଃ ସର୍ଗଃ ॥

ବାସକସଜ୍ଜାବର୍ଣ୍ଣନେ ସଂକ୍ଷୁବ୍ଧରାଧୋ ନାମ ଷଷ୍ଠଃ ସର୍ଗଃ ॥

ଖଣ୍ଡିତାବର୍ଣ୍ଣନେ ବିଲକ୍ଷପୁଣ୍ଡରୀକାକ୍ଷୋ ନାମ ସପ୍ତମଃ ସର୍ଗଃ ॥

ମାନିନୀ ବର୍ଣ୍ଣନେ ସୋତ୍କଣ୍ଠବୈକୁଣ୍ଠୋ ନାମାଷ୍ଟମଃ ସର୍ଗଃ ॥

ପ୍ରୋଷିତଭର୍ତ୍ତୃକାବର୍ଣ୍ଣନେଽନୁକୂଳରାଧୋ ନାମ ନବମଃ ସର୍ଗଃ ॥

ସ୍ୱାଧୀନଭର୍ତ୍ତୃକାବର୍ଣ୍ଣନେ ନନ୍ଦମୁକୁନ୍ଦୋ ନାମ ଦଶମଃ ସର୍ଗଃ ॥

**ବିଭିନ୍ନ ରାଗର ବ୍ୟବହାର** — ଶ୍ରୀଗୀତଗୋବିନ୍ଦରେ ନିମ୍ନୋକ୍ତ ଦଶଟି ରାଗର ବ୍ୟବହାର ଦେଖାଯାଏ । କିନ୍ତୁ ପ୍ରାୟ ତିନିଶତ ବର୍ଷ ମଧ୍ୟରେ ଓଡ଼ିଶାର ଉଚ୍ଚସ୍ତ ସଂସ୍କୃତ ଓ ଓଡ଼ିଆ ସାହିତ୍ୟରେ ବିଭିନ୍ନ ରାଗର ବ୍ୟବହାର କିପରି କ୍ଷିପ୍ରଗତିରେ ବୃଦ୍ଧିଲାଭ କରିଥିଲା ତାହା ଅଭିନବ ଗୀତଗୋବିନ୍ଦ ପାଠରୁ ଜଣାଯାଏ ।

ଶ୍ରୀଗୀତଗୋବିନ୍ଦର ବିଭିନ୍ନ ରାଗ—କର୍ଣ୍ଣାଟ, ମଙ୍ଗଳ ଗୁର୍ଜ୍ଜରୀ, ଗୋଣ୍ଡକିରୀ, ଦେଶୀ ବରାଡ଼ୀ, ବରାଡ଼ୀ, ବସନ୍ତ, ବିଭାସ, ଭୈରବୀ, ମାଳବ, ରାମକେରୀ ।

ଅଭିନବ ଗୀତଗୋବିନ୍ଦରେ ବ୍ୟବହୃତ ୫୮ଟି ରାଗ ବର୍ଣ୍ଣମାଳା କ୍ରମରେ ସଜ୍ଜିତ ହୋଇଅଛି ଏବଂ ବନ୍ଧନୀ ମଧ୍ୟରେ ସର୍ଗର ସଂଖ୍ୟା ସୂଚିତ ହୋଇଛି ।

ଅମର ପଞ୍ଚମ (୯), ଆହିର (୩), କକୁଭ (୫,୯), **କର୍ଣ୍ଣାଟ** (୩,୮) କର୍ଣ୍ଣାଟବଙ୍ଗାଳ (୭), କଳହଂସ (୨·୭) କଲ୍ୟାଣନାଟ (୪), କାମ୍ବୋଜୀ (୦), କୁରଞ୍ଜୀ (୧୦), କେଦାରଗୌଡ଼ା (୪), କୋଳାହଳ (୬), ଗାନ୍ଧାର (୭), **ଗୁର୍ଜ୍ଜରୀ** (୭· ୯) **ଗୋଣ୍ଡକିରୀ** (୧), ଗୌଡ଼ୀ (୩·୭), ଘଣ୍ଟାରବ (୬) ଚନ୍ଦ୍ରଦେଶୀ (୩), ଛାୟାନଟ (୫), ଛୋଡ଼ୀ (୭), ଦୀପକ (୫), ଦେଶାକ୍ଷ (୬), ଦେଶୀ (୪· ୭), ଧନାଶୀ (୭), ନଟନାରାୟଣ (୭), ନାଦରାମକିରୀ (୧·୭), ନାରାୟଣ ଗୌଡ଼ା (୨), ନାରାୟଣ ଦେଶାଖ୍ୟ (୫), ପୂରବୀ (୧୦), ବଙ୍ଗାଳଗୌଡ଼ା (୩), ବଙ୍ଗାଳବରାଡ଼ି (୯), **ବସନ୍ତ**

(୧), ବହୁଳ (୨), ବେଳାବେଳ (୧୦), ଭନ୍ନଷଡ଼ଜ (୧୦), ଭୂପାଳ (୨·୪) **ଭୈରବ** (୫), ଭୈରବୀ (୧·୮), ମଙ୍ଗଳ ଗୁଜ୍ଜରୀ (୧୦), ମଧ୍ୟମାଦ (୧), ମଲ୍ଲହାର (୭), ମଲ୍ଲାର (୫·୭), ମାଳବଗୌଡ଼ା (୧), ମାଳଶ୍ରୀ (୩), ମୁଖାରୀ (୨·୯), **ରାମକରୀ** (୧), ରେହଗୁପ୍ତି (୭), ଲଳିତ (୨·୪), ଶଙ୍କରାଭରଣ (୭), ଶ୍ରୀ (୭), ଶୁଦ୍ଧନଟ (୪), ଶୁଦ୍ଧବଙ୍ଗାଳ (୧୦), ଶୁଦ୍ଧବରାଡ଼ି (୫·୭), ଶୁଦ୍ଧବସନ୍ତ (୩), ସାଳ-କର୍ଣ୍ଣାଟ (୯), ସାମବରାଡ଼ି (୧୦), ସୋମ (୭), ସୌରାଷ୍ଟ୍ରଗୁଜ୍ଜରୀ (୨), ହିନ୍ଦୋଳ (୭)

**ଦଶାବତାର ସ୍ତୁତି—** ଶ୍ରୀଗୀତଗୋବିନ୍ଦ ପରି ଏଥିରେ ମଧ୍ୟ ଦଶାବତାର ସ୍ତୁତି ପ୍ରଦତ୍ତ ହୋଇଅଛି । କିନ୍ତୁ ଏଥିରେ ବୁଦ୍ଧଙ୍କ ପରିବର୍ତ୍ତରେ କଂସାସୁର ନିସୂଦନ କୃଷ୍ଣ ନବମ ଅବତାର ରୂପେ ପ୍ରତିପାଦିତ ହୋଇଛନ୍ତି । ଏଥିରେ ନୀଳଗିରି-ପତି ଅଚ୍ୟୁତ ବା ଜଗନ୍ନାଥଙ୍କୁ ଧ୍ରୁବପଦରେ ପ୍ରଣତି ଜ୍ଞାପନ କରାଯାଇଛି । ଜନନ-ପାଳନ-ନାଶ-କାରଣ ନୀଳଗିରିପତି ଅଚ୍ୟୁତମ୍ (ଧ୍ରୁବପଦମିଦମ୍) । ଦଶାବତାର ସ୍ତୁତି ଶେଷରେ ଗୋପୀଜନବଲ୍ଲଭ ଶ୍ରୀକୃଷ୍ଣଙ୍କ ମହାତ୍ମ୍ୟ କୀର୍ତ୍ତିତ ହୋଇଛି ।

"ଗୋପୀଜନାଲିଙ୍ଗିତମଧ୍ୟଭାଗଂ
ବେଣୁଂ ଧମନ୍ତଂ ଭୃଶଲୋଲନେତ୍ରମ୍ ।
କଳେବରେ ପ୍ରସ୍ଫୁଟରୋମବୃନ୍ଦଂ
ନମାମି କୃଷ୍ଣଂ ଜଗଦେକକନ୍ଦମ୍ ।
ଅଧରେ ବିନିହିତ ବଂଶଂ
ଚମ୍ପକକୁସୁମେନ ବିରଚିତୋତ୍ତଂସଂ ।
ବନିତଂ ଧମନ୍ତଂ ସଂବାମଂ
ସତତ ଭଜାମି ଜିତକଂସମ୍"

ଗ୍ରନ୍ଥ ଶେଷରେ ରାଜକବି ଅନ୍ୟ ଏକ 'ଦଶାବତାର ସ୍ତୁତି' ସନ୍ନିବେଶ କରି ଏହା ସମାପ୍ତ କରିଛନ୍ତି । ଏହାର ଶେଷାଂଶ ହେଉଛି—

'ଦଶବିଧଭବଦବତାରଂ ଭବଜଭୟାପହାରଂ
ନୃପପୁରୁଷୋତ୍ତମଗୀତଂ ସୁଖୟତୁ ସଜ୍ଜନଚିତ୍ତମ୍ (୭)

× × ×

ସକଳ·········ସମାପ୍ତମିଦଂ ପୁସ୍ତକମ୍"

ପଦଗୁଡ଼ିକର ଲାଳିତ୍ୟ, ମାଧୁର୍ଯ୍ୟ ଓ ସାବଲୀଳତା ଦୃଷ୍ଟିରୁ ଅଭିନବ ଗୀତଗୋବିନ୍ଦ ଶ୍ରୀଗୀତଗୋବିନ୍ଦର ସମକକ୍ଷ ନ ହେଲେ ମଧ୍ୟ ଏହା ତାହାର ଏକ

ଅନବଦ୍ୟ ଅନୁକୃତ ରୂପେ ଗ୍ରହଣୀୟ । ସ୍ଥାନାଭାବରୁ ଏଥିରୁ କେବଳ ବିରହବିଧୁରା ରାଧାଙ୍କ ବର୍ଣ୍ଣନା ନିମ୍ନରେ ଉଦ୍ଧାର କରାଗଲା ।

"କାଲୋ ବସନ୍ତୋ — ନବଯୌବନାଢ୍ୟଂ
ଲଜ୍ଜାବିଶେଷୋ — ମଦନସ୍ୟ ପୀଡ଼ା ।
ଜନେ ଦୁରାପେ — ମହତୀ ସ୍ପୃହା ମେ
ନ କୋଽପ୍ୟୁପାୟଃ — ସଖି ଜୀବନାୟ" (୧୧)

(୪) **ରାୟ ରାମାନନ୍ଦ କୃତ 'ଜଗନ୍ନାଥବଲ୍ଲଭନାଟକମ୍'—**

**ରଚନା କାଳ—** ସୂର୍ଯ୍ୟବଂଶୀୟ ଗଜପତି ପ୍ରତାପରୁଦ୍ର (୧୪୯୭—୧୫୩୨ ଖ୍ରୀଷ୍ଟାବ୍ଦ) ଅଧୀନରେ ରାଜମହେନ୍ଦ୍ରି ଠାରେ ଶାସକ ରୂପେ ନିଯୁକ୍ତ କବିପଣ୍ଡିତ ରାୟ ରାମାନନ୍ଦ ପଟ୍ଟନାୟକ ସ୍ୱ ପୃଷ୍ଠପୋଷକଙ୍କ ସନ୍ତୋଷ ବିଧାନ ନିମିତ୍ତ 'ଜଗନ୍ନାଥ-ବଲ୍ଲଭ' ନାମକ ସଂଗୀତ ନାଟକ ନିର୍ମାଣ କରିଥିଲେ । ଯଥା—

"ଶ୍ରୀ ଭବାନନ୍ଦ ରାୟସ୍ୟ ତନୁଜେନ ଶ୍ରୀହରିଚରଣାଙ୍କିତମାନସେନ ଶ୍ରୀ ରାମାନନ୍ଦରାୟେଣ କବିନା ତଦ୍‌ଗୁଣାଲଂକୃତଂ **ଶ୍ରୀଜଗନ୍ନାଥବଲ୍ଲଭନାମ** ଗଜପତି ପ୍ରତାପରୁଦ୍ରପ୍ରିୟଂ ରାମାନନ୍ଦ-**ସଂଗୀତ ନାଟକଂ** ନିର୍ମାୟ ସମର୍ପିତମଭିନେଷ୍ୟାମି"

ପାଣ୍ଡିଅଙ୍କ ବିଚାରରେ ଉକ୍ତ ନାଟକଟି ମହାପ୍ରଭୁ ଶ୍ରୀଚୈତନ୍ୟଙ୍କ ଶ୍ରୀକ୍ଷେତ୍ର ଆଗମନ (୧୫୦୯ ଖ୍ରୀଷ୍ଟାବ୍ଦ) ପୂର୍ବରୁ ରଚିତ ହୋଇଥିଲା ।

**ବ୍ୟବହୃତ ବିଭିନ୍ନ ରାଗ —** ଏଥିରେ ପାଞ୍ଚଟି ଅଙ୍କ ହେଉଛି— ଇତି ପୂର୍ବରାଗୋ ନାମ ପ୍ରଥମୋଽଙ୍କଃ, ଇତି ଭାବ ପରୀକ୍ଷା ନାମ ଦ୍ୱିତୀୟୋଽଙ୍କଃ; ଭାବ-ପ୍ରକାଶୋ ନାମ ତୃତୀୟୋଽଙ୍କଃ, ରାଧାଭିସାରୋ ନାମ ଚତୁର୍ଥୋଽଙ୍କଃ, ଇତି ରାଧାସଙ୍ଗମୋ ନାମ ପଞ୍ଚମୋଽଙ୍କଃ ॥ ଶ୍ରୀଗୀତଗୋବିନ୍ଦର ୨୦ଟି ଗୀତ ଅନୁକରଣରେ ରାୟକବି ଉକ୍ତ ସଂଗୀତ ନାଟକରେ ବିଭିନ୍ନ ରାଗ ନିବଦ୍ଧ ୨୧ଟି ସଂଗୀତ ସନ୍ନିବେଶ କରିଛନ୍ତି । ଦୁଇଟି ସଂଗୀତରେ 'ସାମଗୁର୍ଜ୍ଜରୀ'ର ନିର୍ଦ୍ଦେଶ ଯୋଗୁଁ ଏଥିରେ ସମୁଦାୟ ନିମ୍ନଲିଖିତ ୨୦ଟି ରାଗ ବ୍ୟବହୃତ ହୋଇଅଛି ।

---

(୧୧) ଗ୍ରନ୍ଥ ସମ୍ବନ୍ଧରେ ସବିଶେଷ ବିବରଣ ଜାଣିବା ପାଇଁ ମୋର "Abhinanava Gitagovinda by Gajapati Purushottama Deva" ପ୍ରବନ୍ଧ ଦ୍ରଷ୍ଟବ୍ୟ । O. H. R. J. Vol IX, Nos. 3-4. pp. 61-68,

ପ୍ରଥମ ଅଙ୍କ — ନଟ, କେଦାର, ବସନ୍ତ, ଗୋଣ୍ଡକରୀ
ଦ୍ୱିତୀୟ ଅଙ୍କ— ଗାନ୍ଧାର, ତୋଡ଼ୀବରାଡ଼ି, ସାମଗୁର୍ଜ୍ଜରୀ, ମହ୍ଲାର
ତୃତୀୟ ଅଙ୍କ — ସାମଗୁର୍ଜ୍ଜରୀ, ସହଯ୍ଯୀ, ଦେଶାଖ କର୍ଣ୍ଣାଟ ।
ଚତୁର୍ଥ ଅଙ୍କ — ମାଳବ, ଦୁଃଖୀବରାଡ଼ୀ, ସାମତୋଡ଼ୀ, ରାମକେଳି, ମାଳବ
ପଞ୍ଚମ ଅଙ୍କ — ସୁଖସିନ୍ଧୁଡ଼ା, ଆହ୍ୱର, ଲଳିତ, ମଙ୍ଗଳଗୁର୍ଜ୍ଜରୀ ।

ଏହାର ସଂଗୀତ ଗୁଡ଼ିକ ଶ୍ରୀଗୀତଗୋବିନ୍ଦର ଗୀତଗୁଡ଼ିକ ପରି ଲଳିତ କାନ୍ତ ଓ ମଧୁର ଥିବାରୁ ମହାପ୍ରଭୁ ଶ୍ରୀଚୈତନ୍ୟ ଏଗୁଡ଼ିକ ଶ୍ରବଣରେ ବିଶେଷ ଆନନ୍ଦ ଅନୁଭବ କରୁଥିବା କୃଷ୍ଣଦାସ ଗୋସ୍ୱାମୀ କୃତ 'ଶ୍ରୀଚୈତନ୍ୟ ଚରିତାମୃତ' ପାଠରୁ ଜଣାଯାଏ । ଏଥିରୁ ଗୋଟିଏ ଗୀତ ନିମ୍ନରେ ଉଦ୍ଧୃତ ହେଲା—

( ଗୋଣ୍ଡକରୀ ରାଗେଣ )

"କଳୟତି ନୟନେ ଦିଶି ଦିଶି ବଳିତଂ
ପଙ୍କଜମିବ ମୃଦୁମାରୁତଚଳିତଂ ।
କେଳିବିପିନଂ ପ୍ରବିଶତି ରାଧା
ପ୍ରତିପଦସମୁଦିତମନସିଜବାଧା ।
ବିନିଦଧତି ମୃଦୁମନ୍ଥରପାଦଂ
ରଚୟତି କୁଞ୍ଜରଗତିମନୁବାଦଂ ।
ଜନୟତୁ ରୁଦ୍ରଗଜାଧିପମୁଦିତଂ
ରାମାନନ୍ଦ ରାୟ କବି ଗଦିତମ୍"

## (୫) ଜୟଦେବ ଆଚାର୍ଯ୍ୟ କୃତ 'ପୀୟୂଷ ଲହରୀ ନାଟିକା'—

ଗଜପତି ପ୍ରତାପରୁଦ୍ର ଦେବଙ୍କ ଗୁରୁ ଓ ବ୍ୟବହର୍ତ୍ତା ମହାପାତ୍ର ପ୍ରସିଦ୍ଧ କବି-ଡିଣ୍ଡିମ ଜୀବଦେବାଚାର୍ଯ୍ୟଙ୍କ ପୁତ୍ର ଶ୍ରୀ ଜୟଦେବ ଆଚାର୍ଯ୍ୟ 'ଶ୍ରୀଗୀତଗୋବିନ୍ଦମ୍'ର ପରିପୂରକ 'ପୀୟୂଷ ଲହରୀ' ନାମକ ଏକ ରୂପକ ବା ଏକାଙ୍କିକା ରଚନା କରିଥିଲେ । ଏହା ଗଜପତି ପ୍ରତାପରୁଦ୍ରଙ୍କ ରାଜତ୍ୱ କାଳରେ ଶ୍ରୀଜଗନ୍ନାଥ ମନ୍ଦିରରେ ଅଭିନୀତ ହୋଇଥିଲା । ଯଥା—

"ଅହୋ ଭଗବତା ଭାଗବତ ଜନଶୀତମୟୂଖସ୍ୟ ନୀଳାଚଳମୌଳିମଣ୍ଡନ ମହାନୀଳମଣେଃ ଗରୁଡ଼ଧ୍ୱଜସ୍ୟ ପ୍ରାସାଦେ ପ୍ରସାଦମିଳିତା ସାମାଜିକାଃ".

ଗ୍ରନ୍ଥ ଶେଷରେ କବି ଦାରୁବ୍ରହ୍ମ ଜଗନ୍ନାଥଙ୍କ କୃପାଭିକ୍ଷା କରିଛନ୍ତି ।

"ଶୁଭମସ୍ତୁ ସର୍ବଜଗତାଂ ନିରନ୍ତରଂ
ନ ରିପୋରପି ସ୍ଫୁରତୁ ବୈପଦଂପଦଂ ।
ଜଗଦୀଶ୍ୱରଃ କପଟଦାରୁ ବିଗ୍ରହଃ
କରୁଣାକଟାକ୍ଷଲହରୀଂ ବିମୁଞ୍ଚତୁ ॥"

ଶ୍ରୀଗୀତଗୋବିନ୍ଦ ପରି ଏଥିରେ ଶ୍ରୀରାଧାକୃଷ୍ଣଙ୍କ ବାସନ୍ତୀ ରାସଲୀଳା ବର୍ଣ୍ଣିତ ହୋଇ-ଅଛି । (୧୨)

## (୬) ଜୟଦେବ ଆଚାର୍ଯ୍ୟ କୃତ 'ବୈଷ୍ଣବାମୃତମ୍'—

କବିପଣ୍ଡିତ ଜୟଦେବ ଆଚାର୍ଯ୍ୟ ଶ୍ରୀରାଧାକୃଷ୍ଣ ପ୍ରେମଲୀଳା ବିଷୟକ 'ବୈଷ୍ଣବାମୃତମ୍' ନାମକ ଅନ୍ୟ ଏକ ନାଟକ ରଚନା କରିଥିବା ପଣ୍ଡିତ ଶ୍ରୀ ନୀଳକଣ୍ଠ ମିଶ୍ରଙ୍କ ପ୍ରବନ୍ଧ ପାଠାରୁ ଜଣାଯାଏ । ଏଥିରେ ମଧ୍ୟ 'ଶ୍ରୀଗୀତଗୋବିନ୍ଦମ୍'ର ପ୍ରଭାବ ପରିଲକ୍ଷିତ ହୁଏ । (୧୩)

## (୭) ବିଠ୍‌ଠଲନାଥଙ୍କ 'ଶୃଙ୍ଗାର ରସମଣ୍ଡନମ୍'—

ଶୁଦ୍ଧାଦ୍ୱୈତବାଦର ପ୍ରତିପାଦକ ଓ ବଲ୍ଲଭାଚାର୍ଯ୍ୟ ସଂପ୍ରଦାୟର ପ୍ରତିଷ୍ଠାତା ଶ୍ରୀ ବଲ୍ଲଭାଚାର୍ଯ୍ୟ (୧୪୭୯—୧୫୩୦ଖ୍ରୀଷ୍ଟାବ୍ଦ) କିଛିକାଳ ଶ୍ରୀକ୍ଷେତ୍ରରେ ଅବସ୍ଥାନ କରିବା ସମୟରେ ଶ୍ରୀଚୈତନ୍ୟ ଓ ରାୟ ରାମାନନ୍ଦଙ୍କ ଦ୍ୱାରା ବିଶେଷ ଭାବରେ ପ୍ରଭାବିତ ହୋଇଥିଲେ । ସେ ଗୋପୀଜନବଲ୍ଲଭ ଶ୍ରୀକୃଷ୍ଣ ଉପାସନା ପ୍ରଚାର କରିଥିଲେ ମଧ୍ୟ ତାଙ୍କର 'କୃଷ୍ଣପ୍ରେମାମୃତ' ଓ 'କୃଷ୍ଣସ୍ତବ'ରେ ଶ୍ରୀରାଧାଙ୍କ ମୂର୍ତ୍ତି ପରିଦୃଷ୍ଟ ହୁଏ ।

କିନ୍ତୁ ତାଙ୍କ ପୁତ୍ର ବିଠ୍‌ଠଲନାଥ ବା ବିଠ୍‌ଠଲେଶ୍ୱର ଶ୍ରୀରାଧାକୃଷ୍ଣ ଭକ୍ତିମାର୍ଗର ପଥିକ ଥିଲେ । ତେଣୁ ରାୟ ରାମାନନ୍ଦଙ୍କ 'ଜଗନ୍ନାଥବଲ୍ଲଭ ନାଟକ' ପରି ତତ୍‌କୃତ 'ଶୃଙ୍ଗାର ରସମଣ୍ଡନମ୍' ଗ୍ରନ୍ଥରେ ଶ୍ରୀରାଧାକୃଷ୍ଣଙ୍କ ପ୍ରେମଲୀଳା ବର୍ଣ୍ଣିତ କେତେକ ଲଳିତ ଓ ମଧୁର ସଂଗୀତ ସନ୍ନିବିଷ୍ଟ ହୋଇଥିବାର ଦେଖାଯାଏ । (୧୪)

---

(୧୨) ଉକ୍ତ 'ପୀୟୂଷ ଲହରୀ ନାଟିକା' ସୁବିସ୍ତୃତ ମୁଖବନ୍ଧ ଓ ଇଂରେଜୀ ଅନୁବାଦ ସହ ସ୍ୱର୍ଗତଃ ଡକ୍ଟର କରୁଣାକର କରଙ୍କ ଦ୍ୱାରା ଅଧୁନାଲୁପ୍ତ "Journal of the Kalinga Historical Research Society", Vol. IIରେ ପ୍ରକାଶିତ ହୋଇଥିଲା ।

(୧୩) ନବଭାରତ, ଷଷ୍ଠଭାଗ, ୫ମ ସଂଖ୍ୟା, ପୃ ୩୫୪—୩୫୫

(୧୪) History of Sanskrit literature by Dr. Dasgupta and Dr. De.

## (୮) ପୁରୁଷୋତ୍ତମ ଭଞ୍ଜ କୃତ ଅନୁକୃତ —

ଷୋଡ଼ଶ ଶତାବ୍ଦୀର ପ୍ରଥମ ଭାଗରେ ଆବିର୍ଭୂତ ପ୍ରସିଦ୍ଧ 'ଛନ୍ଦୋମଞ୍ଜରୀ' ଗ୍ରନ୍ଥ ପ୍ରଣେତା ଗଙ୍ଗାଦାସଙ୍କ (୧୫) ଗୁରୁ 'ଛନ୍ଦୋଗୋବିନ୍ଦ' ଓ 'ଛନ୍ଦୋମଖାନ୍ତ' ନାମକ ଦୁଇଟି ଗ୍ରନ୍ଥ ରଚନା କରିଥିଲେ । ସେ 'ଛନ୍ଦୋମଖାନ୍ତ' ଗ୍ରନ୍ଥର 'ଗୀତବୃତ୍ତ' ଆଲୋଚନା ପ୍ରସଙ୍ଗରେ ସ୍ୱ କୃତ ଶିବପାର୍ବତୀଙ୍କ ସ୍ତୁତିବାଚକ ଯେଉଁ ଗୀତଟି ଉଦ୍ଧାର କରିଛନ୍ତି ତାହା 'ଶ୍ରୀଗୀତଗୋବିନ୍ଦମ୍' ଗୀତର ଅନୁରୂପ । ଯଥା —

ସହଚରି ଦର୍ଶୟ ତମତୁଲମଦ୍ଭୁଂ

ସ୍ୱପ୍ନସମାଗମମୋହିତ ଚିତ୍ତମ୍ । ଧ୍ରୁ ।

ଅବିରତ-ମୁକୁଳିତ-ଲୋଚନମାଳଂ । ଘାପଶିଖାଲସଦକ୍ଷଣଭାଲମ୍ । ୧

ସ୍ଫଟିକ ମନୋହର-ଗୌର ଶରୀରଂ । ପ୍ରକଟଜଟାଜୁଟ-ବିଗଳିତନୀରମ୍ । ୨

ଭାଲବିଭୂଷିତଚନ୍ଦ୍ରମକରଖଣ୍ଡଂ । କୁଣ୍ଡଳି-କୁଣ୍ଡଳ-ମଣ୍ଡିତ-ଗଣ୍ଡମ୍ । ୩

ଡ଼ମରୁକରମତୁଳବିରାଜଂ । ବିଧି-ହରି-ସେବିତ ଚରଣ ସରୋଜମ୍ । ୪

ଶ୍ରୀ ପୁରୁଷୋତ୍ତମଭଣିତମୁଦାରଂ । ପ୍ରଭୁରପିକଳୟତିବିବିଧବିକାରମ୍ । ୫

ଉଦ୍ଧୃତ ପଦାବଳୀ ପାଠକଲେ ଜଣାଯାଏ ଯେ, ସେ 'ଶ୍ରୀଗୀତଗୋବିନ୍ଦମ୍'ର ଅନୁକରଣରେ ଶିବପାର୍ବତୀଙ୍କ ପ୍ରେମଲୀଳା ବର୍ଣ୍ଣନାତ୍ମକ କୌଣସି ଗ୍ରନ୍ଥ ରଚନା କରିଥିଲେ । (୧୬) କିନ୍ତୁ ତାହା ଏପର୍ଯ୍ୟନ୍ତ ଅଜ୍ଞାତ ରହିଛି ।

## (୯) କୃଷ୍ଣଦାସ ରଚିତ ଅନୁକୃତ—

ଦିଲ୍ଲୀ ବାଦସାହ ଆକବରଙ୍କ ଦରବାରରେ ସମ୍ମାନିତ ଓଡ଼ିଶାର ଶେଷ ସ୍ୱାଧୀନ ଗଜପତି ମୁକୁନ୍ଦଦେବଙ୍କ (୧୫୫୯—୧୫୬୮) ସଭାକବି କୃଷ୍ଣଦାସ ବଡ଼ଯେନା ମହାପାତ୍ର କୃତ 'ଗୀତପ୍ରକାଶ' ସଙ୍ଗୀତ ସମ୍ବନ୍ଧରେ ଏକ ଅତ୍ୟନ୍ତ ଉପାଦେୟ ଗ୍ରନ୍ଥ । ସେଥିରେ ସେ ସ୍ୱକୃତ 'ରାଧାମାଧବ କେଳିକଥା ରସ ଝରିତ' ଏକ ଗୀତ ଉଦାହରଣ ସ୍ୱରୂପ ଲିପିବଦ୍ଧ କରିଛନ୍ତି । ଯଥା—

---

(୧୫) ଗଙ୍ଗାଦାସଙ୍କ ସମ୍ବନ୍ଧରେ ମୋ କୃତ 'A Des. Cat. of Sans Mss. Vol. II. Preface p. CXIV—CXVରେ ଆଲୋଚିତ ହୋଇଛି ।

(୧୬) ପୁରୁଷୋତ୍ତମ ଭଞ୍ଜ କୃତ 'ଛନ୍ଦୋମଖାନ୍ତମ୍' Proceedings of the Indian History Congress, Third session, p. 818.

— ନଟରାଗେଣ —

କାଞ୍ଚିଦୁଦଞ୍ଚୟ ଚଞ୍ଚଳନୟନେ ସଂଚଭବଦ୍ଭୁଲ୍ୱବର୍ଣ୍ୟଂ
ବଚନମିଦଂ ବଧୁମଣ୍ଡଳମଧୁନା ସୁବଣତୁ ମାନମଗମ୍ୟଂ । ଧ୍ରୁ: ପ:
କମିତ କରୋଷି କୃଶୋଦର ରୋଷଂ
ମଦନ-ମହାନନ୍ଦ-ବକଳ-ଶରୀରଂ × × ବଣୀ ପରିତୋଷମ୍ ।
ବଚନମୁଦାରୟ ମଧୁରଯାମିନୀ ମୃଦୁମଦସ୍ମିତକାନ୍ତଂ
କଂଚନ ସିଂଚ ସୁଧାରସବଦ୍ଧୁଭିରଙ୍ଗମିଦଂ ସମନ୍ତାନ୍ତଂ ।
**ରାଧାମାଧବକେଳିକଥାରସଖଚିତଂ** ନବମବଧିଗୀତଂ
ସୁଖୟତୁ ସଜ୍ଜନଚତ୍ତସନ୍ତତଂ କୃଷ୍ଣଦାସ କବିଗୀତଂ । (୧୭)

ସେହିପରି 'ଗୀତପ୍ରକାଶ'ର ଭୃଷ୍ଣପ୍ରୋଲ୍ଲାସରେ ନିଜ ଗ୍ରନ୍ଥରୁ ଆଉ ଗୋଟିଏ ଗୀତ ଉଦ୍ଧାର କରିଛନ୍ତି ।

'ତଥାହି ମାଳଶ୍ରୀ ରାଗେଣ ଗୀୟତେ'

× × ×

**କୃଷ୍ଣକଥାରସ ଖଚିତେ** । କୃଷ୍ଣଦାସକୃତ କେଳିଗୀତେ"

ତାଙ୍କର ଏହି 'କୃଷ୍ଣକଥାରସ ଖଚିତ ଗ୍ରନ୍ଥ ଯେ ଶ୍ରୀଗୀତଗୋବିନ୍ଦର ଏକ ଅନବଦ୍ୟ ଅନୁକୃତ ତାହା ଗୀତଗୁଡ଼ିକର ରଚନାଶୈଳୀ ଓ ରାଗନିବଦ୍ଧତା ଦ୍ୱାରା ପ୍ରତିପାଦିତ ହୁଏ । କିନ୍ତୁ ଏହି ଉପାଦେୟ ଗ୍ରନ୍ଥ ଅଦ୍ୟାପି ଅନାବିଷ୍କୃତ ।

## (୧୦) ବାଣନଗର ହରିଚନ୍ଦନ ରଚିତ ଅନୁକୃତ—

ସଙ୍ଗୀତଜ୍ଞ କୃଷ୍ଣଦାସଙ୍କ କିଞ୍ଚିତ୍ ପରବର୍ତ୍ତୀ ବାଣନଗର ହରିଚନ୍ଦନ ନାମରେ ପ୍ରଖ୍ୟାତ ବାଣପୁରର ପ୍ରସିଦ୍ଧ ରାଜକବି ରଘୁନାଥ ହରିଚନ୍ଦନ ଶ୍ରୀଗୀତ-ଗୋବିନ୍ଦର ଅନୁକରଣରେ ଶ୍ରୀରାଧାକୃଷ୍ଣ ପ୍ରେମଲୀଳା ସମ୍ବଳିତ ଏକ ଗ୍ରନ୍ଥ ରଚନା କରିଥିଲେ । ଏହି ଗ୍ରନ୍ଥଟି ଏପର୍ଯ୍ୟନ୍ତ ଅଜ୍ଞାତ ଥିଲେମଧ୍ୟ ଏଥିରୁ କେତେକ ଗୀତ ବା ଗୀତାଂଶ ଖୁର୍ଦ୍ଧା ଗଜପତିଙ୍କ ସଭାକବି ଶ୍ରୀ ହଳଧର ମିଶ୍ରଙ୍କ 'ସଙ୍ଗୀତ କଳ୍ପଲତା' (ପ୍ରାୟ ୧୬୩୦ ଖ୍ରୀ: ଅ:) ଗ୍ରନ୍ଥରେ ଉଦ୍ଧୃତ ହୋଇଥିବାର ଦେଖାଯାଏ । ଯଥା—

---

(୧୭) ମିଉଜିୟମରେ ସଂରକ୍ଷିତ କାଟଦାଂସ୍ତ 'ଗୀତପ୍ରକାଶ' ପୋଥିରୁ ଉଦ୍ଧୃତ । ଏହି ପ୍ରସିଦ୍ଧ ସଂଗୀତକାରଙ୍କ ସମ୍ବନ୍ଧରେ ଇଂରେଜୀ ଓ ଓଡ଼ିଆରେ ଦୁଇଟି ପ୍ରବନ୍ଧ ମୋ ଦ୍ୱାରା ପ୍ରକାଶିତ ହୋଇଛି ।

1) O. H. R. J. Vol VII. part. II pp 73-82

II) ଆକବରଙ୍କ ଦରବାରରେ ସଂଗୀତଜ୍ଞ 'ମହାପାତ୍ର' ଝଙ୍କାର ୧୧ଶ ବର୍ଷ ୧ମ ସଂଖ୍ୟା ଏପ୍ରିଲ ୧୯୫୯ ।

"ଅଭିସର ନାଗର ଯାମୁନକୁଞ୍ଜଂ । ପ୍ରକଟୟ ବାଳାରତିରସପୁଞ୍ଜମ୍ ॥
ବହତି ମୃଦୁଳତର ଶୀତଳବାତେ । କଥମପି ଜୀବତି ସାଶ୍ରୁମ୍ନୈନାତେ ॥
ଭାବୟ ତବଗୁଣଗଣଧ୍ୟାନା । ହରିଚନ୍ଦନ ପ୍ରଭୁ ରତିରସଲୀନା ॥"

ଅନ୍ୟତ୍ର—"ଲୋକୟ ସଖି ବିଧୁରୁଦୟତିଗଗନେ । ଅଭିସର ସମ୍ପ୍ରତି ସୁରୁଚିରଗମନେ ॥
କୁଚଯୁଗଳକୁସୁମଚନ୍ଦନସଙ୍ଗଂ । ବର୍ଦ୍ଧୟ ସଦୁପଚିତ ମନସିଜରଙ୍ଗମ୍ ॥
ଧାରୟ ମଞ୍ଜୁଳମୌକ୍ତିକହାରଂ । ହରହର ନଟବର ମଦନବିକାରମ୍ ॥
ବହତୁ ଶିରସି ହର ଇହବରଗଙ୍ଗା । ଦନ୍ତ ଶୋଭିତ ବିପୁଳ ତରଙ୍ଗା ।
କଜ୍ଜ୍ୱଳ କୋମଳକୁନ୍ତଳ ଭାରଂ । ଗୋପୟ କୁସୁମଚୟୈରତିସାରମ୍ ।
ରତିପତିଶରହରକମ୍ବୁ ବାଣକଦମ୍ବଂ । ସଂଯୁତ ପ୍ରତିରଣମବଲମ୍ବଂ ॥
ଚୀନବସନମପି କୁରୁ ପରିଧାନଂ । କନକଲତୋପରି କୁସୁମବିତାନଂ ॥
ନୂନଂ ସକଳକଳାଧରବଦନେ । ଦର୍ଶୟ ଚତୁରପଣେ ମୁରମଥନେ ॥
ଇହ ହରିରାଧାସଂଗମରଚନଂ । ବାଣନଗର ହରିଚନ୍ଦନ ବଦନଂ ॥"

ଅନ୍ୟତ୍ର: "ଚନ୍ଦ୍ରକିରଣମିବ ଚନ୍ଦନଲେପନଂ ମନୁବହତି ଗୁରୁଖେଦଂ
**ହରିଚନ୍ଦନପ୍ରଭୁ** ନାଗର-ମୋହନ ମେଳନସୁଖଦା ଭେଦଂ ॥" (୧୮)

## (୧୧) ପ୍ରବୋଧାନନ୍ଦ କୃତ 'ସଙ୍ଗୀତମାଧବ' —

ଶ୍ରୀଚୈତନ୍ୟ ମହାପ୍ରଭୁଙ୍କ ଶିଷ୍ୟ ଓ ଗୋପାଳ ଭଟ୍ଟଙ୍କ ଗୁରୁ ପ୍ରବୋଧାନନ୍ଦ ଶ୍ରୀଗୀତଗୋବିନ୍ଦର ଅନୁକରଣରେ 'ସଙ୍ଗୀତମାଧବମ୍' ନାମକ ଗୀତିକାବ୍ୟ ରଚନା କରିଥିଲେ । ଏହା ପନ୍ଦରଟି ଅଧ୍ୟାୟରେ ବିଭକ୍ତ ଏବଂ ଏଥିରେ ବିଭିନ୍ନ ରାଗର ୨୮ଟି ଗୀତ ରହିଛି । କିନ୍ତୁ ଗୀତଗୁଡ଼ିକ ଅତ୍ୟନ୍ତ ସାର୍ଦ୍ଧ ଓ ଲାଳିତ୍ୟ ବିହୀନ ହୋଇ-ଥିବାରୁ ଆଲୋଚକ ଏଗୁଡ଼ିକ ଅଚଳନ୍ତୀଟଙ୍କା ଆଖ୍ୟା ଦେଇଥିଲେ । "an unoriginal poet to produce literary counterfeits which seldom become current coins of poetry" (୧୯) ତନ୍ମଧ୍ୟରୁ ଗୋଟିଏ ଗୀତର ଧ୍ରୁବପଦ ନିମ୍ନରେ ଉଦ୍ଧାର କରାଗଲା ।

"ତବ ଲଳିତକୁଣ୍ଡଳଂ ବର୍ତ୍ତୁଳ-ବନ୍ଧୁ-ମଣ୍ଡଳଂ ଗୁରୁମୁଖଂ ଅମୃତନିଧିସାରମ୍
ସ୍ମରତି ମମ ମାନସଂ କମପି ରତିଲ୍ଲାଳସଂ ସାନ୍ଦ୍ରମୃଦୁ-ହସିତ ମଧୁ-ଧାରମ୍

---

(୧୮) ମିଉଜିୟମରେ ସଂରକ୍ଷିତ ହଳଧର ମିଶ୍ରଙ୍କ 'ସଂଗୀତ କଳ୍ପଲତା' ପୋଥିରୁ ଉଦ୍ଧୃତ

(୧୯) The early history of Vaishnava faith and movement in Bengal" by Dr. S. K De, pp 614-615.

ପ୍ରିୟେ, କ୍ୱାସି ରାଧେ, ଦେହି ମୟି କାମପି ଶୁଭଦୃଷ୍ଟିମ୍
ତବ ନମେଷ କୌତୁକେ କରତ ମୟି ଦାରୁଣୋ
ବିଷମ ବିଷ ଶର ବୃଷ୍ଟିମ୍"

(୧୨) ଶ୍ରୀ ରୂପଗୋସ୍ୱାମୀ କୃତ 'ଗୀତାବଳୀ'—

ଶ୍ରୀରାଧାକୃଷ୍ଣ ପ୍ରେମଲୀଳା ବର୍ଣ୍ଣନାତ୍ମକ 'ବିଦଗ୍ଧମାଧବ ନାଟକମ୍' ଓ 'ଲଳିତ ମାଧବ ନାଟକମ୍'ର ପ୍ରଣେତା ପ୍ରଖ୍ୟାତ ସଂସ୍କୃତ ପଣ୍ଡିତ ଶ୍ରୀ ରୂପଗୋସ୍ୱାମୀ ଶ୍ରୀଗୀତଗୋବିନ୍ଦର ୨୪ଟି ସଂଗୀତ ଅନୁକରଣରେ ୪୨ଟି ସୁମଧୁର ଗୀତ ରଚନା କରିଥିଲେ (ଆ: ୧୫୩୦ଖ୍ରୀଷ୍ଟାବ୍ଦ) । ସେଗୁଡ଼ିକ ସମୂହ ଭାବରେ **ଗୀତାବଳି** ନାମରେ ପ୍ରସିଦ୍ଧ । (୨୦) ସେଥିରୁ ୨୫ ସଂଖ୍ୟକ ଗୀତ ନିମ୍ନରେ ଉଦ୍ଧାର କରାଗଲା ।

ହୃଦି କୃତକଳ୍ପିତ-ମୌକ୍ତିକମାଳା
ସ୍ମିତ ସାନ୍ଦ୍ରୀକୃତ-ଶଶୀକର-ଜାଳା
ହରି ଅଭିସର ସୁନ୍ଦରୀ ସିତବେଶା
ରାକାରଜନୀ ରଜନି ଗୁରୁବେଷା ।
ପରିହିତ-ମାହିଷ-ଦଧି-ରୁଚିସିଚୟା
ବପୁ ଅର୍ପିତ ଘନଚନ୍ଦନ ନିଚୟା
କର୍ଣ୍ଣ-କରମ୍ବିତ କୈରବ ହାସା
କଳିତ **ସନାତନ**-ସଂଗବିଳାସା"

ଶ୍ରୀ ରୂପଗୋସ୍ୱାମୀ ଗୀତାବଳୀର ପ୍ରକୃତ ରଚୟିତା ହେଲେମଧ୍ୟ ନିଜ ଜ୍ୟେଷ୍ଠଭ୍ରାତା ଶ୍ରୀ ସନାତନଙ୍କ ନାମରେ ଗୀତଗୁଡ଼ିକ **ଭ**ଣିତ କରିଛନ୍ତି ।

(୧୩) ଶ୍ରୀ ଜୀବଗୋସ୍ୱାମୀ କୃତ 'ଗୋପାଳଚମ୍ପୂ'—

ଶ୍ରୀ ରୂପଗୋସ୍ୱାମୀଙ୍କ ଭ୍ରାତୃଷ୍ପୁତ୍ର 'ଷଟ୍‌ସନ୍ଦର୍ଭ' ପ୍ରଣେତା ଶ୍ରୀ ଜୀବ ଗୋସ୍ୱାମୀଙ୍କର ସଂସ୍କୃତ ସାହିତ୍ୟରେ ଅସାଧାରଣ ପାଣ୍ଡିତ୍ୟ ଥିଲା । ସେ ୧୬୦୯ ସମ୍ବତ୍ ବା ୧୫୯୨ ଖ୍ରୀଷ୍ଟାବ୍ଦରେ ୭୨ଟି ପୂରଣ ବା ଅଧ୍ୟାୟରେ ବିଭକ୍ତ ବିରାଟ 'ଗୋପାଳଚମ୍ପୂ' ଗ୍ରନ୍ଥ ରଚନା କରିଥିଲେ । ଏଥିମଧ୍ୟରେ ଶ୍ରୀଗୀତଗୋବିନ୍ଦର ଗୀତାନୁରୂପ ୩୭ଟି ଗୀତ ଗୀତ ସନ୍ନିବିଷ୍ଟ । କିନ୍ତୁ ଏଗୁଡ଼ିକ ଅତ୍ୟନ୍ତ ଦୀର୍ଘ ଓ ଗାନୋପଯୋଗୀ ନ ଥିବାରୁ

(୨୦) A History of Brajaboli literature by Dr. Sukumar Sen pp. 380-384.

ସମାଜରେ ଆଦୃତ ହୋଇ ନ ଥିଲା । ସେଥିରୁ ଗୋଟିଏ ଗୀତ ନିମ୍ନରେ ଉଦ୍ଧାର କରାଗଲା ।

"ରାଧା ରାକା-ଶଶଧର ମୁରଲୀକର ଗୋକୁଲପତିକୁଲପାଲ
ଜୟ ଜୟ କୃଷ୍ଣ ହରେ ।
ରାଧା-ବାଧା-ମୋଚନ ସୁଖ ରୋଚନ ବଦଳିତ ଗୋକୁଲକାଳ,
ଜୟ ଜୟ କୃଷ୍ଣ ହରେ ।
ରାଧା-ପରିକର ପୁଣ୍ୟଦ ନୈପୁଣ୍ୟଦ ଗୋକୁଲରୁଚିଷ୍ଣୁ ବିଶାଳ
ଜୟ ଜୟ କୃଷ୍ଣ ହରେ ।
ରାଧା ସୁକୃତ-ବଂଶୀକୃତ ମଙ୍ଗଳଭୃତ ତିଳକିତ ଗୋକୁଲଭାଲ
ଜୟ ଜୟ କୃଷ୍ଣ ହରେ ।
ରାଧା ନିଜଗତି-ଧର୍ମଦ ଗୁରୁଶର୍ମଦ ହତଗୋକୁଲରିପୁଜାଲ
ଜୟ ଜୟ କୃଷ୍ଣ ହରେ ।
ରାଧା-ଜୀବନ-ଜୀବନ ଗୋବ୍ରଜଧନ ଗୋକୁଲ ସରସୀମରାଳ
ଜୟ ଜୟ କୃଷ୍ଣ ହରେ ।
ରାଧା-ମୋଦରସାକର ସରସୀଜବର ଗୋକୁଲମଣ୍ଡଳନାଳ
ଜୟ ଜୟ କୃଷ୍ଣ ହରେ ।
ରାଧାଭୂଷଣ ଭୂଷଣ ଗତଦୂଷଣ ଗୋକୁଳ-ହୃଦଳ ଭୂପାଳ
ଜୟ ଜୟ କୃଷ୍ଣ ହରେ । (୨୧)

## (୧୪) କବିରାଜ ଗୋବିନ୍ଦ ଦାସଙ୍କ 'ସଂଗୀତ ମାଧବ'—

ବହୁ ବ୍ରଜବୋଲି ଗୀତ ପ୍ରଣେତା କବିରାଜ ଗୋବିନ୍ଦ ଦାସ (୧୫୩୫—୧୬୧୩ ଖ୍ରୀଷ୍ଟାବ୍ଦ) ଶ୍ରୀଗୀତଗୋବିନ୍ଦ ଅନୁକରଣରେ 'ସଂଗୀତ ମାଧବ' ନାମକ ଗ୍ରନ୍ଥ ରଚନା କରିଥିଲେ । ତତ୍କୃତ ଗୋଟିଏ ଗୀତ ନିମ୍ନରେ ଉଦ୍ଧାର କରାଗଲା ।

"ଧ୍ୱଜ-ବଜ୍ରାଙ୍କୁଶ-ପଙ୍କଜ କଳିତମ୍
ବ୍ରଜବନିତା କୁଚ-କୁଙ୍କୁମ-ଲଳିତମ୍ ॥
ବନ୍ଦେ ଗିରିବରଧର ପଦକମଳମ୍
କମଳାକର-କମଳାଞ୍ଚିତ-ଅମଳମ୍ ॥

---

(୨୧) A History of Brajaboli literature by Dr. S. Sen, p. 385

ମଞ୍ଜୁଳମଣିନୂପୂର-ରମଣୀୟମ୍
ଅଚପଳ-କୁଳରମଣୀ-କମନୀୟମ୍
ଅତି ଲୋହିତ ଅତି ରୋହିତଭାସମ୍
ମଧୁ-ମଧୁରୀକୃତ **ଗୋବିନ୍ଦଦାସମ୍** ।" (୨୨)

(୧୫) **'ଗୋପଗୋବିନ୍ଦମ୍'**— କବିରତ୍ନ ପୁରୁଷୋତ୍ତମ ମିଶ୍ର ସ୍ୱ କୃତ ପ୍ରସିଦ୍ଧ 'ସଂଗୀତ ନାରାୟଣ' (୨୩) ଗ୍ରନ୍ଥରେ (୧୬୫୦ ଖ୍ରୀଷ୍ଟାବ୍ଦ) 'ଗୋପଗୋବିନ୍ଦମ୍' ଓ ଗୋପଗୋବିନ୍ଦ ଟୀକାର ଉଲ୍ଲେଖ କରିଥିବାରୁ ଏହା ୧୬୫୦ ଖ୍ରୀଷ୍ଟାବ୍ଦ ପୂର୍ବରୁ ରଚିତ ହୋଇଥିବା ସୁନିଶ୍ଚିତ । ଓଡ଼ିଆ ପଣ୍ଡିତ ଶ୍ରୀ ରଘୁନାଥ ରଥଙ୍କ ଦ୍ୱାରା ୧୬୯୭ ଖ୍ରୀଷ୍ଟାବ୍ଦରେ ପ୍ରଣୀତ 'ନାଟ୍ୟମନୋରମା' ଗ୍ରନ୍ଥରେ ଏହାର ଗୋଟିଏ ପଂକ୍ତି ଉଦ୍ଧୃତ ହୋଇଅଛି ।

"ଉଦାହରଣଂ ଯଥା ଗୋପଗୋବିନ୍ଦେ
ଶିଶିର-ଶୀତଳ-ମଞ୍ଜୁ ବଞ୍ଜୁଳ-ମୃଦୁକଶଳୟସଙ୍କୁଳମ୍" (୨୪)

କିନ୍ତୁ ଉତ୍କଳରେ ଲୋକପ୍ରିୟ ଏହି ଗ୍ରନ୍ଥର ପୋଥି ଏପର୍ଯ୍ୟନ୍ତ ମିଳିନାହିଁ ।

## (୧୬) ଶତଂଜୀବ ମିଶ୍ର ରଚିତ 'ମୁଦିତମାଧବମ୍'—

'ମଣିମାଳା' ନାଟିକାର ପ୍ରଣେତା କବି ଅନାଦି ମିଶ୍ରଙ୍କ ପିତା ଶତଂଜୀବ ମିଶ୍ର 'ମୁଦିତମାଧବ' ନାମକ ଗୀତକାବ୍ୟ ନିର୍ମାଣ କରିଥିବା ଏହାର ପ୍ରସ୍ତାବନାରୁ ଜଣାଯାଏ । ଯଥା—

ପାରିପାର୍ଶ୍ୱକଃ— (ସ୍ମରଣ ଅଭିନୀୟ) ଆଃ ଜ୍ଞାତଂ ପଣ୍ଡିତଜନକସ୍ୟ **ଶ୍ରୀଶତଂଜୀବକବେଃ ମୁଦିତମାଧବାଭିଧ ଗୀତକାବ୍ୟ** ଗାନାମୃତୋର୍ମିଣା ସାମାଜିକା ଜନହୃଦୟଂ ବସୁଂ ପୁରା ନ୍ୟମଜ୍ଜୟାମ" (୨୫)

---

(୨୨) A History of Brajaboli literature by Dr. S. Sen p 134.

(୨୩) ମୋର 'ସଂଗୀତ ନାରାୟଣ ସଂପର୍କୀୟ ପ୍ରବନ୍ଧ ଦ୍ରଷ୍ଟବ୍ୟ—O.H.R.J. Vol.X No. & 2

(୨୪) ଓଡ଼ିଶା ସଂଗୀତ ନାଟକ ଏକାଡେମୀ ଦ୍ୱାରା ପ୍ରକାଶିତ 'ନାଟ୍ୟମନୋରମା' ପୃ

(୨୫) O.H.R.J Vol. IV, No. 3 & 4 pp. 60-66ରେ 'ମଣିମାଳା'ନାଟିକା ସମ୍ବନ୍ଧରେ ମୋର ପ୍ରବନ୍ଧ ଅନୁଧ୍ୟେୟ ।

ମଧୁର ସଙ୍ଗୀତ ସମନ୍ୱିତ ଶ୍ରୀରାଧାମାଧବ ଲୀଳା ବର୍ଣ୍ଣନାତ୍ମକ ଉକ୍ତ ଗୀତକାବ୍ୟ ଏପର୍ଯ୍ୟନ୍ତ ଲୋକଲୋଚନ ଗୋଚରକୁ ଆସିନାହିଁ ।

## (୧୭) ଯତୀନ୍ଦ୍ର ରଘୂତ୍ତମତୀର୍ଥ କୃତ 'ମୁକୁନ୍ଦବିଳାସ' ମହାକାବ୍ୟମ୍ —

ଯତୀନ୍ଦ୍ର ରଘୂତ୍ତମତୀର୍ଥ ବାଣପୁର ରାଜ୍ୟରେ ଶାଳୁଆ ନଦୀ କୂଳବର୍ତ୍ତୀ ଅଚ୍ୟୁତପୁର ଶାସନରେ ଜନ୍ମଗ୍ରହଣ କରିଥିବାର ପୋଥିର ଏକ ଖଣ୍ଡିତ ଶ୍ଳୋକରୁ ଜଣାଯାଏ ।

ଶ୍ରୀମଦ୍‌ବାଣପୁରାନ୍ତରେଽଚ୍ୟୁତପୁରେ ବାରନଧା ବୃତ୍ତରେ
ଜାତଂ ଶାଲବତୀତଟେ ଭଗବତୀଦକ୍ଷେଶୟୋରନ୍ତିକେ ।
କାବ୍ୟଂ ଶ୍ରୀ ହରିଚନ୍ଦନସ୍ୟ ନୃପତେଃ × × ।

ଶ୍ରୀକ୍ଷେତ୍ରରେ ମଠାଧୀଶ ଭାବରେ ଅବସ୍ଥାନ କରିଥିବା ସମୟରେ ସେ ଗ୍ରହ (୯) ବସୁ (୮) ଶର (୫) ଚନ୍ଦ୍ର (୧) ବା ୧୫୮୯ ଶକାବ୍ଦ ଓ ବସୁ (୮) ରସ (୬) ଋଷି (୭) ଓ ବେଦ (୪) ବା ୪୭୬୮ ଯୁଗାବ୍ଦ ବା ୧୬୬୭ ଖ୍ରୀଷ୍ଟାବ୍ଦରେ ଶ୍ରୀଗୀତଗୋବିନ୍ଦର ଅନୁକୃତ 'ମୁକୁନ୍ଦବିଳାସ ମହାକାବ୍ୟ' ରଚନା ସମାପ୍ତ କରିଥିଲେ । (୨୬)

ଯତୀନ୍ଦ୍ର ମହାଶୟ ପ୍ରଥମ ମଙ୍ଗଳାଚରଣ ଶ୍ଳୋକରେ ବେଦାନ୍ତକୀର୍ତ୍ତିତ, ଗୁଣାତୀତ, ଗୁଣସିନ୍ଧୁ, ରାଧିକାବନ୍ଧୁ ନନ୍ଦସୁତଙ୍କ ସ୍ତୁତିଗାନ କରିଛନ୍ତି । ଦ୍ୱିତୀୟ ଶ୍ଳୋକରେ ସେ ଷଡ଼ଭିନ୍ନ ମତାବଲମ୍ବୀଙ୍କ ଦ୍ୱାରା ସ୍ୱ ସ୍ୱ ଇଷ୍ଟଦେବତା ରୂପେ ପୂଜିତ ଗଣେଶ, ସୂର୍ଯ୍ୟ, ଶିବ, ଦୁର୍ଗା, ବିଷ୍ଣୁ, ବ୍ରହ୍ମା ଓ ଶ୍ରୀରାଧାବଲ୍ଲଭ ଶ୍ରୀକୃଷ୍ଣଙ୍କ ମଧ୍ୟରେ ଅଭେଦତ୍ୱ ପ୍ରତିପାଦନ କରିଛନ୍ତି । ତୃତୀୟ ଶ୍ଳୋକରେ ବ୍ରହ୍ମାଣୀ ସରସ୍ୱତୀ, ନାରାୟଣ ସଙ୍ଗିନୀ ଲକ୍ଷ୍ମୀ, ଈଶାନାର୍ଦ୍ଧଶରୀର ଭଗବତୀ, ଶ୍ରୀରାମଚନ୍ଦ୍ରପ୍ରିୟା ସୀତା ବାସୁଦେବ ଗୃହିଣୀ ରୁକ୍ମିଣୀ, ବଳରାମବଲ୍ଲଭା ରେବତୀ ଓ ଶ୍ରୀକୃଷ୍ଣଦୟିତା ଶ୍ରୀରାଧାଙ୍କର ଏକତ୍ୱ ଓ ଅଭିନ୍ନତ୍ୱ ପ୍ରତିପାଦିତ ହୋଇଛି । ଚତୁର୍ଥ ଶ୍ଳୋକରେ ସ୍ତ୍ରୀ ଓ ପୁରୁଷ ଦେହାଶ୍ରିତ ପ୍ରକୃତି-ପୁରୁଷ, ବ୍ରହ୍ମା, ବିଷ୍ଣୁ ମହେଶ୍ୱର ରୂପେ କଳ୍ପିତ ତ୍ରିମୂର୍ତ୍ତି, ପୁଣ୍ୟ ନୀଳାଚଳରେ ବଳଭଦ୍ର, ସୁଭଦ୍ରା, ଜଗନ୍ନାଥ ଓ ସୁଦର୍ଶନ ରୂପେ ପ୍ରକଟିତ ଚତୁର୍ଦ୍ଧାମୂର୍ତ୍ତି ତଥା ବୃନ୍ଦାବନରେ ଅଧିଷ୍ଠିତ ଶ୍ରୀରାଧାକୃଷ୍ଣ ଯୁଗଳମୂର୍ତ୍ତିଙ୍କ ମଧ୍ୟରେ ଅଭେଦତ୍ୱ ପ୍ରଦର୍ଶିତ ହୋଇଛି । ଯଥା—

---

(୨୬) 'କୋଣାର୍କ' ଦ୍ୱିତୀୟ ବର୍ଷ, ପ୍ରଥମ ସଂଖ୍ୟା, ଏପ୍ରିଲ ୧୯୭୦, ପୃଷ୍ଠା ୬୮-୭୫ରେ ପ୍ରକାଶିତ ମୋର ପ୍ରବନ୍ଧ ଦ୍ରଷ୍ଟବ୍ୟ ।

"ରାଧାକୃଷ୍ଣଚଳନ୍ତୁଧରେ ବଳସ୍ୟଡେ ବୃନ୍ଦାବନେ ସ ପ୍ରଭୁଃ"
ଶେଷରେ ମଙ୍ଗଳାଚରଣର ପରବର୍ତ୍ତୀ ସପ୍ତୋଦଶ ଶ୍ଳୋକରେ ତୀର୍ଥପାଦ, ବୈଷ୍ଣବ, ଶାକ୍ତ ପ୍ରଭୃତି ବିଭିନ୍ନ ମତାବଲମ୍ବୀ ମାନଙ୍କୁ ଭେଦଭାବ ପରିତ୍ୟାଗ ପୂର୍ବକ ସକଳ ଦେବତାଙ୍କୁ ଏକ ପରମେଶ୍ୱରଙ୍କ ପରପ୍ରକାଶ ରୂପେ ଗ୍ରହଣ କରିବା ପାଇଁ ବିନୀତ ଭାବରେ ନିବେଦନ କରିଛନ୍ତି । ଯଥା—

"ଭୋ ଭୋ ବୈଷ୍ଣବଶୈବଶାକ୍ତପରମୋଦାରାଃ ପରାର୍ଥପ୍ରିୟାଃ
ଭିକ୍ଷୁଃ ପ୍ରାର୍ଥୟତେ ରଦ୍ଧୃତମ ଇମାଂ ଭିକ୍ଷାଂ ସତାଂ ସଂମତାଂ
ନିର୍ଭେଦେ ପରମେଶ୍ୱରେ ହରିହର ଶ୍ରୀ କାଳିକାଦ୍ୟାତ୍ମ୍ୟେ
ଭେଦେକ୍ଷଂ ପରିମୁଚ୍ୟ ମୁଂଙ୍ଗତସଦା ସ୍ୱାନାରଙ୍କାସ୍ତୀତନାଃ"

ଏହି ଶ୍ଳୋକରେ ଶ୍ରୀକ୍ଷେତ୍ରବାସୀ ତୀର୍ଥପାଦ ବୈଦିକ ଋଷିକଣ୍ଠ ନିସୃତ ମହାବାଣୀ 'ଏକ ସତ୍ ବିପ୍ରାଃ ବହୁଧା ବଦନ୍ତି'ର ମହତ୍ତ୍ୱ ପ୍ରଚାର କରିଛନ୍ତି ।

ଏହାପରେ ପ୍ରଥମ ସର୍ଗରେ ଭକ୍ତ 'ଦଶାବତାର ସ୍ତୁତି' ଗାନ କରିଛନ୍ତି ଏବଂ ଏଥିରେ ବୁଦ୍ଧ ନବମ ଅବତାର ରୂପେ ଗୃହୀତ ହୋଇଛନ୍ତି ।

## ସର୍ଗବିଭାଗ ଓ ବ୍ୟବହୃତ ବିଭିନ୍ନ ରାଗ--

ଶ୍ରୀଗୀତଗୋବିନ୍ଦ ପରି ଏହା ଦ୍ୱାଦଶ ସର୍ଗରେ ବିଭକ୍ତ ; ଯଥା— ଇତିଶ୍ରୀ ମୁକୁନ୍ଦବିଳାସ ମହାକାବ୍ୟେ ଯଶୀନ୍ଦ୍ରରଚିତମତୀର୍ଥପାଦକୃତୌ ଗୋପୀ ପୂର୍ବାନୁରାଗ ପ୍ରକଟନୋ ନାମ ପ୍ରଥମଃ ସର୍ଗଃ ॥ ଗୋପୀବାଗ୍‌ବିଳାସପ୍ରକାଶୋ ନାମ ଦ୍ୱିତୀୟଃ ସର୍ଗ;ଃ ନାରଦୋପଦେଶୋନାମ ତୃତୀୟ ;ସର୍ଗ, ଗୌରୀଶଙ୍କରପୂଜନୋ ନାମ ଚତୁର୍ଥଃ ସର୍ଗଃ; ପୂର୍ବାନୁରାଗପ୍ରକଟନୋ ନାମ ପଞ୍ଚମଃ ସର୍ଗଃ; ଗୋପୀପଟ୍ଟାପହରଣୋନାମ ଷଷ୍ଠଃ ସର୍ଗଃ; ଗୋପୀକାମୋଦ୍ଦୀପନୋ ନାମ ସପ୍ତମଃ ସର୍ଗଃ; ଗୋପୀବିରହପ୍ରଜାଗରଣୋ ନାମାଷ୍ଟମଃ ସର୍ଗଃ; ମୁକୁନ୍ଦବିରହନଟନୋ ନାମ ନବମଃ ସର୍ଗଃ; ଗୋପୀଗୋବିନ୍ଦବାଗ୍‌ବିଳାସା-ରମ୍ଭୋ ନାମ ଦଶମଃ ସର୍ଗଃ; ରାସବିଳାସୋ ନାମୈକାଦଶଃ ସର୍ଗଃ; ଗୋପୀକୃଷ୍ଣ ଜଳକ୍ରୀଡ଼ା ଓ ନାରଦସ୍ତୁତିନାମ ଦ୍ୱାଦଶଃ ସର୍ଗଃ ॥

## ବ୍ୟବହୃତ ବିଭିନ୍ନ ରାଗ—

ପ୍ରଥମ ସର୍ଗ — ତୋଡ଼ୀରାଗ, ମହ୍ଲାର ରାଗ,
ଦ୍ୱିତୀୟ ,, — ମଙ୍ଗଳଗୁଜ୍ଜରୀ, ବାଳଧନାସୀ, ଧନାସୀ, ବସନ୍ତ, ତୋଡ଼ୀ
ତୃତୀୟ ,, — ସିନ୍ଧୁଡ଼ା, ଲଳିତ
ଚତୁର୍ଥ ,, — ମାଳବଗୌଡ଼ା, ମାଳଶ୍ରୀ, ଗୁଣ୍ଡକେରୀ, ମଙ୍ଗଳଗୁଜ୍ଜରୀ ।
ପଞ୍ଚମ ,, — ମାୟୁର ରାଗ ।

ଷଷ୍ଠ ସର୍ଗ — ଗୁର୍ଜ୍ଜରୀ ରାଗ, ସୀମନ୍ତଭୈରାଗ (ଦୁଇଥର)
ସପ୍ତମ ,, — ଗୌରୀ ରାଗ
ଅଷ୍ଟମ ,, — କେଦାର, ବଙ୍ଗଳମା
ନବମ ,, — ତୋଡ଼ୀ, ସାରଙ୍ଗ
ଦଶମ ,, — କାମୋଦୀ, ଗୁର୍ଜ୍ଜରୀ, ଧନାଶ୍ରୀ
ଏକାଦଶ,,— ମଲ୍ଲାର
ଦ୍ୱାଦଶ ,, — ବସନ୍ତ ରାଗ
ଏହାର ଗୋଟିଏ ଗୀତ ନିମ୍ନରେ ଉଦ୍ଧାର କରାଗଲା ।

**ମଲ୍ଲାର ରାଗେଣ ଗୀୟତେ ।**

ବିକଚ କୁନ୍ଦକୁସୁମବୃନ୍ଦ ମଲ୍ଲୀ ଲସତି କାନନେ
କୈରବବନସୁରଭିପବନ ମୃଦୁନବଦଳଶୃଳନେ ।
ପଶ୍ୟତି ବନମାଳିନଂ
ରାସରଚନଶାଳିନଂ । ୧

× × ×

ସକଳଚନ୍ଦ୍ରବିମଳସାନ୍ଦ୍ରକିରଣରାଜିରଞ୍ଜିତେ
କୁସୁମପୁଞ୍ଜରୁଚିରକୁଞ୍ଜମଧୁପମଧୁରଗୁଞ୍ଜିତେ । ୨
ମଦନରଙ୍ଗ ଯୁବତିସଙ୍ଗରସତରଙ୍ଗଚଞ୍ଚଳଂ
ପ୍ରିୟତମାଳମୁଖନିଖିଳଶୃତିଚୁଟୁଳ ମଂଜୁଳଂ । ୩ (ଏକାଦଶ ସର୍ଗ)

## (୧୮) ନିତ୍ୟାନନ୍ଦ ପଣ୍ଡିତ କୃତ 'ଶିବଲୀଳାମୃତ ମହାକାବ୍ୟମ୍'—

ପୂର୍ବତନ ନବଦୁର୍ଗ ବା ନୟାଗଡ଼ ରାଜ୍ୟର ଅଧିପତି ଗଦାଧର ସିଂହ ମାନଧାତାଙ୍କ ପୃଷ୍ଠପୋଷକତାରେ କୌଣ୍ଡିନ୍ୟାନ୍ୱୟ ସମ୍ଭବ ଅଗ୍ନିଚିତ ନିତ୍ୟାନନ୍ଦ ପଣ୍ଡିତ ସପ୍ତଦଶ ଶତାବ୍ଦୀର ଶେଷଭାଗରେ ଶ୍ରୀଗୀତଗୋବିନ୍ଦର ଅନୁକରଣରେ ଶିବ-ଲୀଳାମୃତ ମହାକାବ୍ୟ ରଚନା କରିଥିଲେ । ନବଦୁର୍ଗପତିଙ୍କ ଆନୁକୂଲ୍ୟରେ ଏହା ରଚିତ ହୋଇଥିବାରୁ ବହୁ ଗୀତର ଭଣିତାରେ ତାଙ୍କ ନାମୋଲ୍ଲେଖ ହୋଇଛି । "ଜୟତୁ ରସିକ **ନବଦୁର୍ଗଧରାଧିପ ସୁକବିଗଦାଧର** ଗୀତଂ ।"

**ବିଷୟବସ୍ତୁ—** ଶିବଲୀଳାମୃତ ମହାକାବ୍ୟ ଦଶଟି ସର୍ଗରେ ବିଭକ୍ତ । ଏହାର ପ୍ରଥମ ସର୍ଗରେ ଶିବ-ପାର୍ବତୀଙ୍କ ସ୍ତୁତିବାଚକ ତିନୋଟି ମଙ୍ଗଳାଚରଣ ଶ୍ଳୋକ ପରେ ନଅଟି ଶ୍ଳୋକରେ କବିଙ୍କ ଆଶ୍ରୟଦାତାଙ୍କ ବଂଶାବଳି ଓ ପ୍ରଶସ୍ତି ଏବଂ ତତ୍ପରେ ପାର୍ବତୀଙ୍କ ଜନ୍ମ, ତାଙ୍କର ସୌନ୍ଦର୍ଯ୍ୟ ଓ ଗୁଣାବଳୀ ଓ ଶିବଙ୍କ ହିମାଳୟ ଅରଣ୍ୟମାନଙ୍କୁ

ଆଗମନ ବର୍ଣ୍ଣିତ ହୋଇଛି । ଦ୍ୱିତୀୟ ସର୍ଗରେ ଶିବଙ୍କୁ ପତି ରୂପେ ପାଇବା ପାଇଁ ପାର୍ବତୀଙ୍କ କଠୋର ତପସ୍ୟା, ତୃତୀୟ ସର୍ଗରେ ଶିବ-ପାର୍ବତୀ ବିବାହ, ଚତୁର୍ଥ ସର୍ଗରେ କାର୍ତ୍ତିକେୟ ଓ ଗଣେଶଙ୍କ ଜନ୍ମବୃତ୍ତାନ୍ତ, ପଞ୍ଚମ ସର୍ଗରେ ପୁଣ୍ୟତୋୟା ଗଙ୍ଗାତୀରବର୍ତ୍ତୀ କାଶୀକ୍ଷେତ୍ରରେ ଶିବପାର୍ବତୀଙ୍କ ଅଧିଷ୍ଠାନ ଓ ଷଷ୍ଠସର୍ଗରେ ଅଯୋଧ୍ୟାର ରାଜା ହରିଶ୍ଚନ୍ଦ୍ର ଓ ସତ୍ୟବତୀଙ୍କ ହର-ପାର୍ବତୀଙ୍କ ଆରାଧନା ଫଳରେ ନନ୍ଦୀ ଓ ଭୃଙ୍ଗୀ ନାମକ ପୁତ୍ରଦ୍ୱୟ ଲାଭ ବର୍ଣ୍ଣିତ ହୋଇଛି । ସପ୍ତମ ସର୍ଗରେ ଗୁପ୍ତକାଶୀ ଏକାମ୍ରକାନନର ନୈସର୍ଗିକ ଶୋଭା ଓ ମାହାତ୍ମ୍ୟ ଏବଂ ହରପାର୍ବତୀଙ୍କ ଉକ୍ତ କ୍ଷେତ୍ରକୁ ଆଗମନର ବିବରଣ ମିଳେ । ଅଷ୍ଟମ ସର୍ଗରେ ପାର୍ବତୀଙ୍କ ଦ୍ୱାରା ଏକାମ୍ରକାନନବାସୀ କୀର୍ତ୍ତି ଓ ବାସ ନାମକ ଦୁଇ ରାକ୍ଷସ ଭ୍ରାତାଙ୍କ ସଂହାର, ବିନ୍ଦୁସରୋବର ଉତ୍ପତ୍ତି ଓ ଗନ୍ଧବତୀର ମାହାତ୍ମ୍ୟ ଓ ଏହାର ତଟଭୂମିର ସୌନ୍ଦର୍ଯ୍ୟ ବର୍ଣ୍ଣିତ ହୋଇଛି । ନବମ ସର୍ଗରେ ଗନ୍ଧବତୀ ତଟରେ ଶିବପାର୍ବତୀଙ୍କ ରାସକ୍ରୀଡ଼ା ସମୟରେ ରାସସ୍ଥଳରୁ ଶିବଙ୍କ ହଠାତ୍ ଅନ୍ତର୍ଦ୍ଧାନ, ପାର୍ବତୀଙ୍କ ବିରହ, ଗନ୍ଧବତୀ ତଟଭୂମିରେ ସହଚରୀ ପରିବୃତା ବିରହିଣୀ ପାର୍ବତୀଙ୍କ ଶିବାନୁସନ୍ଧାନ ଏବଂ ଶିବଙ୍କ ତୁଷ୍ଟିବିଧାନ ପାଇଁ ବାଲୁକା ଲିଙ୍ଗ ପୂଜନର ଏକ ମନୋରମ ଚିତ୍ର ପ୍ରଦତ୍ତ ହୋଇଛି । ଦଶମ ସର୍ଗରେ ଦୀର୍ଘ ବିଚ୍ଛେଦ ପରେ ହରପାର୍ବତୀଙ୍କ ପୁନର୍ବାର ମିଳନ ଓ ଗନ୍ଧବତୀ ତଟବର୍ତ୍ତୀ କୁଞ୍ଜଗୁଡ଼ିକରେ ଉଭୟଙ୍କ ରାସକ୍ରୀଡ଼ାର ବର୍ଣ୍ଣନା ମିଳେ । ଗ୍ରନ୍ଥ ଶେଷରେ କବି ଏକାମ୍ରକ୍ଷେତ୍ର ଧିପ ଲିଙ୍ଗରାଜ, ଗୌରୀ, ବ୍ରହ୍ମେଶ୍ୱର ପ୍ରଭୃତିଙ୍କ ସ୍ତୁତିଗାନ କରିଛନ୍ତି ।

**ଗ୍ରନ୍ଥ ସମୀକ୍ଷା**— ଗ୍ରନ୍ଥର ସମୀକ୍ଷା ଦ୍ୱାରା ଜଣାଯାଏ ଯେ, କବିପଣ୍ଡିତ ନିତ୍ୟାନନ୍ଦ ଶିବପୁରାଣ, କୁମାରସମ୍ଭବ, ଏକାମ୍ର ପୁରାଣ ପ୍ରଭୃତି ପ୍ରାଚୀନ ଗ୍ରନ୍ଥରୁ ବିଷୟବସ୍ତୁ ଆହରଣ କରି ଗନ୍ଧବତୀ ତଟକୁଞ୍ଜରେ ହରପାର୍ବତୀଙ୍କ ରାସଲୀଳା ବର୍ଣ୍ଣନା କରିଛନ୍ତି । ଯଦୁମଣି ଉପ୍ରେମ୍ଭନାର୍ଥ ବିରଚିତ 'ମୁକୁନ୍ଦବିଳାସ ମହାକାବ୍ୟ'ର ମଙ୍ଗଳାଚରଣ ଶ୍ଳୋକ ଓ ଏହାର ମଙ୍ଗଳାଚରଣ ଶ୍ଳୋକ ମଧ୍ୟରେ ରଚନାଶୈଳୀ ଓ ଭାବଗତ ବିଶେଷ ସାମଞ୍ଜସ୍ୟ ଲକ୍ଷିତ ହେଉଥିବାରୁ ଏହା ପୂର୍ବୋକ୍ତ ଗ୍ରନ୍ଥ ରଚନା (୧୭୬୭ ଖ୍ରୀଷ୍ଟାବ୍ଦ) ପରେ ନିର୍ମିତ ହୋଇଥିବା ସୁନିଶ୍ଚିତ । ଓଡ଼ିଶାରେ ହରପାର୍ବତୀଙ୍କ ରାସ-ଲୀଳା ଓ ଶୃଙ୍ଗାର ବର୍ଣ୍ଣନାତ୍ମକ ଏହା ପ୍ରଥମ ମହାକାବ୍ୟ । ଏଥିରେ ନିମ୍ନୋକ୍ତ ରାଗ ଯଥା— ମାରୁ, କେଦାର, ବସନ୍ତ, ମାଠର, ମାଳଶ୍ରୀ, କାମୋଦୀ, ଗୁଣ୍ଡକେରୀ, ଗୌରୀ, ମଙ୍ଗଳଗୁର୍ଜ୍ଜରୀ, ମୁଖାରୀ, ବଙ୍ଗଳାଶ୍ରୀ, ସାରଙ୍ଗ ବ୍ୟବହୃତ ହୋଇଥିବାର ଦେଖାଯାଏ । ଉଦାହରଣ ସ୍ୱରୂପ ଏହି ଗ୍ରନ୍ଥର କେତେକ ପଦ ନିମ୍ନରେ ଉଦ୍ଧାର କରାଗଲା ।

"ରାଗ-ମଙ୍ଗଳଗୁର୍ଜ୍ଜରୀ

କଳିତସୁଧାନିଧିମଣ୍ଡନ ଲେଖଗଣ ଲଳିତ-ଭୁଜଙ୍ଗମହାର

ଜୟ ଜୟ ଲୋକପତେ ।

ସମଧିକ ସମ୍ବର ଶାସନ ମଦନାଣନେ, ନୟନଧନଶ୍ରୁଶ୍ରମାଳ
ଜୟ ଜୟ ଲୋକପତେ ।

× × ×

ମୁନିଜନଚିତ୍ତନିକେତନ ବୃଷକେତନ ନଗମାନ୍ତରପରଗୀତ
ଜୟ ଜୟ ଲୋକପତେ ।
ସୁକୃତନିଦାନଗଦାଧର କୃତସାଦର, ମଞ୍ଜୁଳମଙ୍ଗଳଗୀତ
ଜୟ ଜୟ ଲୋକହରେ ॥" (୨୭)

## (୧୯) **କବି-ପଣ୍ଡିତ ନିତ୍ୟାନନ୍ଦ କୃତ ଶ୍ରୀକୃଷ୍ଣଲୀଳାମୃତ ମହାକାବ୍ୟମ୍**

'ଶ୍ରୀ ଶିବଲୀଳାମୃତମହାକାବ୍ୟମ୍'ର ପ୍ରଣେତା କବି-ପଣ୍ଡିତ ନିତ୍ୟାନନ୍ଦ ସୂର୍ଯ୍ୟବଂଶୀୟ ବନମାଳୀ ନାମକ ରାଜାଙ୍କ .ଆଶ୍ରୟରେ ଶ୍ରୀଗୀତଗୋବିନ୍ଦର ଅନ୍ୟ ଏକ ଅନୁକୃତ 'ଶ୍ରୀକୃଷ୍ଣଲୀଳାମୃତ ମହାକାବ୍ୟ' ରଚନା କରିଥିଲେ । (୨୮) ଯଥା—

**ଗର୍ଗାନ**ସ୍ୟୋଦନ୍ଵନୁଦିତ ଶୀତଧାମାଂଽଭିରାମାକୃତ୍ତିରୁଗ୍ରଧାମା
ଶ୍ରୀମାନ୍ ଯଃ ଆସୀଦ୍ **ବନମାଳୀ**ନାମା ନୃପୋଽର୍ଥିକାମାଧିକ-ଦାନଶୌଣ୍ଡଃ ।୧୨।
ତଦାଯୁନାମାଙ୍କିତଗୀତବନ୍ଧଂ କର୍ତ୍ତୁଂପ୍ରବର୍ତ୍ତେ ରୁଚିରଂ ପ୍ରବନ୍ଧଂ
ଶ୍ରୀକୃଷ୍ଣପାଦାମ୍ବୁଜଭୃଙ୍ଗଚୋଦ୍ୟଂ **ଶ୍ରୀକୃଷ୍ଣଲୀଳାମୃତ ନାମଧେୟମ୍** ।୧୩।

ଅନାଦି କବିକୃତ 'ରାସଗୋଷ୍ଠୀ ରୂପକମ୍' ଗ୍ରନ୍ଥରୁ ଜଣାଯାଏ ଯେ, ତାଙ୍କର ପୃଷ୍ଠପୋଷକ ଶ୍ରୀ ବନମାଳୀ ଜଗଦ୍ଦେବ ଶ୍ରୀଖଣ୍ଡପଲ୍ଲୀ ବା ଖଣ୍ଡପଡା ରାଜ୍ୟର ଅଧୀଶ୍ୱର ଥିଲେ । ଯଥା—

"ଶ୍ରୀଖଣ୍ଡପଲ୍ଲୀ ପୁରୀ ଚନ୍ଦ୍ରମଣ୍ଡଳ ସମୁଦ୍‌ଗତେନ × × **ଶ୍ରୀବନମାଳୀ ଜଗଦ୍ଦେବେନ** ପ୍ରେରିତେନ ଶ୍ରୀଅନାଦିନା ବିରଚିତଂ ଶ୍ରୀରାସଗୋଷ୍ଠୀ ରୂପକମ୍" (୨୯)

---

(୨୭) ଏହି ମହାକାବ୍ୟ ସଂପର୍କରେ ବିଶଦ ବିବରଣ ମୋର ଦୁଇଟି ପ୍ରବନ୍ଧରେ ଦିଆଯାଇଛି ।
(I) O. H R. J. Vol V. Nos. 1 & 2, 1956. pp 113-119
(II) ଝଙ୍କାର ୮ମ ବର୍ଷ ୬ଷ୍ଠ ସଂଖ୍ୟା, ସେପ୍ଟେମ୍ବର ୧୯୫୬

(୨୮) ସଂସ୍କୃତ ମାସିକ ପତ୍ରିକା "ମନୋରମା"ର ଷଷ୍ଠ ଓ ସପ୍ତମ ଭାଗରେ ୧୯୬୨ ଓ ୧୯୬୭ରେ ପ୍ରକାଶିତ ମୋର ପ୍ରବନ୍ଧରେ ଏହି ମହାକାବ୍ୟ ସମ୍ବନ୍ଧରେ ଆଲୋଚନା କରାଯାଇଛି ।

(୨୯) ପଣ୍ଡିତ ଶ୍ରୀ ନୀଳମଣି ମିଶ୍ରଙ୍କ ଦ୍ୱାରା "ପୌରୁଷ" ପତ୍ରିକାରେ ପ୍ରକାଶିତ ପ୍ରବନ୍ଧ ଦ୍ରଷ୍ଟବ୍ୟ ।

'ହରିଭକ୍ତ ସୁଧାକାର' ଖଣ୍ଡପଡ଼ା ରାଜା ନାରାୟଣ ମଙ୍ଗରାଜଙ୍କ ଦ୍ୱାରା ୧୬୮୮ ଖ୍ରୀଷ୍ଟାବ୍ଦରେ ସମାପ୍ତ ହୋଇଥିବାରୁ ତାଙ୍କ ନାତି ବନମାଳୀ ଜଗଦେବଙ୍କୁ ଅଷ୍ଟାଦଶ ଶତାବ୍ଦୀର ପ୍ରଥମ ଭାଗରେ ଅବସ୍ଥାପିତ କରାଯାଇ ପାରେ ।

**ଗ୍ରନ୍ଥସମୀକ୍ଷା**— ଏହି ଗ୍ରନ୍ଥରେ ଶ୍ରୀ ଗୀତଗୋବିନ୍ଦ ବର୍ଣ୍ଣିତ ଶ୍ରୀରାଧାକୃଷ୍ଣଙ୍କ ବସନ୍ତ ରାସ ପରିବର୍ତ୍ତରେ ଶ୍ରୀମଦ୍ଭାଗବତୋକ୍ତ **'ଶରତ୍ ରାସ'** ବର୍ଣ୍ଣିତ ହୋଇଥିବା ଅଷ୍ଟମ ସର୍ଗ ପାଠରୁ ଜଣାଯାଏ ।

ଇତି ନିଜଜନାମନ୍ଦାନନ୍ଦବିଚରିତୈଃ
**ଶରଦୃତୁକଥାଭରୈର୍ୟଃ** କାବ୍ୟୈଃ ବିବର୍ଦ୍ଧୟିତ୍ୟେନ୍ଦ୍ରିବୁଃ ॥୩୧॥

× × × ×

**ଶ୍ରୀମଦ୍ଭାଗବତାମୃତା**ମ୍ବୁଧିସମୁଦ୍ଭୂତଂ ତଦାଲମ୍ବନମ୍
ନିତ୍ୟାନନ୍ଦକବେରବେହି ଭଣିତଂ ଶ୍ରୀକୃଷ୍ଣଲୀଳାମୃତମ୍ ॥୩୩॥

## ସର୍ଗବିଭାଗ ଓ ରାଗ—

ଶ୍ରୀ ଗୋପିକା ପୂର୍ବରାଗୋ ନାମ ପ୍ରଥମଃ ସର୍ଗଃ, ପ୍ରଚୁର କିଶୋରଲୀଳୋ ନାମ ଦ୍ୱିତୀୟଃ ସର୍ଗଃ, ରାଧାବିରହବାଧାବିତାଭୋ ନାମ ତୃତୀୟଃ ସର୍ଗଃ; ରାସଲୀଳାସବର୍ଣ୍ଣନେ କାତରରାଧାମାଧବୋ ନାମ ଚତୁର୍ଥଃ ସର୍ଗଃ ॥ ରାସୋତ୍ସବବର୍ଣ୍ଣନେ ବହିବିହାର-ବର୍ଣ୍ଣନକୋ ନାମ ପଞ୍ଚମଃ ସର୍ଗଃ; ଦୁଃସାଧରାଧୋ ନାମ ଷଷ୍ଠଃ ସର୍ଗଃ; ରାସୋତ୍ସବବର୍ଣ୍ଣନେ ପ୍ରମୁଦିତମାଧବୋ ନାମ ସପ୍ତମଃ ସର୍ଗଃ; ରାସୋତ୍ସବବର୍ଣ୍ଣନେ ସାନନ୍ଦମୁକୁନ୍ଦୋ ନାମାଷ୍ଟମଃ ସର୍ଗଃ ॥

ପ୍ରଥମ ସର୍ଗ ୫ଟି ଗୀତ—କଲ୍ୟାଣ ଆହାରୀ, ଧନାଶ୍ରୀ, ଆଶାବରୀ, ମୁଖାବରୀ ।
ଦ୍ୱିତୀୟ ,, ୫ଟି ,, —ବରାସ, ମଙ୍ଗଳଗୁଜ୍ଜରୀ, ଦେଶାଖ୍ୟ, ଶଙ୍କରାଭରଣ, ଗୌରୀ ।
ତୃତୀୟ ,, ୪ଟି ,, —ମୁଖାବରୀ, ଆଶାବରୀ, ସାରୀ, କେଦାର ।
ଚତୁର୍ଥ ,, ୫ଟି ,, —ଭୈରବ (୨), ମାଳଧନାଶ୍ରୀ, କର୍ଣ୍ଣାଟକ, ବସନ୍ତ ।
ପଞ୍ଚମ ,, ୪ଟି ,, —ସୌରାଷ୍ଟ୍ରଗୁଜ୍ଜରୀ, ଆହାରୀ, ଚନ୍ଦ୍ରକେଦାର, ବଙ୍ଗଳାଶ୍ରୀ ।
ଷଷ୍ଠ ,, ୪ଟି ,, —ଲଳିତ, ଦକ୍ଷିଣ କାମୋଦୀ, ମଲ୍ଲାର, ରାମକରୀ ।
ସପ୍ତମ ,, ୪ଟି ,, —ଶାରଙ୍ଗ, କାମୋଦୀ, ମୁଖାବରୀ, ଭୈରବ ।
ଅଷ୍ଟମ ,, ୪ଟି ,, —ମାଳବ, ଦକ୍ଷିଣ କାମୋଦୀ, ନଟ, ବରାଡ଼ୀ ।

ପାଠକମାନଙ୍କ ଅବଗତି ପାଇଁ ଉକ୍ତ ମହାକାବ୍ୟରୁ ଦୁଇଟି ଗୀତ ଉଦ୍ଧାର କରାଗଲା ।

( ୧ )

— ବଂଶୀଧାରୀ ଶ୍ରୀକୃଷ୍ଣ —

"ପଶ୍ୟତ ନନ୍ଦକୁମାରଂ ପ୍ରଣତ ନନ୍ଦକୁମାରଂ
ରୁଟରିତ ନୂପୁରଗଞ୍ଜିତମଧୁରଂ
ମଞ୍ଜୁକୁସୁମ-ସୁକୁମାରମ୍ । ୧
ମୁରଲୀବାଦନଲୋଲଂ, କୁଣ୍ଡଳଲୋଳିତକପୋଳମ୍
କନକନିଚୟରୁଚିପୀତନିଚୋଳଂ, ବଟବିଟପିକୃତଦୋଳମ୍
ବ୍ରଜପୁରବାଳକଖେଳଂ, ବଦନ-ବିଧୁତ ବିଧୁ-ହେଳମ୍ ।
ତପନ-ସୁତା-ତଟ ବିହରଣଶୀଳଂ, ବିଧିବିସ୍ମାପନଲୀଳମ୍ ॥"

( ୨ )

— ବିରହିଣୀ ରାଧା —

ଅବିରତବିଗଳିତ-ନୟନଜଳାର୍ପିତ ଜର୍ଜରଭ୍ରବଦୁକୂଳା
ନ ବଦତି କଞ୍ଚନ ରହସି ସଖିଜନମପି କୁତୁକପ୍ରତିକୂଳା ।
ମାଧବ, ତବ ବିରହେ ବତ ରାଧା
ଧ୍ୟାୟତି କିମପି ନିମୀଳିତଲୋଚନ ମୁପଚିତମନସିଜ ବାଧା
ଅସନବସନମପି ବିଷ-ବିଷଧରମିବ ପଶ୍ୟତି ନଶ୍ୟତି ଲୀଳା
ଦକ୍ଷିଣମନିଳ ମନଳମିବ ସଂପ୍ରତି ପରିହରତି ଭ୍ରମଶୀଳା ॥

## (୨୦) କବି ଅନାଦି ମିଶ୍ର କୃତ 'କେଳିକଲ୍ଲୋଳିନୀ' —

କବି ଅନାଦି ମିଶ୍ର କୃତ 'ମଣିମାଳା ନାଟିକା' ଗ୍ରନ୍ଥପାଠରୁ ଜଣାଯାଏ, ସେ ବିଜୟନଗର ରାଜସଭାରେ ସମ୍ମାନିତ, (ବିଦ୍ୟାନଗରବିଦ୍ୟାଗରମଗ୍ରାବଟଙ୍କ) 'ଅଭିନବ ଗୀତଗୋବିନ୍ଦମ୍'ର ପ୍ରକୃତ ପ୍ରଣେତା କବିଚନ୍ଦ୍ରରାୟଙ୍କର ବଂଶଧର ଥିଲେ । (୩୦) ସେ ଖଣ୍ଡପଡ଼ା ରାଜ୍ୟର ଅଧିପତି ନାରାୟଣ ମଙ୍ଗରାଜ (୧୬୮୮ ଖ୍ରୀଷ୍ଟାବ୍ଦ) ଓ ତାଙ୍କ ନାତି ବନମାଳୀ ଜଗଦେବଙ୍କ ପୃଷ୍ଠପୋଷକତା ଲାଭକରି 'ଶ୍ରୀଗୀତଗୋବିନ୍ଦମ୍'ର ଦୁଇଟି ଅନବଦ୍ୟ ଅନୁକୃତି ନିର୍ମାଣ କରିବାକୁ ସମର୍ଥ ହୋଇଥିଲେ । ପ୍ରଥମଟିର ନାମ

(୩୦) 'ମଣିମାଳା ନାଟିକା' ସମ୍ବନ୍ଧରେ ବିଶେଷ ବିବରଣୀ ଜାଣିବା ପାଇଁ ମୋର ପ୍ରବନ୍ଧ ଦ୍ରଷ୍ଟବ୍ୟ ।
କ) 'ନବଜୀବନ' ପ୍ରଥମବର୍ଷ, ୬ଷ୍ଠ ସଂଖ୍ୟା, ଜୁନ୍ ୧୯୫୬
ଖ) O.H.R.J. Vol IV. Nos. 3 & 4, May 1956

'କେଳିକଲ୍ଲୋଳନୀ' ଓ ଏହା ନିମ୍ନଲିଖିତ ପାଞ୍ଚଟି ତରଙ୍ଗରେ ବିଭକ୍ତ : ରାଧାକୃଷ୍ଣ ସନ୍ଦର୍ଶନ, ବାର୍ଷଭାନବୀବିପ୍ରଲମ୍ଭ, ଶ୍ରୀରାଧାଭିସାର, ଶ୍ରୀରାଧାମାଧବସମ୍ଭୋଗ ଓ ଛଳିତଂ ବିଛୁ ବର୍ଗ ।। ପ୍ରଥମ ମଙ୍ଗଳାଚରଣ ଶ୍ଳୋକରେ କବି ଗୋପୀପତିଙ୍କୁ ପ୍ରଣିପାତ ପୂର୍ବକ ପରବର୍ତ୍ତୀ ଦୁଇଟି ଶ୍ଳୋକରେ ଗ୍ରନ୍ଥର ମାହାତ୍ମ୍ୟ କୀର୍ତ୍ତନ କରିଛନ୍ତି । ଯଥା—

"ଶ୍ରୀରାଧାକୁଚକୁମ୍ଭକୁଙ୍କୁମରଜୋରାଜୀ ବିରାଜତ୍ତନୁ
ସନ୍ଧ୍ୟାପିଧିତପାନ୍ଥସୁନ୍ଦରତରଃ ନନ୍ଦନ୍ନମନ୍ଦଂ ନଭଃ ।
ସୁସ୍ମେରଃ ସ୍ମରଚନ୍ଦ୍ରସାଗରବିଧୁର୍ବ ଶ୍ୟାମାଦିରାମାଜନେ
ବୃନ୍ଦାରଣ୍ୟବରେଣ୍ୟକଳ୍ପବିଟପୀ **ଗୋପୀପତିଃ** ପାତୁବଃ ।।
ମଦନମୁଦିତରାଧାକୃଷ୍ଣହାସୈକଫେନା—
ବିଳସିତରସଲୀଳାକୋଲ୍ଲୋଳ କଲ୍ଲେ ଳମୀପୂର୍ଣ୍ଣମ୍ ।
ପ୍ରତିପଦମନୁରାଗାନଳ୍ପରାଗାବ୍ଜଭୃଙ୍ଗା
ସ୍ଫୁରତୁ ରସିକସଙ୍ଘେ **କେଳିକଲ୍ଲୋଳନୀୟମ୍**

ଏହାର ଗୋଷ୍ଠିଏମାନ ଗୀତର ଅଂଶବିଶେଷ ଏହିପରି—

"ଭୃଙ୍ଗରଙ୍ଗସଙ୍ଗଭଙ୍ଗ ବାସିତସ୍ୟ ଦମ୍ପତଃ
କାମକାମବଲ୍ଲିକାସୁ ସାନ୍ଦ୍ରମନ୍ଦ୍ରମାଶ୍ରିତମ୍
କେଳିଶାଳି ସାରସାଳିକୁଜିତସ୍ୟ କୈତବ ତ୍ର
କାଞ୍ଚିଦାମ ସିଞ୍ଜିତଂଚ ଯାବଦେବ ଯୋଷିତାମ୍"

## (୨୧) ଅନାଦି ମିଶ୍ର କୃତ 'ରସଗୋଷ୍ଠୀ ରୂପକମ୍'—

ଅନାଦି କବି ସ୍ୱକୃତ 'ରସଗୋଷ୍ଠୀ ରୂପକମ୍' ନାମକ ଶ୍ରୀରାଧାକୃଷ୍ଣ ରାସଲୀଳା ବର୍ତ୍ତିନାଟ୍ଟିକା ଏକାଙ୍କିକା ଖଣ୍ଡପଡ଼ା ରାଜା ବନମାଳୀ ଜଗଦ୍ଦେବଙ୍କ ପୃଷ୍ଠପୋଷକତାରେ ରଚନା କରିଥିଲେ । ଏହାର ମଙ୍ଗଳାଚରଣରେ ଶ୍ରୀକୃଷ୍ଣଙ୍କ ବଂଶୀଧ୍ୱନିର ସ୍ତୁତିଗାନ କରାଯାଇଛି । "ରାସୋଲ୍ଲାସବିଳାସିନୋ ଭଗବତୋ **ବଂଶୀଧ୍ୱନି**ଃପାତୁବଃ" ଉକ୍ତିଳୀୟ କବି ଶ୍ରୀ ଜୟଦେବାଚାର୍ଯ୍ୟ କୃତ 'ପୀୟୂଷ-ଲହରୀ' ପରି ଏଥିରେ ଶ୍ରୀଗୀତଗୋବିନ୍ଦ ପ୍ରଭାବ ସୁସ୍ପଷ୍ଟ । ଯଥା—

"କାଳେ ଯୌ କଳହଂସକେଳିକଳିକାପ୍ରୋଲ୍ଲାସକଳ୍ପଦ୍ରୁମୋ
ଗୋପୀଶସ୍ୟବିଳାସରାସରଚିତଂ ଶବ୍ଦଂ ପ୍ରିୟାର୍ଥୋତ୍ସବମ୍ ।
ଶାରଶ୍ରୀମଦନାଦିବିପ୍ରକବିତା ଭବାମୃକାଦମ୍ବିନୀ ।
ସଂଗୀତାଧିଗତା ଧୃତା ବିସ୍ମୟପୀତ୍ୟାନନ୍ଦମାଶ୍ୱନ୍ଦତ" ।

(୨୨) **କବିଭୂଷଣ ଗୋବିନ୍ଦ ସାମନ୍ତରାୟ କୃତ 'ସମୃଦ୍ଧମାଧବ ନାଟକମ୍'**—

ପ୍ରସିଦ୍ଧ ଉତ୍କଳୀୟ କବିଭୂଷଣ ଗୋବିନ୍ଦ ସାମନ୍ତରାୟ କୃତ 'ସମୃଦ୍ଧ ମାଧବ ନାଟକମ୍' ଶ୍ରୀଗୀତଗୋବିନ୍ଦର ଏକ ମନୋରମ ଅନୁକୃତି । ପ୍ରଥମେ ମହାମହୋପାଧ୍ୟାୟ ହରପ୍ରସାଦ ଶାସ୍ତ୍ରୀ ଏହାର ପରିଚୟ ପ୍ରଦାନ କରିଥିଲେ । ଯଥା —

"Samṛddha Mādhava Nātaka by Govinda Kavibhushana Sāmantarāya is an imitation of the Gitagovinda" (୩୧) ଏହା ସାତଟି ଅଙ୍କରେ ବିଭକ୍ତ ଯଥା ଇତିଶ୍ରୀ ସମୃଦ୍ଧମାଧବେ ଗୋକୁଳମଙ୍ଗଳୋ ନାମ ପ୍ରଥମୋଽଙ୍କଃ । ନିରାଧିକରାଧିକୋ ନାମ ଦ୍ୱିତୀୟୋଽଙ୍କଃ; ବିପ୍ରଲବ୍ଧରାଧୋ ନାମ ତୃତୀୟୋଽଙ୍କଃ, ସାନନ୍ଦଗୋବିନ୍ଦୋ ନାମ ଚତୁର୍ଥୋଽଙ୍କଃ; ତଥ୍ୟମନୋରଥୋ ନାମ ପଞ୍ଚମୋଽଙ୍କଃ, ଅବନବାଣୋ ନାମ ଷଷ୍ଠୋଽଙ୍କଃ; ତଥ୍ୟମନୋରଥନାମ ସପ୍ତମୋଽଙ୍କଃ ।

ନାଟକର ପ୍ରସ୍ତାବନାରୁ ଜଣାଯାଏ ଯେ, ଏହା ଶ୍ରୀଜଗନ୍ନାଥ ମନ୍ଦିରରେ ଏକ ପଣ୍ଡିତସଭା ସମକ୍ଷରେ ଅଭିନୀତ ହୋଇଥିଲା । ଯଥା—

ସୂତ୍ର × × ନୀଳାଚଳମୌଳି ନୀଳାଚଳଜଳଧରମଣ୍ଡଳା ଡମ୍ବରସ୍ୟ ଶ୍ରୀମଧୁସୂଦନସ୍ୟ × ×

ସୂତ୍ର—ଭରଦ୍ୱାଜବଂଶାବତଂସାବତାରସ୍ୟ × × ଗୋବିନ୍ଦ କବିଭୂଷଣ ସାମନ୍ତରାୟସ୍ୟ

ସୂତ୍ର—ତସ୍ୟ କୃତିଃ କୃତରୁଚିରଂ ଚିରଂ ରସାଦଧ୍ୱନିପ୍ରଚୁରଂ
ନବ୍ୟଂ କାବ୍ୟ ମୁଦଞ୍ଚତ ମଧୁରଂହ **ସମୃଦ୍ଧମାଧବଂ** ନାମ" (୩୨)

କବିଭୂଷଣ ଗୋବିନ୍ଦ ସାମନ୍ତରାୟ ଅଷ୍ଟାଦଶ ଶତାବ୍ଦୀର ମଧ୍ୟଭାଗରେ ଆବିର୍ଭୂତ ହୋଇଥିଲେ । କାରଣ ସେ ତାଙ୍କର 'ସୂରସର୍ବସ୍ୱମ୍' ଗ୍ରନ୍ଥ ଖ (୦) ଶୂନ୍ୟ (୦) ମୁନି (୭) ଚନ୍ଦ୍ର (୧) ୧୭୦୦ ଶକାବ୍ଦ ବା ୧୭୭୮ ଖ୍ରୀଷ୍ଟାବ୍ଦରେ ସମାପ୍ତ କରିଥିବା ଜଣାଯାଏ । (୩୩) ଶ୍ରୀମନ୍ ନିତ୍ୟାନନ୍ଦ ତାଙ୍କର ଇଷ୍ଟଦେବ ଥିଲେ ।

---

(୩୧) "Notices of Sanskrit Manuscripts", Second Series, 1911, Vol. IV. Preface XXX.

(୩୨) A Des, Cat of Sans. Mss. in the collection of the Asiatic Society of Bengal, Vol VII, No. 5368, pp 291 292

(୩୩) ମିଉଜିୟମରେ ସଂରକ୍ଷିତ 'ସୂରସର୍ବସ୍ୱମ୍' ଶେଷ ସଂଗ୍ରହରେ ପ୍ରଦତ୍ତ ଶ୍ଳୋକରୁ ଜଣାଯାଏ । ଏହାଙ୍କ ସମ୍ବନ୍ଧରେ ମୋ ଦ୍ୱାରା ପ୍ରକାଶିତ ଦୁଇଟି ପ୍ରବନ୍ଧ ଦ୍ରଷ୍ଟବ୍ୟ, ଝଙ୍କାର ପ୍ରଥମ ବର୍ଷ, ୭ମ ଓ ୯ମ ସଂଖ୍ୟା, ୧୯୫୦ ।

ଆସ୍ତାଂ ନିତ୍ୟଂ ମାନସେ ମାମକାସ୍ମେ
ଶ୍ରୀମାନ୍ ନିତ୍ୟାନନ୍ଦନାମେଷ୍ଟଦେବଃ"

## (୨୩) କବିଚନ୍ଦ୍ର କମଲଲୋଚନ ଖଡ୍‌ଗରାୟ କୃତ 'ସଙ୍ଗୀତଚିନ୍ତାମଣି'—

ଡ: ଡବଲ୍ଉ: କରମବେଲକର ନାମକ ମହାରାଷ୍ଟ୍ରୀୟ ପ୍ରତ୍ନତତ୍ତ୍ୱବିଦ୍ ନାଗପୁରର ଭୋନ୍‌ସଲ ଦରବାର ଦ୍ୱାରା ସଂଗୃହୀତ ପୋଥିଭଣ୍ଡାରରେ କବିଚନ୍ଦ୍ର କମଳଲୋଚନ ଖଡ଼ଗରାୟ ରଚିତ **ସଂଗୀତଚିନ୍ତାମଣି** ଓ **ଗୀତମୁକୁନ୍ଦ** ନାମକ ଶ୍ରୀଗୀତଗୋବିନ୍ଦର ଦୁଇଟି ଅନୁପମ ଅନୁକୃତ ଆବିଷ୍କାର କରିଥିବାରୁ ସୁଧୀସମାଜର ଧନ୍ୟବାଦର ପାତ୍ର । କିନ୍ତୁ ଓଡ଼ିଶା ଇତିହାସର ଅଜ୍ଞତା ଯୋଗୁଁ ସେ କମଳଲୋଚନଙ୍କୁ ଜଣେ ବଂଗୀୟ ପଣ୍ଡିତ ରୂପେ ଗ୍ରହଣ କରିଥିଲେ । (୩୪) ସେଯେ ନିର୍ବିବାଦରେ ଜଣେ ଉତ୍କଳୀୟ—ମୁଁ ତାହା ମୋର ପ୍ରବନ୍ଧରେ ପ୍ରମାଣିତ କରିଅଛି । କମଳଲୋଚନ 'ସଙ୍ଗୀତଚିନ୍ତାମଣି' ଗ୍ରନ୍ଥରେ ନିଜକୁ ଗୋବିନ୍ଦ କବିଭୂଷଣଙ୍କ ନାତି ନାତି ବୋଲି ଆଖ୍ୟାତ କରି ବିଶେଷ ଗର୍ବ ଅନୁଭବ କରିଛନ୍ତି ।

"ଯଃ କୃଷ୍ଣ ଖଡ୍‌ଗରାୟୋଽଭୂଦ୍ **ଗୋବିନ୍ଦକବିଭୂଷଣାତ୍**
ତନ୍ନନ୍ଦନଃ ପ୍ରବନ୍ଧସ୍ୟକର୍ତ୍ତା **କମଲଲୋଚନଃ** । ୫ ।

'ସଂଗୀତ ଚିନ୍ତାମଣି'ରେ ବୃନ୍ଦାବନରେ ଶ୍ରୀରାଧାକୃଷ୍ଣଙ୍କର ଅଷ୍ଟକାଳ ଲୀଳା ବର୍ଣ୍ଣିତ ହୋଇଛି । ଯଥା—

"ଯତ୍ ଯଦ୍‌**ବୃନ୍ଦାବନଭୁବି** ନିଦଂ ଭକ୍ତିଭାବାନୁସାରାତ୍
ରାଧାକୃଷ୍ଣାବିହ ବିହରତଃ **ସ୍ପଷ୍ଟମେବାଷ୍ଟକାଲେ** ।
ତତ୍ତତ୍‌ସର୍ବଂ ହୃଦି ରସବଦାମେବ ବର୍ତ୍ତି ନିତ୍ୟଂ
ପ୍ରେମଶ୍ରେଣୀ ଚରଣଶରଣସ୍ୟୋଽସ୍ତୁ ସନ୍ଦେହକୃଦ୍ ଯଃ । ୩
**ସଙ୍ଗୀତଚିନ୍ତାମଣି** ନାମ୍ନି କାବ୍ୟେ
ପ୍ରୀଣାତୁ ଧ୍ୟାନପ୍ରଭବେଽତ୍ର ଭବ୍ୟଃ ॥
ସିଦ୍ଧେ ବୁଧାନାଂ ମଧୁମକ୍ଷିକାଭିଃ
ମାଧ୍ୱୀରସେ ବୁଦ୍ଧିରୁଦେତୁ ସାଧ୍ୱୀ । ୪"

ଏଥିରେ ରହିଛି ନିଶାନ୍ତଲୀଳା, ପ୍ରାତଃଲୀଳା, ପୂର୍ବାହ୍ନଲୀଳା, ଅପରାହ୍ନ ଲୀଳା, ସାୟାହ୍ନ ଲୀଳା, ପ୍ରଦୋଷ ଲୀଳା, ନକ୍ତ ଲୀଳା ॥ ଶ୍ରୀଗୀତଗୋବିନ୍ଦର ଗୀତଗୁଡ଼ିକ ପରି ଏହାର

---

(୩୪) Indian Historical Quarterly Vol. XXV, No. 2 pp 95-101

ସଂଗୀତ ସମୃଦ୍ଧ ନିମ୍ନୋକ୍ତ ରାଗନିବଦ୍ଧ । ଯଥା—ଗୁର୍ଜରୀ, ରାମକେରୀ, କାମୋଦୀ, ଧନାଶ୍ରୀ ଇତ୍ୟାଦି । (୩୫)

**(୨୪)କବିଚନ୍ଦ୍ର କମଳଲୋଚନ କୃତ 'ଗୀତମୁକୁନ୍ଦମ୍' ବା 'ଗୀତାମୃତମ୍'—**

କବିଚନ୍ଦ୍ର କମଳଲୋଚନ କୃତ 'ଗୀତମୁକୁନ୍ଦମ୍' ବା 'ଗୀତାମୃତମ୍' ମହାକାବ୍ୟର ପ୍ରଥମ ଦୁଇ ମଙ୍ଗଳାଚରଣ ଶ୍ଳୋକରେ ଗୌରଚନ୍ଦ୍ର, ଚୈତନ୍ୟଚନ୍ଦ୍ର, ତୃତୀୟ ଶ୍ଳୋକରେ 'ବଙ୍କେଶ୍ୱରଗୁରୁ' ଓ ଚତୁର୍ଥ ଶ୍ଳୋକରେ ରାଧା ଓ ପଞ୍ଚମ ଶ୍ଳୋକରେ ଶ୍ରୀକୃଷ୍ଣଙ୍କ ବଂଶୀଧ୍ୱନିର ସ୍ତୁତିଗାନ କରାଯାଇଛି ।

ଏହା ନିମ୍ନଲିଖିତ ଚତୁର୍ଦ୍ଦଶ ଅଧ୍ୟାୟରେ ସଂପୂର୍ଣ୍ଣ ହୋଇଛି । ଯଥା—(୧) ସଙ୍ଗୀତମଙ୍ଗଳ (୨) ବୃନ୍ଦାବନାନନ୍ଦ (୩) ଦର୍ଶନହର୍ଷ (୪) ସଂଜାତକୁତୂହଳ (୫) ସାନନ୍ଦ କିଶୋର ହର୍ଷ (୬) ଚନ୍ଦ୍ରୋଦୟାନନ୍ଦ (୭) ସୌକ୍ଷ୍ମ ଗରନାଗର (୮) ବିପ୍ରଲବ୍ଧରାଧ (୯) ସାତଂକ ପଙ୍କଜାକ୍ଷ (୧୦) ବାଧିତମାଧବ (୧୧) ନର୍ମଦେବ (୧୨) କିଶୋର ବିହାର ମନୋହର (୧୩) ଲକିତମୀଳନଲୀଳ (୧୪) ମଙ୍ଗଳାନଙ୍ଗଖେଳନ ।

ଇତିଶ୍ରୀ କମଳଲୋଚନ କବିଚନ୍ଦ୍ର ବିରଚିତଂ ଗୀତାମୃତଂ ସଂପୂର୍ଣ୍ଣମ୍ ।

ଏଥିରେ ନିମ୍ନଲିଖିତ ରାଗନିବଦ୍ଧ ଗୀତ ରହିଛି । ଯଥା— ଗୁର୍ଜରୀ, ବସନ୍ତ, ଆଶାବରୀ; ରାମକେରୀ, ଗଣ୍ଡକେରୀ, ଧନାଶ୍ରୀ, ମାଳବ, ଦେଶୀ, ବରାଡ଼ୀ । ଏହାର ଗୋଟିଏ ଗୀତ ନିମ୍ନରେ ଉଦ୍ଧାର କରାଗଲା ।

—ଗୁର୍ଜରୀ ରାଗେଣ ଗୀୟତେ—

"ମସ୍ତକବିଲସଦଖଣ୍ଡଶିଖଣ୍ଡକ ମଣ୍ଡଳମଣ୍ଡିତକେଶମ୍
ମଦନଶତାଙ୍କ ଭଗବଦଲକର ବିରଚିତନଟବରବେଶମ୍ ॥

(୩୫) କବିଚନ୍ଦ୍ର କମଳଲୋଚନଙ୍କ ସମ୍ବନ୍ଧରେ ବିସ୍ତୃତ ବିବରଣ ମୋର ନିମ୍ନୋକ୍ତ ପ୍ରବନ୍ଧରେ ଦିଆଯାଇଛି ।

(କ) "ଓଡ଼ିଶାର ଅଜ୍ଞାତ କବି କମଳଲୋଚନ କବିଚନ୍ଦ୍ର," 'ଝଙ୍କାର' ପ୍ରଥମ ବର୍ଷ, ୯ମ ସଂଖ୍ୟା, ଡ଼ିସେମ୍ବର ୧୯୪୯

(ଖ) 'Two little known Sanskrit poets of Orissa'

(a) Kavibhushana Govinda Sāmantarāya.

(b) Kavichandra Kamalalochana Khadanīya, O.H.R.J. Vol I, No 1, April, 1952.

ରାଗ ଧ । ଭଜ ବ୍ରଜରାଜକୁମାରମ୍
ବରମୂରଲୀକରମୁରୁଚିରହାରମ୍ । ଧ୍ରୁ
ଗଞ୍ଜିତକଞ୍ଜବିଲୋଚନମଞ୍ଜୁଳଗତିଜିତଖଞ୍ଜନପୁଞ୍ଜମ୍
ସିତକରସୁନ୍ଦରହସିତମଧୁରଭରସଦନଧରାଧରକୁଞ୍ଜମ୍ । ୨
କଳଧୌତାମଳଲୋଳଳଲିତମଳକାବଳିକବଳିତଭାବମ୍
ଗଣ୍ଡଲସିତମଣିକୁଣ୍ଡଳମଣ୍ଡଳଭଙ୍ଗିତରଙ୍ଗବିଶାଳମ୍ । ୩

## (୨୫) କବିଚନ୍ଦ୍ର କମଳଲୋଚନ କୃତ 'ବ୍ରଜଯୁବବିଳାସମ୍'—

କବିଚନ୍ଦ୍ର କମଳଲୋଚନ ଶ୍ରୀରାଧାକୃଷ୍ଣ ପ୍ରେମଲୀଳା ବର୍ଣ୍ଣନାତ୍ମକ ସପ୍ତଦଶ ସର୍ଗ ବିଶିଷ୍ଟ ଗୋଟିଏ ମହାକାବ୍ୟ ରଚନା କରିଥିବାର ଜଣାଯାଏ । ଏହି ପୋଥିର ଆବିଷ୍କାରକ ସଦାଶିବ ସଂସ୍କୃତ ମହାବିଦ୍ୟାଳୟର ଅଧ୍ୟାପକ ପଣ୍ଡିତ ଶ୍ରୀ କୁଳମଣି ମିଶ୍ର ଏହା ସଂପର୍କରେ କୌଣସି ଆଲୋଚନା କରିନାହାନ୍ତି । ଏହାର ପୋଥି ମଧ୍ୟ ଏପର୍ଯ୍ୟନ୍ତ ପରୀକ୍ଷା କରିବାର ସୁଯୋଗ ମିଳିନାହିଁ । ତେବେ ଏହାର ଶେଷଭାଗରେ କବିଙ୍କ ପରିଚୟ ସୂଚକ ନିମ୍ନୋକ୍ତ ଶ୍ଲୋକ ମିଳେ ।

'ଯଃ କୃଷ୍ଣଖଣ୍ଡଗରାପ୍ୟୋଽଭୂଦ୍ ଗୋବିନ୍ଦକବିଭୂଷଣୋତ୍
ତସ୍ୟ ପୁତ୍ର କୃତୀ ଶ୍ରୀମାନ୍ କବିଃ କମଳଲୋଚନଃ । (୩୬)

## (୨୬) ଶିତିକଣ୍ଠ କବି ପ୍ରଣୀତ 'ଗୀତସୀତାବଲ୍ଲଭମ୍' ବା 'ଶ୍ରୀରାମଚନ୍ଦ୍ର ଚରିତାମୃତମ୍'—

ଶିତିକଣ୍ଠ ବା ନୀଳକଣ୍ଠ ନାମକ ଜନୈକ କବି ଶ୍ରୀଗୀତଗୋବିନ୍ଦ ଅନୁକରଣରେ ଶ୍ରୀ ସୀତାରାମ ପ୍ରେମଲୀଳାସ ମ୍ବଳିତ 'ଗୀତସୀତାବଲ୍ଲଭମ୍' ବା 'ଶ୍ରୀରାମଚନ୍ଦ୍ରଚରିତାମୃତମ୍' ନାମକ ଗୀତିକାବ୍ୟ ରଚନା କରିଥିଲେ । ଏହାର ଦୁଇସର୍ଗ ମାତ୍ର 'ମନୋରମା' ନାମକ ବ୍ରହ୍ମପୁରରୁ ପ୍ରକାଶିତ ସଂସ୍କୃତ ମାସିକ ପତ୍ରିକାରେ ମୁଦ୍ରିତ ହୋଇଅଛି (୩୭) । ସମ୍ପୂର୍ଣ୍ଣ ଗ୍ରନ୍ଥଟି ପ୍ରକାଶିତ ହୋଇ ନଥିବାରୁ କବିଙ୍କ ପରିଚୟ ଓ ଗ୍ରନ୍ଥ ରଚନା ସମୟ ସ୍ଥିର କରାଯାଇ ପାରୁନାହିଁ । କବି ଶ୍ରୀ ଗୀତଗୋବିନ୍ଦକୁ ପୂର୍ଣ୍ଣମାତ୍ରାରେ ଅନୁକରଣ କରିଥିବାର ଜଣାଯାଏ । ମଙ୍ଗଳାଚରଣରେ କବି ସୀତାରାଘବଙ୍କୁ ପ୍ରଣିପାତ ପୂର୍ବକ ଲେଖିଛନ୍ତି—

(୩୬) ଅଧୁନାଲୁପ୍ତ 'ଚତୁରଙ୍ଗ' ମାସିକ ପତ୍ରିକା ୨ୟ ଭାଗ, ୬ଷ୍ଠ ସଂଖ୍ୟା, ୧୯୪୭ ପୃ ୨୬୪

(୩୭) ମନୋରମା, ପଞ୍ଚମ ଭାଗ, ୨ୟ, ୩ୟ ଓ ୪ର୍ଥ ସଂଖ୍ୟା, ୧୯୨୫

"ମାଳାମ୍ବଶାଯୁପ୍ରଦଦୟଙ୍କଜୟଗୁଣଶକ୍ୱନ୍ ସଂନ୍ଦ୍ରସପ୍ରସର ଲଲୁପରଉଲ୍ଳଙ୍ଗ
ଶ୍ରୀରାମଚନ୍ଦ୍ରଚରତାମୃତସାନ୍ଦ୍ରଗର୍ଭମେତଂ କରୋତି ଶିତକଣ୍ଠକବିଃପ୍ରବନ୍ଧମ୍ ।୨।
ଯଦ୍ଵାମନ୍ତର୍ମନରତାପସମୃଦ୍ଧଟୌ ଯଦରତି ଦୁରତୌଘନର୍ଵକୃତୌ
ଲଯଦଲଙ୍କୃତମଞ୍ଜୁପଦଧ୍ଵନଂ ଶୃଣୁ ତଦା ଶିତକଣ୍ଠସରସ୍ଵତୀମ୍ ।୩।
ବାଚଃ ଶ୍ରୀ କବିଚନ୍ଦ୍ରବନ୍ଧଗଳଡାଃ ପୀଯୂଷବିଡମ୍ବୋଷଦାଃ
ଚଞ୍ଚଦ୍‌ଗାଙ୍ଗତରଙ୍ଗସୋଦର **ଜଗନ୍ନାଥସ୍ୟ** ତାବଦ୍‌ବଚଃ ॥
**କାଶୀନାଥ**କବେର୍ଗିରଣ୍ଟିରଉରଂ ଧେୟାଃ ସଦାବାସିନା
ବାଣୀ କାପି ଚ ମାଲକଣ୍ଠକଳିତା ବିଦ୍ୱନ୍ମନୋହାରିଣୀ ।୪।"

କବି ମାଳକଣ୍ଠଙ୍କ ଦ୍ଵାରା ପ୍ରଶଂସିତ ଶ୍ରୀ କବିଚନ୍ଦ୍ର, ଜଗନ୍ନାଥ ଓ କାଶୀନାଥଙ୍କ କୌଣସି ପରିଚୟ ନ ମିଳିଥିଲେ ମଧ୍ୟ ସେମାନଙ୍କୁ ଆପାତତଃ ଉତ୍କଳୀୟ ପଣ୍ଡିତରୂପେ ଗ୍ରହଣ କରାଯାଇପାରେ । ଏହାପରେ ଏଥିରେ ଶ୍ରୀ ଗୀତଗୋବିନ୍ଦ ଅନୁରୂପ 'ଦଶାବତାର ସ୍ତୁତି' ରହିଛି । କିନ୍ତୁ ଏହା ପରବର୍ତ୍ତୀ ଶ୍ଳୋକରେ କବି କୃଷ୍ଣଙ୍କ ପରିବର୍ତ୍ତରେ ରାମଚନ୍ଦ୍ରଙ୍କ ସ୍ତୁତି କରିଛନ୍ତି । ଯଥା—

"ଦଶାକୃତିରତିଂ ତଂ ନୌମି ସୀତାପତିଂ"

ଏହାର ପ୍ରଥମ ସର୍ଗରେ ରାଘବ (ରାମ)ଙ୍କ ବାଳଚରିତ ଓ ଦ୍ଵିତୀୟ ସର୍ଗରେ ଅନଙ୍ଗାଶ୍ରମରେ ଅବସ୍ଥାନ ବର୍ଣ୍ଣିତ ହୋଇଛି । ପ୍ରଥମ ସର୍ଗର ପୁଷ୍ପିକା ହେଉଛି—

"ଇତିଶ୍ରୀ ଗୀତସୀତାବଲ୍ଲଭେ ବନ୍ଧାମିବ ସମାଗମୋ ନାମ ପ୍ରଥମଃ ସର୍ଗଃ"

ପ୍ରକାଶିତ ଦୁଇସର୍ଗର ବିଭିନ୍ନ ଗୀତରେ ମଙ୍ଗଳଗୁର୍ଜ୍ଜରୀ, ବସନ୍ତ, ରାମକରୀ, ଗୁର୍ଜ୍ଜରୀ ମାଳବଗୌଡ଼ ପ୍ରଭୃତି ରାଗର ଉଲ୍ଲେଖ ଦେଖାଯାଏ ।

ଏଥିରୁ ଗୋଟିଏ ଗୀତର ଧ୍ରୁବପଦ ଉଦାହରଣ ସ୍ଵରୂପ ନିମ୍ନରେ ଉଦ୍ଧାର କରାଗଲା ।

"ଗୁର୍ଜ୍ଜରୀ ରାଗଃ"

ବିହରତି ଚଞ୍ଚଳତରେ ଚରଣୋଜ୍ଜ୍ୱଳ ନୂପୂରନବରବକାମେ
କଳଟକିଙ୍କିଣିକ କୁଣ୍ଡଳମଣ୍ଡିତ ଗଣ୍ଡଯୁଗାଧିକଦାମେ ॥
ରାମେ ମୁନିବରଜନସେବିତଚରିତମ୍
ଈପ୍ସିତଂ ମମ ନୟ ବହୁବିଡିତମ୍ ॥୧॥ ଧ୍ରୁବଃ ପଦ ॥

## (୨୭) ମୈଥିଳ କୃଷ୍ଣଦତ୍ତ ଝା କୃତ 'ଗୀତଗୋପୀପତି'—

କୃଷ୍ଣଦତ୍ତଝା ନାମକ ଜନୈକ ପ୍ରସିଦ୍ଧ ମୈଥିଳ ପଣ୍ଡିତ ଶ୍ରୀ ଗୀତଗୋବିନ୍ଦର ଅନୁକରଣରେ 'ଗୀତଗୋପୀପତି' ନାମକ ଗୀତକାବ୍ୟ ରଚନା କରିଥିବା ମିଥିଳାରୁ ସଂଗୃହୀତ ପୋଥିରୁ ଜଣାଯାଏ । ପୋଥିର ସନ୍ଧାନକ ଐତିହାସିକ ଜୟସ୍ୱାଲଙ୍କ ପ୍ରଦତ୍ତ ଉଦ୍ଧୃତି ନିମ୍ନରେ ଦିଆଗଲା । (୩୮)

"ଓଁ ନମୋରାଧାକୃଷ୍ଣାଭ୍ୟାମ୍

ମୂଳଃ-ତୂର୍ଣଂ କୃଷ୍ଣାନୁକୂଳଂ ନୟତରତରସୌ ମଜ୍ଜନ୍ତ ସ୍ୱସ୍ରଣିଃ
କାନ୍ତେ କାନ୍ତାବଲମ୍ବୀସ୍ୱୟମୟମୁତ୍ତୁପୋ ନୌପ୍ରସଙ୍ଗେସଙ୍ଗାପ୍ୟଃ
ବଶ୍ୱାସୋ ବାତକୋବା ତରଳତବକରଂ ଦେହି ଦାସ୍ୟୋଷ୍ଟି ତେଥ୍ୟଂ
ରାଧାଗୋବିନ୍ଦୟୋ୍ଃ ବଂଶିତମୁଖମୁଦିତାଶ୍ଳେଷଭଙ୍ଗୀ ପୁନାତୁ ॥

ସମାପ୍ତିଃ-ପ୍ରତିପଦଂ ରସମାଦଧତୀ, ନବଂ ବବୁଧସଂସଦକୃଷ୍ଣକଥାମୟୀ
କବିକଥାମୃତଭିନ୍ନୁ ସମୁଦ୍ଭୃତା, ନବସୁଧାବସୁଧାମଧିତିଷ୍ଟତି"

ମିଥିଳାରେ କୃଷ୍ଣଦତ୍ତ ନାମଧେୟ ଏକାଧିକ କବିଙ୍କ ଆବିର୍ଭାବ ଘଟିଥିବାରୁ ଏହାଙ୍କ ପରିଚୟ ଓ ସମୟ ସମ୍ବନ୍ଧରେ ସ୍ଥିର ସିଦ୍ଧାନ୍ତ କରି ହେଉନାହିଁ ।

## (୨୮) କୃଷ୍ଣଦତ୍ତ କୃତ 'ଚଣ୍ଡିକା-ଚରିତ-ଚନ୍ଦ୍ରିକା'—

କୃଷ୍ଣଦତ୍ତ ଝା ନାମକ ମୈଥିଳ ପଣ୍ଡିତ ମାର୍କଣ୍ଡେୟ ପୁରାଣାନ୍ତର୍ଗତ ଦେବୀ ମହାତ୍ମ୍ୟକୁ ଶ୍ରୀ ଗୀତଗୋବିନ୍ଦ ଅନୁରୂପ ଏକ ଗୀତକାବ୍ୟରେ ପରିଣତ କରିଥିଲେ । ଏହାର ନାମ 'ଚଣ୍ଡିକା-ଚରିତ-ଚନ୍ଦ୍ରିକା' ॥

ପୋଥିର ଆବିଷ୍କାରକ ଐତିହାସିକ ରାଜେନ୍ଦ୍ରଲାଲ ମିତ୍ରଙ୍କ ଗ୍ରନ୍ଥ ସନ୍ଧାନ ଉଦ୍ଧୃତି ନିମ୍ନରେ ପ୍ରଦତ୍ତ ହେଲା । (୩୯)

"ମୂଳଃ—ସିଦ୍ଧିଶ୍ରୀଃ ସାଧକାନାଂ ପ୍ରସରତିପୁରତୋ ଯତ୍ପଦାରାଧକାନାଂ
ନିର୍ବିଘ୍ନଂ ଯତ୍ ପ୍ରସାଦାଦୁଦୟତି ସହସା ସାପି ନିଃଶ୍ରେୟସଶ୍ରୀଃ ।

---

(୩୮) A Descriptive Catalogue of Sanskrit Manuscripts of Mithila by K. P. Jayswal, Vol. II, p. 39.

(୩୯) Notices of Sanskrit Manuscripts by Raja R.L. Mitra, 1881, Vol. VI, pt. I, p. 30.

ତେ ଗୁଣ୍ୟ.ଚାରୁମୂର୍ତ୍ତିର୍ନିରବଧି କରୁଣାଶ୍ଚର୍ଯ୍ୟମାଧୁର୍ଯ୍ୟଧୁର୍ଯ୍ୟାତ୍ତ
ଭୂର୍ଯ୍ୟା ସା କାପି କୃଷ୍ଣାତ୍ ସପଦ୍ୟ ମମ ମନଃ ଶୁଦ୍ଧିବୁଦ୍ଧପ୍ରସିଦ୍ଧିମ୍

× × ×

ମଙ୍ଗଳମୟ୍ଯି ଜନମଙ୍ଗଳନାମସହସ୍ରେ
ପ୍ରଥୟସି ଧାମନି ବୃନ୍ଦବମିସ୍ରେ ।
ଶ୍ରୀମନ୍ତ ଗନ୍ତରସି ଜଗବମ୍ବ, ଜୟ ଜୟ ଦେବ ଶିବେ
ହରସିବ ବୋଧୟସି ଚ ରହସି ବଧିଖେଦମ୍
ଜନୟସି ମଧୁକୈଟଭ ମନ୍ତଭେଦମ୍ ॥
ଇଡଶ୍ରୀ କୃଷ୍ଣଦତ୍ତକୃତୌ ସିଦ୍ଧିଲକ୍ଷଣାୟାଂ ଚଣ୍ଡୀଚରିତଚନ୍ଦ୍ରିକାୟାଂ
ଧପ୍ରସାଦବରପ୍ରଦାନୋ ନାମ ଏକାଦଶଃ ସର୍ଗଃ, ସମାପ୍ତୋଽୟଂଗ୍ରନ୍ଥଃ । ”

## (୨୧) ମହାମହୋପାଧ୍ୟାୟ ଭୀଷ୍ମ ମିଶ୍ର କୃତ 'ଗୀତଶଙ୍କରମ୍'—

ମୈଥିଳ ମହାମହୋପାଧ୍ୟାୟ ଭୀଷ୍ମ ମିଶ୍ର କୃତ 'ଗୀତଶଙ୍କର'ର ଗୋଟିଏ ପୋଥି ପ୍ରଥମେ ମହାମହୋପାଧ୍ୟାୟ ହରପ୍ରସାଦ ଶାସ୍ତ୍ରୀ ପରୀକ୍ଷା କରିଥିଲେ । (୪୦) ଏହାର ମଙ୍ଗଳାଚରଣ ଶ୍ଳୋକରେ ଶିବଙ୍କ ସ୍ତୁତି ଓ ଦ୍ୱିତୀୟ ଶ୍ଳୋକରେ ଗ୍ରନ୍ଥ ପରିଚୟ ପ୍ରଦତ୍ତ ହୋଇଛି । ଯଥା—

"ଶ୍ରୀ ଗଣେଶାୟ ନମଃ

ସାନନ୍ଦଂ ସୁରବୃନ୍ଦବନ୍ଦିତପଦୋ ବୃନ୍ଦଶ୍ରବପ୍ରାର୍ଥନ—
ପ୍ରାଗ୍‌ଭାରେପ୍‌ସିତ ପାଦଶାପରଣୟୋ ପ୍ରୌଢପ୍ରସାଦୋନ୍ମୁଖଃ
ସଦ୍ୟଃ ସନ୍ଧୃତକାମ କୋଽପି ଜଗତାଂ କାମାର୍ଥସିଦ୍ଧିପ୍ରଦଃ
କଳ୍ପଦ୍ରୁଃ କଳୟତ୍ୱନେକକୁଶଳଂ କୈଳାସବାସୀ ଶିବଃ ॥
ଶ୍ରୀମାନ୍ ମୈଥିଳ ଧୀରଜେନ କବିନା ହରେଣ ପଣ୍ଡିତାୟରେ
ଧୀରୋଦ୍ଦାହମନଃ ପ୍ରମୋଦକରଣଂ ହରେଶ୍ୱର ପ୍ରୀତୟେ
ମହାତ୍ମ୍ୟଂ ଗିରିଜାଗିରୀଶପଦୟୋ ର୍ଗୀତଂ ମିଥଃ ପ୍ରୀତୟେ
ଭକ୍ତାନାମନଶଂ ତନୋତୁ ସୁଧିୟାମାନନ୍ଦକଲ୍ପଂ ମୁଦଂ ॥

× × ×

---

(୪୦) A Des. Cat. of Sans. Mss. by Shastri Vol. II, pp. 195--196.

ସମାପ୍ତିଃ — ଅଯୁକ୍ତାନପି ସଂଯୁକ୍ତୌ ନଳମାଳଲସନ୍ନିଭାଂ
ଶିବୈଳସୁତାଂ ମେ.ଦଂ ଗାୟୁତାଂ ଗୀତଶଙ୍କରମ୍ ।

ଇତଶ୍ରୀ ଗୀତଶଙ୍କରେ ଶ୍ରୀମନ୍ ମୈଥିଳ ମହାମହୋପାଧ୍ୟାୟ ଖିଷ୍ଟୁ ମିଶ୍ର ବିରଚିତେ ଏକାଦଶଃ ସର୍ଗଃ"

ଏହାର ଗୋଟିଏ ଗୀତର ଧ୍ରୁବପଦ ନିମ୍ନରେ ଉଦ୍ଧାର କରାଗଲା ।

— "ଗୌଡ ମାଳବ ରାଗେ —

ବହମି ବଚତବପୁଷା କୁସୁମୋଦମମାର
ଚତୁବରଭୂଧର ନରପତବାରମ୍
ଶଙ୍କରଧୃତ ଭୂମିସ୍ୱରୂପ ଜୟ ଭୁବନେଶ ବିଭୋ (ଧ୍ରୁବପଦ)"

## (୩୦) ହୀର କୃତ 'ଗୀତଶଙ୍କରମ୍'—

ହୀର ନାମକ ଜନୈକ ବନ୍ଦ୍ୟୋପାଧ୍ୟାୟ ମୈଥିଳ ରାଜପଣ୍ଡିତ 'ଗୀତ-ଶଙ୍କରମ୍' ନାମକ ଅନ୍ୟ ଏକ ଗୀତକାବ୍ୟ ରଚନା କରିଥିବାର ଜଣାଯାଏ । (୪୧) ଖିଷ୍ଟୁ ମିଶ୍ର କୃତ 'ଗୀତଶଙ୍କରମ୍'ର ଶେଷ ଦୁଇ ଶ୍ଳୋକ ଏହି ଗ୍ରନ୍ଥ ଶେଷରେ ଲିପି-ବଦ୍ଧ ହୋଇଥିବାରୁ ଏହା ପ୍ରକୃତରେ ମହାମହୋପାଧ୍ୟାୟ ଖିଷ୍ଟୁ ମିଶ୍ରଙ୍କ ଦ୍ୱାରା ରଚିତ ହୋଇ ତାଙ୍କ ପୃଷ୍ଠପୋଷକ ହୀରଙ୍କ ନାମରେ ଭଣିତ ହୋଇଥିଲା । ଏହା ମଧ୍ୟ ପୂର୍ବୋକ୍ତ ଗ୍ରନ୍ଥପରି ଏକାଦଶ ସର୍ଗରେ ସମାପ୍ତ ହୋଇଛି ।

ଏହାର ଗୋଟିଏ ଗୀତ ନିମ୍ନରେ ଉଦ୍ଧୃତ ହେଲା ।

—ଭୈରବୀ ରାଗେ—

ଭ୍ରମଦରକଳିତ ରସାଳସମୀକ୍ଷିତ ବଳସିତବନ୍ଧିତବିନୋଦମ୍
ଅଳିରବ ନୟନମିଦଂ ତବ ସମ୍ପ୍ରତି କଥମ୍ଭୃତ ମାନସମୋଦମ୍
ଶିବ ଶିବ ପାହି ଶଙ୍କର ମାମଭୀତମ୍
ମା କୁରୁ ଚେତସି ଖେଦମ୍
ତାମନୁନୟ ନୟକୋବିଦ ସାଧୟ ମାନସମୋଦମ୍

ମହାମହୋପାଧ୍ୟାୟ ଖିଷ୍ଟୁ ମିଶ୍ର ଓ ତାଙ୍କର ଆଶ୍ରୟଦାତା ରାଜପଣ୍ଡିତ ହୀରଙ୍କ ବିଶେଷ ପରିଚୟ ଓ ଆବିର୍ଭାବ କାଳ ସମ୍ବନ୍ଧରେ କୌଣସି ତଥ୍ୟ ମିଳନାହିଁ ।

---

(୪୧) ଐତିହାସିକ କେ. ପି. ଜୟସ୍ୱାଲଙ୍କ ସଂକଳିତ
A Des. Cat. of Mss. in Mithila, Vol. II, pp 52-53

## (୩୧) ମୈଥିଳ ଚନ୍ଦ୍ରଦତ୍ତ କୃତ 'କାଶୀଗୀତମ୍'—

ଚନ୍ଦ୍ରଦତ୍ତ ନାମକ ଜନୈକ ମୈଥିଳ ପଣ୍ଡିତ ଶ୍ରୀଗୀତଗୋବିନ୍ଦର ଅନୁକରଣରେ ଦ୍ୱାଦଶ ସର୍ଗ ବିଶିଷ୍ଟ କାଶୀଗୀତ ରଚନା କରିଥିଲେ । ଏହି ଗ୍ରନ୍ଥର ପରିଚୟ ପ୍ରଥମେ ରାଜା ରାଜେନ୍ଦ୍ରଲାଲ ମିତ୍ର ଓ ତତ୍ପରେ ପରେ କାଶୀପ୍ରସାଦ ଜୟସ୍ୱାଲ ପ୍ରଦାନ କରିଥିଲେ । (୪୨) ଏଥିରେ ଗଙ୍ଗାକୂଳରେ କାଶୀ ଓ ଶଙ୍କରଙ୍କ କେଳି ସମୃଦ୍ଧ ବର୍ଣ୍ଣିତ ହୋଇଅଛି । ଯଥା—

ପ୍ରାରମ୍ଭଃ — "ଚେମାହୈର୍ଲିଙ୍ଗୁରମେତଦ୍ ତ୍ରିଭୁବନଂ ବିଜ୍ଞାୟ ଭୂତେଶ୍ୱରେ-
ଭବ୍ୟାର୍ଥୀ ଜଗତୋଃକୃତାଭିକରୂଣଂ କାଶୀ ଶରୀରଂ ପରଂ
ଇତ୍ଥଂ ଭେଦବତୋର୍ଜଯୁକ୍ତ ଜଗତୋରେକାତ୍ମନୋରେତୟୋଃ
**କାଶୀଶଙ୍କରୟୋଶ୍ଚିରଂ ସୁରଧୁନୀକୂଳେ ରହଃ କେଳୟଃ**
ଆସ୍ତ ଯଦ୍ୟପି ରାମଜନ୍ମଧରଣୀ ଶ୍ରୀକୃଷ୍ଣଜନ୍ମାବନୀ
ମାୟା ନାମ ପୁରୀ ତଥା ଭଗବତୀ କାଞ୍ଚୀପୁରୀ ପୁଣ୍ୟଦା
ନାମ୍ନୈବ ପ୍ରକଟୀକୃତ ସ୍ୱମହିମାବନ୍ତୀ ତଥା ଦ୍ୱାରକା
ଏତା ସନ୍ତୁଃ ପରନ୍ତୁ ଜନ୍ତୁନକରୋଦ୍ଧାରେ ନ କାଶୀ ସମା ।

ଯଦିହରସ୍ମରଣେ ସରସଂ ମନୋ ଯଦି ବିବେକକଳାସୁ କୁତୂହଳଂ
ସଦୁପଦେଶମହେକେଥାପଥଂ ଶୃଣୁ ତଦା କଳ **ମୈଥିଳଭାରତୀଂ**"

ସମାପ୍ତିଃ — ଉକ୍ତଂ "**ଯଜ୍ଜ୍ୟୁଦେବପଣ୍ଡିତକବେ**ରବୋଚିତଂ ତନ୍ମୟା
ସର୍ବଂତାଦୃଶମେବ କେବଲମିହ ପ୍ରାଲେଖି ପଦ୍ୟଂ ଶୁଭଂ ।
ଅନ୍ୟତ୍ତୁ କଳ୍ପିତମେବ ମେ ଯଦି ପୁନସ୍ତତ୍ର ପିତେତ୍ତ ଦୁଷଣଂ
ତତ୍ସର୍ବଂ କୃପୟା ବିଶୋଧ୍ୟ ସୁଧିୟା କ୍ଷନ୍ତବ୍ୟ ମେଷୋଃଞ୍ଜଳିଃ" ।

ପୁଷ୍ପିକା — ଇତିଶ୍ରୀ ମୈଥିଳ ଚନ୍ଦ୍ରଦତ୍ତ କୃତ କାଶୀଗୀତେ ଦ୍ୱାଦଶଃ ସର୍ଗଃ ।

ସଂସ୍କୃତରେ ପ୍ରସିଦ୍ଧ 'ଭକ୍ତମାଳା' ଗ୍ରନ୍ଥ ପ୍ରଣେତା ଚନ୍ଦ୍ରଦତ୍ତ ଓ କାଶୀଗୀତ ରଚୟିତା 'ଚନ୍ଦ୍ରଦତ୍ତ' ଏକ ଓ ଅଭିନ୍ନ ଥିବାରୁ ତାଙ୍କୁ ନିର୍ବିବାଦରେ ଅଷ୍ଟାଦଶ ଶତାବ୍ଦୀରେ ଅବସ୍ଥାପିତ କରାଯାଇପାରେ ।

---

(୪୨) I) Mitra—Notices of Sanskrit Manuscripts, Vol VII, pt I, 1883. pp 132-133
II) A Des. Cat. of Mss. in Mithila, Vol II by Jayaswal, p. 22.

## (୩୨) ମୈଥିଲ ଚନ୍ଦ୍ରଦତ୍ତ କୃତ 'ବୀରବନ୍ଧୁଦମ୍' —

ମୈଥିଳ ଚନ୍ଦ୍ରଦତ୍ତ କୃତ 'ବୀରବନ୍ଧୁଦମ୍'ରେ ଶ୍ରୀଗୀତଗୋବିନ୍ଦର ଗଭୀର ପ୍ରଭାବ ପରିଲକ୍ଷିତ ହୁଏ । ଏହାର ଏକ ମଙ୍ଗଳାଚରଣ ଶ୍ଳୋକରେ ଶିବ ତାଣ୍ଡବ ସମୟର ଶଙ୍ଖଧ୍ୱନିର ସ୍ତୁତିଗାନ କରାଯାଇଛି । (୮୩) ଯଥା—

"ଚଣ୍ଡୀଭର୍ତ୍ତୁରକାଣ୍ଡତାଣ୍ଡବବିଧୌ ଶଙ୍ଖଧ୍ୱନିଃ ପାତୁ ମାଂ"

ଏଥିରୁ ଚଣ୍ଡୀଙ୍କ ସ୍ତୁତିବାଚକ ଏକ ଗୀତ ନିମ୍ନରେ ଉଦ୍ଧାର କରାଗଲା ।

"ବିମଳାଜିନବସନେ ସୁବିକଟଦଶନେ ଚଞ୍ଚଲରସନେ ଘୋରରବେ
କରଧୃତକରବାଳେ ରଣବିକରାଳେ ନଗରବାଳେ କଳିତଶିବେ ॥
ମଧୁରସ୍ମିତହାସିନି ଶମ୍ଭୁବିଳାସିନି ଗିରିବରବାସିନି ମହ୍ୟଂ ସକଳଂ
ସୁରବୈରିବିଦାରିଣି ମୃଗବରଚାରିଣି ମଙ୍ଗଳକାରିଣି କୁରୁ କୁଶଳମ୍ ॥

× × ×

ପୁଷ୍ପିକା— ଇତିଶ୍ରୀ ବୀରବନ୍ଧୁଦଂ ଚନ୍ଦ୍ରଦତ୍ତ ବିର୍ନିତଂ ।

ଚନ୍ଦ୍ରଦତ୍ତ ଏହାର ଏକ ଟୀକା ମଧ୍ୟ ରଚନା କରିଥିଲେ । (୮୪)

ପ୍ରଣମ୍ୟ ହରପାଦାବ୍ଜଂ **ଜାନକୀ-ଜନ୍ମଭୂମିଭୂଃ**
**ଚନ୍ଦ୍ରଦତ୍ତଃ** ସ୍ୱରଚିତାଂ ବ୍ୟାଚଷ୍ଟେ ବିରୁଦାବଳୀଂ ॥

ଏଥିରେ ମଧ୍ୟ ଚନ୍ଦ୍ରଦତ୍ତ 'ଜାନକୀଜନ୍ମଭୂମି' ବା ମିଥିଳାବାସୀ ଥିବାରୁ ଗର୍ବ ଅନୁଭବ କରିଛନ୍ତି ।

## (୩୩) ଶ୍ରୀରାମ ଭଟ୍ଟ କୃତ 'ଗୀତଗିରୀଶମ୍'—

ମିଥିଳା ରାଜା ରାମଚନ୍ଦ୍ରଦେବଙ୍କ ଆ: ୧୫୧୩ଖ୍ରୀଷ୍ଟାବ୍ଦ)ଙ୍କ ସଭାକବି ଆନ୍ଧ୍ର ପଣ୍ଡିତ ଶ୍ରୀନାଥ ଭଟ୍ଟଙ୍କ ପୁତ୍ର ଶ୍ରୀରାମ ଭଟ୍ଟ (୮୫) ମିଥିଳାର ପ୍ରସିଦ୍ଧ କବି ଭାନୁଦତ୍ତଙ୍କ ପଦାଙ୍କ ଅନୁସରଣ କରି 'ଗୀତଗିରୀଶମ୍' ନାମକ ଗୀତକାବ୍ୟ ରଚନା କରିଥିଲେ । ଏହି ଗ୍ରନ୍ଥ ଆରମ୍ଭରେ ସେ ଶିବ-ପାର୍ବତୀଙ୍କ କଠାକ୍ଷର ସ୍ତୁତିପାଠ ଏବଂ ଶ୍ରୀହର୍ଷ, ଭାରବୀ କାଳିଦାସ ପ୍ରଭୃତି ମହାକବିମାନଙ୍କ ପ୍ରଶଂସା ଗାନ ପରେ ଶ୍ରୀ ଜୟଦେବଙ୍କ ଅମର

---

(୮୩) Mitra—Notices of Sans. Mss, Vol. II, pt I, 1883p. 80
(୮୪) „ „ „ p 81.
(୮୫) 'History of Mithila'. by Dr. Upendra Thakur, pp 334-836

କୃତର ଏକ ଅନୁକୃତ ରଚନା କରଥିବାର ବମାତ ଭାବରେ ପ୍ରକାଶ କରଛନ୍ତି ।
ଯଥା—

× × ×

"ପାତାମୀଣ୍ଣରଯୋ ସ୍ତରଙ୍ଗତରଲୌ ଲୋକାନ୍ କଟାକ୍ଷାବୃତ୍ତୌ"
ହର୍ଷଂ ଶ୍ରୀହର୍ଷନାମା ରଚୟୃତ ବଚନୈରଭ୍ରୁତାର୍ଥୈ ର୍ଦୁରୁହୈଃ
ଗମ୍ଭୀରୈର୍ଭବତୋ ଭାରବିରପିତନୁତେଶତ୍ତ୍ୱଦେ୍ୱ ପ୍ରବୋଧଂ
ବାଗ୍ଗୁମ୍ଫୈଃ ସପ୍ରସାଦୈର୍ମୁଦୁଗଦ୍ଦତପଦୈଃ କାଳିଦାସଃ ପ୍ରସୀଦ
ତ୍ଵୁନ୍ତେ କ୍ଵୋକେଷୁ ତେଷାମହମପି ଚରଣାମ୍ଭୋଜଭୃଙ୍ଗୋଽପି, ଗ୍ରାମ୍ଭ ॥

ହର୍ଯୀଷଂ କପିରନୁବର୍ତ୍ତିତେ ଯଥାସ୍ୱଂ
ଖଦ୍ୟୋତରବମପି ନନ୍ଦନୋ ଧନାଢ୍ୟଂ
ଔତ୍ସୁକ୍ୟାଦହମଧୁନା ତଥାନୁକୁର୍ବେ
ଲଳିତ୍ୟ କବକଯ୍ୟୁଦେବଭାରତୀନାମ୍"

ଗ୍ରନ୍ଥ ଶେଷରେ ସେ ନଜର ନମ୍ନୋକ୍ତ ପରଚୟ ପ୍ରଦାନ କରଛନ୍ତି—

"ଆସୀଦସୀମମହମା ସ ହୃମାବଦାତ—
ମୂର୍ତ୍ତେ ର୍ଭବସ୍ୟ ଚରଣାନନ୍ତପ୍ରାପ୍ତକୀର୍ତ୍ତିଃ
ଶ୍ରୀନାଥଭଟ୍ଟ ଇତ ତତ୍ତନୟୋମ ରାମ
ନାମାଭୂତଂ ବ୍ୟରଚ ଗୀତଗିରୀଶମେତତ୍ ॥"

ପୁଷ୍ପିକା— ଇତଶ୍ରୀ ଗୀତଟିଗ୍ରିଶେ ସୁପ୍ରୀତପାର୍ବଣ୍ଡପତର୍ନାମ ଦ୍ୱାଦଶଃ ସର୍ଗଃ ॥ (୬୭)

## (୩୪) ମୈଥିଳ ଜୟଦେବ କୃତ 'ରାମଗୀତଗୋବନ୍ଦମ୍'—

ଜୟଦେବ ନାମକ ଜଣେ ମୈଥିଳ ପଣ୍ଡିତ ଶ୍ରୀ ସୀତାରାମଙ୍କ ଚରିତ ଅବଲମ୍ବନ କରି 'ରାମଗୀତଗୋବନ୍ଦମ୍' ନାମକ ଗୀତକାବ୍ୟ ରଚନା କରଥିଲେ । ଏହା ମୁଦ୍ରିତ ଓ ପ୍ରକାଶିତ ହୋଇଅଛି । ଉକ୍ତ ଜୟଦେବ ଶ୍ରୀଗୀତଗୋବନ୍ଦକର୍ତ୍ତା ଶ୍ରୀ ଜୟଦେବଙ୍କ ବହୁ ପରବର୍ତ୍ତୀ । ତାଙ୍କର ଓ ତତ୍କୃତ ଗ୍ରନ୍ଥର ପରଚୟାତ୍ମକ କେତେକ ଶ୍ଳୋକ ନମ୍ନରେ ଉଦ୍ଧାର କରାଗଲା ।

ମୂଳ— ବାଲ୍ମୀକନାଦକବନା ଶତକୋଟିସଂଖ୍ୟା
ରମାୟଣଂ ବରଚତଂ ଶଶିମୌଳନାତ ।

---

(୬୭) A Des, Cat. of Sans. Mss by H.P. Shastri Vol. VII, Nos 5215-5216 pp 181—182.

କାପେୟୁ ବାଯୁ୍ତନେପ୍ଯେନ ତଥପରେଣ
କଣ୍ଠର କରୋତି ଜୟଦେବକବିଷ୍ଟରଣଂ । ୩
ଯଦି ହରିସ୍ମରଣେ ସରସଂ ମନୋ
ଯଦି ବିଳାସକଳାସୁ କୌତୂହଲମ୍ ।
ପଠନୀୟମିଦଂ ତଦୋଜସା
ରୁଚିରଂ **ଶ୍ରୀଜୟଦେବନିର୍ମିତଂ** । ୪

ଶେଷ— ଶ୍ରୀମତ୍ **ବିଦେହନୃପଦେଶକୃତାଧିବାସୋ**
ନଶେଷଭୂମିପତିମଣ୍ଡଳମାନନୀୟଃ ॥
ଏତତ୍ ଚକାର ବରକ **ବୀରରସପ୍ରଧାନଂ**
କାବ୍ୟଂ କବିପ୍ରକର ମୌଳି ବିଭୂଷଣଂସତ୍ ।"

## (୩୫) ଯତୀନ୍ଦ୍ର ନାରାୟଣ ତୀର୍ଥ ବିରଚିତ 'ଶ୍ରୀକୃଷ୍ଣଲୀଲାତରଙ୍ଗିଣୀ'—

ଶ୍ରୀକ୍ଷେତ୍ରବାସୀ ମଠାଧୀଶ ଯତୀନ୍ଦ୍ର ଶିବରାମ ତୀର୍ଥଙ୍କ ପଦାଙ୍କ ଅନୁସରଣ କରି ଯତୀନ୍ଦ୍ର ଶ୍ରୀ ନାରାୟଣ ତୀର୍ଥ, 'ଶ୍ରୀକୃଷ୍ଣଲୀଳାତରଙ୍ଗିଣୀ' ନାମ୍ନୀ ଶ୍ରୀଗୀତଗୋବିନ୍ଦମ୍‌ର ଏକ ଲୋକପ୍ରିୟ ଅନୁକୃତ ରଚନା କରିଥିଲେ । ଉକ୍ତ ଗ୍ରନ୍ଥଟି ୧୯୬୯ ମସିହାରେ ଆନ୍ଧ୍ରପଣ୍ଡିତ ନୋରି ନରସିଂହ ଶାସ୍ତ୍ରୀଙ୍କ ଦ୍ୱାରା ଟୀକା ଓ ଉପାଦେୟ ମୁଖବନ୍ଧ ସହ ପ୍ରକାଶିତ ହୋଇଅଛି । (୪୭)

ଆନ୍ଧ୍ରପ୍ରଦେଶସ୍ଥ ଗୁଣ୍ଟୁର ଜିଲାର କଜ ନାମକ ଗ୍ରାମରେ ଭରଦ୍ୱାଜସ ଗୋତ୍ର ନୀଳକଣ୍ଠ ଶାସ୍ତ୍ରୀଙ୍କ ଔରସରେ ଗୋବିନ୍ଦ ଶାସ୍ତ୍ରୀ ନାମକ ପ୍ରସିଦ୍ଧ ପଣ୍ଡିତ ଜନ୍ମ-ଗ୍ରହଣ କରିଥିଲେ । ସେ ଶିବରାମାନନ୍ଦତୀର୍ଥ ନାମଧେୟ ଗୁରୁଙ୍କ ଠାରୁ ସନ୍ନ୍ୟାସ ଦୀକ୍ଷା ଗ୍ରହଣ କଲା ପରେ 'ନାରାୟଣ ତୀର୍ଥ' ନାମ ଧାରଣ କରିଥିଲେ । ସେ ପରି-ବ୍ରାଜକ ଭାବରେ କାଶୀ, ପ୍ରୟାଗ ଓ ମଥୁରା ପ୍ରଭୃତି ପ୍ରସିଦ୍ଧ ତୀର୍ଥରେ ବହୁକାଳ ଯାପନ କରି ଶ୍ରୀକ୍ଷେତ୍ରକୁ ଆଗମନ କରିଥିଲେ । ଏହାର ମାହାତ୍ମ୍ୟରେ ସେ ଅତ୍ୟନ୍ତ ମୁଗ୍ଧ ହୋଇଥିଲେ । ଏଠାରେ ଅବସ୍ଥାନ କାଳରେ ସେ ଶ୍ରୀଗୀତଗୋବିନ୍ଦ ପାଠରେ ବିଶେଷ ଅନୁପ୍ରାଣିତ ହୋଇ 'ଶ୍ରୀକୃଷ୍ଣଲୀଳାତରଙ୍ଗିଣୀ' ଗ୍ରନ୍ଥ ରଚନାରେ ପ୍ରବୃତ୍ତ ହୋଇଥିଲେ । ୧୭୪୫ ଖ୍ରୀଷ୍ଟାବ୍ଦରେ ତାଙ୍କର ନାରାୟଣ ପ୍ରାପ୍ତି ଘଟିଥିଲା । ତାଙ୍କ ସଂପର୍କରେ ଗ୍ରନ୍ଥ ସଂପାଦକଙ୍କ ମତ ପ୍ରଣିଧାନଯୋଗ୍ୟ :

---

(୪୭) ପ୍ରକାଶକ 'ସଦ୍‌ଗୁରୁ ସମିତି' ରେପାଲ୍ଲି, ଜିଲା ଗୁଣ୍ଟୁର, ଆନ୍ଧ୍ରପ୍ରଦେଶ

"This Kshetra (Puri) seems to have impressed him most During his stay there, he used to be constantly remined of Jaya Deva There, he composed the song with the Pallavi 'Subhadra, Balabhadra, Sudarsana sahita' He was most probably inspired by the idea of composing this work during his stay there, incorporating songs and verses he had previously composed. (୪୮)

ଗ୍ରନ୍ଥ ଆଦ୍ୟରେ ଯତ୍ନାନ୍ଦ ମହାଶୟ ଗଣେଶ ଓ ଗରୁଡ଼ଙ୍କ ବନ୍ଦନା ପରେ ଜଗନ୍ନାଥଙ୍କ ସ୍ତୁତିଗାନ କରିଛନ୍ତି ।

"ନୀଳାଚଳବରନିଳୟଂ ନିଖିଳ ଜଗନ୍ନାଥମେକ ମାକଳୟେ
ନୀରଧିବଦ୍ଧବିଭୁନିକଟଂ ନିଜ ସେବକବୃନ୍ଦହୃତବାଧାଭାରମ୍"

## ଗ୍ରନ୍ଥ ପରିଚୟ—

ଏହି ଗ୍ରନ୍ଥ ଦ୍ୱାଦଶ ତରଙ୍ଗରେ ବିଭକ୍ତ । ଯଥା— ଇତିଶ୍ରୀ ଶିବରାମାନନ୍ଦ-ତୀର୍ଥସେବକ ଶ୍ରୀ ନାରାୟଣତୀର୍ଥ ବିରଚିତାୟାଂ ଶ୍ରୀକୃଷ୍ଣଲୀଳାତରଙ୍ଗିଣ୍ୟାଂ ଶ୍ରୀକୃଷ୍ଣ ପ୍ରାଦୁର୍ଭାବ ବର୍ଣ୍ଣନଂ ନାମ ପ୍ରଥମ ତରଙ୍ଗ ସମାପ୍ତଃ ॥ ଶ୍ରୀକୃଷ୍ଣ ବାଲଲୀଳା ବର୍ଣ୍ଣନ ନାମ ଦ୍ୱିତୀୟ ତରଙ୍ଗଃ; ଶ୍ରୀକୃଷ୍ଣ ଗୋବତ୍ସପାଳନ ବର୍ଣ୍ଣନଂ ନାମ ତୃତୀୟ ତରଙ୍ଗଃ; ଶ୍ରୀକୃଷ୍ଣ ଗୋପାଳକବର୍ଣ୍ଣନ ନାମ ଚତୁର୍ଥ ତରଙ୍ଗଃ, ଗୋପୀବସ୍ତ୍ରାପହାର ଗୋବର୍ଦ୍ଧନୋଦ୍ଧାର ବର୍ଣ୍ଣନଂ ନାମ ପଞ୍ଚମ ତରଙ୍ଗଃ, ଶ୍ରୀକୃଷ୍ଣ ଗୋପୀସମାଗମ ବର୍ଣ୍ଣନଂ ନାମ ଷଷ୍ଠତରଙ୍ଗଃ; ଶ୍ରୀକୃଷ୍ଣ ରାସକ୍ରୀଡ଼ା ବର୍ଣ୍ଣନଂ ନାମ ସପ୍ତମ ତରଙ୍ଗଃ; ରାସକ୍ରୀଡ଼ାବର୍ଣ୍ଣନଂ ନାମ ଅଷ୍ଟମ ତରଙ୍ଗଃ; କୃଷ୍ଣ ମଥୁରାପ୍ରବେଶ ବର୍ଣ୍ଣନଂ ନାମ ନବମ ତରଙ୍ଗଃ; କଂସନିର୍ହରଣଂ ନାମ ଦଶମ ତରଙ୍ଗଃ; ଶ୍ରୀକୃଷ୍ଣ ଦ୍ୱାରମତୀ ପ୍ରବେଶ ବର୍ଣ୍ଣନଂ ନାମ ଏକାଦଶ ତରଙ୍ଗଃ; ଶ୍ରୀକୃଷ୍ଣ ରୁକ୍ମିଣୀ କଲ୍ୟାଣ ମହୋତ୍ସବ ବର୍ଣ୍ଣନଂ ନାମ ଦ୍ୱାଦଶ ତରଙ୍ଗଃ ॥

## ବିଭିନ୍ନ ରାଗର ବ୍ୟବହାର—

'କୃଷ୍ଣଲୀଳାତରଙ୍ଗିଣୀ'ରେ ସମୁଦାୟ ୧୫୩ଟି ଗୀତ ସନ୍ନିବିଷ୍ଟ । ପ୍ରତ୍ୟେକ ଗୀତର ଆଦ୍ୟରେ ରାଗ ଓ ତାଳ ନିର୍ଦ୍ଦିଷ୍ଟ ହୋଇଛି । ବ୍ୟବହୃତ ରାଗ ସଂଖ୍ୟା ହେଉଛି ୩୯ । ଯଥା — ଆନନ୍ଦ ଭୈରବୀରାଗ, ଆରଭି, ଆହିରୀ, କଲ୍ୟାଣୀ, କାଫୀ, କାଂଭୋଜୀ, କୁରଂଜୀ, କେଦାରଗୌଳ, ଖମାସ, ଗୌରୀ, ଘଂଟା, ତୋଡ଼ୀ,

(୪୮) 'ଶ୍ରୀକୃଷ୍ଣଲୀଳାତରଙ୍ଗିଣୀ' — Introduction, p 7

ହିଜାବଂଶ, ଦେଶାକ୍ଷୀ, ଧନ୍ୟାସୀ, ନାଦନାମକ୍ରିୟା, ନାଟ, ନାଳାଂବରୀ, ପଂତୁବରଳୀ, ପୁନ୍ନାଗବରାଳୀ, ପୂର୍ବି, କଲ୍ୟାଣୀ, ବଲହଂସ, ଭୂପାଳ, ଭୈରବୀ, ମଧ୍ୟମାବତୀ; ମଳହରୀ ମୁଖାରୀ, ମୋହନ, ପଦୁକୁଳ କାଂବୋଜୀ, ରେଗୁପ୍ତୀ, ବରାଳୀ; ଶହନା, ଶଂକରାଭରଣ, ଶ୍ରୀ, ସାରଙ୍ଗ, ସାବେରୀ, ସୁରଟୀ, ସୌରାଷ୍ଟ୍ର, ହୁସେନୀ । ଆମ ନିଜସ୍ୱ ପୋଥିରେ ଉଲ୍ଲେଖ ପାଇଥିବା ରାଗଗୁଡ଼ିକର ସଂଖ୍ୟା ଅଧିକ ଓ ସେଗୁଡ଼ିକ ଶୁଦ୍ଧ ଭାବରେ ଲିପିବଦ୍ଧ ହୋଇଛି । ସ୍ଥାନାଭାବରୁ ଏ ସଂପର୍କରେ ଆଲୋଚନା କରାଗଲା ନାହିଁ ।

ଆନ୍ଧ୍ରଦେଶରେ 'ଶ୍ରୀକୃଷ୍ଣଲୀଳାତରଙ୍ଗିଣୀ' ବିଶେଷ ଆଦର ଓ ପ୍ରସାରଲାଭ କରିଥିବାରୁ ଏହାର ପ୍ରଣେତା ବିଲ୍ୱମଙ୍ଗଳ ଓ ଶ୍ରୀ ଜୟଦେବ ରୂପେ ସମ୍ମାନିତ ହୁଅନ୍ତି । ଯଥା—

"After his death he (Vilvamangala) was born as Jayadeva and composed the Gitagovinda. In the next birth he was born as Nārāyana Tirtha, also a votary of Kṛshṇa and wrote the Krishṇalilā Taraṅgini" (୪୯)

(୩୬) ପୀଠାଧୀଶ ଚନ୍ଦ୍ରଶେଖର ସରସ୍ୱତୀ ରଚିତ 'ଶିବଗୀତିମାଳିକା'—

ସପ୍ତଦଶ ଶତାବ୍ଦୀର ମଧ୍ୟଭାଗରେ ଆବିର୍ଭୂତ ତାମିଲନାଡ଼ୁସ୍ଥ କାଞ୍ଚୀ କାମକୋଟି ପୀଠାଧୀଶ ଶ୍ରୀ ଚନ୍ଦ୍ରଶେଖର ସରସ୍ୱତୀ ଶ୍ରୀଗୀତଗୋବିନ୍ଦ ଅନୁକରଣରେ 'ଶିବଗୀତିମାଳିକା' ନାମକ ଗ୍ରନ୍ଥ ରଚନା କରିଥିଲେ । ଏହା 'ଶିବାଷ୍ଟପଦୀ' ନାମରେ ମଧ୍ୟ ବିଖ୍ୟାତ । ଏହାର ଏକ ଶ୍ଳୋକ ଓ ପୁଷ୍ପିକା ନିମ୍ନରେ ଉଦ୍ଧୃତ ହେଲା ।

"ବିଦ୍ୟାବିନୀତ ଜୟଦେବକବେରୁଦାର
ଗୀତପ୍ରବନ୍ଧସରଣିପ୍ରଣିଧାନମାତ୍ରାତ୍
ଏଷା ମୟା ବିରଚିତା **ଶିବଗୀତିମାଳା**
ମୋଦଂ କରୋତୁ ଶିବୟୋଃ ପଦଯୋଜନାୟୁମ୍"

× × ×

ପୁଷ୍ପିକା— ଇତିଶ୍ରୀ କାଞ୍ଚୀକାମକୋଟିପୀଠାଧୀଶ ଶ୍ରୀଚନ୍ଦ୍ରଶେଖରେନ୍ଦ୍ର ସରସ୍ୱତୀଯତି ବିରଚିତାୟାଂ ଶିବଗୀତିମାଳିକାୟାଂ ଦଶମଃ ସର୍ଗଃ" (୫୦)

---

(୪୯) A History of Classical Sanskrit Literature by M. Krishnamacharya, p. 121,

(୫୦) Des. Cat, of Sans. Mss. (Tanjore M.S.S.M. Library Vol XVI. No. 10952 pp 7344-7345.

ଶ୍ରୀଗୀତଗୋବିନ୍ଦ ପରି ଏହା ଦ୍ୱାଦଶ ସର୍ଗରେ ସଂପୂର୍ଣ୍ଣ ।। ତାମିଲନାଡ଼ୁରେ ଏହାର ବିଶେଷ ଆଦର ଓ ଲୋକପ୍ରିୟତା ପରିଲକ୍ଷିତ ହୁଏ ।

## (୩୭) ରାମ ଶାସ୍ତ୍ରୀ ବିରଚିତ ରାମାଷ୍ଟପଦୀ—

ତାମିଲନାଡ଼ୁ ଅନ୍ତର୍ଗତ ତାଞ୍ଜୋର ରାଜ୍ୟରେ ମହାରାଷ୍ଟ୍ରୀୟମାନଙ୍କ ଆଧିପତ୍ୟ ପ୍ରତିଷ୍ଠାତା ସାହାଜୀଙ୍କ ରାଜତ୍ୱ କାଳରେ (୧୬୮୪-୧୭୧୦ଖ୍ରୀଷ୍ଟାବ୍ଦ) ସଂସ୍କୃତ ସାହିତ୍ୟର ବିଶେଷ ଶ୍ରୀବୃଦ୍ଧି ସାଧିତ ହୋଇଥିଲା । ସାହାଜୀ ମହାରାଜାଙ୍କ ସଭାକବି ବାଂଛେଶ୍ୱର ପଣ୍ଡିତଙ୍କ ଭ୍ରାତା ରାମ ଶାସ୍ତ୍ରୀ ଚନ୍ଦ୍ରଶେଖର ସରସ୍ୱତୀଙ୍କ 'ଶିବାଷ୍ଟପଦୀ' ଅନୁକରଣରେ ଏକ ରାମାଷ୍ଟପଦୀ ରଚନା କରିଥିଲେ । (୫୧) ଏହାର ଶେଷ ପଂକ୍ତି ହେଉଛି—

"ଅନୁକଂପୟ ମୟି ଶ୍ରୀରାମମହାଭୂଧଜନ୍ତ୍ରଂ ଶିତକବୀନ୍ଦ୍ରଂ ନୃତ୍ୟନରେନ୍ଦ୍ରସାନ୍ଦ୍ରଂ ।

## (୩୮) ପଣ୍ଡିତ ଧୁଣ୍ଡିରାଜ ବିରଚିତ 'ସାହବିଳାସଗୀତମ୍'—

ବ୍ୟାସାନ୍ୱୟସମ୍ଭବ ଲକ୍ଷ୍ମଣ ପଣ୍ଡିତଙ୍କ ପୁତ୍ର ପୌରାଣିକ ଧୁଣ୍ଡିରାଜ ସାହାଜୀଙ୍କ (୧୬୮୪ — ୧୭୧୦ ଖ୍ରୀଷ୍ଟାବ୍ଦ) ପ୍ରୀତିବିଧାନ ନିମିତ୍ତ ଶ୍ରୀଗୀତଗୋବିନ୍ଦ ଅନୁକରଣରେ ଅଷ୍ଟସର୍ଗ ବିଶିଷ୍ଟ 'ସାହବିଳାସ ଗୀତମ୍' ରଚନା କରିଥିଲେ । ଏହା ରଚନା କରି ସେ 'ଅଭିନବ ଜୟଦେବ' ଉପାଧିରେ ମଣ୍ଡିତ ହୋଇଥିଲେ । ମଙ୍ଗଳା-ଚରଣରେ ତାଣ୍ଡବ ନୃତ୍ୟରତ ଶିବଙ୍କ ସ୍ତୁତିଗାନ କରି ଧୁଣ୍ଡିରାଜ ଲେଖିଛନ୍ତି—

"ବିଧୀୟତେ ବ୍ୟାକରଣେପୁରାଣ ସୁଧୀତିନା ଶାହନୃପାଶ୍ରିତେନ
ସ୍ୱପ୍ରେମଧାମ୍ନା କିଲ ଧୁଣ୍ଡିନାମ୍ନା ମନୋହରଂ ଶାହବିଳାସଗୀତମ୍

ବିଧୃତଯବନବେଷାନ୍ ଯାତୁଧାନାଦଶେଷା
ନଧିକଳି ବିନିହନ୍ତୁଂ ଶୌରିମେବାବତୀର୍ଣ୍ଣମ୍
ଭୁବି ନରପତିମେନଂ ସାଧୁ ଗାୟାମି ଗୀତୈ
ରଭିନବ ଜୟଦେବଃ ସୋଽହମେବଂ ପ୍ରଣୀତୈଃ"

ସମାପ୍ତିଃ — ବୁଧୋ ଧୁଣ୍ଡିର୍ନାମ୍ନା ଜଗତି ବିଦିତୋ ଲକ୍ଷ୍ମଣସୁଧୀ-
ମତେଃ ଶ୍ରୀମଦ୍ ବ୍ୟାସାନ୍ୱୟଜଲଧିଚନ୍ଦ୍ରାଦଜନି ଯଃ

---

(୫୧) Des. Cat. of Sans. Mss. (Tanjore M S.S.M. Library) Vol XIII, No. 10954. p 7345.

ଶୁଭଃ ଶଶ୍ୱଦ୍‌ବଶ୍ୟପ୍ରଥିତଯଶସଃ ସାହନୃପତେ—
ର୍ବିଳାସପ୍ରେନାସ୍ମଂ ସଦସମୁପଗୀତୋ ବଜସ୍ବତେ ।”

ଇତଶ୍ରୀ ଶାହମହାରାଜ ପୌରାଣିକ ଧୁଣ୍ଡିବ୍ୟାସ ବରଚିତଂ
ଶାହବିଳାସଗୀତଂ ବଜସ୍ୱତାଂ । (୫୨)

## (୩୯) ସାହାଜୀ ରାଜାଷ୍ଟପଦୀ—

ତାଞ୍ଜୋର ପୋଥିଭଣ୍ଡାରରେ 'ସାହାଜୀ ରାଜାଷ୍ଟପଦୀ' ନାମକ ଗୋଟିଏ ଗ୍ରନ୍ଥର ପାଣ୍ଡୁଲିପି ରହିଛି । ଏହାର ଗୋଟିଏ ଗୀତର ଧ୍ରୁବପଦ ଓ ଶେଷାଂଶ ନିମ୍ନରେ ଉଦ୍ଧାର କରାଗଲା । (୫୩)

ରାଗ କେଦାର ଗୌଳ । ତାଳମ୍ ଆଦିତାଳମ୍ ॥

ଶାହମହୀଶେ ସୁଦନ୍ତସକାଶେ ଚଳନ୍ତ ତବାନୁ ବନାନ୍ତମ୍
ନ ଚଳସି କଥମିବ କମନ୍ତ ମିହଦସି ପୁନରାସର କନୀକାନ୍ତମ୍
ଶାହମହୀଶେ, ନୃପନ୍ତ ସକାଶେ । ଇତ ପଲ୍ଲବୀ

ସମାପ୍ତି— ଶାହଜୀନ୍ଦ୍ର ଏଲେଲେ
ଗୁଣସାନ୍ଦ୍ର ଏଲେଲେ
କ୍ଷିତଚନ୍ଦ୍ର ଏଲେଲେ
ନୃପେନ୍ଦ୍ର ଖାରାଡଖାର
ବଳଡାଖବାର
ସାକାରମାର ସୌନ୍ଦର୍ଯ୍ୟସାର
ଭୁଲ୍ଲୀ କଲ୍ଲୀ ପଲ୍ଲଧୀଶ
ବାଳସମଣୀଳ ଗୁଲ୍ଲୋଳ ରତଲ୍ଲୋଳ ଏଲେଲେ ।

## (୪୦) 'ଚନ୍ଦ୍ରଦୋମ ଭୂପାଳ କୃତ 'ସଙ୍ଗୀତ ରାଘବମ୍'—

ଚନ୍ଦ୍ରଦୋମ ଭୂପାଳ ନାମକ ରାଜକବି ମଙ୍ଗଳାଚରଣରେ ରାମାପୂର୍ଣ-ଗଙ୍ଗା ଓ ରାଧାକୃଷ୍ଣଙ୍କ ସ୍ତୁତିଗାନ ପୂର୍ବକ ଗ୍ରନ୍ଥ ଆରମ୍ଭ କରିଛନ୍ତି ।

× × ×

---

(୫୨) Des. Cat. of Sans. Mss. (Tanjore M.S S.M. Library) Vol XVI, No. 10959. p. 7349.

(୫୩) ,, ,, ,,

ଗୀତଂ ସଂସଦ୍ ଗୀତରାଘବମିଦଂ ଧୀରସ୍ତଦାକର୍ଣ୍ଣ୍ୟତାଂ
ସାହ୍ଲାଦ୍ୟଂ **ନଲବୋମ୍ମଭୂପଜନୁଷଃ** ଶ୍ରୀ ବୋମ୍ମଭୂମିପତେଃ (୩)

ଶେଷାଂଶ— 'ସକୃଦପି ପଠତାମପି ଲଣମପୂଙ୍ଗାମିହ କଙ୍କକଲୁଷଭୟାପହମ୍
କୃତନା ବୋମ୍ମମହାପସୁକୃତନା କୃତମିଦମଖିଳସୁଖାବହମ୍

× × ×

ଇତି ଶ୍ରୀମତ୍ ପାଦଜକୁଳକଲଶୋଦଧିପୂର୍ଣ୍ଣସୁଧାକରସ୍ୟ ନଲବୋମ ଭୂପାଳ ତନୁଜସ୍ୟ **ଚନ୍ଦ୍ରବୋମଭୂପାଳକସ୍ୟ** କୃତୌ **ସଙ୍ଗୀତରାଘବାଖ୍ୟେ ମହାକାବ୍ୟେ** ଷଷ୍ଟସର୍ଗଃ । (୫୪)

ଏହି ମହାକାବ୍ୟ ଆଠସର୍ଗରେ ସଂପୂର୍ଣ୍ଣ ହୋଇଛି । ସୁପ୍ରସିଦ୍ଧ ଅପାସ୍ତ ଦୀକ୍ଷିତଙ୍କ ପୃଷ୍ଠପୋଷକ ଚନ୍ଦ୍ରବୋମ୍ମ ଓ ଉକ୍ତ ଗ୍ରନ୍ଥ ପ୍ରଣେତା ଚନ୍ଦ୍ରବୋମ୍ମ ଭୂପାଳ ଏକ ଓ ଅଭିନ୍ନ ପର ଜଣାଯାଉଛନ୍ତି ।

## (୪୧) ସଦାଶିବ ଦୀକ୍ଷିତ କୃତ 'ଗୀତସୁନ୍ଦରମ୍'—

ସଦାଶିବ ଦୀକ୍ଷିତ ତାଞ୍ଜୋରର ମରହଟ୍ଟା ଶାସକ ତୁଳଜାରାଜ (୧୭୨୯—୧୭୩୫)ଙ୍କ ସଭାକବି ଥିଲେ ଏବଂ ତାଙ୍କ ପ୍ରୀତିବିଧାନ ନିମିତ୍ତ 'ଗୀତସୁନ୍ଦରମ୍' ରଚନା କରିଥିଲେ ।

ଓଁ ଗଣେଶାୟ ନମଃ, ଶ୍ରୀମୀନାକ୍ଷୀ ସୁନ୍ଦରେଶ୍ୱରାଭ୍ୟାଂ ନମଃ

ଶ୍ରୀମଦ୍ ଭୋସଲବଂଶରତ୍ନ **ତୁଲଜ** କ୍ଷ୍ମାପାଳଚୂଡ଼ ମଣେଃ
କଲ୍ୟାଣଂ କଲୟନ୍ତୁ ସଂତତମମୀ ଲୀଲାବିଶେଷୋଜ୍ଜ୍ୱଲାଃ
କାମଂ ହେମପୟୋଜମାପରିସରେ ମଧ୍ୟେ କଦମ୍ବଦ୍ରୁମଂ
ମୀନାକ୍ଷ୍ୟାସହ ସୁନ୍ଦରେଶ୍ୱରବିଭୋ ରାନଙ୍ଗନତ୍ୟୋଦ୍ଭବଃ । ୧

**ତ୍ୟାଗେଶ-ଦେଶିକ** ନନ୍ଦେଶବଶଂବଦାନା
ମାଜାନଭକ୍ତିବଶମାତ ସଦାଶିବାନାମ୍
**ଶ୍ରୀ ତ୍ରୈକନାଥମଖିନାଂ** ନଖିଲେନ୍ଦ୍ରତାନା
ମୁଲ୍ଲାସୟନ୍ତୁ ମମ ବାଚମପାଙ୍ଗଲୀଳାଃ ।। ୨

ଭରଣ ସରସ କେଳମନ୍ଦରଂ
ସୋମସୁନ୍ଦରକଥାଧୁରନ୍ଧରମ୍

---

(୫୪) Des. Cat. of Sans. Mss. (Tanjore M.S.S.M. Library) p. 9238, No. 10783

ଶ୍ଳାଘମାପୂରସଭ୍ରବବନ୍ଧୁରଂ
ଲଳୟତୁ ମମ ଗୀତସୁନ୍ଦରମ୍ । ୩ (୫୫)

ଦ୍ୱିତୀୟ ଶ୍ଳୋକରେ ବର୍ଣ୍ଣିତ ତ୍ୟାଗେଶ ହେଉଛନ୍ତି ଦକ୍ଷିଣ ଭାରତରେ ଶାସ୍ତ୍ରୀୟ ସଂଗୀତର ପ୍ରବର୍ତ୍ତକ ଶ୍ରୀ ତ୍ୟାଗରାଜଦେଶିକ । ସେହିପରି ଶ୍ଳୋକନାଥ ମଖୀ ମଧ୍ୟ ଜଣେ ପ୍ରସିଦ୍ଧ ପଣ୍ଡିତ ଥିବାରୁ ନଖିଳ-ଜନ-ପୂଜ୍ୟ ରୂପେ ବର୍ଣ୍ଣିତ ହୋଇଛନ୍ତି । ଏ ଦୁଇ ପ୍ରସିଦ୍ଧ ପଣ୍ଡିତଙ୍କ ଦ୍ୱାରା ଉତ୍ସାହିତ ହୋଇ ସଦାଶିବ ଦୀକ୍ଷିତ ଶ୍ରୀଗୀତଗୋବିନ୍ଦର ଅନୁକରଣରେ ଚତୁରଧ୍ୟାୟ ବିଶିଷ୍ଟ ଗୀତସୁନ୍ଦରମ୍ ରଚନା କରିଥିଲେ ।

## (୪୨) ଅନନ୍ତ ନାରାୟଣ ଦୀକ୍ଷିତ କୃତ 'ଗୀତଶଙ୍କରମ୍'—

ଅନନ୍ତ ଯଜ୍ୱାଙ୍କ ପ୍ରନପ୍ତା, କୃଷ୍ଣ ଦୀକ୍ଷିତଙ୍କ ଅବିକୂଳତିଳକ ନପ୍ତା, ମୃତ୍ୟୁଞ୍ଜୟ ଦୀକ୍ଷିତଙ୍କ ଓ ବୃହଦମ୍ବାଙ୍କ ପୁତ୍ର ପଣ୍ଡିତ ଅନନ୍ତ ନାରାୟଣ ଦୀକ୍ଷିତ 'ପଞ୍ଚରତ୍ନକବି' ଶ୍ରୀଗୀତଗୋବିନ୍ଦମ୍‌ର ଅନୁକରଣରେ 'ଗୀତଶଙ୍କରମ୍' ରଚନା କରିଥିଲେ । ଯଥା—

"ରଚିତଂ ଶଙ୍କରଚରିତଂ ବୃହଦମ୍ବାଗର୍ଭସଂଭବନେଦମ୍
ମୋଦାୟ ଭବତୁ ସୁଦୃଶାମନୁରଣିତଂ ଶୁକବାଳକେନୈବ" ॥

ଏହାର ଗୋଟିଏ ଗୀତର କେତେକାଂଶ ନିମ୍ନରେ ଉଦ୍ଧାର କରାଗଲା ।

"ମାଳବୀ ରାଗେଣ ଗୀୟତେ
ଶମିତଜଗଦ୍ଭବିଭେଦ୍ୟ ଭ୍ରମ୍ମ ମାୟାତ୍ମାନା
ଗର୍ଭଗତାଖିଳଜଗଦପି ଦନା ।
× × ×
କାମଜନିତଜପା କମନୀୟା ରୂପ
ବହରତ ରହସି ପୁରରିପୁଣା । ୮ ।" (୫୬)

ଗ୍ରନ୍ଥକର୍ତ୍ତା ଅନନ୍ତ ନାରାୟଣ ଅଷ୍ଟାଦଶ ଶତାବ୍ଦୀରେ ଆବିର୍ଭୂତ ହୋଇଥିଲେ ।

## (୪୩) ବେଙ୍କଟ ରେଡ୍ଡି ଶାସ୍ତ୍ରୀ କୃତ 'ଗୀତଗିରୀଶମ୍'—

ବେଙ୍କଟ କବି ଓ ବେକାମ୍ବାଙ୍କ ପୁତ୍ର ଶ୍ରୀ ଚେରୁକୁରି ବେଙ୍କଟ ସୂରି ନାମକ ଆନ୍ଧ୍ର ପଣ୍ଡିତ ଶ୍ରୀଗୀତଗୋବିନ୍ଦମ୍‌ର ଅନୁକରଣରେ ଦ୍ୱାଦଶ ସର୍ଗ ବିଶିଷ୍ଟ 'ଗୀତଗିରୀଶ'

---

(୫୫) Des, Cat. of Sans. Mss. Tanjore M.S.S.M. Library, Vol. XVI. p. 7340-42.

(୫୬) Des, Cat. of Sans. Mss. Vo. XVI, No 10951, pp 7342-43

ନାମକ ମହାକାବ୍ୟ ରଚନା କରିଥିଲେ । ଏହା ମଧ୍ୟ ଶ୍ରୀଗୀତଗୋବିନ୍ଦ ତୁଲ୍ୟ ବିଭିନ୍ନ ରାଗ ନିବଦ୍ଧ ଚତୁର୍ବିଂଶତି ଅଷ୍ଟପଦୀ ସମନ୍ୱିତ । ଗ୍ରନ୍ଥ ଆରମ୍ଭରେ କବି ଲେଖିଛନ୍ତି—

"ଜୟଦେବକୃତସଞ୍ଚିତକବିତାଗନ୍ଧେନ ବେଙ୍କଟାଖ୍ୟୋଽସୌ
କୁରୁତେ ପ୍ରବନ୍ଧମେତଂ ଗୀତଗିରୀଶଂ ହି ଶୈବସଂତୁଷ୍ଟ୍ୟୈ" । ୨

× × ×

ଗ୍ରନ୍ଥ ଶେଷରେ କବି ବିନୀତ ଭାବରେ ଲେଖିଛନ୍ତି—

"ମଣିକାଚବତ୍ପ୍ରସିଦ୍ଧୌ, ଜୟଦେବଗ୍ରନ୍ଥମତ୍କୃତ ଗ୍ରନ୍ଥୌ
ମଦ୍‌ଗ୍ରନ୍ଥୋଧାର୍ଯ୍ୟସ୍ୟାଦାଧୁନିକେ ଽର୍ଥ ଗୌରବଭାବାତ୍ । ୨୪ (୫୭)

## (୪୪) କର୍ଣ୍ଣାଟକର ନଞ୍ଜରାଜ କୃତ 'ସଙ୍ଗୀତ ଗଙ୍ଗାଧର'—

ମହୀଶୂର ରାଜ୍ୟାଧିପ ନଂଜରାଜ (୧୭୩୯ରୁ ୧୭୭୦ ଖ୍ରୀଷ୍ଟାବ୍ଦ) ଜଣେ ବିଦ୍ୟୋତ୍ସାହୀ ପଣ୍ଡିତ ଥିବା 'ନଂଜରାଜଯଶୋଭୂଷଣମ୍' ନାମକ ଗ୍ରନ୍ଥପାଠରୁ ଜଣାଯାଏ । ଯଥା—

"କଳ୍ପଦ୍ରୁକଳ୍ପଂ ଶଶିନଃ କୁଳୀନଂ ନଂଜକ୍ଷମୀନ୍ଦ୍ରଂ ସୁଧିୟୋପସେବିତମ୍
ନବୈଃ ପ୍ରବନ୍ଧୈ ରଭିନନ୍ଦୟନ୍ତୋ କୁବେରତୁଲ୍ୟାଃ କବୟୋ ଭବନ୍ତି ।"

ନଂଜରାଜ ବାଙ୍ଗାଲୋର ସହର ଠାରୁ ୩୦ ମାଇଲ ପୂର୍ବରେ ପ୍ରବହମାନା ଦକ୍ଷିଣ-ପିନାକିନୀ ନଦୀ କୂଳରେ ଅବସ୍ଥିତ ଭଦ୍ରଗିରି ଶିଖରରେ ପୂଜିତ ଚଣ୍ଡେଶ୍ୱର ଶିବ ଓ ମରକତାମ୍ବା ଦେବୀଙ୍କର ପରମ ଭକ୍ତ ଥିଲେ । ଶ୍ରୀଗୀତଗୋବିନ୍ଦର ଅନୁକରଣରେ ତାଙ୍କଦ୍ୱାରା ଲିଖିତ ସଙ୍ଗୀତଗଙ୍ଗାଧରରେ ଶ୍ରୀକଣ୍ଠେଶ୍ୱର ଶିବଙ୍କର ଦାରୁକବନବାସିନୀ ଋଷିପତ୍ନୀମାନଙ୍କ ସହ ରାସଲୀଳା ୨୦ଟି ଅଷ୍ଟପଦୀରେ ବର୍ଣ୍ଣିତ ହୋଇଅଛି । ୭ଟି ଅଧ୍ୟାୟ ବିଶିଷ୍ଟ ଉକ୍ତ ଗ୍ରନ୍ଥରେ ୧୭ଟି ରାଗ ବ୍ୟବହୃତ ହୋଇଛି । 'କାଶୀପତି' ନାମଧେୟ ତାଙ୍କର ଜଣେ ସଭାପଣ୍ଡିତ ଏହାର 'ଶ୍ରବଣନନ୍ଦିନୀ'ନାମ୍ନୀ ଟୀକା ରଚନା କରିଥିବାର ଜଣାଯାଏ ।(୫୮)

## (୧୫) କେରଳରାଜ ମାନବେଦନ୍ କୃତ 'କୃଷ୍ଣଗୀତ'—

ମାନବେଦନ୍ ନାମକ କେରଳର ଜଣେ ପ୍ରସିଦ୍ଧ ରାଜା ୧୬୫୨ଖ୍ରୀଷ୍ଟାବ୍ଦରେ ଶ୍ରୀଗୀତଗୋବିନ୍ଦ ଆଦର୍ଶରେ ଅଷ୍ଟଅଧ୍ୟାୟ ବିଶିଷ୍ଟ 'କୃଷ୍ଣଗୀତି' ବା 'କୃଷ୍ଣଆଟମ୍'

---

(୫୭) ୫-୧୦-୧୮୭୭ ମସିହାରେ ବ୍ରହ୍ମପୁରସ୍ଥିତ ମୂଦ୍ରାକ୍ଷରଶାଳାରେ ଓଡ଼ିଆ ଅକ୍ଷରରେ ମୁଦ୍ରିତ ।

(୫୮) New Indian Antiquary, Vol IV., 1941-42, pp 150-154.

ନାମକ ଗ୍ରନ୍ଥ ରଚନା କରିଥିଲେ । ଅଭିନୟ ଉଦ୍ଦେଶ୍ୟରେ ଏହା ଲିଖିତ ହୋଇଥିବାରୁ ଏଥିରେ ମାଳୟାଳ ଗୀତ ଓ ଆଳାପର ମଝିରେ ମଝିରେ ଅଷ୍ଟପଦୀ ଅନୁରୂପ ସଂସ୍କୃତ ଗୀତସମୂହ ସନ୍ନିବିଷ୍ଟ ହୋଇଥିଲା । ଏହା କୃଷ୍ଣଆଟମ୍ (କୃଷ୍ଣନାଟ ବା କୃଷ୍ଣଲୀଳା) କେରଳରେ ବିଶେଷ ଲୋକପ୍ରିୟତା ଅର୍ଜନ କରିଥିଲା । ଏହା ଅଦ୍ୟାପି କେରଳର ବିଭିନ୍ନ ମନ୍ଦିର ଓ ରାଜପ୍ରାସାଦରେ ଅଭିନୀତ ହେଉଅଛି । (୬୯)

## (୪୬) କଲ୍ୟାଣ କୃତ 'ଗୀତଗଙ୍ଗାଧର'—

କଲ୍ୟାଣ ନାମକ ଜନୈକ ପଣ୍ଡିତ ଶ୍ରୀ ଜୟଦେବ କୃତ ଅଷ୍ଟପଦୀ ଅନୁକରଣରେ ଗୀତଗଙ୍ଗାଧର ନାମକ ଗୀତକାବ୍ୟ ରଚନା କରିଥିଲେ । ଯଥା—

× × ×

"ଯଦ୍ୟପ୍ୟଷ୍ଟପଦୀ ପ୍ରବନ୍ଧ ରଚନେ ନାନ୍ୟାସ୍ତି କ୍ଲୃପ୍ତାପ୍ୟହୋ
ବିଦ୍ୱାନ୍ **ଶ୍ରୀ ଜୟଦେବ ପଣ୍ଡିତକବେ** ସ୍ତଚ୍ଛକ୍ତିମାପ୍ତୋତ ଯଃ"

ଏହା ନମୋକ୍ତ ଦ୍ୱାଦଶ ସର୍ଗରେ ବିଭକ୍ତ । ଯଥା— ଶିବାନୁନୟ, ଶିବାନୁକୂଳନ, ବସନ୍ତବର୍ଣ୍ଣନ, ବିଶ୍ୱାଟିକା ପ୍ରଦର୍ଶନ, ସୋତ୍କଣ୍ଠଶିବ, ପାର୍ବତୀପ୍ରସାଦନ, ପାର୍ବତୀ ପଶ୍ଚାତ୍ତାପ ବର୍ଣ୍ଣନ, କଳହାନ୍ତରିତା ବର୍ଣ୍ଣନ, ଉତ୍କଣ୍ଠିତା ବର୍ଣ୍ଣନ, ମୁଦିତମନ୍ମଥାନ୍ତକ, ଶିବପ୍ରସାଦନ, ସ୍ୱାଧୀନଭର୍ତ୍ତୃକା ଶିବାସୌଭାଗ୍ୟ ବର୍ଣ୍ଣନ ।

ଏହାର ଗୋଟିଏ ଗୀତ ନିମ୍ନରେ ଉଦ୍ଧୃତ ହେଲା—

—ମାଳବଗୌଡ଼ୀ ରାଗେ—

"ସକଳ ଜଗଦ୍ଧାରଣେ ଧୃତବାନସି ଦେହମ୍
ଧରଣିମୟଂ ଚ ଜନଂ ହବଧେ ହଂ ।
ଶଙ୍କରଧୃତଭୂମିଶରୀର ଜୟ ଗିରିଜାଧିପତେ । ୧
ବସୁଜନ୍ତ ଜୀବକୃତେ ଜଳମୟବପୁଷେଦମ୍
ଜୀବନମଖିଳଗୁଣଂ ବହୁ(ତର) ଭେଦମ୍
ଶଙ୍କରଧୃତ ଜଳମୟରୂପ ଜୟ ଗିରିଜାଧିପତେ । ୨"

ଗ୍ରନ୍ଥ ଶେଷରେ କବି ଲେଖିଛନ୍ତି—

"ଭବାନୀଶଙ୍କରୌ ଯାବଚ୍ଛଂକରୌ ଜଗତାମିୟମ୍
ଭବତାଂ ଭୂୟ କଲ୍ୟାଣବାଣୀ କଲ୍ୟାଣକାରିଣୀ" (୭୦)

---

(୬୯) The Contribution of Kerala to Sanskrit literature by K. Kunjunni Rāja, p. 101.

(୭୦) Cat. of Sans. and Prakṛta mss in the Bombay Branch of the R. A. S. Vol II. Hindu literature, p. 336.

## (୪୭) ମହାରାଷ୍ଟ୍ରୀୟ ଗଙ୍ଗାଧର କବି କୃତ 'ସଙ୍ଗୀତରାଘବମ୍'—

ନାଗପୁର ରାଜ୍ୟାଧୀଶ ଜାନୋଜୀ ଭୋନ୍‌ସଲଙ୍କ ସଭାକବି ଗଙ୍ଗାଧର ୧୬୮୬ ଶକାବ୍ଦ ବା ୧୮୬୪ ଖ୍ରୀଷ୍ଟାବ୍ଦରେ 'ସଙ୍ଗୀତରାଘବମ୍' ଗ୍ରନ୍ଥ ରଚନା କରିଥିବାର ଜଣାଯାଏ । (୬୧)

"ଶ୍ରୀଭୋସଲକୁଳମଣିନା ଜ୍ଞାନନ୍ ପେଣାର୍ଥିତଃ ପ୍ରଭୁପ୍ରୀତ୍ୟେ
ସଙ୍ଗୀତରାଘବଂକବିଗଙ୍ଗାଧରଭଟ୍ଟକାର ସମୁଦ୍ଧିତଃ ॥
ଷଡ଼ଷ୍ଟସପ୍ତୈକମିତେ ଶାଳୀବାହନଶାକେଽମଲେ
ଗଙ୍ଗାଧରକବିଶ୍ଚକ୍ରେ ଗ୍ରନ୍ଥଂ ସଙ୍ଗୀତରାଘବମ୍"

ଏହି ଗ୍ରନ୍ଥ ଷଟ୍ (୬) ଅଷ୍ଟ (୮), ସପ୍ତ (୭) ଏକ(୧)= ୧୬୮୬ ଶକାବ୍ଦ ବା ୧୮୬୪ ଖ୍ରୀଷ୍ଟାବ୍ଦରେ ସମାପ୍ତ ହୋଇଥିଲା । ଏହା ନଅସର୍ଗ ବିଶିଷ୍ଟ—ସମୁଦିତ ରାଘବ (ବାଳକାଣ୍ଡ); ପ୍ରବାସୀ ରାଘବ (ଅଯୋଧ୍ୟାକାଣ୍ଡ); ବିରହୀ ରାଘବ (ଅରଣ୍ୟକାଣ୍ଡ); ଉଦ୍ଯୁକ୍ତ ରାଘବ (କିଷ୍କିନ୍ଧାକାଣ୍ଡ); ଉଦ୍ଯୁକ୍ତ ରାଘବ (ସୁନ୍ଦର କାଣ୍ଡ); ସାନନ୍ଦ ରାଘବ (ଯୁଦ୍ଧକାଣ୍ଡ) ଏହାର ଗୀତଗୁଡ଼ିକରେ ମାଳବ ପ୍ରଭୃତି ବିଭିନ୍ନ ରାଗ ବ୍ୟବହୃତ ହୋଇଅଛି ।

## (୪୮) ପ୍ରିୟାଦାସ କୃତ 'ସଙ୍ଗୀତ ରଘୁନନ୍ଦନମ୍'—

ବୁନ୍ଦେଲଖଣ୍ଡ ଅନ୍ତର୍ଗତ ରେୱା ରାଜ୍ୟର ଅଧିପତି ଶ୍ରୀ ବିଶ୍ୱନାଥ ସିଂହଙ୍କ ରାଜସଭାମଣ୍ଡନକାରୀ ପ୍ରସିଦ୍ଧ ହିନ୍ଦୀକବି ପ୍ରିୟାଦାସ ଶ୍ରୀଗୀତଗୋବିନ୍ଦମ୍‌ର ଅନୁକରଣରେ ୧୮୩୨ ଖ୍ରୀଷ୍ଟାବ୍ଦରେ 'ସଙ୍ଗୀତ ରଘୁନନ୍ଦନମ୍' ରଚନା କରିଥିଲେ । (୬୨) କବିଙ୍କ ପୃଷ୍ଠପୋଷକଙ୍କ ନାମରେ ଭଣିତ ଉକ୍ତ ଗୀତକାବ୍ୟ ଏକାଦଶସର୍ଗରେ ବିଭକ୍ତ :

ଇତିଶ୍ରୀ ମହାରାଜକୁମାର ଶ୍ରୀବାବୁସାହେବ ବିଶ୍ୱନାଥ ସିଂହ କୃତେ ସଙ୍ଗୀତ ରଘୁନନ୍ଦନେ ମଙ୍ଗଳ ବର୍ଣ୍ଣନଂ ନାମ ପ୍ରଥମଃ ସର୍ଗଃ; ଗୃହ ରାସବର୍ଣ୍ଣନଂ ନାମ ଦ୍ୱିତୀୟଃ ସର୍ଗଃ, ବସନ୍ତରାସ ବର୍ଣ୍ଣନଂ ନାମ ତୃତୀୟ ସର୍ଗଃ, ଜାନକୀ ଅନ୍ତର୍ଦ୍ଧାନ ବର୍ଣ୍ଣନଂ ନାମ ଚତୁର୍ଥଃ ସର୍ଗଃ, କାମବସନ୍ତକାଗମନ ବର୍ଣ୍ଣନଂ ନାମ ପଞ୍ଚମ ସର୍ଗଃ; ଗୁରୁଶୀଳାକୃତମାନନନୁନୟ ବର୍ଣ୍ଣନଂ ନାମ ଷଷ୍ଠଃ ସର୍ଗଃ; ଜାନକୀସମାଗମୋ ନାମ ସପ୍ତମଃ ସର୍ଗଃ; ଶ୍ରୀ ଜାନକୀଭୂଷଣବିଧାନଂ ନାମାଷ୍ଟମଃ ସର୍ଗଃ ଦୋଲାବର୍ଣ୍ଣନଂ ନାମ

---

(୬୧) Three more imitations of the Gitagovinda, I. H. Q. Vol XXV. pp. 95-101.

(୬୨) 'Studies in Indian Literary History' by Dr. P K. Gode, Vol. II. pp. 242-258.

ନବମଃ ସର୍ଗଃ; ସର୍ବାଙ୍ଗ ଶୋଭାବର୍ଣ୍ଣନଂ ନାମ ଦଶମଃ ସର୍ଗଃ; ଶ୍ରୀ ଜାନକୀ ରଘୁନନ୍ଦନ ସମ୍ମିଳନାନନ୍ଦଜନିତ ସଂଗୀତ ନୃତ୍ୟ ବର୍ଣ୍ଣନଂ ନାମ ଏକାଦଶଃ ସର୍ଗଃ । ଏହାର ନିମ୍ନୋକ୍ତ ଶ୍ଳୋକରେ ରଘୁବରଙ୍କ ସ୍ତୁତି, କବି ଓ ତାଙ୍କ ପୃଷ୍ଠପୋଷକଙ୍କ କୀର୍ତ୍ତି ବର୍ଣ୍ଣିତ ହୋଇଅଛି । ଯଥା—

"ଜୟତୁ ସଚ୍ଚିଦାନନ୍ଦ ଘନବରଦବର ସର୍ବଗୁଣଶାଳୀ ଶୃଙ୍ଗାରରସପାଳମୂର୍ତ୍ତିଃ
ସର୍ବଜନବତ୍ସଳଃ ପ୍ରବଳକଳିତମହରଃ ପ୍ରେମପାଥୋଧି ପୁରୁଷାର୍ଥପୂର୍ତ୍ତିଃ,
ସର୍ବଗତସର୍ବମତସର୍ବବନ୍ଦିତଚରଣ ସର୍ବଶରଣଗତୋଦ୍ଧରଣବିହାରୀ
ଗୁରୁରୂପରଘୁବରଃ **ଶ୍ରୀ ପ୍ରିୟାଦାସ ଇହ ବର୍ଣ୍ଣନାର୍ଥାନ୍ତରଗୀତକାରୀ**"(୭୩)

## (୪୯) କବିକଳାନିଧି କୃଷ୍ଣଭଟ୍ଟ ରଚିତ 'ରାମଗୀତମ୍'—

ରାଜସ୍ଥାନ ଅନ୍ତର୍ଗତ ଜୟପୁର ରାଜ୍ୟର ଅଧିପତି ସବାଇ ଈଶ୍ୱର ସିଂହଙ୍କ (୧୭୪୩—୧୭୫୦) ସଭାକବି 'କବିକଳାନିଧି' କୃଷ୍ଣଭଟ୍ଟ ନାମକ ଆନ୍ଧ୍ରପଣ୍ଡିତ ଶ୍ରୀଗୀତଗୋବିନ୍ଦ ଅନୁକରଣରେ ଶ୍ରୀ ସୀତା-ରାମଙ୍କ ରାସଲୀଳା ବର୍ଣ୍ଣନାତ୍ମକ 'ରାମଗୀତ ରଚନା କରିଥିଲେ । ଏହା ତ୍ରୟୋଦଶ ସର୍ଗ ବିଶିଷ୍ଟ । ଯଥା— ଶ୍ରୀରାମ ମହିମା ବର୍ଣ୍ଣନ, ମଧୁବର୍ଣ୍ଣନ; ପ୍ରିୟା-ପ୍ରିୟ-ସଙ୍ଗମ ବର୍ଣ୍ଣନ, ପ୍ରଣୟାଭିବର୍ଦ୍ଧନ, ମଧୁକେଳି ବର୍ଣ୍ଣନ, କାମାନୁରାଗ ବର୍ଣ୍ଣନ, ରାସ ବର୍ଣ୍ଣନ, ରାସ ମହତ୍ତ୍ୱ ବର୍ଣ୍ଣନ, ଖଣ୍ଡିତା ନାୟିକା ବର୍ଣ୍ଣନ, ବର୍ଷାଋତୁ ବର୍ଣ୍ଣନ, ଶରଦ୍ ବର୍ଣ୍ଣନ, ବିପରୀତ ରତି ବର୍ଣ୍ଣନ, ରତି ବର୍ଣ୍ଣନ ।

ଏହାର ଆରମ୍ଭରେ କବି ଲେଖିଛନ୍ତି —

"ଇଦମଲୌକିକ ଆଦ୍ୟରସାତ୍ମକ କଳିତକୋମଳକାବ୍ୟକଳାକୁଳମ୍
ରଘୁପତେର୍ବିରୁଦଂ ବିଶଦଂ ବଚଃ ଶୃଣୁ କବିପ୍ରବରସ୍ୟ କଳାନିଧେଃ"

ଏହାପରେ 'ଦଶାବତାର ସ୍ତୁତି' ବର୍ଣ୍ଣିତ ହୋଇଛି । ଏହାର ଶେଷଶ୍ଳୋକ ଶ୍ରୀଗୀତଗୋବିନ୍ଦ ଶେଷ ଶ୍ଳୋକର ଅନୁରୂପ । ଯଥା—

× × ×

"ଏତତ୍ କିନ୍ତୁ ତଥାପ୍ୟରୁନ୍ତୁଦମିବ ବ୍ରୁମୋ ବୟଂ ସାମ୍ପ୍ରତଂ
ଯଃ କାବ୍ୟାମୃତପାନଜୋମଧୁରିମା ନାନ୍ୟନ୍ କୁତ୍ରାପି ସଃ ।"

---

(୭୩) A Des. Cat. of Sans. Mss. in the A. S of Bengal by H. P. Shastri, Vol VII, p 219-220.

ଏହି କାବ୍ୟର ଅନ୍ୟ ନାମ 'ଗୀତରାଘବ'। ହନୁମନ୍ତ ସଂହିତା ବର୍ଣ୍ଣିତ 'ମହାରାସୋତ୍ସବ ପ୍ରକରଣ'ରୁ ଏହାର ବିଷୟବସ୍ତୁ ଆହୃତ ହୋଇଛି । (୭୪)

## (୫୦) ହରିଶଙ୍କର କୃତ 'ଗୀତରାଘବମ୍'—

ହରିଶଙ୍କର ନାମକ ଜନୈକ ପଣ୍ଡିତ ଶ୍ରୀଗୀତଗୋବିନ୍ଦର 'ଗୀତରାଘବମ୍' ନାମକ ଏକ ନିକୃଷ୍ଟ ଅନୁକୃତ ରଚନା କରିଥିବାର ଜଣାଯାଏ । ଏହା ସମ୍ପର୍କରେ ଗ୍ରନ୍ଥ ସମୀକ୍ଷକ ମହାମହୋପାଧ୍ୟାୟ ହରପ୍ରସାଦ ଶାସ୍ତ୍ରୀଙ୍କ ମତ ବିମ୍ମରଣୀୟ । ଯଥା—

'Gita Rāghava is a wretched imitation of Jayadeva's Gitagovinda by Harisankara. (୭୫)

ଏହା ନିମ୍ନୋକ୍ତ ସାତ ସର୍ଗରେ ବିଭକ୍ତ । ଯଥା— ରାମପରିବେଦନା କଥନମ୍, ଭରତ ସମ୍ଭାଷଣମ୍, ପଞ୍ଚବଟୀ ବୃତ୍ତାନ୍ତ, ସୂର୍ପନଖା ଦର୍ଶନାଦି, ମୃଗଚେଷ୍ଟିତାଦି କଥନମ୍, ଜାନକୀ ଦର୍ଶନମ୍ ହନୁମନ୍ତ ପ୍ରେଷଣମ୍, ଅଯୋଧ୍ୟା ଗମନମ୍ ।

କବିଙ୍କ ପରିଚୟ ଓ ଗ୍ରନ୍ଥରଚନା କାଳ ସମ୍ବନ୍ଧରେ କୌଣସି ତଥ୍ୟ ମିଳୁନାହିଁ ।

## (୫୧) ହରି ଆଚାର୍ଯ୍ୟ କୃତ 'ଜାନକୀ ଗୀତମ୍'—

ହରି ଆଚାର୍ଯ୍ୟ କୃତ 'ଜାନକୀ ଗୀତମ୍'ର ଗୋଟିଏ ପୋଥି ମେଦିନୀପୁର ଜିଲାର ଚନ୍ଦ୍ରକୋଣା ଗ୍ରାମରୁ ଆବିଷ୍କୃତ ହୋଇଥିଲା । ଗ୍ରନ୍ଥକର୍ତ୍ତାଙ୍କୁ ଜଣେ ଉତ୍କଳୀୟ ପଣ୍ଡିତ ରୂପେ ଗ୍ରହଣ କରିବା ସମୀଚୀନ ମନେହୁଏ । ଶ୍ରୀ ସୀତା-ରାମଙ୍କ ପ୍ରେମଲୀଳା ବର୍ଣ୍ଣନାତ୍ମକ ଉକ୍ତ ଗ୍ରନ୍ଥର ମଙ୍ଗଳାଚରଣରେ ସୀତାଙ୍କ ସ୍ତୁତିଗାନ କରାଯାଇଛି । ଯଥା—

(ଗାନ୍ଧାର ରାଗେ—ଏକତାଳୀ ତାଳେ)

"ଜୟ ଜୟ ଜାନକି ରଘୁପତି ଦୟିତେ  
ବିଧି-ଶିବ-ସନକ-ଶୁକାଦିକ ମହିତେ ।  
ଦେବି ଶରଣଂ ତବ କରୁଣାଭିଳଷିତା  
ତ୍ରିଭୁବନ-ଗୁରୁଣା । ଧ୍ରୁ: ପ: ।( ୭୬)

---

(୭୪) 'ରାଜସ୍ଥାନ ପୁରାତତ୍ତ୍ୱ ଗ୍ରନ୍ଥମାଳା'ରେ ପ୍ରକାଶିତ 'ହରିବିଳାସ ମହାକାବ୍ୟମ୍'ର ମୁଖବନ୍ଧରେ ଆଲୋଚିତ ।

(୭୫) 'Notices of Sanskrit manuscripts' —Shastri Vol. II. pt I, 1898. pp. 43-44 and preface p. 5.

(୭୬) Notices of Sans. Mss. by Shastri, Vol. I. Part III. p. 56.

# ଉପସଂହାର

ଉକ୍ତ ଅଧ୍ୟାୟରେ ଆଲୋଚିତ ଅନୁକୃତି ଗୁଡ଼ିକ ଭାରତର ବିଭିନ୍ନ ପ୍ରାନ୍ତୀୟ ପଣ୍ଡିତମାନଙ୍କ ଦ୍ୱାରା ପ୍ରଣୀତ ହୋଇଥିବାର ଜଣାଯାଏ । ଯଥା—

**ଉତ୍କଳ**— ଉତ୍କଳାଧିପଙ୍କ ଦ୍ୱାରା ରଚିତ ଶ୍ରୀଗୀତଗୋବିନ୍ଦର ପ୍ରଥମ ଅନୁକୃତି ଗଜପତି ପୁରୁଷୋତ୍ତମଦେବ କୃତ ଅଭିନବ ଗୀତଗୋବିନ୍ଦ, ରାୟ ରାମାନନ୍ଦ କୃତ ଜଗନ୍ନାଥ ବଲ୍ଲଭ ନାଟକ, ଜୟଦେବ ଆଚାର୍ଯ୍ୟ ପ୍ରଣୀତ ପୀୟୁଷ ଲହରୀ ଓ ବୈଷ୍ଣବାମୃତ, କୃଷ୍ଣଦାସ ଓ ବାଣନଗର ହରିଚନ୍ଦନ କୃତ ଏକ ଏକ ଅନୁକୃତି, ଗୋପଗୋବିନ୍ଦ, ଯଦୁମଣି ରଘୁନାଥ ମହାପାତ୍ର ରଚିତ ମୁକୁନ୍ଦ ବିଳାସ ମହାକାବ୍ୟ, ଶତଂଜୀବ ମିଶ୍ର ବିରଚିତ ମୁଦିତ ମାଧବ, ନିତ୍ୟାନନ୍ଦ ପଣ୍ଡିତ କୃତ ଶ୍ରୀ ଶିବଲୀଳାମୃତ ଓ ଶ୍ରୀକୃଷ୍ଣଲୀଳାମୃତ, ଅନାଦି ମିଶ୍ର ଗ୍ରଥିତ କେଳିକଳ୍ଲୋଳିନୀ ଓ ରାସଗୋଷ୍ଠୀ ରୂପକ, କବିଭୂଷଣ ଗୋବିନ୍ଦ ସାମନ୍ତରାୟ ନିର୍ମିତ ସମ୍ମୋହମାଧବ ନାଟକ, କବିଚନ୍ଦ୍ର କମଳଲୋଚନ ବିରଚିତ ସଙ୍ଗୀତଚିନ୍ତାମଣି, ଗୀତମୁକୁନ୍ଦ, ବ୍ରଜଯୁବବିଳାସ, ଶିତିକଣ୍ଠ କବି କୃତ ଗୀତସୀତାବଲ୍ଲଭ=ସମୁଦାୟ ୧୯ ଖଣ୍ଡ ।

**ମିଥିଳା**—ଭାନୁକବି ରଚିତ ଗୀତଗୌରୀଶ, କୃଷ୍ଣଦତ୍ତ କୃତ ଗୀତ ଗୋପୀପତି, କୃଷ୍ଣଦତ୍ତ କୃତ ଚଣ୍ଡିକା ଚରିତ-ଚନ୍ଦ୍ରିକା, ମହାମହୋପାଧ୍ୟାୟ ଖିଷ୍ଣୁ ମିଶ୍ର କୃତ ଗୀତଶଙ୍କରମ୍, ହରିକୃତ ଗୀତଶଙ୍କର, ଚନ୍ଦ୍ରଦତ୍ତ କୃତ କାଶୀଗୀତ, ବୀରବିରୁଦ, ଜୟଦେବ କୃତ ରାମଗୀତଗୋବିନ୍ଦ=୮ ଖଣ୍ଡ ।

**ଗୌଡ଼**— ପ୍ରବୋଧାନନ୍ଦ କୃତ 'ସଙ୍ଗୀତମାଧବ'; ରୂପଗୋସ୍ୱାମୀ କୃତ ଗୀତାବଳୀ, ଜୀବଗୋସ୍ୱାମୀ କୃତ ଗୋପାଳଚମ୍ପୂ, ଗୋବିନ୍ଦ ଦାସ କୃତ ସଙ୍ଗୀତମାଧବ= ୪ ଖଣ୍ଡ ।

**ଆନ୍ଧ୍ର**—ବିଠ୍‌ଲନାଥ କୃତ ଶୃଙ୍ଗାରରସମଣ୍ଡନମ୍ (ବୃନ୍ଦାବନ), ଶ୍ରୀରାମଭଟ୍ଟ କୃତ 'ଗୀତଗିରୀଶ' (ମିଥିଳା) ଯଦୁନାରାୟଣ ତୀର୍ଥ କୃତ ଶ୍ରୀକୃଷ୍ଣଲୀଳାତରଙ୍ଗିଣୀ (ଶ୍ରୀକ୍ଷେତ୍ରରେ ପ୍ରାରବ୍ଧ), କୃଷ୍ଣଭଟ୍ଟ କବିକଳାନିଧି ପ୍ରଣୀତ ରାମଗୀତ (ଜୟପୁର) ଭେଙ୍କଟ ରେଡ୍ଡି ଶାସ୍ତ୍ରୀ କୃତ (ଗୀତଗିରୀଶମ୍)=୫ ଖଣ୍ଡ ।

**ତାମିଲନାଡୁ**— ଚନ୍ଦ୍ରଶେଖର ସରସ୍ୱତୀ ନିର୍ମିତ ଶିବଗୀତିମାଲିକା, ରାମଶାସ୍ତ୍ରୀ କୃତ ରମାଷ୍ଟପଦୀ, ପଣ୍ଡିତ ଧୁଣ୍ଡିରାଜ କୃତ ସାହବିଳାସ ଗୀତ, ସାହାଜୀ ରାଜାଷ୍ଟପଦୀ, ଚନ୍ଦ୍ରରାମ ଭୂପାଳ କୃତ ସଙ୍ଗୀତ ରାଘବ, ସଦାଶିବ ଦୀକ୍ଷିତ କୃତ ଗୀତସୁନ୍ଦର, ଅନନ୍ତ ନାରାୟଣ ଦୀକ୍ଷିତ ପ୍ରଣୀତ ଗୀତଶଙ୍କର=୭ ଖଣ୍ଡ ।

**କର୍ଣ୍ଣାଟକ** — ନଂଜରାଜ କୃତ ସଂଗୀତ ଗଙ୍ଗାଧର,

**କେରଳ** — ମାନବେଦନ ନିର୍ମିତ କୃଷ୍ଣଗୀତି

**ମଧ୍ୟପ୍ରଦେଶ** — ପ୍ରିୟାଦାସ ବିରଚିତ ସଙ୍ଗୀତ ରଘୁନନ୍ଦନ
**ମହାରାଷ୍ଟ୍ର** ,, — ଗଙ୍ଗାଧର କୃତ ସଙ୍ଗୀତରାଘବମ୍

ଏକ ଶିବାଷ୍ଟପଦୀ ପ୍ରଣେତା ପୁରୁଷୋତ୍ତମ ଭଟ୍ଟ, ଗୀତଗଙ୍ଗାଧରକାର କଲ୍ୟାଣ, ଜାନକୀ ଗୀତର କବି ହରି ଆଚାର୍ଯ୍ୟ, ଗୀତରାଘବ ରଚୟିତା ହରିଶଙ୍କରଙ୍କ ବାସସ୍ଥାନ ନିର୍ଦ୍ଦିଷ୍ଟ ରୂପେ ଜଣାଯାଉ ନାହିଁ । ଆଲୋଚିତ ୫୧ଟି ଅନୁକୃତି ମଧ୍ୟରୁ ୧୯ଟି ବା ଏକତୃତୀୟାଂଶରୁ ଅଧିକ କେବଳ ଉତ୍କଳୀୟ ପଣ୍ଡିତମାନଙ୍କ ଦ୍ୱାରା ଧାରାବାହିକ ଭାବରେ ନିର୍ମାଣ କବିରାଜ ଶ୍ରୀ ଜୟଦେବଙ୍କର ସ୍ୱ ଜନ୍ମଭୂମିର ସଂସ୍କୃତ ପଣ୍ଡିତମାନଙ୍କ ଉପରେ ଗଭୀର ପ୍ରଭାବର ପରିଚାୟକ ।

ଆଲୋଚ୍ୟ ଅନୁକୃତି ଗୁଡ଼ିକ ମଧ୍ୟରୁ ୨୮ଟି ବା ଅର୍ଦ୍ଧାଧିକ ଶ୍ରୀରାଧାକୃଷ୍ଣଲୀଳା ବର୍ଣ୍ଣନାତ୍ମକ, ୧୧ଟିରେ ଶ୍ରୀ ହରପାର୍ବତୀଙ୍କ ରାସଲୀଳା, ୯ଟିରେ ଶ୍ରୀ ସୀତା ରାମଙ୍କ ପ୍ରେମଲୀଳା, ଗୋଟିକରେ ଚଣ୍ଡିକା ଚରିତ ଓ ଅବଶିଷ୍ଟ ଦୁଇଟିରେ ମରହଟ୍ଟା ଶାସକ ସାହାଜୀଙ୍କ ଅଭିସାର ବର୍ଣ୍ଣିତ ହୋଇଅଛି ।

**ଅନ୍ୟାନ୍ୟ ଅନୁକୃତି**—ଆଲୋଚିତ ଅନୁକୃତି ସମୂହ ବ୍ୟତୀତ ଶ୍ରୀଚୈତନ୍ୟ ମହାପ୍ରଭୁଙ୍କ ଶିଷ୍ୟ କବିକର୍ଣ୍ଣପୂରଙ୍କ 'ଆନନ୍ଦ ବୃନ୍ଦାବନ ଚମ୍ପୂ'ରେ ଶ୍ରୀଗୀତଗୋବିନ୍ଦର ଅଷ୍ଟପଦୀ ଅନୁରୂପ କେତେକ ସଂଗୀତ ସନ୍ନିବିଷ୍ଟ ହୋଇଅଛି । ତାଙ୍କ ବ୍ୟତୀତ ଭୂଧରଙ୍କ ପୁତ୍ର ପ୍ରଭାକର ୧୭୧୮ ଖ୍ରୀଷ୍ଟାବ୍ଦରେ 'ଗୀତରାଘବ', ମିଥିଳାର ବଂଶମଣି 'ଗୀତଦିଗମ୍ବର'; ଚତୁର୍ଭୁଜ 'ଗୀତଗୋପାଳ' ରାଜଶେଖର 'ଗୀତଗଙ୍ଗାଧର', ରେବାରାମ 'ଗୀତମାଧବ' ପ୍ରଭୃତି ପ୍ରଣୟନ କରିଥିବାର ଜଣାଯାଏ । 'ଗୀତମହାନଟ' 'ଗୀତଗଣପତି'ର ରଚୟିତାଙ୍କ ନାମ ଅଜ୍ଞାତ । (୭୭) କ୍ଷୁଦ୍ରାବୟବ ଶ୍ରୀଗୀତଗୋବିନ୍ଦର ଭାରତର ବିଭିନ୍ନ ପ୍ରାନ୍ତରେ ଯେତେ ସଂଖ୍ୟାରେ ଅନୁକୃତି ଦୃଷ୍ଟ ହୁଏ, ସଂସ୍କୃତ ଭାଷାରେ ଲିଖିତ ଅନ୍ୟ କୌଣସି ଗ୍ରନ୍ଥର ସେପରି ସୌଭାଗ୍ୟ ଦେଖାଯାଏ ନାହିଁ । ଏହି କ୍ଷୀଣକାୟ ଅମରକୃତି ରଚନା କରି କବିରାଜ ଶ୍ରୀ ଜୟଦେବ ସଂସ୍କୃତ ସାହିତ୍ୟରେ ଏକ ବିଶିଷ୍ଟ ସ୍ଥାନ ଅଧିକାର କରିବାକୁ ସମର୍ଥ ହୋଇଛନ୍ତି ।



---

(୭୭) History of Sanskrit literature by Dr. S. N. Dasgupta and Dr. S. K. De.

# ଏକାଦଶ ଅଧ୍ୟାୟ

## ଭାରତର ବିଭିନ୍ନ ପ୍ରାନ୍ତରେ ରଚିତ ଶ୍ରୀଗୀତଗୋବିନ୍ଦର ବିଭିନ୍ନ ଟୀକା

### (୧) ଧୀରେନ୍ଦ୍ର, ଉଦୟନାଚାର୍ଯ୍ୟ କୃତ ଭାବ-ବିଭାବିନୀ-ଟୀକା —

ଉତ୍କଳୀୟ କବିରାଜ 'ସାଧୁପ୍ରଧାନ' ଶ୍ରୀ ଜୟଦେବଙ୍କ ଦ୍ୱାରା ଶ୍ରୀଜଗନ୍ନାଥ ମନ୍ଦିରରେ 'ଶ୍ରୀଗୀତଗୋବିନ୍ଦ' ରଚିତ ଓ ମହାପ୍ରଭୁଙ୍କ ନିକଟରେ କବି-ଦଂପତିଙ୍କ ଦ୍ୱାରା ନିତ୍ୟ ଆବୃତ୍ତ ହେବାର ଅଳ୍ପକାଳ ମଧ୍ୟରେ କବିରାଜଙ୍କ ଅନ୍ତରଙ୍ଗ ବନ୍ଧୁ ପଣ୍ଡିତ-ପ୍ରବର ଉଦୟନାଚାର୍ଯ୍ୟ ଏହାର **ଭାବବିଭାବିନୀ** ନାମ୍ନୀ ପ୍ରଥମ ଟୀକା ପ୍ରଣୟନ କରିଥିଲେ । ମଧ୍ୟପ୍ରଦେଶ ଅନ୍ତର୍ଗତ ନାଗପୁରଠାରେ ଏହି ଟୀକାର ଏକ ପୋଥି ସଂରକ୍ଷିତ ହୋଇଥିବାର ଜଣାଯାଏ । (୧) କିନ୍ତୁ ଉକ୍ତ ଟୀକା ଏପର୍ଯ୍ୟନ୍ତ ଅପ୍ରକାଶିତ ଥିବାରୁ ଏବଂ ଏହା ସଂପର୍କରେ କୌଣସି ଆଲୋଚନା ହୋଇ ନ ଥିବାରୁ ଏହି ମୂଲ୍ୟବାନ ଗ୍ରନ୍ଥ-ରତ୍ନ ନିଜର ଯଥାଯୋଗ୍ୟ ସମ୍ମାନ ପାଇପାରୁନାହିଁ ।

### (୨) ମୈଥିଲ ଜଗଦ୍ଧର କୃତ 'ସାରଦୀପିକା' ଟୀକା—

ଚତୁର୍ଦ୍ଦଶ ଶତାବ୍ଦୀର ପ୍ରଥମ ଭାଗରେ ଆବିର୍ଭୂତ ଭାରତ ପ୍ରସିଦ୍ଧ ମୈଥିଳ ପଣ୍ଡିତ ମହାମହୋପାଧ୍ୟାୟ ଜଗଦ୍ଧର, (୨) ରସିକ ସର୍ବସ୍ୱ (କାମଶାସ୍ତ୍ର), ବୈଦ୍ୟ-ସର୍ବସ୍ୱ, 'ସଙ୍ଗୀତସର୍ବସ୍ୱ' 'ସୂକ୍ତିକୁସୁମାଞ୍ଜଳି' 'ବସନ୍ତୋତ୍ସବ କାବ୍ୟମ୍' ପ୍ରଭୃତି ମୌଳିକ ଗ୍ରନ୍ଥ ଓ 'ଭଗବଦ୍ ଗୀତା' 'ଚଣ୍ଡୀ', 'ମେଘଦୂତମ୍', 'ବାସବଦତ୍ତା', 'ବେଣୀସଂହାରମ୍' 'ମାଳତୀମାଧବମ୍' 'ମୁଦ୍ରାରାକ୍ଷସମ୍', 'ସରସ୍ୱତୀ କଣ୍ଠାଭରଣମ୍' ଓ 'ଶ୍ରୀଗୀତଗୋବିନ୍ଦମ୍' ପ୍ରଭୃତିର ଟୀକା ରଚନା କରି ସଂସ୍କୃତ ସାହିତ୍ୟ ଭଣ୍ଡାରକୁ ସମୃଦ୍ଧ କରିଥିଲେ । (୩) ତତ୍କୃତ ଶ୍ରୀଗୀତଗୋବିନ୍ଦ ଟୀକାର ନାମ **ସାରଦୀପିକା** ।

ଜଗଦ୍ଧର ମିଥିଳାର ଗୋଟିଏ ଲବ୍ଧପ୍ରତିଷ୍ଠ ପଣ୍ଡିତ ବଂଶରେ ଜନ୍ମଗ୍ରହଣ କରିଥିଲେ । ତାଙ୍କ ପ୍ରପିତାମହ ଗଦାଧର, ପିତାମହ ବିଦ୍ୟାଧର, ପିତା ରତ୍ନଧର ବା

---

(୧) ପୂର୍ବ ଅଧ୍ୟାୟରେ କବି ଉଦୟନ ଓ ତତ୍କୃତ ଟୀକା ସଂପର୍କରେ ଆଲୋଚନା ଦ୍ରଷ୍ଟବ୍ୟ

(୨) History of Mithila by Dr. Upendra Thakur pp 234-275.

(୩) Studies in Indian literary history, by Dr. P. K. Gode, Vol. I. pp 364-376.

ରତ୍ନେଶ୍ୱର କବିତ୍ୱ ଓ ପାଣ୍ଡିତ୍ୟ ଯୋଗୁଁ ଖ୍ୟାତି ଅର୍ଜନ କରିଥିଲେ । ଜଗଦ୍ଧର ମିଥିଳା ନରେଶ ରାମସିଂହ ଦେବଙ୍କ 'ଧର୍ମାଧିକରଣିକ' ଥିଲେ ଓ ନିଜର ପ୍ରଗାଢ଼ ପାଣ୍ଡିତ୍ୟ ଯୋଗୁଁ 'ମହାମହୋପାଧ୍ୟାୟ' ପଦବୀରେ ଭୂଷିତ ହୋଇଥିଲେ । ତାଙ୍କ ପାଣ୍ଡିତ୍ୟର ପରିଚୟ ତତ୍‌କୃତ 'ମାଳତୀମାଧବଟୀକା'ର ନିମ୍ନୋକ୍ତ ଶ୍ଳୋକରୁ ମିଳେ । ଯଥା —

"ଯେନା ପାଠି କଠୋର ଗୋତମମତଂ ବୈଶେଷିକଂ ଖଣ୍ଡିତଂ
ଯେନାଶ୍ରାବି ସକୋଷକାବ୍ୟନିବହଂ ତତ୍ପାଣିନୀୟମତମ୍ ॥
ଛନ୍ଦୋଽଲଙ୍କରଣଂ ଚ ଭବ୍ୟ ଭରତଂ ଯେନାଧଗୀପ୍ସି ଶ୍ରୁତି
ସ୍ତସ୍ୟାମୁଷ୍ୟ ଜଗଦ୍ଧରସ୍ୟ କବିତୁଷ୍ଟୀକେୟ ମୁଜ୍ଜୃମ୍ଭତାମ୍ ॥"

ଇତିଶ୍ରୀ ମହାମହୋପାଧ୍ୟାୟ ଧର୍ମାଧିକରଣିକ ଶ୍ରୀ ଜଗଦ୍ଧର କୃତ × ×

ଜଗଦ୍ଧର ପରମ ଶିବଭକ୍ତ ଥିଲେମଧ୍ଯ 'ଶ୍ରୀରାଧ କୃଷ୍ଣ କେଳିକଥା ସମ୍ବଳିତ' ଶ୍ରୀଗୀତଗୋବିନ୍ଦମ୍‌ର ମାଧୁର୍ଯ୍ୟ, ଲାଳିତ୍ୟ ଓ ଲୋକପ୍ରିୟତାରେ ମୁଗ୍‌ଧ ହୋଇ ଏହାର ଟୀକା ରଚନାରେ ପ୍ରବୃତ୍ତ ହୋଇଥିଲେ । ତାଙ୍କର ଅଟଳ ଶିବଭକ୍ତି ସାରଦୀପିକା ଟୀକାର ମଙ୍ଗଳାଚରଣରେ ପରିସ୍ଫୁଟ । ଯଥା—

"କରକଳିତଭୁଜଙ୍ଗୋ ମସ୍ତକେ-ନ୍ୟସ୍ତଗଙ୍ଗୋ
ବହୁତନଟନଭଙ୍ଗୋ ଦତ୍ତଦୈତ୍ୟେଭଭଙ୍ଗଃ ।
ଚରବଗଳେଦନଙ୍ଗ ସ୍ତ୍ୟକ୍ତସଙ୍ଗୋଽଙ୍ଗନାଙ୍ଗୋ
ଭବତୁ ମମବିଭୂତ୍ୟୈ ଶମ୍ଭୁରୁନ୍ମତ୍ତଗଙ୍ଗଃ ॥ ୧

**ନାନାଟୀକା ସମାଲୋକ୍ୟ** ବିଚାର୍ଯ୍ୟ ସୁଚିରଂ ହୃଦା
**ଗୀତଗୋବିନ୍ଦଟୀକେୟଂ କ୍ରିୟତେ ଶ୍ରୀଜଗଦ୍ଧରୈଃ । ୨"**

ଦ୍ୱିତୀୟ ଶ୍ଳୋକରୁ ସ୍ପଷ୍ଟ ଜଣାଯାଏ ଯେ, ଜଗଦ୍ଧର 'ସାରଦୀପିକା' ଟୀକା ରଚନା କରିବା ପୂର୍ବରୁ ଶ୍ରୀଗୀତଗୋବିନ୍ଦର ଅନ୍ୟ କେତେକ ଟୀକା ପ୍ରଣୀତ ହୋଇଥିଲା । କିନ୍ତୁ ସେଗୁଡ଼ିକର ସନ୍ଧାନ ଏପର୍ଯ୍ୟନ୍ତ ମିଳିନାହିଁ । ଏହି ଟୀକାର ଶେଷ ଶ୍ଳୋକ ହେଉଛି—

ହେ ସଜ୍ଜନାଃ ପରଗୁଣେଷୁ ଭବନ୍ତ ଏବ
ସନ୍ତୋଷବନ୍ତଃ ଇତି ସର୍ବଜନପ୍ରତୀତଃ ।
ତନ୍ମେ ପରଶ୍ରମମଶେଷମମୁଂ ବିଲୋକ୍ୟ
ଟୀକାମିମାଂ ସୁକୃତିନୋ ଭୃଶମାଦରଧ୍ୱମ୍

ଇତିଶ୍ରୀ ଜଗଦ୍ଧର ବିରଚିତାୟାଂ ଗୀତଗୋବିନ୍ଦଟୀକାୟାଂ ସାରଦୀପିକାୟାଂ ଦ୍ୱାଦଶ ସର୍ଗଃ" ।

ଏହି ଟୀକାରେ 'ଶ୍ରୀଗୀତଗୋବିନ୍ଦମ୍'ରେ ପ୍ରକ୍ଷିପ୍ତ ରୂପେ ବିବେଚିତ ୧୬ଟି ଶ୍ଳୋକର ବ୍ୟାଖ୍ୟାନ ପ୍ରଦତ୍ତ ହୋଇଥିବାରୁ ଏହା ପ୍ରଣୀତ ହେବା ପୂର୍ବରୁ ଉକ୍ତଶ୍ଳୋକଗୁଡ଼ିକ ଦ୍ୱାରା ଶ୍ରୀଗୀତଗୋବିନ୍ଦର ପ୍ରଥମ ଅନୁକୃତ ରଚିତ ହୋଇଥିବାର ନିଃସନ୍ଦେହରେ ନିର୍ଦ୍ଧାରିତ ହୋଇପାରେ ।

ଏହି ଟୀକା ମିଥିଳାରେ ବିଶେଷ ଲୋକପ୍ରିୟତା ଅର୍ଜନ କରିଥିଲା । ପ୍ରାଚୀନ ମୈଥିଳ ଅକ୍ଷରରେ ଲିଖିତ ଏହି ଟୀକାର ଗୋଟିଏ ପୋଥି ପାଟଣାସ୍ଥିତ 'ବିହାର ଐତିହାସିକ ଗବେଷଣା ସମିତି' ପୁସ୍ତକାଗାରରେ ଏବଂ ଆଉ ଦୁଇଖଣ୍ଡ ପୋଥି ମାନ୍ଦ୍ରା-ଜସ୍ଥ 'ପ୍ରାଚ୍ୟ ବିଦ୍ୟା ପୋଥିଭଣ୍ଡାର'ରେ ସଂରକ୍ଷିତ । (୪)

## (୩) ଧୃତ କର ବା ଧୃତ ଦାସ କୃତ 'ସନ୍ଦର୍ଭଦୀପିକା ଟୀକା'—

ପ୍ରଖ୍ୟାତ ମୈଥିଳ ପଣ୍ଡିତ ଜଗଦ୍ଧର କୃତ 'ସାରଦୀପିକା ଟୀକା'ର ଅନୁକରଣରେ ଧୃତ ଦାସ ବା ଧୃତ କର ନାମକ ଜନୈକ ପଣ୍ଡିତ 'ଶ୍ରୀଗୀତଗୋବିନ୍ଦ'ର 'ସନ୍ଦର୍ଭଦୀପିକା' ନାମକ ଏକ ଟୀକା ରଚନା କରିଥିଲେ । (୫) ଏହାର ମୂଳ ଅଂଶ ନିମ୍ନରେ ଉଦ୍ଧାର କରାଗଲା । (୬)

"ମୂଲେ ସୃଷ୍ଟ୍ୟାଧିନିରନ୍ତପଦଂ ପ୍ରାପ୍ୟ ବିଭ୍ରାଜତେ ଯା
ପଶ୍ୟନ୍ତୀ ଯା ନିବସତି ସଦା ବର୍ଣ୍ଣରୂପେଣ ନାଭୌ,
ଅଧ୍ୟାସ୍ତେ ଯା ପଦମିତପଦଂ ମଧ୍ୟମା ହୃତ୍ସରୋଜେ
ସା ବାଗ୍‌ଦେବୀ ଜୟତି ବଦନେ ବୈଖରୀ ବାକ୍ୟରୂପା ।
**ଧୃତଦାସକବିଃ** ଶ୍ରୀମାନ୍ **ଆସ୍ଥାନଚତୁରାନନଃ**
ଗୀତ କରୋତି ଗୋବିନ୍ଦଟୀକାଂ ସନ୍ଦର୍ଭଦୀପିକାଂ ।"

ଶ୍ରୀ ହରେକୃଷ୍ଣ ମୁଖୋପାଧ୍ୟାୟଙ୍କ ଆଲୋଚନାରୁ ଜଣାଯାଏ ଯେ, ଏହି ଟୀକାର ପ୍ରତିସର୍ଗ ଶେଷରେ ନିମ୍ନୋକ୍ତ ପୁଷ୍ପିକା ରହିଛି । ଯଥା—

"ଇତ୍ୟାସ୍ଥାନ-ଚତୁରାନନ-ବିଶ୍ୱାସବୈଦ୍ୟ ଶ୍ରୀ ଧୃତ ଦାସ ବିରଚିତାୟାଂ ସନ୍ଦର୍ଭଦୀପିକାୟାଂ ଶ୍ରୀଗୀତଗୋବିନ୍ଦ ଟୀକାୟାଂ" । ଏଥିରୁ ସେ କୌଣସି ରାଜସଭା ମଣ୍ଡନ କରୁଥିବାର ଜଣାଯାଏ । ଏହି ଟୀକାରେ ଶ୍ରୀଗୀତଗୋବିନ୍ଦର ପ୍ରତି ସର୍ଗର ଶେଷ

---

(୪) ମାନ୍ଦ୍ରାଜସ୍ଥ 'ପ୍ରାଚ୍ୟବିଦ୍ୟା ପୋଥିଭଣ୍ଡାର'ରେ ସଂରକ୍ଷିତ ୧୧୯୭୨ ସଂଖ୍ୟକ ପୋଥିର ପ୍ରତିଲିପିରୁ ଟୀକାର ଶ୍ଳୋକଗୁଡ଼ିକ ଉଦ୍ଧୃତ ।

(୫) Cat. of Sans. Mss. in the library of the Indian Office' by J. Eggeling, Ph. D., Part VII, p. 1619.

(୬) Proceedings of A.I.O. Conference, 18th Session, p 139.

ଶ୍ଳୋକ ଓ ଦ୍ୱାଦଶ ସର୍ଗର 'ମୀଳଦ୍ଦୃଷ୍ଟି ମିଳତ୍' ଓ 'ବ୍ୟାଳୋଳକେଶପାଶ' ଶ୍ଳୋକଦ୍ୱୟ ବ୍ୟାଖ୍ୟାତ ହୋଇ ନଥିବାର ଦେଖାଯାଏ । (୭)

ପ୍ରାୟ ୧୩୫୦ ଖ୍ରୀଷ୍ଟାବ୍ଦ ବେଳକୁ ରଚିତ କବିରାଜ ନାରାୟଣ ଦାସଙ୍କ 'ସର୍ବାଙ୍ଗ ସୁନ୍ଦରୀ ଟୀକା'ରେ 'ଧୃତିଦାସ'ଙ୍କ ଟୀକାର କେତେକ ପଦ ତିନି ସ୍ଥାନରେ ଉଦ୍ଧୃତ ହୋଇଥିବାରୁ ଏହା ତତ୍ପୂର୍ବରୁ ରଚିତ ହୋଇଥିବାର ସ୍ଥିର କରି-ଯାଇପାରେ ।

## (୪) କବିରାଜ ନାରାୟଣ ଦାସ କୃତ 'ସର୍ବାଙ୍ଗସୁନ୍ଦରୀ ଟୀକା'—

କବିରାଜ ନାରାୟଣ ଦାସ କୃତ 'ସର୍ବାଙ୍ଗ ସୁନ୍ଦରୀ ଟୀକା'ର ଖଣ୍ଡିଏ ପତ୍ରାଙ୍ଗ ପୋଥି ରାଜ୍ୟ ପ୍ରତ୍ନତତ୍ତ୍ୱ ସଂଗ୍ରହାଳୟ ପୋଥିଭଣ୍ଡାରରେ ସଂରକ୍ଷିତ । (୮) ଏହାର ମୂଳ ଓ ଶେଷାଂଶ ନିମ୍ନରେ ଉଦ୍ଧାର କରଗଲା ।

ମୂଳ— "ଶ୍ରୀକୃଷ୍ଣାୟ ନମଃ

ସର୍ବାଙ୍ଗ ସୁନ୍ଦରୀ ରାଧା କୃଷ୍ଣ ସର୍ବାଙ୍ଗ ସୁନ୍ଦରଃ
ତୟୋରାନନ୍ଦଜନନୀ ଟୀକା ସର୍ବାଙ୍ଗସୁନ୍ଦରୀ ।
ନତ୍ୱା ଶ୍ରୀନନ୍ଦଚରଣଂ କୁରୁତେ ସର୍ବାଙ୍ଗସୁନ୍ଦରୀଟୀକାମ୍
ଶ୍ରୀ ନାରାୟଣ ଦାସଃ କବିରାଜୋଽୟଂ ଗୀତଗୋବିନ୍ଦେ ।
ଆସ୍ତେ ଯଦି ହୃଦିବାଞ୍ଛା ବୋଦ୍ଧୁଂ ତତ୍ତ୍ୱେନଗୀତଗୋବିନ୍ଦଂ
ଶ୍ରୀ ନାରାୟଣ ଦାସସ୍ୟାଦରମଭିପ୍ରାୟଂ ଜନାଃ ଶୃଣୁତ ॥

× × ×

ଶେଷ ଶ୍ଳୋକ— ଅନ୍ତରିକ୍ଷମନୁପ୍ରୀତେ ଗୀତଗୋବିନ୍ଦଗୀତେ
ହରିଚରଣବିଶେଷେ ବେଦବେଦାଙ୍ଗଶେଷେ ।
ଭବତି ଗତି ବିଚାରା ହ୍ୱ କୃତଂ କର୍ତ୍ତୁକାମା
ହର ହର ହର ଶେଷାସ୍ତୀଶ ଭୂମା ମବାପ୍ତାମ୍ ।
ସମାପ୍ତୋଽୟଂ ଗ୍ରନ୍ଥଃ ॥"

---

(୭) "କବି ଜୟଦେବ ଓ ଶ୍ରୀ ଗୀତଗୋବିନ୍ଦ" ବଙ୍ଗଳା ପୃ ୨୨୦—୨୨୫
(୮) ଏହି ଟୀକା ସମ୍ବନ୍ଧରେ ବିସ୍ତୃତ ଆଲୋଚନା ମୋର ଦୁଇଟି ପ୍ରବନ୍ଧରେ କରାଯାଇଛି ।
(a) Sarvangasundari Tika on the Gitagovinda, O. H. R. J. Vol. XIII. No. 3 pp 26-41.
(b) 'ସର୍ବାଙ୍ଗସୁନ୍ଦରୀ ଟୀକା'— 'କୋଣାର୍କ' ପତ୍ରିକାରେ ପ୍ରକାଶିତ ।

## ଏକାଦଶ ଅଧ୍ୟାୟ

# ଭାରତର ବିଭିନ୍ନ ପ୍ରାନ୍ତରେ ରଚିତ ଶ୍ରୀଗୀତଗୋବିନ୍ଦର ବିଭିନ୍ନ ଟୀକା

## (୧) ଧୀରେନ୍ଦ୍ର, ଉଦୟନାଚାର୍ଯ୍ୟ କୃତ ଭାବ-ବିଭାବିନୀ-ଟୀକା —

ଉତ୍କଳୀୟ କବିରାଜ 'ସାଧୁପ୍ରଧାନ' ଶ୍ରୀ ଜୟଦେବଙ୍କ ଦ୍ୱାରା ଶ୍ରୀଜଗନ୍ନାଥ ମନ୍ଦିରରେ 'ଶ୍ରୀଗୀତଗୋବିନ୍ଦ' ରଚିତ ଓ ମହାପ୍ରଭୁଙ୍କ ନିକଟରେ କବି-ଦଂପତିଙ୍କ ଦ୍ୱାରା ନିତ୍ୟ ଆବୃତ୍ତ ହେବାର ଅଳ୍ପକାଳ ମଧ୍ୟରେ କବିରାଜଙ୍କ ଅନ୍ତରଙ୍ଗ ବନ୍ଧୁ ପଣ୍ଡିତ-ପ୍ରବର ଉଦୟନାଚାର୍ଯ୍ୟ ଏହାର **ଭାବବିଭାବନୀ** ନାମ୍ନୀ ପ୍ରଥମ ଟୀକା ପ୍ରଣୟନ କରିଥିଲେ । ମଧ୍ୟପ୍ରଦେଶ ଅନ୍ତର୍ଗତ ନାଗପୁରଠାରେ ଏହି ଟୀକାର ଏକ ପୋଥି ସଂରକ୍ଷିତ ହୋଇଥିବାର ଜଣାଯାଏ । (୧) କିନ୍ତୁ ଉକ୍ତ ଟୀକା ଏପର୍ଯ୍ୟନ୍ତ ଅପ୍ରକାଶିତ ଥିବାରୁ ଏବଂ ଏହା ସଂପର୍କରେ କୌଣସି ଆଲୋଚନା ହୋଇ ନ ଥିବାରୁ ଏହି ମୂଲ୍ୟବାନ ଗ୍ରନ୍ଥ-ରତ୍ନ ନିଜର ଯଥାଯୋଗ୍ୟ ସମ୍ମାନ ପାଇପାରୁନାହିଁ ।

## (୨) ମୈଥିଲ ଜଗଦ୍ଧର କୃତ 'ସାରଦୀପିକା' ଟୀକା—

ଚତୁର୍ଦ୍ଦଶ ଶତାବ୍ଦୀର ପ୍ରଥମ ଭାଗରେ ଆବିର୍ଭୂତ ଭାରତ ପ୍ରସିଦ୍ଧ ମୈଥିଳ ପଣ୍ଡିତ ମହାମହୋପାଧ୍ୟାୟ ଜଗଦ୍ଧର, (୨) ରସିକ ସର୍ବସ୍ୱ (କାମଶାସ୍ତ୍ର), ବୈଦ୍ୟ-ସର୍ବସ୍ୱ, 'ସଙ୍ଗୀତସର୍ବସ୍ୱ' 'ସ୍ତୁତିକୁସୁମାଞ୍ଜଳି' 'ବସନ୍ତୋତ୍ସବ କାବ୍ୟମ୍' ପ୍ରଭୃତି ମୌଳିକ ଗ୍ରନ୍ଥ ଓ 'ଭଗବଦ୍ ଗୀତା' 'ଚଣ୍ଡୀ', 'ମେଘଦୂତମ୍', 'ବାସବଦତ୍ତା', 'ବେଣୀସଂହାରମ୍' 'ମାଲତୀମାଧବମ୍' 'ମୁଦ୍ରାରାକ୍ଷସମ୍', 'ସରସ୍ୱତୀ କଣ୍ଠାଭରଣମ୍' ଓ 'ଶ୍ରୀଗୀତଗୋବିନ୍ଦମ୍' ପ୍ରଭୃତିର ଟୀକା ରଚନା କରି ସଂସ୍କୃତ ସାହିତ୍ୟ ଭଣ୍ଡାରକୁ ସମୃଦ୍ଧ କରିଥିଲେ । (୩) ତତ୍କୃତ ଶ୍ରୀଗୀତଗୋବିନ୍ଦ ଟୀକାର ନାମ **ସାରଦୀପିକା** ।

ଜଗଦ୍ଧର ମିଥିଳାର ଗୋଟିଏ ଲବ୍ଧପ୍ରତିଷ୍ଠ ପଣ୍ଡିତ ବଂଶରେ ଜନ୍ମଗ୍ରହଣ କରିଥିଲେ । ତାଙ୍କ ପ୍ରପିତାମହ ଗଦାଧର, ପିତାମହ ବିଦ୍ୟାଧର, ପିତା ରତ୍ନଧର ବା

---

(୧) ପୂର୍ବ ଅଧ୍ୟାୟରେ କବି ଉଦୟନ ଓ ତତ୍କୃତ ଟୀକା ସଂପର୍କରେ ଆଲୋଚନା ଦ୍ରଷ୍ଟବ୍ୟ

(୨) History of Mithila by Dr. Upendra Thakur pp 234-275.

(୩) Studies in Indian literary history, by Dr. P. K. Gode, Vol. I. pp 364-376.

ରତ୍ନେଶ୍ୱର କବିତ୍ୱ ଓ ପାଣ୍ଡିତ୍ୟ ଯୋଗୁଁ ଖ୍ୟାତି ଅର୍ଜନ କରିଥିଲେ । ଜଗଦ୍ଧର ମିଥିଳା ନରେଶ ରାମସିଂହ ଦେବଙ୍କ 'ଧର୍ମାଧିକରଣିକ' ଥିଲେ ଓ ନିଜର ପ୍ରଗାଢ଼ ପାଣ୍ଡିତ୍ୟ ଯୋଗୁଁ 'ମହାମହୋପାଧ୍ୟାୟ' ପଦବୀରେ ଭୂଷିତ ହୋଇଥିଲେ । ତାଙ୍କ ପାଣ୍ଡିତ୍ୟର ପରିଚୟ ତତ୍କୃତ 'ମାଳତୀମାଧବଟୀକା'ର ନିମ୍ନୋକ୍ତ ଶ୍ଳୋକରୁ ମିଳେ । ଯଥା —

"ଯେନା ପାଠି କଠୋର ଗୌତମମତଂ ବୈଶେଷିକଂ ଖଣ୍ଡିତଂ
ଯେନାଶ୍ରାବି ସକୋଷକାବ୍ୟନିବହଂ ଚକ୍ରପାଣିମାପ୍ୟମତମ୍ ॥
ଛନ୍ଦୋଽଲଙ୍କରଣଂ ଚ ଭବ୍ୟ ଭରତଂ ଯେନାଧିଗତ୍ୟ ଶ୍ରୁତି
ପ୍ରସ୍ୟାମୁଷ୍ୟ ଜଗଦ୍ଧରସ୍ୟ କବିତୁଷ୍ଟୀକେୟ ମୁକ୍ତାମ୍ବିତାମ୍ ॥"

ଇତିଶ୍ରୀ ମହାମହୋପାଧ୍ୟାୟ ଧର୍ମାଧିକରଣିକ ଶ୍ରୀ ଜଗଦ୍ଧର କୃତ × ×

ଜଗଦ୍ଧର ପରମ ଶିବଭକ୍ତ ଥିଲେମଧ୍ୟ 'ଶ୍ରୀରାଧାକୃଷ୍ଣ କେଳିକଥା ସମ୍ବଳିତ' ଶ୍ରୀଗୀତଗୋବିନ୍ଦମ୍‌ର ମାଧୁର୍ଯ୍ୟ, ଲାଳିତ୍ୟ ଓ ଲୋକପ୍ରିୟତାରେ ମୁଗ୍ଧ ହୋଇ ଏହାର ଟୀକା ରଚନାରେ ପ୍ରବୃତ୍ତ ହୋଇଥିଲେ । ତାଙ୍କର ଅଚଳା ଶିବଭକ୍ତି ସାରଦୀପିକା ଟୀକାର ମଙ୍ଗଳାଚରଣରେ ପରିସ୍ଫୁଟ । ଯଥା—

"କରକଳିତଭୁଜଙ୍ଗୋ ମସ୍ତକେ-ନ୍ୟସ୍ତଗଙ୍ଗୋ
ବହୁତନଟନଭଙ୍ଗୋ ଦତ୍ତଦୈତ୍ୟେୟଭଙ୍ଗଃ ।
ଚରଣକଳେଦନଙ୍ଗ ସ୍ତ୍ୟକ୍ତସଙ୍ଗୋଽଙ୍ଗନାଙ୍ଗୋ
ଭବତୁ ମମବିଭୂତ୍ୟୈ ଶମ୍ଭୁରନ୍ନତଗଙ୍ଗଃ ॥ ୧

**ନାନାଟୀକା ସମାଲୋକ୍ୟ** ବିଚାର୍ଯ୍ୟ ସ୍ୱଚିରଂ ହୃଦା
**ଗୀତଗୋବିନ୍ଦଟୀକେୟଂ କ୍ରିୟତେ ଶ୍ରୀଜଗଦ୍ଧରୈଃ । ୨"**

ଦ୍ୱିତୀୟ ଶ୍ଳୋକରୁ ସ୍ପଷ୍ଟ ଜଣାଯାଏ ଯେ, ଜଗଦ୍ଧର 'ସାରଦୀପିକା' ଟୀକା ରଚନା କରିବା ପୂର୍ବରୁ ଶ୍ରୀଗୀତଗୋବିନ୍ଦର ଅନ୍ୟ କେତେକ ଟୀକା ପ୍ରଣୀତ ହୋଇଥିଲା । କିନ୍ତୁ ସେଗୁଡ଼ିକର ସନ୍ଧାନ ଏପର୍ଯ୍ୟନ୍ତ ମିଳିନାହିଁ । ଏହି ଟୀକାର ଶେଷ ଶ୍ଳୋକ ହେଉଛି—

ହେ ସଜ୍ଜନାଃ ପରଗୁଣେଷୁ ଭବନ୍ତ ଏବ
ସନ୍ତୋଷବନ୍ତଃ ଇତି ସର୍ବଜନପ୍ରତୀତଃ ।
ତନ୍ମେ ପରିଶ୍ରମମଶେଷମମୁଂ ବିଲୋକ୍ୟ
ଟୀକାମିମାଂ ସୁକୃତିନୋ ଭୃଶମାଦରଧ୍ୱମ୍

ଇତିଶ୍ରୀ ଜଗଦ୍ଧର ବିରଚିତାୟାଂ ଗୀତଗୋବିନ୍ଦଟୀକାୟାଂ ସାରଦୀପିକାୟାଂ ଦ୍ୱାଦଶ ସର୍ଗଃ" ।

ଏହି ଟୀକାରେ 'ଶ୍ରୀଗୀତଗୋବିନ୍ଦମ୍'ରେ ପ୍ରକ୍ଷିପ୍ତ ରୂପେ ବିବେଚିତ ୧୨ଟି ଶ୍ଳୋକର ବ୍ୟାଖ୍ୟାନ ପ୍ରଦତ୍ତ ହୋଇଥିବାରୁ ଏହା ପ୍ରଣୀତ ହେବା ପୂର୍ବରୁ ଉତ୍କଳାଧିପଙ୍କ ଦ୍ୱାରା ଶ୍ରୀଗୀତଗୋବିନ୍ଦର ପ୍ରଥମ ଅନୁକୃତ ରଚିତ ହୋଇଥିବାର ନିଃସନ୍ଦେହରେ ନିର୍ଦ୍ଧାରିତ ହୋଇପାରେ ।

ଏହି ଟୀକା ମିଥିଳାରେ ବିଶେଷ ଲୋକପ୍ରିୟତା ଅର୍ଜନ କରିଥିଲା । ପ୍ରାଚୀନ ମୈଥିଳ ଅକ୍ଷରରେ ଲିଖିତ ଏହି ଟୀକାର ଗୋଟିଏ ଖଣ୍ଡ ପୋଥି ପାଟଣାସ୍ଥିତ 'ବିହାର ଐତିହାସିକ ଗବେଷଣା ସମିତି' ପୁସ୍ତକାଗାରରେ ଏବଂ ଆଉ ଦୁଇଖଣ୍ଡ ପୋଥି ମାନ୍ଦ୍ରାଜସ୍ଥ 'ପ୍ରାଚ୍ୟ ବିଦ୍ୟା ପୋଥିଭଣ୍ଡାର'ରେ ସଂରକ୍ଷିତ । (୪)

## (୩) ଧୃତି କର ବା ଧୃତି ଦାସ କୃତ 'ସନ୍ଦର୍ଭଦୀପିକା ଟୀକା'—

ପ୍ରଖ୍ୟାତ ମୈଥିଳ ପଣ୍ଡିତ ଜଗଦ୍ଧର କୃତ 'ସାରଦୀପିକା ଟୀକା'ର ଅନୁକରଣରେ ଧୃତି ଦାସ ବା ଧୃତି କର ନାମକ ଜନୈକ ପଣ୍ଡିତ 'ଶ୍ରୀଗୀତଗୋବିନ୍ଦ'ର 'ସନ୍ଦର୍ଭଦୀପିକା' ନାମକ ଏକ ଟୀକା ରଚନା କରିଥିଲେ । (୫) ଏହାର ମୂଳ ଅଂଶ ନିମ୍ନରେ ଉଦ୍ଧାର କରାଗଲା । (୬)

"ମୂଳେ ସୂକ୍ଷ୍ମାଧ୍ୱନିରତିପଦଂ ପ୍ରାପ୍ୟ ବିଭ୍ରାଜତେ ଯା
ପଶ୍ୟନ୍ତୀ ଯା ନିବସତି ସଦା ବର୍ଣ୍ଣରୂପେଣ ନାଭୌ,
ଅଧ୍ୟାସ୍ତେ ଯା ପଦମିତିପଦଂ ମଧ୍ୟମା ହୃତ୍ସରୋଜେ
ସା ବାଗ୍‌ଦେବୀ ଜୟତି ବଦନେ ବୈଖରୀ ବାକ୍ୟରୂପା ।
**ଧୃତିଦାସକବିଃ ଶ୍ରୀମାନ୍ ଆସ୍ଥାନଚତୁରାନନଃ**
ଗୀତି କରୋତି ଗୋବିନ୍ଦଟୀକାଂ ସନ୍ଦର୍ଭଦୀପିକାଂ ।"

ଶ୍ରୀ ହରେକୃଷ୍ଣ ମୁଖୋପାଧ୍ୟାୟଙ୍କ ଆଲୋଚନାରୁ ଜଣାଯାଏ ଯେ, ଏହି ଟୀକାର ପ୍ରତିସର୍ଗ ଶେଷରେ ନିମ୍ନୋକ୍ତ ପୁଷ୍ପିକା ରହିଛି । ଯଥା—

"ଇନ୍ଦ୍ରାସ୍ଥାନ-ଚତୁରାନନ-ଦଣ୍ଡୀସର୍ବବିଦ୍ୟ ଶ୍ରୀ ଧୃତି ଦାସ ବିରଚିତାୟାଂ ସନ୍ଦର୍ଭଦୀପିକାୟାଂ ଶ୍ରୀଗୀତଗୋବିନ୍ଦ ଟୀକାୟାଂ" । ଏଥିରୁ ସେ କୌଣସି ରାଜସଭା ମଣ୍ଡନ କରୁଥିବାର ଜଣାଯାଏ । ଏହି ଟୀକାରେ ଶ୍ରୀଗୀତଗୋବିନ୍ଦର ପ୍ରତି ସର୍ଗର ଶେଷ

---

(୪) ମାନ୍ଦ୍ରାଜସ୍ଥ 'ପ୍ରାଚ୍ୟବିଦ୍ୟା ପୋଥିଭଣ୍ଡାର'ରେ ସଂରକ୍ଷିତ ୧୧୯୬୨ ସଂଖ୍ୟକ ପୋଥିର ପ୍ରତିଲିପିରୁ ଟୀକାର ଶ୍ଳୋକଗୁଡ଼ିକ ଉଦ୍ଧୃତ ।

(୫) Cat. of Sans. Mss. in the library of the Indian Office' by J. Eggeling, Ph. D., Part VII, p. 1619.

(୬) Proceedings of A.I.O, Conference, 18th Session, p 139.

ଶ୍ଳୋକ ଓ ଦ୍ୱାଦଶ ସର୍ଗର 'ମୀଲଦ୍‌ଦୃଷ୍ଟି ମିଳତ୍' ଓ 'ବ୍ୟାକୋଳକେଶପାଶ' ଶ୍ଳୋକଦ୍ୱୟ ବ୍ୟାଖ୍ୟାତ ହୋଇ ନଥିବାର ଦେଖାଯାଏ । (୭)

ପ୍ରାୟ ୧୩୫୦ ଖ୍ରୀଷ୍ଟାବ୍ଦ ବେଳକୁ ରଚିତ କବିରାଜ ନାରାୟଣ ଦାସଙ୍କ 'ସର୍ବାଙ୍ଗ ସୁନ୍ଦରୀ ଟୀକା'ରେ 'ଧୃତିଦାସ'ଙ୍କ ଟୀକାର କେତେକ ପଦ ଉକ୍ତ ସ୍ଥାନରେ ଉଦ୍ଧୃତ ହୋଇଥିବାରୁ ଏହା ତତ୍ପୂର୍ବରୁ ରଚିତ ହୋଇଥିବାର ସ୍ଥିର କରାଯାଇପାରେ ।

## (୪) କବିରାଜ ନାରାୟଣ ଦାସ କୃତ 'ସର୍ବାଙ୍ଗସୁନ୍ଦରୀ ଟୀକା'—

କବିରାଜ ନାରାୟଣ ଦାସ କୃତ 'ସର୍ବାଙ୍ଗ ସୁନ୍ଦରୀ ଟୀକା'ର ଖଣ୍ଡିଏ ପୂର୍ଣ୍ଣାଙ୍ଗ ପୋଥି ରାଜ୍ୟ ପ୍ରତ୍ନତତ୍ତ୍ୱ ସଂଗ୍ରହାଳୟ ପୋଥିଭଣ୍ଡାରରେ ସଂରକ୍ଷିତ । (୮) ଏହାର ମୂଳ ଓ ଶେଷାଂଶ ନିମ୍ନରେ ଉଦ୍ଧାର କରାଗଲା ।

ମୂଳ— "ଶ୍ରୀକୃଷ୍ଣାୟ ନମଃ

ସର୍ବାଙ୍ଗ ସୁନ୍ଦରୀ ରାଧା କୃଷ୍ଣ ସର୍ବାଙ୍ଗ ସୁନ୍ଦରଃ
ତୟୋର୍ବାନନ୍ଦଜନନୀ ଟୀକା ସର୍ବାଙ୍ଗସୁନ୍ଦରୀ ।
ନତ୍ୱା ଶ୍ରୀହରିଚରଣଂ କୁରୁତେ ସର୍ବାଙ୍ଗସୁନ୍ଦରୀଟୀକାମ୍
ଶ୍ରୀ ନାରାୟଣ ଦାସଃ କବିରାଜୋଽୟଂ ଗୀତଗୋବିନ୍ଦେ ।
ଆସ୍ତେ ଯଦି ହୃଦିବାଞ୍ଛା ବୋଦ୍ଧୁଂ ତତ୍ତ୍ୱେନଗୀତଗୋବିନ୍ଦଂ
ଶ୍ରୀ ନାରାୟଣ ଦାସସ୍ୟାଦରମଭିପ୍ରାୟଂ ଜନାଃ ଶୃଣୁତ ॥

× × ×

ଶେଷ ଶ୍ଳୋକ— ଅତିବିଷମସ୍ଫୁରିତେ ଗୀତଗୋବିନ୍ଦଗୀତେ
ହରିଚରଣବିଶେଷେ ବେଦବେଦାଙ୍ଗଶେଷେ ।
ଭବତି ଗତି ବଚନା ହି କୃତଂ କର୍ତ୍ତୁ କ୍ଷମା
ହର ହର ହର ଶେଷାସ୍ତୀଶ ଭୂମା ମହାପ୍ରାମ୍ ।
ସମାପ୍ତୋଽୟଂ ଗ୍ରନ୍ଥଃ ॥"

---

(୭) "କବି ଜୟଦେବ ଓ ଶ୍ରୀ ଗୀତଗୋବିନ୍ଦ" ବଙ୍ଗଳା ପୃ ୨୨୦—୨୨୫
(୮) ଏହି ଟୀକା ସମ୍ବନ୍ଧରେ ବିସ୍ତୃତ ଆଲୋଚନା ମୋର ଦୁଇଟି ପ୍ରବନ୍ଧରେ କରାଯାଇଛି ।
(a) Sarvangasundari Tika on the Gitagovinda, O. H. R. J. Vol. XIII. No. 3 pp 26-41.
(b) 'ସର୍ବାଙ୍ଗସୁନ୍ଦରୀ ଟୀକା'— 'କୋଣାର୍କ' ପତ୍ରିକାରେ ପ୍ରକାଶିତ ।

## ଟୀକାକାରଙ୍କ ପରିଚୟ—

କବିରାଜ ନାରାୟଣ ଦାସ ସ୍ୱ ପରିଚୟ ଟୀକାରେ ପ୍ରଦାନ କରିନାହାନ୍ତି । କିନ୍ତୁ ଗ୍ରନ୍ଥ ଆରମ୍ଭରେ ଓ ପ୍ରତ୍ୟେକ ସର୍ଗର ପୁଷ୍ପିକାରେ ତାଙ୍କ ନାମ ପୂର୍ବରୁ 'କବିରାଜ' ପଦବୀ ବ୍ୟବହୃତ ହୋଇଥିବାରୁ ସେ ଜଣେ ପ୍ରସିଦ୍ଧ 'କବିପଣ୍ଡିତ' ଥିବା ନିଃସନ୍ଦେହରେ ସ୍ଥିର କରାଯାଇପାରେ । ସେ ଯୁଗରେ ଭାରତ ବିଖ୍ୟାତ କବିପଣ୍ଡିତ 'ରାଜଶେଖର' ଓ ଶ୍ରୀ ଜୟଦେବ ପ୍ରଭୃତି ଉକ୍ତ 'କବିରାଜ' ପଦବୀ ବ୍ୟବହାର କରି-ଥିବାର ଦେଖାଯାଏ । ସଂସ୍କୃତ ପଣ୍ଡିତ ସମାଜରେ ବିଶେଷ ଆଦୃତ **'ସାହିତ୍ୟ-ଦର୍ପଣ'**କାର ସୁନାମଧନ୍ୟ ବିଶ୍ୱନାଥ କବିରାଜ ସ୍ୱ ବୃଦ୍ଧପ୍ରପିତାମହ ଶ୍ରୀ ନାରାୟଣଙ୍କ ପାଣ୍ଡିତ୍ୟ ସମ୍ବନ୍ଧରେ ଅତ୍ୟନ୍ତ ଗର୍ବ ଓ ଗୌରବ ସହିତ ଦୁଇଟି ସ୍ଥାନରେ ଉଲ୍ଲେଖ କରିଛନ୍ତି । ଯଥା—

"ଯଦାହୁଃ ଶ୍ରୀକଳିଙ୍ଗ ଭୂମଣ୍ଡଳାଖଣ୍ଡଳ ମହାରାଜାଧିରାଜ ନରସିଂହଦେବ ସଭାୟାଂ ଧର୍ମଦତ୍ତଂ ସ୍ଥଗୟନ୍ତଃ **ସକଳସହୃଦୟଗୋଷ୍ଠୀଗରିଷ୍ଠ** କବିପଣ୍ଡିତାସ୍ମତ୍ ବୃଦ୍ଧ ପ୍ରପିତାମହ **ଶ୍ରୀ ନାରାୟଣ ଦାସ ପାଦାଃ** ତଦେବ" (୯)

ଅନ୍ୟତ୍ର "ତତ୍ର × × ଅସ୍ମତ୍ ବୃଦ୍ଧପ୍ରପିତାମହ ସହୃଦୟ ଗୋଷ୍ଠୀଗରିଷ୍ଠ **କବିପଣ୍ଡିତମୁଖ୍ୟ** ଶ୍ରୀ ନାରାୟଣ ଦାସ ପାଦୈରୁକ୍ତଂ" (୧୦)

ଉତ୍କଳରେ ପ୍ରଚଳିତ ଜନଶ୍ରୁତି ଅନୁଯାୟୀ ଉକ୍ତ 'କବିପଣ୍ଡିତମୁଖ୍ୟ' ନାରାୟଣ ଦାସ 'ଶ୍ରୀଗୀତଗୋବିନ୍ଦମ୍'ର ସର୍ବାଙ୍ଗ ସୁନ୍ଦର ଟୀକା ରଚନା କରିଥିଲେ । ବିଶ୍ୱନାଥ କବିରାଜଙ୍କ ବୃଦ୍ଧ ପ୍ରପିତାମହ ଶ୍ରୀ ନାରାୟଣ ଦାସଙ୍କ ପ୍ରଗାଢ ପାଣ୍ଡିତ୍ୟ ଦୃଷ୍ଟେ ଏହି ଜନଶ୍ରୁତି ସତ୍ୟାଶ୍ରିତ ରୂପେ ଗୃହୀତ ହୋଇପାରେ । ତାଙ୍କର ଆଶ୍ରୟଦାତା 'ମହାରାଜାଧିରାଜ ନରସିଂହଦେବ'ଙ୍କୁ ନିଃସନ୍ଦେହରେ ଉତ୍କଳର ଗଙ୍ଗସମ୍ରାଟ ତୃତୀୟ ନରସିଂହଦେବ (୧୩୨୭—୧୩୫୩ ଖ୍ରୀଷ୍ଟାବ୍ଦ) ରୂପେ ଗ୍ରହଣ କରାଯାଇପାରେ ।

## ଟୀକାର ବିଶେଷତ୍ୱ—

ଉକ୍ତ ଟୀକାରେ ଶ୍ରୀଗୀତଗୋବିନ୍ଦର ଚତୁର୍ଥ ଶ୍ଳୋକ 'ବାଚଃ ପଲ୍ଲବୟତି.. ର ଯେଉଁ ପ୍ରକୃତାର୍ଥ ବ୍ୟଞ୍ଜକ ପ୍ରାଞ୍ଜଳ ବ୍ୟାଖ୍ୟାନ ପ୍ରଦତ୍ତ ହୋଇଛି ତାହା ଏହି ପୁସ୍ତକରେ ଅନ୍ୟତ୍ର ଉଦ୍ଧାର କରାଯାଇଛି । (୧୧) ଏହା ପରବର୍ତ୍ତୀ କାଳରେ ବହୁ ପ୍ରସିଦ୍ଧ ଟୀକା-

---

(୯) ବିଶ୍ୱନାଥ କବିରାଜ କୃତ 'କାବ୍ୟପ୍ରକାଶଦର୍ପଣ'
(୧୦) ,, ସାହିତ୍ୟ ଦର୍ପଣ', ତୃତୀୟ ପରିଚ୍ଛେଦ
(୧୧) ନବମ ଅଧ୍ୟାୟ – ପୃ ୨୧୯-୨୨୦

କାରଙ୍କ ଦ୍ୱାରା ଗୃହୀତ ହୋଇଛି । ଶ୍ରୀ ଜୟଦେବଙ୍କୁ ଗୌଡ଼ାଧିପ ଲକ୍ଷ୍ମଣସେନଙ୍କ ସଭାକବି ରୂପେ ଗ୍ରହଣ କରିବା ପାଇଁ ପ୍ରାୟ ଏକ ଶତାବ୍ଦୀ ହେଲା ପ୍ରଚଳିତ ଅପପ୍ରଚାରର ମୂଳରେ କୁଠାରାଘାତ କରାଯାଇଛି ।

ଶ୍ରୀ ଗୀତଗୋବିନ୍ଦର ତୃତୀୟ ସର୍ଗର ନିମ୍ନୋକ୍ତ ଶ୍ଳୋକ
"ବର୍ଣ୍ଣିତଂ ଜୟଦେବକେନ ହରେରିଦଂ ପ୍ରବଣେନ
କେନ୍ଦୁବିଲ୍ୱ-ସମୁଦ୍ର-ସମ୍ଭବରୋହିଣୀରମଣେନ ।" ।୧୦।

ର ବ୍ୟାଖ୍ୟାନରେ କବିରାଜ ନାରାୟଣ ଦାସ ଶ୍ରୀ ଜୟଦେବଙ୍କ ଜନ୍ମସ୍ଥାନ କେନ୍ଦୁବିଲ୍ୱ ଏକ ଶାସନ ବା ବ୍ରାହ୍ମଣ ଗ୍ରାମ ବୋଲି ସ୍ପଷ୍ଟ ଭାବରେ ଉଲ୍ଲେଖ କରିଛନ୍ତି । ଯଥା—

**କେନ୍ଦୁବିଲ୍ୱାଖ୍ୟଂ ଶାସନଂ** । ତତ୍ ମହତ୍ତ୍ୱାତ୍ ସମୁଦ୍ରତ୍ୱେନ ରୂପିତଂ । କେନ୍ଦୁବିଲ୍ୱସମୁଦ୍ରସ୍ୟ ବର୍ଣ୍ଣାସୌ ରୋହିଣୀରମଣଶ୍ଚେତି । ଅକୁଳୋଦ୍ଭୂତସ୍ୟାତ୍ମନ କୁଳୋନ୍ନତିକରକଦର୍ଶନାତ୍ ସମ୍ଭବଣଦୋପାଦାନମ୍ । ତତ୍ର କୁଳୋଦ୍ଧତିକଖ୍ୟା ଖ୍ୟାପନାର୍ଥଂ । ଦୃଷ୍ଟାନ୍ତୋଽୟ ସୁଧୀଭିରିଃ ॥ ତଦେବଂ କେନ୍ଦୁବିଲ୍ୱଶାସନାଜ୍ଜାତ ସ୍ତସ୍ୟୋବୋନ୍ନତି-କାରକୋ ଯଥା ସାଗରାଜ୍ଜାତ ଚନ୍ଦ୍ରଃ ସାଗରବୃଦ୍ଧିକାରକ ଇତ୍ୟର୍ଥଂ ପ୍ରପଦ୍ୟତେ"

ଅର୍ଥାତ୍ ସାଗରରୁ ଜାତ ଚନ୍ଦ୍ର ସାଗରର ଅଭିବୃଦ୍ଧି ସାଧନ କଲାପରି କେନ୍ଦୁବିଲ୍ୱ ବ୍ରାହ୍ମଣଶାସନ ରୂପକ ସମୁଦ୍ରରୁ ଉତ୍ପନ୍ନ କବିରାଜ ଶ୍ରୀ ଜୟଦେବ ନିଜର ଅଲୌକିକ କବିଯଶଃ ଦ୍ୱାରା ସ୍ୱ ଜନ୍ମସ୍ଥାନର ଗୌରବ ବୃଦ୍ଧି କରିଥିଲେ । ଏହି ବ୍ୟାଖ୍ୟାନ ବଳରେ ପ୍ରାଚୀନଦୀ ତୀରବର୍ତ୍ତୀ କେନ୍ଦୁଲୀ (ପ୍ରାଚୀନ କେନ୍ଦୁବିଲ୍ୱ) ଶାସନକୁ କବିରାଜ ଶ୍ରୀ ଜୟଦେବଙ୍କ ଜନ୍ମସ୍ଥାନ ରୂପେ ନିର୍ବିବାଦରେ ଗ୍ରହଣ କରାଯାଉଅଛି ।

ଏହି ଟୀକାର ଅନ୍ୟ ଏକ ବୈଶିଷ୍ଟ୍ୟ ହେଉଛି ଯେ ପରବର୍ତ୍ତୀ କାଳର ଟୀକାକାର ରାଣାକୁମ୍ଭ (ପ୍ରାୟ ୧୪୫୦ ଖ୍ରୀଷ୍ଟାବ୍ଦ) ଦ୍ୱାରା ବ୍ୟାଖ୍ୟାତ ନିମ୍ନଲିଖିତ ୧୭ଟି ଶ୍ଳୋକର ବ୍ୟାଖ୍ୟାନ କବିରାଜ ନାରାୟଣଙ୍କ ସର୍ବାଙ୍ଗସୁନ୍ଦରୀ ଟୀକା (ପ୍ରାୟ ୧୩୫୦ ଖ୍ରୀଷ୍ଟାବ୍ଦ)ରେ ପରିଦୃଷ୍ଟ ହୁଏନାହିଁ । ଯଥା—

| | | | |
|---|---|---|---|
| ପ୍ରଥମ | ସର୍ଗର ଶେଷ | ଶ୍ଳୋକ | (୧) ରାସୋଲ୍ଲାସ ଭରେଣ··· ହରି ପାତୁବଃ" । |
| ଦ୍ୱିତୀୟ | ,, | ,, | (୨) ସାକୂତସ୍ମିତ··· ନିବଃ କେଶବଃ । |
| ତୃତୀୟ | ,, | ,, | (୩) ତର୍ଯଙ୍କୁଣ୍ଠ··· କଣ୍ଠାଶୋର୍ମୟଃ । |
| ଚତୁର୍ଥ | ,, | ,, | (୪) ଦୃଷ୍ଟିବ୍ୟାକୁଳ··· କଂସଦ୍ୱିଷଃ । |

| | |
|---|---|
| ପଞ୍ଚମ ସର୍ଗର ଶେଷ ଶ୍ଳୋକ | (୫) ଗ୍ରାମୁଗ୍ଧ... ଦେବକୀନନ୍ଦନଃ । |
| ଷଷ୍ଠ ,, ,, | (୬) କଂଦ୍ରିଗ୍ରାମ୍ୟପି... ଗର୍ଭଗିରଃ । |
| ସପ୍ତମ ,, ,, | (୭) ପ୍ରାତଃମୀଳ... ନନ୍ଦାତ୍ମଜଃ୍ଣ୍। |
| ଅଷ୍ଟମ ସର୍ଗର ଶେଷ ଦୁଇ ଶ୍ଳୋକ | (୮) ତ ଦେବ ପଶ୍ୟତାଂ... ଲଜ୍ଜାଂଜନଯନ୍ତୁ |
| | (୯) ଅନ୍ତର୍ମୋହନ... ଶ୍ରେୟାଂସି ବଂଶୀରବଃ |
| ନବମ ସର୍ଗର ଶେଷ ଶ୍ଳୋକ | (୧୦) ସାନ୍ଦ୍ରାନନ୍ଦ... ବନ୍ଦାମହେ |
| ଦଶମ ,, ,, | (୧୧) ସ ପ୍ରୀତିଂତନୁତାଂ... କଂସସ୍ୟକୋଲାହଳଃ |
| ଏକାଦଶ ,, ଶେଷ ୩ଟି ଶ୍ଳୋକ | (୧୨) ସାନନ୍ଦଂନନ୍ଦସୂନୁ... ମାଲୋକୟନ୍ ବଃ |
| | (୧୩) ଜୟଶ୍ରୀବିନ୍ୟସ୍ତୈ... ମୁରଜିତଃ |
| | (୧୪) ସୌନ୍ଦର୍ଯ୍ୟୈକନିଧେ... ମୁକୁନ୍ଦୋମୁଦମ୍ |
| ଦ୍ୱାଦଶ ସର୍ଗର ତିନି ଶ୍ଳୋକ | (୧୫) ବ୍ୟାକୋଶ କେଶପାଶଃ...ମୁଗ୍ଧକାନ୍ତିର୍ଧିନୋତୁ |
| | (୧୬) ଇଷମ୍ଳିତଦୃଷ୍ଟିଃ... ଧୟନ୍ଦ୍ରାନନମ୍ |
| | (୧୭) ଇତ୍ଥଂକେଳିତତି - ମୁଦାସପଦମ୍ |

ମହାରାଷ୍ଟ୍ରର କବି ମଣ୍ଡିପଣ୍ଡିତଙ୍କ ବର୍ଣ୍ଣନା ଅନୁଯାୟୀ ଶ୍ରୀଜୈବ ଧିପଣ୍ଡିତଙ୍କ ଦ୍ୱାରା କବିରାଜ ଶ୍ରୀ ଜୟଦେବ କୃତ ଶ୍ରୀ ଗୀତଗୋବିନ୍ଦରେ ସ୍ୱକୃତ ଗ୍ରନ୍ଥରୁ ଚତୁର୍ବିଂଶତିଟି ଶ୍ଳୋକ ସନ୍ନିବିଷ୍ଟ କରାଯାଇଥିଲା । କବିରାଜ ଶ୍ରୀ ନାରାୟଣ ଦାସଙ୍କ ଦ୍ୱାରା ପରିତ୍ୟକ୍ତ ଉଦ୍ଧୃତ ସପ୍ତଦଶଟି ଶ୍ଳୋକ ଉତ୍କଳ ରାଜା ପ୍ରଣୟନ କରିଥିବା ଆପାତତଃ ସ୍ଥିର କରାଯାଇ ପାରେ ।

## (୫) ମାନାଙ୍କ ନୃପତି କୃତ 'ଟିପ୍ପଣିକା' —

ମାନାଙ୍କ ନୃପତି କୃତ ଶ୍ରୀ ଗୀତଗୋବିନ୍ଦର 'ଟିପ୍ପଣିକା' ନାମ୍ନୀ ଟୀକାର ଖଣ୍ଡିଏ ପୋଥି ପୁନସ୍ଥ 'ଭଣ୍ଡାରକର ପ୍ରାଚ୍ୟଗବେଷଣା ସଂସ୍ଥା'ର ପୋଥି ଭଣ୍ଡାରରେ ସଂରକ୍ଷିତ । (୧୨) ଅଳ୍ପଦିନ ହେଲା ଏହା ଇଂରେଜୀ ଭାଷାରେ ମୁଦ୍ରିତ ଓ ପ୍ରକାଶିତ ହୋଇଅଛି । (୧୩) ଏହାର ମୂଳାଂଶ ନିମ୍ନରେ ଉଦ୍ଧାର କରାଗଲା ।

---

(୧୨) Cat. Vol. XIII, pt. I. - Kāvya p. 253.

(୧୩) ଡକ୍ଟର ଭି. ଏମ୍. କୁଲକର୍ଣ୍ଣୀଙ୍କ ଦ୍ୱାରା ସମ୍ପାଦିତ ଏବଂ ଲାଲଭାଇ ଦଲପତଭାଇ ଭାରତୀୟ ସଂସ୍କୃତି ବିଦ୍ୟା ମନ୍ଦିର (ଆହମଦାବାଦ) ଦ୍ୱାରା ପ୍ରକାଶିତ ।

"ଓଁ ନମଃ ବାସୁଦେବାୟ"
ଚରଣାଂ ସ୍ଥାବରଣାଂଚ ଯେନ ମୁକ୍ତିକୃତା ପୁରା
ସର୍ବଜ୍ଞାୟ ନମସ୍ତସ୍ମୈ ଜ୍ଞାନଦାୟେଽଚ୍ୟୁତାତ୍ମନେ ॥ ୧
କବୀନାଂ ମତମାଲୋକ୍ୟ ସତାଂଚ ସୁଖବୃଦ୍ଧୟେ
କୃତାଟିପ୍ପଣିକା ମୁଖ୍ୟା ମାନାଙ୍କେନ ମନ୍ମଭୂଜା ॥ ୨
ପ୍ରୀତୟେ ବାସୁଦେବସ୍ୟ ସଦ୍ୟଃ ପାପାପନୁତ୍ତୟେ
ଗୀତଗୋବିନ୍ଦକଂ କାବ୍ୟଂ ଜୟଦେବ ଚକାର ହ ॥ ୩"

## ଟୀକାର ରଚନାକାଳ—

ଟୀକାର ରଚନାକାଳ ବା ଟୀକାକାରଙ୍କ ପରିଚୟ ସମ୍ବନ୍ଧରେ ଟୀକାରେ କୌଣସି ଉଲ୍ଲେଖ ମିଳେ ନାହିଁ। କିନ୍ତୁ ବଂଗୀୟ ଟୀକାକାର ବୃହସ୍ପତି ରାୟମୁକୁଟଙ୍କ ଦ୍ୱାରା ୧୪୩୧ ଖ୍ରୀଷ୍ଟାବ୍ଦରେ ରଚିତ ଅମରକୋଷ ଟୀକାରେ ମାନାଙ୍କ ରଚିତ ଗ୍ରନ୍ଥରୁ ଉଦ୍ଧୃତ ମିଳେ। ଅତଏବ ସେ ୧୪୩୧ ଖ୍ରୀଷ୍ଟାବ୍ଦର ନିଶ୍ଚୟ ପୂର୍ବବର୍ତ୍ତୀ। ପଞ୍ଚଦଶ ଶତାବ୍ଦୀରେ ଗୁଜରାଟୀ ଅକ୍ଷରରେ ଲିଖିତ ଏକ ସଚିତ୍ର ଗୀତଗୋବିନ୍ଦ ପୋଥିରେ ମାନାଙ୍କ କୃତ 'ଟିପ୍ପଣିକା'ର ପ୍ରତିଲିପି ଥିବାରୁ ସେ ଏହା ପୂର୍ବରୁ ଆବିର୍ଭୂତ ହୋଇଥିବା ସ୍ଥିର କରାଯାଇ ପାରେ। (୧୪) 'ବୃନ୍ଦାବନ କାବ୍ୟ' ଓ 'ମେଘାଭ୍ୟୁଦୟ' ନାମକ ଅନ୍ୟ ଦୁଇଟି ଗ୍ରନ୍ଥ ମାନାଙ୍କ ଦ୍ୱାରା ରଚିତ ହୋଇଥିବାର ଜଣାଯାଏ।

## ଟୀକାର ବୈଶିଷ୍ଟ୍ୟ —

ଏହି ଟୀକାରେ ବ୍ୟାଖ୍ୟାତ ଶେଷ ଶ୍ଳୋକ ହେଉଛି।

ଯଦ୍‌ଗାନ୍ଧର୍ବକଳାସୁ··· ଶ୍ରୀ ଗୀତଗୋବିନ୍ଦତଃ ॥

ଏଥିରେ 'ରସିକପ୍ରିୟା' ଟୀକାରେ ବ୍ୟାଖ୍ୟାତ ନିମ୍ନଲିଖିତ ଶ୍ଳୋକ ଗୁଡ଼ିକର ବ୍ୟାଖ୍ୟା ମିଳେ ନାହିଁ। ଯଥା—

| | | |
|---|---|---|
| ଦ୍ୱିତୀୟ ସର୍ଗର ଶେଷ ଶ୍ଳୋକ | (୧) ସାକୂତ ସ୍ମିତ··· | ନବକେଶବଃ। |
| ତୃତୀୟ ,, ,, | (୨) ତିର୍ଯ୍ୟକ୍‌କଣ୍ଠ··· | କଣ୍ଠାକ୍ଷୋର୍ମିୟୁଃ। |
| ପଞ୍ଚମ ,, ,, | (୩) ରାଧାମୁଗ୍ଧ ମୁଖାରବିନ୍ଦ···ଶ୍ରୀଦେବକୀନନ୍ଦନଃ | |

---

(୧୪). Journal of the University of Bombay, Vol. III, part-V, p. 125.

| | |
|---|---|
| ଷଷ୍ଠ ସର୍ଗର ଶେଷ ଶ୍ଳୋକ | (୪) କଂସଶ୍ରାମ୍ୟସି··· ଗର୍ଭାଚିରଃ ॥ |
| ସପ୍ତମ ,, ,, | (୫) ସାନ୍ଦ୍ରାନନ୍ଦପୁରନ୍ଦର··· ବନ୍ଦାମହେ । |
| ,, ,, ,, | (୬) ପ୍ରାତର୍ନୀଳନଚୋଳ··· ନନ୍ଦାତ୍ମଜଃ ॥ |
| ଅଷ୍ଟମ ,, ,, | (୭) ଅନ୍ତର୍ମୋହନମୌଳି··· ଶ୍ରେୟାଂସିବଂଶୀରବଃ |
| ଦଶମ ,, ,, | (୮) ପ୍ରୀତିବସ୍ତନୁତାଂ··· ବ୍ୟାମୋହକୋଲାହଳଃ |
| ଏକାଦଶ ,, ,, | (୯) ଜୟଶ୍ରୀବିନ୍ୟସ୍ତୈ··· ମୁରଜିତଃ । |
| ,, ,, ,, | (୧୦) ସୌନ୍ଦର୍ଯ୍ୟୈକନିଧେ··· ମୁକୁନ୍ଦୋମୁଦମ୍ |
| ଦ୍ୱାଦଶ ,, ,, | (୧୧) ସାନନ୍ଦଂନନ୍ଦସୂନୁ··· ମାଲୋକୟନ୍ ବଃ |
| | (୧୨) ପର୍ଯ୍ୟଙ୍କୀକୃତ··· ହରିଃ ପାତୁବଃ ॥ |
| | (୧୩) ସ୍ୱାଧ୍ୱୀ ମାଧ୍ୱୀକଚିନ୍ତା··· ଶଶ୍ୱତ୍‌ବଚାଂସି |
| | (୧୪) ଶ୍ରୀଭୋଜଦେବ··· କବିତ୍ୱମସ୍ତୁ । |
| | (୧୫) ବ୍ୟାକୋଶ କେଶପାଶଃ··· ମୁଗ୍‌ଧକାନ୍ତ୍ୟର୍ଥିନୋତ୍ତ |
| | (୧୬) ଇଷନ୍ମୀଳିତଦୃଷ୍ଟି··· ଧୟନ୍ତ୍ୟାନନମ୍ |
| | (୧୭) ଇତ୍ଥଂକେଳିତତି··· ସ୍ମିତାମୁଦାସମ୍ପାଦନମ୍ । |

## (୬) ବୃହସ୍ପତି ମିଶ୍ର 'ରାୟମୁକୁଟ' କୃତ 'ଶ୍ରୀଗୀତଗୋବିନ୍ଦ ଟୀକା' —

ବୃହସ୍ପତି ମିଶ୍ର ରାୟମୁକୁଟ କୃତ ଅମରକୋଷରେ 'ପଦଚନ୍ଦ୍ରିକା' ନାମକ ଟୀକାରୁ ଜଣାଯାଏ ଯେ ସେ ରାଢ଼ଦେଶରେ (ପଶ୍ଚିମ ବଙ୍ଗ) କୁଳୀନ ବ୍ରାହ୍ମଣ କୁଳରେ ଜନ୍ମ ଗ୍ରହଣ କରିଥିଲେ । ଯଥା—

'ରାଢ଼ାୟାମପି ଗାଢ଼ନିର୍ମଳକୁଳକ୍ଷ୍ମାଭୃଦ୍ଭବଂ କୁଳୀନାଗ୍ରଣୀ
ଯଃ ପ୍ରାପଦ୍ ପ୍ରଣତଃ ପରଂ ହରିପଦଦ୍ୱନ୍ଦାରବିନ୍ଦେ ଚ ଯଃ ॥

ତାଙ୍କ ଜନ୍ମସ୍ଥାନ ଥିଲା ମୁର୍ଶିଦାବାଦର ୩୦ ମାଇଲ ଦକ୍ଷିଣରେ ଅବସ୍ଥିତ ଭାଗୀରଥୀ ତୀରବର୍ତ୍ତୀ ମହନ୍ତ ଗ୍ରାମ । ସେ ବଂଗ ସୁଲତାନ ଜଲାଲୁଦ୍ଦିନ୍ ମହମ୍ମଦ ସାହ (୧୪୧୫-୧୦୩୧ ଖ୍ରୀଷ୍ଟାବ୍ଦ) ସଭା ପଣ୍ଡିତ ଥିଲେ ଓ ନିଜର ପ୍ରଗାଢ଼ ପାଣ୍ଡିତ୍ୟ ଯୋଗୁଁ ତାଙ୍କଠାରୁ 'ରାୟମୁକୁଟ' ପଦବୀ ପ୍ରାପ୍ତ ହୋଇଥିଲେ । ସେ ଅମରକୋଷ, ରଘୁବଂଶ, କୁମାର ସମ୍ଭବ, ଶିଶୁପାଳ ବଧ, ମେଘଦୂତ, କାବ୍ୟ ପ୍ରକାଶ ଓ ଶ୍ରୀ ଗୀତଗୋବିନ୍ଦର ଟୀକା ରଚନା କରିଥିଲେ । ତାଙ୍କ ଦ୍ୱାରା ସଙ୍କଳିତ ଧର୍ମଶାସ୍ତ୍ରର ନାମ ହେଉଛି 'ସ୍ମୃତିରତ୍ନହାର' । ତତ୍‌କୃତ ଶ୍ରୀ ଗୀତଗୋବିନ୍ଦ ଟୀକାର ଗୋଟିଏ ପୋଥି କଲିକତା

ଏସିଆଟିକ ସୋସାଇଟି ପୁସ୍ତକାଗାରରେ ସଂରକ୍ଷିତ । ଏଥିରେ 'ସର୍ବାଙ୍ଗସୁନ୍ଦରୀ ଟୀକା'ର ଦୁଇଟି ସର୍ଗ ମଧ୍ୟ ନକଲ ହୋଇଛି । (୧୫)

ଶ୍ରୀ ହରେକୃଷ୍ଣ ମୁଖୋପାଧ୍ୟାୟଙ୍କ ଆଲୋଚନାରୁ ଜଣାଯାଏ ଯେ ରାୟମୁକୁଟଙ୍କ ଟୀକାରେ 'ଶ୍ରୀଗୀତଗୋବିନ୍ଦମ୍' ଦ୍ୱାଦଶ ସର୍ଗର 'ମୀଲଦ୍ଧ୍ୱାନ୍ତି ମିଳଦ୍' ଓ 'ବ୍ୟାଲୋଳ-କେଶପାଶ'ର ବ୍ୟାଖ୍ୟା ମିଳେନାହିଁ । ପରନ୍ତୁ ଏହାର ଶେଷ ଆଡକୁ କେତେକ ନୂତନତ୍ୱ ଦେଖାଯାଏ । (୧୬)

## (୭) ମିବାର ମହାରଣା କୁମ୍ଭକର୍ଣ୍ଣ ନରେନ୍ଦ୍ର କୃତ 'ରସିକପ୍ରିୟା ଟୀକା'

ରାଜସ୍ଥାନ ଅନ୍ତର୍ଗତ ମିବାର ରାଜ୍ୟର ଇତିହାସ ପ୍ରସିଦ୍ଧ ମହାରଣା କୁମ୍ଭକର୍ଣ୍ଣ ନରେନ୍ଦ୍ର ପ୍ରାୟ ୧୪୫୦ ଖ୍ରୀଷ୍ଟାବ୍ଦ ପୂର୍ବରୁ 'ଶ୍ରୀଗୀତଗୋବିନ୍ଦମ୍'ର 'ରସିକ ପ୍ରିୟା' ନାମ୍ନୀ ଏକ ଉପାଦେୟ ଟୀକା ରଚନା କରିଥିଲେ (୧୭) । ରାଜକବି ଏହାର ପ୍ରଥମ ମଙ୍ଗଳାଚରଣ ଶ୍ଳୋକରେ ଶ୍ରୀ ରାଧାକୃଷ୍ଣ, ଦ୍ୱିତୀୟ ଶ୍ଳୋକରେ 'ଲକ୍ଷ୍ମୀନାରାୟଣ' ଓ ତୃତୀୟ ଶ୍ଳୋକରେ ହର ପାର୍ବତୀଙ୍କୁ ସ୍ତୁତି କରି ଗ୍ରନ୍ଥ ଆରମ୍ଭ କରିଛନ୍ତି । ଚତୁର୍ଥ ଶ୍ଳୋକରେ ଟୀକାର ନାମୋଲ୍ଲେଖ ଦେଖାଯାଏ । ଯଥା—

"ନତ୍ୱା ମତଙ୍ଗଭରତପ୍ରମୁଖାନ୍ ସୁଗୀତ-
ସଙ୍ଗୀତଶାସ୍ତ୍ରନିପୁଣାନ୍ ଜୟଦେବ ବାଗ୍‌ମ୍
ଶ୍ରୀକୁମ୍ଭକର୍ଣ୍ଣ ନୃପତି ବିବୃତିଂ ତନୋତି
ଗାନଂ ବିଧାୟ ସରସ ରସିକପ୍ରିୟାହ୍ୱାମ୍" ।

ଏହାର ପରବର୍ତ୍ତୀ ଆଠଟି ଶ୍ଳୋକରେ ରାଜକବିଙ୍କ ବଂଶାବଳୀ ଓ ତାଙ୍କ ପୂର୍ବ ପୁରୁଷମାନଙ୍କ କୀର୍ତ୍ତିକଳାପ ବର୍ଣ୍ଣିତ ହୋଇଅଛି । ଏହା ପରେ ସେ ପୁନର୍ବାର ନିଜ ଟୀକାର ବିଶେଷତ୍ୱ ପ୍ରକାଶ କରିଛନ୍ତି । ଯଥା—

---

(୧୫) (କ) I H. Q Vol. XVII, p. 442, R.C Hazra
(ଖ) ,, Vol. XXVIII,p. 215, Ahmad Hasan Dani
(ଗ) ,, Vol. XXIX, p. 183, D. C. Bhattacharya

(୧୬) "କବି ଜୟଦେବ ଓ ଶ୍ରୀ ଗୀତଗୋବିନ୍ଦ" (ବଙ୍ଗଳା) ପୃ ୨୨୪

(୧୭) ବମ୍ବେ ନିର୍ଣ୍ଣୟ ସାଗର ପ୍ରେସ ଦ୍ୱାରା ୧୯୩୭ରେ ମୁଦ୍ରିତ ।

"ସ ଶ୍ରୀଶଙ୍କରପ୍ରବନ୍ଧଃ ପ୍ରବୀଣଃ ସଙ୍ଗୀତଶାସ୍ତ୍ରେଽଖିଳଶାସ୍ତ୍ରବେତ୍ତା
ଶ୍ରୀଗୀତଗୋବିନ୍ଦ ସୁଗୀତକସ୍ୟ ନବ୍ୟାକୃତଂ ବ୍ୟାକୃତମାତନୋତ" ।୧୩।

ଟୀକା ଶେଷରେ ମଧ୍ୟ ସେ 'ଶ୍ରୀ ଗୀତଗୋବିନ୍ଦ'ର ବୈଶିଷ୍ଟ୍ୟ ଓ ସ୍ୱୀୟ ପାଣ୍ଡିତ୍ୟର ଗମ୍ଭୀରତା ଓ ପ୍ରଗାଢ଼ତା ପ୍ରଖ୍ୟାପନ କରିଛନ୍ତି । ଯଥା—

"ସ୍ୱଭାବଗମ୍ଭୀରତୟା ନିସର୍ଗଦୁର୍ବୋଧଭାବାଃ ଜୟଦେବବାଚଃ
ବ୍ୟାକର୍ତ୍ତୁମୀଷ୍ଟେ ଯଦି ତା ନରେଶଃ ଶ୍ରୀକୁମ୍ଭକର୍ଣ୍ଣୋ ନପରଃ କଦାଚିତ୍

× × ×

ସୁବର୍ଣ୍ଣମୁକ୍ତାଫଳ ନିର୍ମିତେୟଂ ସଦ୍‌ଵୃତ୍ତମାଳା ସୁମନଃ ପ୍ରସକ୍ତା
ଶ୍ରୀକୁମ୍ଭ ଭୂମିପତିନୋପଯୁକ୍ତା ଶ୍ରୀବାସୁଦେବାର୍ପଣମସ୍ତୁ ସାଧ୍ୱୀ"

ଦ୍ୱାଦଶ ସର୍ଗର ପୁଷ୍ପିକାରେ ବ୍ୟବହୃତ 'ଶ୍ରୀ ମେଦପାଟ ସମୁଦ୍ରସମ୍ଭବ ରୋହଣୀରମଣ' 'ଶ୍ରୀ ରାଜାଧିରାଜହମ୍ମୀର ଚାରଚରଣ କମଳ', 'ପ୍ରତାପଶୋଭିତ ଅଶେଷ ଯବନ ପଲ୍ଲବ' 'ଶ୍ରୀଗୟାବିମୁକ୍ତସ୍ଥଳ କଳ୍ପିତ ପିତୃକୁଳ ବିମୁକ୍ତଦାତା', 'ଶ୍ରୀଚିତ୍ରକୂଟାଧିପତି' 'ଅଭିନବ ଭରତ', 'ଯବନୀପଦ୍ମିନୀ ଭାନୁ', 'ମହାମହେନ୍ଦ୍ର' ପ୍ରଭୃତି ବିରୁଦାବଳି ଦ୍ୱାରା ରାଜକବି କୁମ୍ଭକର୍ଣ୍ଣଙ୍କ ଶୌର୍ଯ୍ୟ, ପରାକ୍ରମ, ଆଭିଜାତ୍ୟ, ପାଣ୍ଡିତ୍ୟ ବଂଶମର୍ଯ୍ୟାଦା ଓ ଧର୍ମପ୍ରାଣତା ପ୍ରଖ୍ୟାପିତ ହୋଇଛି । ଟୀକା ଶେଷରେ ଥିବା ଦୀର୍ଘ ପ୍ରଶସ୍ତିରୁ ଜଣାଯାଏ ଯେ, ସେ ବେଦ ମାର୍ଗର ପୁନଃସ୍ଥାପନ ପାଇଁ ଉଦ୍ୟମ କରିଥିଲେ (ବେଦମାର୍ଗ ସ୍ଥାପନ ଚତୁରାନନ) । ସକଳ ତୀର୍ଥ ଦର୍ଶନ ପୂର୍ବକ ଗୟା ତୀର୍ଥକୁ ଯବନ ଅଧିକାରରୁ ମୁକ୍ତ କରିଥିଲେ । ତାଙ୍କ ମାତାଙ୍କ ନାମ ସୌଭାଗ୍ୟ ଦେବୀ, ପିତାଙ୍କ ନାମ ଶ୍ରୀମୋକଳ, ପତ୍ନୀଙ୍କ ନାମ ଅପୂର୍ବ ଦେବୀ ।

ଏହି ଟୀକା ରଚନା ପରେ ସମଗ୍ର ଉତ୍ତର ଭାରତରେ ବିଶେଷତଃ ରାଜସ୍ଥାନ ଅଞ୍ଚଳରେ ଶ୍ରୀ ଗୀତଗୋବିନ୍ଦର ଆଦର ଓ ଗୌରବ ବୃଦ୍ଧିଲାଭ କରିଥିଲା । ଉତ୍କଳାଧିପତିଙ୍କ ଦ୍ୱାରା ଶ୍ରୀ ଗୀତଗୋବିନ୍ଦରେ ପ୍ରକ୍ଷିପ୍ତ ସମସ୍ତ ଶ୍ଳୋକର ବ୍ୟାଖ୍ୟାନ ଏଥିରେ ପ୍ରଦତ୍ତ ହୋଇଥିବାରୁ ପରବର୍ତ୍ତୀ ଅଧ୍ୟାୟରେ ଏ ସମ୍ପର୍କରେ ଆଲୋଚନା କରାଯିବ ।

## (୮) ମହାମହୋପାଧ୍ୟାୟ ଶ୍ରୀ ଶଙ୍କର ମିଶ୍ର ପ୍ରଣୀତ 'ରସମଞ୍ଜରୀ' ଟୀକା

ପ୍ରସିଦ୍ଧ ମୈଥିଳ ପଣ୍ଡିତ ମହାମହୋପାଧ୍ୟାୟ ଭବନେଶ୍ୱର ମିଶ୍ରଙ୍କ ପୁତ୍ର ମହାମହୋପାଧ୍ୟାୟ ଶ୍ରୀ ଶଙ୍କର ମିଶ୍ର ଶ୍ରୀ ଶାଳନାଥ ନାମକ ରାଜାଙ୍କ ପୃଷ୍ଠପୋଷକତାରେ

ଶ୍ରୀ ଗୀତଗୋବିନ୍ଦର 'ରସମଞ୍ଜରୀ' ଟୀକା ରଚନା କରିଥିବା ପ୍ରତି ସର୍ଗର ପୁଷ୍ପିକାରୁ ଜଣାଯାଏ । ଯଥା—

"ଇତିଶ୍ରୀମହାମହୋପାଧ୍ୟାୟ ଭବନେଶ୍ୱର ମିଶ୍ରାତ୍ମଜ ଶ୍ରୀ ମହାମହୋପାଧ୍ୟାୟ ଶଂକର ମିଶ୍ରବିରଚିତାୟାଂ ଶ୍ରୀ ଶାଳନାଥ କାରିତାୟାଂ ଗୀତଗୋବିନ୍ଦ-ଟୀକାୟାଂ ରସମଞ୍ଜରୀ ସମାଖ୍ୟାୟାଂ ଦ୍ୱାଦଶଃ ସର୍ଗଃ ।" (୧୮)

ଐତିହାସିକ କାଶୀପ୍ରସାଦ ଜୟସ୍ୱାଲଙ୍କ ବିବରଣ ଅନୁଯାୟୀ ଶଙ୍କର ମିଶ୍ର ସରିସବ ନାମକ ଗ୍ରାମରେ ଜନ୍ମ ଗ୍ରହଣ କରିଥିଲେ ଏବଂ ଉକ୍ତ ଗ୍ରାମରେ ତାଙ୍କ ଦ୍ୱାରା ନିର୍ମିତ ଦୁର୍ଗା ମନ୍ଦିର ଅଦ୍ୟାପି ବିଦ୍ୟମାନ । ତାଙ୍କର ଆଶ୍ରୟଦାତା ବ୍ରାହ୍ମଣ ବଂଶୀୟ ଶାଳନାଥ, କାଶୀ ନିକଟବର୍ତ୍ତୀ କାଂଶେଉଆର ନାମକ କ୍ଷୁଦ୍ର ରାଜ୍ୟର ଶାସକ ଥିଲେ । (୧୯) ଷଡ଼ ଦର୍ଶନରେ ତାଙ୍କର ପ୍ରଗାଢ ପାଣ୍ଡିତ୍ୟ ଥିଲା । ସେ 'ତର୍କଭାଷା ଓ କଣାଦ ରହସ୍ୟ' ଗ୍ରନ୍ଥଦ୍ୱୟର ପ୍ରଣେତା । ସେ ନ୍ୟାୟସୂତ୍ର ଉପରେ 'ବାଦିବିନୋଦ' ଓ 'ବୈଶେଷିକ ସୂତ୍ର' ଉପରେ 'ଉପସ୍କାର' ନାମକ ଭାଷ୍ୟଦ୍ୱୟ ରଚନା କରିଥିଲେ । (୨୦)

ଉକ୍ତ ଟୀକାର ନବମ, ଏକାଦଶ ଓ ଦ୍ୱାଦଶ ସର୍ଗର ଶେଷରେ ଥିବା ନିମ୍ନୋଦ୍ଧୃତ ତିନୋଟି ଶ୍ଳୋକରୁ ତାଙ୍କ କବିତ୍ୱ ଓ ପାଣ୍ଡିତ୍ୟର ପରିଚୟ ମିଳେ ।

"ବାଲ୍ୟାଦ୍ୟୁନାବଧମତସମ୍ଭ୍ରମମବ କିଂଚ-
ଦ୍‌ପରିତୋଷ ଜାତମଥ କେବଳମପ୍ରମେୟମ୍ ।
ଯସ୍ୟାଲଂକୃତ ରହସ୍ୟମଲଙ୍ଘି ତସ୍ମି-
ନ୍ନାୟ ମୂଲମିହ ସନ୍ତଭିରିବ ଭବ୍ୟମ୍ (ନବମଃ ସର୍ଗଃ)
ତର୍କାଦୋଳନକର୍କଶାପି ସୁମତର୍ଯାଦ୍ୱିବରିଵାନ୍ୱିତା
ଶୃଙ୍ଗାରାଦିରସୋନ୍ମୟାଦକୁଣ୍ଠା ସା ଶଙ୍କରେ କେବଳା

---

(୧୮) ଏହି ଟୀକା ରାଣାକୁମ୍ଭଙ୍କ 'ରସିକପ୍ରିୟା' ଟୀକା ସହ ବମ୍ବେ ନିର୍ଣ୍ଣୟ ସାଗର ପ୍ରେସ ଦ୍ୱାରା ୧୯୩୭ରେ ମୁଦ୍ରିତ ଓ ପ୍ରକାଶିତ ହୋଇଛି ।

(୧୯) A Des Cat. of Sans. Mss. in the A.S Bengal, Shāstri, Vol. II, p. 122.

(୨୦) A Des. Cat. of Mss. in Mithila, Vol II, p. 48.

କଂ ଶମ୍ଭୋରପରସବଶ୍ୱବଜୟୋ ଦୃପ୍ତସ୍ମରଦ୍ୱେଷିତା
ଦେହାର୍ଦ୍ଧକୃତକାମିନୀପ୍ରଣୟିତା ଚ କ୍ୱାପି ଦେଶାନ୍ତରେ ।
(ଏକାଦଶଃ ସର୍ଗଃ)

ଏତଚ୍ଚକାବ୍ୟବବେଚନପ୍ରଣୟିନାଂ ସଚ୍ଚ୍ୟସଶୟୋନ୍ମୂଳନା
ତତ୍ପୂର୍ଣ୍ଣାଂସଚ ହରସ୍ତୁତୌ ପ୍ରତିପଦବ୍ୟାଖ୍ୟାସୁ ମେ ଘଣିତମ୍
ତେନ ପ୍ରୀତମନାସ୍ତନୋତୁ ସତତଂ ଶ୍ରେୟୋ ମମ ଶ୍ରୀପତିଃ
ଶତ୍ୱମ୍ପଙ୍ଗଳମାତନୋତ୍ୱପି ସତାଂ ସଲାପତାଂ ଶୃଣ୍ୱତାମ୍ ।"
(ଦ୍ୱାଦଶଃ ସର୍ଗଃ)

'ସଂସ୍କୃତ ସାହିତ୍ୟର ଇତିହାସ' ପ୍ରଣେତା ଡ଼ଃ ବରଦାଚାରୀଙ୍କ ମତରେ ଏହି ପ୍ରସିଦ୍ଧ ଦାର୍ଶନିକ କବି ଶଙ୍କର ମିଶ୍ର ପଞ୍ଚଦଶ ଶତାବ୍ଦୀରେ ଆବିର୍ଭୂତ ହୋଇଥିଲେ ।(୨୧) ଉତ୍ତର ଭାରତରେ ସୁପ୍ରଚଳିତ ଏହି ଟୀକାର ମଙ୍ଗଳାଚରଣରେ ଶଙ୍କର ମିଶ୍ର 'ଶଙ୍କର ଓ ପାର୍ବତୀ'ଙ୍କ କୋଡ଼ରେ କ୍ରୀଡ଼ାରତ ଗଣେଶ ଓ ଶ୍ୟାମସୁନ୍ଦର ବସୁଦେବ ପୁତ୍ରଙ୍କୁ ପ୍ରଣିପାତ ପୂର୍ବକ ଏହା ରଚନା ଆରମ୍ଭ କରିଛନ୍ତି । ଏଥିରେ 'ରସିକପ୍ରିୟା ଟୀକା'ରେ ବ୍ୟାଖ୍ୟାତ ନିମ୍ନୋକ୍ତ ୧୬ଟି ଶ୍ଲୋକର ଅର୍ଥ ଦିଆଯାଇ ନାହିଁ ।

ପ୍ରଥମ ସର୍ଗ— ଭାସୋଲ୍ଲାସଭରେଣ, ଦ୍ୱିତୀୟ— ସାକୂତସ୍ମିତ,
ତୃତୀୟ— ତିର୍ଯକ୍‌କଣ୍ଠବିଲୋଳ, ଚତୁର୍ଥ— ବୃଷ୍ଟିବ୍ୟାକୁଳ ଗୋକୁଳ,
ପଞ୍ଚମ— ରାଧାମୁଗ୍ଧ ମୁଖାରବିନ୍ଦ, ଷଷ୍ଠ— କଂଶ୍ୱାସ୍ୟପି,
ସପ୍ତମ— ପ୍ରାତର୍ନୀଳନିଚୋଳ, ଅଷ୍ଟମ— ଅନ୍ତର୍ମୋହନ,
ନବମ—ସାନ୍ଦ୍ରାନନ୍ଦ ପୁରନ୍ଦର, ଦଶମ— ସ ପ୍ରୀତିଂ ତନୁତାଂ,
ଏକାଦଶ— ସାନନ୍ଦଂ ନନ୍ଦସୂନୁ, ଜୟ ଶ୍ରୀବିନ୍ୟସ୍ତୈ, ସୌନ୍ଦର୍ଯୈକନିଧେ
ଦ୍ୱାଦଶ— ବ୍ୟାକୋଶ କେଶପାଶ, ଈଷନ୍ମୀଳିତଦୃଷ୍ଟି
ଇତ୍ୟଥଂକେଳିତତି... ପ୍ରୀତାମୁଦାଂ ସମ୍ପଦମ୍ ।

ତେଣୁ ଶଙ୍କର ମିଶ୍ର 'ସର୍ବାଙ୍ଗସୁନ୍ଦରୀ ଟୀକା'ର ଆଦର୍ଶ ଅନୁସରଣ କରି ପ୍ରକ୍ଷିପ୍ତ ଶ୍ଲୋକ ଗୁଡ଼ିକ ତ୍ୟାଗ କରିଛନ୍ତି । ତାଙ୍କ ଦ୍ୱାରା ପ୍ରଦତ୍ତ 'ବାଚଃ ପଲ୍ଲବୟତି'ଶ୍ଲୋକର

---

(୨୧) 'A History of Sanskrta literature' by Dr. V. Varadachari, p. 2:0.

ବ୍ୟାଖ୍ୟାନ ସରଳ, ପ୍ରାଞ୍ଜଳ ଓ ପ୍ରମାଣସିଦ୍ଧ ହୋଇଥିବାରୁ ଏ ଗ୍ରନ୍ଥରେ ଅନ୍ୟତ୍ର ଉଦ୍ଧୃତ ହୋଇଛି ।

## (୯) ଶ୍ରୀ ଲକ୍ଷ୍ମଣ ସୂରି କୃତ 'ଶ୍ରୁତିରଞ୍ଜିନୀ' ଟୀକା—

ଓଡ଼ିଶା ରାଜ୍ୟ ସଂଗ୍ରହାଳୟରେ ସଂରକ୍ଷିତ 'ଶ୍ରୁତିରଞ୍ଜିନୀ' ଟୀକାର ଏକ ପୋଥିର ପ୍ରଥମ ସର୍ଗରେ ଥିବା ପୁଷ୍ପିକାରେ ଟୀକାକାରଙ୍କ ନିମ୍ନୋକ୍ତ ପରିଚୟ ମିଳେ । ଯଥା —

"ଇତିଶ୍ରୀମଦଖିଳବିଦ୍ୟାପାରିବାର ଦକ୍ଷିଣାମୂର୍ତ୍ତିମହାଦେବ ପ୍ରସାଦଲବ୍ଧ-ବିଦ୍ୟ ପୂର୍ବୋତ୍ତର-ମୀମାଂସା-ଶବ୍ଦ-ତର୍କ-ସାହିତ୍ୟ ସାର୍ବଭୌମ **ଚରକୁରି କଣ୍ଡୁ-ଭଟ୍ଟୋପାଧ୍ୟାୟାନୁଜେନ** ସର୍ବାମ୍ନିକାଗର୍ଭସୂକ୍ତିମୁକ୍ତାମଣିନ **ଲକ୍ଷ୍ମଣସୂରିଣା** ଗୀତଗୋବିନ୍ଦ ବ୍ୟାଖ୍ୟାନେ ପ୍ରଥମ ସର୍ଗଃ ॥"

ଗ୍ରନ୍ଥଶେଷରେ ଅଛି "ଇତିଶ୍ରୀ ଗୀତଗୋବିନ୍ଦ ବ୍ୟାଖ୍ୟାୟାଂ **ଶ୍ରୁତିରଞ୍ଜିନୀ ସମାଖ୍ୟାୟାଂ** ଦ୍ୱାଦଶଃ ସର୍ଗଃ ।" (୨୨)

ଉଦ୍ଧୃତିରୁ ଜଣାଯାଏ ଯେ, ଲକ୍ଷ୍ମଣ ସୂରିଙ୍କ ଜ୍ୟେଷ୍ଠଭ୍ରାତା ଚରକୁରି ଗ୍ରାମ ନିବାସୀ ସର୍ବାମ୍ନିକାଗର୍ଭଜାତ କଣ୍ଡୁ ଭଟ୍ଟୋପାଧ୍ୟାୟ 'ଅଖିଳବିଦ୍ୟାପାରିବାର' ପୂର୍ବ ଓ ଉତ୍ତର ମୀମାଂସା, ଶବ୍ଦ, ତର୍କ ଓ ସାହିତ୍ୟରେ ସାର୍ବଭୌମ ଥିଲେ । ଅନ୍ୟସୂତ୍ରରୁ ଜଣାଯାଏ ଯେ, କଣ୍ଡୁଭଟ୍ଟ ଭାରତ ପ୍ରସିଦ୍ଧ ପଣ୍ଡିତ ଭଟ୍ଟୋଜୀଙ୍କ ଭାଇ ରଙ୍ଗୋଜୀଙ୍କ ପୁତ୍ର ଥିଲେ । ସେ ତର୍କପ୍ରଦୀପ, ତର୍କରତ୍ନ, ନ୍ୟାୟପଦାର୍ଥଦୀପିକା ଓ ବ୍ୟାକରଣ ବିଷୟକ ପାଞ୍ଚଖଣ୍ଡ ଗ୍ରନ୍ଥ ରଚନା କରିଥିବାର ଜଣାଯାଏ । ସେ ମହୀଶୂର ଅନ୍ତର୍ଗତ କ୍ଷୁଦ୍ରକେଲାଡ଼ି ରାଜ୍ୟର ସାମନ୍ତରାଜା ଭେଙ୍କଟପା ନାୟକ ଓ ତାଙ୍କ ଉତ୍ତରାଧିକାରୀ ବୀରଭଦ୍ର ନାୟକ ସଭାମଣ୍ଡନ କରୁଥିଲେ । ସେ ନିଜର ପାଣ୍ଡିତ୍ୟ ଯୋଗୁଁ ଦକ୍ଷିଣଭାରତରେ ବିଶେଷ ଖ୍ୟାତିଲାଭ କରିଥିଲେ । ତେଣୁ ଲକ୍ଷ୍ମଣସୂରି ସ୍ୱୀୟ ଜ୍ୟେଷ୍ଠଭ୍ରାତାଙ୍କ ପାଣ୍ଡିତ୍ୟ ବିଷୟ ପୁଷ୍ପିକାରେ ପ୍ରକାଶ କରି ବିଶେଷ ଗର୍ବ ଓ ଗୌରବ ଅନୁଭବ କରିଛନ୍ତି । (୨୩)

---

(୨୨) A Des. Cat. of Sans, Mss. of Orissa, Vol. II by Sri K. N. Mahapatra, No. 64. p. 48.

(୨୩) 'The Chronology of the works of Kondabhatta', Studies in Indian literary history' by Dr P. K. Gode, Vol III, pp. 207-212

ଇତିହାସ ପ୍ରସିଦ୍ଧ ଟାଲିକୋଟା ଯୁଦ୍ଧ (୧୫୬୫ ଖ୍ରୀଷ୍ଟାବ୍ଦ)ରେ ସ୍ୱନାମଧନ୍ୟ କୃଷ୍ଣଦେବ ରାୟଙ୍କ ଜାମାତା ଓ ବିଜୟନଗର ସମ୍ରାଟ ରାମରାୟ ପରାଜିତ ଓ ନିହତ ହେବାରୁ ବିଜାପୁର ପ୍ରଭୃତିର ସୁଲତାନମାନେ ତାଙ୍କ ରାଜ୍ୟର ଅଧିକାଂଶ ଅଧିକାର କରିନେଲେ । ରାମରାୟଙ୍କ ମୃତ୍ୟୁ ପରେ ତାଙ୍କ ସାନଭାଇ ତିରୁମଲ୍ଲ ରାୟ ପେନକୋଣ୍ଡା ନାମକ ସ୍ଥାନରେ ରାଜଧାନୀ ପ୍ରତିଷ୍ଠା କରି ସଙ୍କୁଚିତ ବିଜୟନଗର ରାଜ୍ୟ ପନ୍ଦରବର୍ଷ କାଳ ଶାସନ କରିଥିଲେ (୧୫୬୫—୧୫୮୦) (୨୪) । ପଣ୍ଡିତ ଲକ୍ଷ୍ମଣସୂରି (ତାଙ୍କର ଅନ୍ୟନାମ ଲକ୍ଷ୍ମୀଧର) ତିରୁମଲ୍ଲ ରାୟଙ୍କ ଆଶ୍ରୟରେ ରହି ଶ୍ରୀଗୀତଗୋବିନ୍ଦମ୍‌ର ଶ୍ରୁତି-ରଞ୍ଜିନୀ ଟୀକା ରଚନା କରିଥିଲେ । ତେଣୁ କେତେକ ପୋଥିରେ ତିରୁମଲ୍ଲଙ୍କ ପ୍ରଶସ୍ତିବାଚକ ଶ୍ଳୋକ ଓ ପୁଷ୍ପିକା ଦେଖାଯାଏ । (୨୫) ଯଥା—

"ସୋଽୟଂ **ତିରୁମଲ୍ଲ କ୍ଷୋଣୀପତି** ଗୂଢାର୍ଥସଂଭ୍ରମମ୍
ଶ୍ରୁଣ୍ୱନ୍ ମୃଦୁପଦଂ ଗୀତଗୋବିନ୍ଦଂ ଧ୍ୱନିମଣ୍ଡିତମ୍
ଅସ୍ୟାର୍ଥଦୀପିକାଂ ଟୀକାଂ କରୋତି ଶ୍ରୁତିରଞ୍ଜିନୀମ୍
ଲୋକୋପକାର ହାରା ଶ୍ରୀରାମସ୍ୟ ପ୍ରୀତୟେ ପ୍ରଭୋଃ
ନ ବୁଧ୍ୟତେ ବୁଧୈର୍ଗୀତଗୋବିନ୍ଦସ୍ୟାର୍ଥ ଗୌରବମ୍
ବ୍ୟାଖ୍ୟାନଶତକେନାପି ବିହାୟ ଶ୍ରୁତିରଞ୍ଜିନୀମ୍ ।"

ଟୀକାର ଶେଷସର୍ଗର ପୁଷ୍ପିକା ହେଉଛି—

"ଇତି ଶ୍ରୀମଦଖିଳଦେବତା ସାର୍ବଭୌମରଘୁନାଥପ୍ରସାଦଲବ୍ଧ ସକଳ ସାମ୍ରାଜ୍ୟ ସୋମାନ୍ୱୟାଭରଣ ଧରଣୀବରାହ ଆତ୍ରେୟଗୋତ୍ର ପବିତ୍ର ଶ୍ରୀରଙ୍ଗରାଜ ପୁତ୍ର **ତିରୁମଲ୍ଲରାଜବରଚିତାୟାଂ** ଗୀତଗୋବିନ୍ଦବ୍ୟାଖ୍ୟାୟାଂ **ଶ୍ରୁତିରଞ୍ଜିନୀ ସମାଖ୍ୟାୟାଂ** ଦ୍ୱାଦଶଃ ସର୍ଗଃ"

କେବଳ ମଙ୍ଗଳାଚରଣ ଶ୍ଳୋକ ଓ ପୁଷ୍ପିକା ବ୍ୟତୀତ ତିରୁମଲ୍ଲ ରାୟଙ୍କ ନାମାଙ୍କିତ ଟୀକା ଓ ଲକ୍ଷ୍ମଣସୂରି ରଚିତ ଟୀକା ମଧ୍ୟରେ ବିଶେଷ ସାମଞ୍ଜସ୍ୟ ଲକ୍ଷିତ ହେଉଥିବାରୁ ଲକ୍ଷ୍ମଣସୂରି ନିଜ ପୃଷ୍ଠପୋଷକଙ୍କ ନାମରେ ଏହାକୁ ପରେ ଭଣିତ କରି-

(୨୪) 'Sources of Vijayanagar history' by S. Krishnaswami Ayyangar, M. A. pp 212-215.

(୨୫) A Des. Cat. of Sans. Mss. in the G. O. M. Library, Madras. Vol XX—Kāvya, pp 7988-7996.

ଥିବାର ଜଣାଯାଏ । ଲକ୍ଷ୍ମୀଧରଙ୍କର ଅନ୍ୟ ଜୟଦେବକୃତ 'ପ୍ରସନ୍ନରାଘବ ନାଟକମ୍'ର 'ଅଗ୍ରାହ୍ଯାର୍ଥଦୀପିକା' ନାମକ ଟୀକା ରଚନା କରି ଭରୁମଲ୍ଲ ରାୟଙ୍କ ଭଗ୍ନୀଷ୍ଟ୍ରୁ ସିଦ୍ଧରାଜୁ ତିମରାଜୁଙ୍କ ନାମରେ ଉତ୍ସର୍ଗ କରିଥିଲେ । 'ଷଡ଼ଭାଷାଚନ୍ଦ୍ରିକା' ନାମକ ପ୍ରାକୃତ ବ୍ୟାକରଣ ମଧ୍ୟ ତାଙ୍କର ଅନ୍ୟ ଏକ କୃତି । ଭରୁମଲ୍ଲଙ୍କ ରାଜତ୍ୱ କାଳରେ (୧୫୬୫–୧୫୮୦) ପ୍ରଣୀତ ପାଣ୍ଡିତ୍ୟପୂର୍ଣ୍ଣ ଶ୍ରୁତିରଞ୍ଜନୀ ଟୀକାର ତାମିଲନାଡୁ, ଆନ୍ଧ୍ର ଓ ଉତ୍କଳରେ ବିଶେଷ ପ୍ରଚଳନ ଥିଲା ।

## (୧୦) ଶ୍ରୀଚୈତନ୍ୟ ଦାସ କୃତ 'ବାଲବୋଧିନୀ ଟୀକା'—

ଶ୍ରୀଚୈତନ୍ୟ ଭକ୍ତ ଶ୍ରୀଚୈତନ୍ୟ ଦାସଙ୍କ ରଚିତ 'ଶ୍ରୀ ଗୀତଗୋବିନ୍ଦ'ର ବାଲବୋଧିନୀ ବଙ୍ଗଦେଶରେ ସୁପ୍ରଚଳିତ ଥିବାରୁ ଏହାର ବହୁ ମୁଦ୍ରିତ ସଂସ୍କରଣ ମିଳେ । ଶ୍ରୀଚୈତନ୍ୟ ଦାସ ଜୀବନର ଶେଷ ଭାଗ ବୃନ୍ଦାବନସ୍ଥ ଶ୍ରୀ ଗୋବିନ୍ଦଙ୍କ ସେବାରେ ଯାପନ କରିଥିବାରୁ ସେ ବୈଷ୍ଣବ ଭକ୍ତମାନଙ୍କ ମଧ୍ୟରେ **'ପୂଜାରୀ ଗୋସ୍ୱାମୀ'** ନାମରେ ପରିଚିତ । ବୃନ୍ଦାବନ ଅବସ୍ଥାନ କାଳରେ ସେ 'ଶ୍ରୀଗୀତଗୋବିନ୍ଦମ୍'ର ବାଲବୋଧିନୀ ଟୀକା ଓ 'କୃଷ୍ଣକର୍ଣ୍ଣାମୃତମ୍'ର ସୁବୋଧିନୀ ଟୀକା ରଚନା କରିଥିଲେ । ଯଥା—

> "**ଶ୍ରୀଗୋବିନ୍ଦପାଦସେବା** ଯଦବଦ୍ଧିତଗତାସ୍ୱୟମ୍
> ଚୈତନ୍ୟ ଦାସସ୍ୟ **ବାଲବୋଧିନୀ** ସ୍ୟାତ୍ ସତାଂମୁଦେ" (୨୭)
>
> ଓ
>
> "**ଶ୍ରୀଗୋବିନ୍ଦପାଦସେବା** ପ୍ରଭବାଦୁଦିତାସ୍ୱୟଂ
> ଟୀକା ଚୈତନ୍ୟଦାସସ୍ୟ **କୃଷ୍ଣକର୍ଣ୍ଣାମୃତାଶ୍ରୟା"** ।

କବିରାଜ କୃଷ୍ଣ ଦାସ ଗୋସ୍ୱାମୀଙ୍କ ଦ୍ୱାରା ୧୫୩୭ ଶକାବ୍ଦ ବା ୧୬୧୫ ଖ୍ରୀଷ୍ଟାବ୍ଦରେ ରଚିତ 'ଶ୍ରୀଚୈତନ୍ୟ ଚରିତାମୃତ' ଗ୍ରନ୍ଥ ପାଠରୁ ଜଣାଯାଏ ଯେ, କୃଷ୍ଣ ଦାସଙ୍କ ଉକ୍ତ ଗ୍ରନ୍ଥ ରଚନା ସମୟରେ ଶ୍ରୀ ଚୈତନ୍ୟ ଦାସ ଗୋବିନ୍ଦ ପୂଜକ ଭାବରେ ଖ୍ୟାତି ଅର୍ଜ୍ଜନ କରିଥିଲେ । ଯଥା—

---

(୨୭) 'A Des. Cat. of Sans. Mss. of Orissa' by Sri K N. Mahapatra, Vol. II, pp. 40-41.

'ପଣ୍ଡିତ ଗୋସାଇଁର ଶିଷ୍ୟ ଭୂଗର୍ଭଗୋସାଇଁ ।
ଗୌରକଥା ବିନା ଆର ମୁଖେ ଅନ୍ୟ ନାହିଁ ।
ତାର ଶିଷ୍ୟ **ଗୋବିନ୍ଦପୂଜକ ଚୈତନ୍ୟଦାସ"**
(ଚୈ.ଚ. ଅଷ୍ଟମ ପରିଚ୍ଛେଦ) (୨୭)

ଅତଏବ ବୃନ୍ଦାବନ ଅବସ୍ଥାନ କାଳରେ ରଚିତ ବାଳବୋଧିନୀ ଟୀକାକୁ ୧୬୦୦ରୁ ୧୬୧୫ ଖ୍ରୀଷ୍ଟାବ୍ଦ ମଧ୍ୟରେ ଅବସ୍ଥାପିତ କରାଯାଇ ପାରେ । ମିଜନ୍ୟମ ପୋଥିରୁ ଏହାର ଅନ୍ୟାଂଶ ନିମ୍ନରେ ଉଦ୍ଧାର କରାଗଲା । (୨୮)

"ଶ୍ରୀଚୈତନ୍ୟକୃପାସିନ୍ଧୁକଣୋଲ୍ଲସେନ କେନଚିତ୍
ଟୀକା ସଗୃହ୍ୟତେ ଗୀତଗୋବିନ୍ଦସ୍ୟ ସମାସତଃ ।
ସ୍ୱପ୍ନଂ ବୋଦ୍ଧୁମଭିପ୍ରାପ୍ତଂ ଜୟଦେବମହାମତେଃ
ଟୀକା ଚୈତନ୍ୟଦାସେନ ଗ୍ରଥ୍ୟତେ ବାଲବୋଧିନୀ"

---

ଅତ୍ର ବ୍ୟାକରଣାଦୀନାଂ ଗ୍ରନ୍ଥବାହୁଲ୍ୟଭୀତିତଃ
ବହୁଭିର୍ନକୃତା ସା ସ୍ୟାତ୍ ଟୀକାନ୍ତରେ ବୁଧୈଃ ।
ବକ୍ତବ୍ୟା ବାଲବୋଧିନ୍ୟାଂ ଶବ୍ଦାର୍ଥଃ ଶବ୍ଦବେଦଭିଃ
ଭାବାର୍ଥଦୀପିକାୟାଞ୍ଚ ଭାବୋ ଭାବାର୍ଥଲୋଲୁପୈଃ ॥"

---

ଟୀକାକାର ଚୈତନ୍ୟ ଦାସ ପାଠକମାନଙ୍କ ସୁଖବୋଧ ନିମିତ୍ତ 'ବାଲବୋଧିନୀ ଟୀକା'ରେ କଠିନ ଓ ଦୁର୍ବୋଧ ଶବ୍ଦ ଗୁଡ଼ିକର ଅର୍ଥ ପ୍ରଦାନ କରିଛନ୍ତି । କିନ୍ତୁ ଶ୍ରୀ ଗୀତଗୋବିନ୍ଦର ଗୂଢ଼ଭାବାର୍ଥ ଜିଜ୍ଞାସୁମାନଙ୍କ ପାଇଁ ତାଙ୍କ ଦ୍ୱାରା 'ଭାବାର୍ଥ ଦୀପିକା' ନାମକ ଅନ୍ୟ ଏକ ଟୀକା ଗ୍ରଥିତ ହୋଇଥିଲା । କିନ୍ତୁ ଉକ୍ତ ଟୀକାର ସନ୍ଧାନ ଏପର୍ଯ୍ୟନ୍ତ ମିଳିନାହିଁ ।

ସେ କବିରାଜ ନାରାୟଣ ଦାସ କୃତ ସର୍ବାଙ୍ଗ ସୁନ୍ଦରୀ ଟୀକାରେ ପ୍ରଦତ୍ତ 'ବାଚଃ ପଲ୍ଲବୟତି' ଶ୍ଳୋକର ବ୍ୟାଖ୍ୟାନକୁ ସମର୍ଥନ କରିଛନ୍ତି । କିନ୍ତୁ ସର୍ବାଙ୍ଗ ସୁନ୍ଦରୀ ଟୀକାରେ ପରିତ୍ୟକ୍ତ ନିମ୍ନଲିଖିତ ଶ୍ଳୋକ ଗୁଡ଼ିକର ଅର୍ଥ ଏଥିରେ ଦିଆଯାଇଛି ।

---

(୨୭) 'ପ୍ରାଚୀନ ବାଙ୍ଗଲା ସାହିତ୍ୟେର ଇତିହାସ' ଡକ୍ଟର ତମୋନାଶ ଚନ୍ଦ୍ର ଦାସଗୁପ୍ତ ପ୍ରଣୀତ ପୃ ୫୪୬ ।

(୨୮) 'A Des. Cat. of Sans. Mss. of Orissa' Vol. II, by Sri K. N Mahapatra, Nos. 46 & 47, pp. 40-41.

ପ୍ରଥମ ସର୍ଗ — ରସୋଲ୍ଲାସଭରେଣ, ଦ୍ୱିତୀୟ ସର୍ଗ — ସାକୂତସ୍ମିତ, ତୃତୀୟ ସର୍ଗ — ତଯ୍ୟର୍ଥକ୍‌ଖଣ୍ଡ, ଚତୁର୍ଥ ସର୍ଗ — ବୃଷ୍ଟିବ୍ୟାକୁଳ, ପଞ୍ଚମ ସର୍ଗ — ରାଧାମୁଗ୍ଧ, ଷଷ୍ଠ ସର୍ଗ — କଂସେଶ୍ରୋମ୍ୟପି, ସପ୍ତମ ସର୍ଗ — ପ୍ରାତର୍ମାଳ, ଅଷ୍ଟମ ସର୍ଗ — ତଂ ଦେବଂ ପଶ୍ୟନ୍ତ୍ୟା ଓ ଅନ୍ତର୍ମୋହନ, ନବମ ସର୍ଗ— ସାନ୍ଦ୍ରାନନ୍ଦ, ଦଶମ ସର୍ଗ — ପ୍ରୀତଃ ବସ୍ତନୁତାଂ, ଏକାଦଶ ସର୍ଗ — ଜୟଶ୍ରୀ ବନ୍ୟସ୍ତେ, ଦ୍ୱାଦଶ ସର୍ଗ — ବ୍ୟାଲୋଳ କେଶପାଶ, ପର୍ଯ୍ୟଙ୍କୀକୃତ, (ରସିକପ୍ରିୟାରେ ନାହିଁ) ଏହାର ଶେଷ ଶ୍ଳୋକ ହେଉଛି 'ଭୋଜଦେବପ୍ରଭବସ୍ୟ······

## (୧୧) ଶେଷ 'କମଳାକର' କୃତ 'ସାହିତ୍ୟରତ୍ନାକର ଟୀକା'—

ଶେଷ କମଳାକର କୃତ 'ସାହିତ୍ୟରତ୍ନାକର ଟୀକା'ର ତିନୋଟି ପୋଥି ପୁନାସ୍ଥ ଭଣ୍ଡାରକର ପ୍ରାଚ୍ୟବିଦ୍ୟା ପ୍ରତିଷ୍ଠାନ ପୋଥିଭଣ୍ଡାରରେ ସଂରକ୍ଷିତ । (୨୯) ଏଥିମଧ୍ୟରୁ ଗୋଟିକର ନକଲ ସମୟ 'ସମ୍ବତ୍ ୧୬୩୭, ପୌଷମାସ, କୃଷ୍ଣପକ୍ଷ ପଞ୍ଚମୀ ଗୁରୁବାର ରୂପେ ବର୍ଣ୍ଣିତ ହୋଇଥିବାରୁ ଗଣନା ଅନୁସାରେ ଏହା ୧୫୭୯ ଖ୍ରୀଷ୍ଟାବ୍ଦ ଡ଼ିସେମ୍ବର ମାସ ୧୦ ତାରିଖ ହେଉଛି । (୩୦) ଅତଏବ ଟୀକାକର୍ତ୍ତା କମଳାକର ଏହା ପୂର୍ବରୁ ଆବିର୍ଭୂତ ହୋଇଥିବା ସୁନିଶ୍ଚିତ ।

ଗ୍ରନ୍ଥ ଆରମ୍ଭରେ ଥିବା ଚାରୋଟି ମଙ୍ଗଳାଚରଣ ଶ୍ଳୋକ ମଧ୍ୟରୁ ପ୍ରଥମଟିରେ ବାଣୀ (ସରସ୍ୱତୀ), ଦ୍ୱିତୀୟରେ ଶିବ, ତୃତୀୟରେ ଗଣେଶ ଓ ଚତୁର୍ଥରେ ମଧୁରିପୁ (କୃଷ୍ଣ)ଙ୍କ ସ୍ତୁତିଗାନ ପୂର୍ବକ ନିଜ କୃତ ଟୀକା ବିଷୟ ଉଲ୍ଲେଖ କରିଛନ୍ତି । ଯଥା—

"ପଦବାକ୍ୟ ପ୍ରମାଣେଷୁ ପ୍ରତିବାଦିବିନୋଦନଂ
ପିତରଂ ମେ ଅନାଥାଖ୍ୟଂ ମଲ୍ଲାମ୍ବାଂଚ ନମାମ୍ୟହଂ । ୫
ଶ୍ରୀଗୀତଗୋବିନ୍ଦସମୁଦ୍ରଜାନ ସଦ୍ଭାବରତ୍ନାନ ରସୈକସତ୍ନେ
ଗ୍ରଥ୍ନାତି ଶେଷଃ କମଳାକରୋଽୟଂ ପରୀକ୍ଷତାଂ ତାନ ବିଦଗ୍ଧରାଜ ।

ଶେଷାଂଶ— "ସନ୍ତିତ୍ରୈବଚନୈ ବିରଂଚଗିରିଜାପ୍ରାଣେଶମୁଖୈର୍ମୁହୁ-
ନାନାକାରବିଚିତ୍ରସାରଚତୁରୈ ର୍ନିଦ୍ୟାପି ନିଷ୍ଟିପ୍ୟତେ
ତଦ୍‌ଭାବୈଃ ଜୟଦେବକାବ୍ୟ······ ସଂଶୋଧ୍ୟତେ
ରାଜ୍ୟଂ ବସ୍ତୁ ତକାସ୍ତୁ ଚେତସିପରଂ ସାରସ୍ୟସୀମାଜୁଷାଂ । ୧

---

(୨୯) 'Des. Cat. of Mss. in the B. O. R. Institute' Poona, Vol. XIII. Kāvyas. Nos 201-203, pp 245-249.

(୩୦) "An Indian Ephemeris" by Pillai Vol V p 366.

'ପଣ୍ଡିତ ଗୋସାଇଁର ଶିଷ୍ୟ ଭୁଗର୍ଭଗୋସାଇଁ ।
ଗୌରକଥା ବିନା ଆର ମୁଖେ ଅନ୍ୟ ନାହିଁ ।
ତାର ଶିଷ୍ୟ **ଗୋବିନ୍ଦପୂଜକ ଚୈତନ୍ୟଦାସ"**
(ଚୈ·ଚ· ଅଷ୍ଟମ ପରିଚ୍ଛେଦ) (୨୭)

ଅତଏବ ବୃନ୍ଦାବନ ଅବସ୍ଥାନ କାଳରେ ରଚିତ ବାଳବୋଧିନୀ ଟୀକାକୁ ୧୬୦୦ରୁ ୧୬୧୫ ଖ୍ରୀଷ୍ଟାବ୍ଦ ମଧ୍ୟରେ ଅବସ୍ଥାପିତ କରାଯାଇ ପାରେ । ମିଜଜପୁମ ଧପାଥିରୁ ଏହାର ଅନ୍ୟାଂଶ ନିମ୍ନରେ ଉଦ୍ଧାର କରାଗଲା । (୨୮)

"ଶ୍ରୀଚୈତନ୍ୟକୃପାସିନ୍ଧୁ କଣୋନ୍ମତ୍ତେନ କେନଚିତ୍
ଟୀକା ସଗୁମ୍ଫ୍ୟତେ ଗୀତଗୋବିନ୍ଦସ୍ୟ ସମାସତଃ ।
ସ୍ୱପ୍ନଂ ବୋଦ୍ଧୁମଭିପ୍ରାୟଂ ଜୟଦେବମହାମତେଃ
ଟୀକା ଚୈତନ୍ୟଦାସେନ ଗ୍ରଥ୍ୟତେ ବାଳବୋଧିନୀ"

---

ଅତ୍ର ବ୍ୟାକରଣାଦୀନାଂ ଗ୍ରନ୍ଥବାହୁଲ୍ୟଭୀତିତଃ
ବକ୍ତୁଂ ନ ଶକ୍ୟତେ ସା ସ୍ୟାତ୍ ଗ୍ରନ୍ଥାନ୍ତରେ ବୁଧୈଃ ।
ବକ୍ତବ୍ୟା ବାଳବୋଧିନ୍ୟାଂ ଶବ୍ଦାର୍ଥଃ ଶବ୍ଦବେଦିଭିଃ
ଭାବାର୍ଥଦୀପିକାୟାଞ୍ଚ ଭାବୋ ଭାବାର୍ଥଲୋଲୁପୈଃ ॥"

---

ଟୀକାକାର ଚୈତନ୍ୟ ଦାସ ପାଠକମାନଙ୍କ ସୁଖବୋଧ ନିମିତ୍ତ 'ବାଳବୋଧିନୀ ଟୀକା'ରେ କଠିନ ଓ ଦୁର୍ବୋଧ ଶବ୍ଦ ଗୁଡ଼ିକର ଅର୍ଥ ପ୍ରଦାନ କରିଛନ୍ତି । କିନ୍ତୁ ଶ୍ରୀ ଗୀତଗୋବିନ୍ଦର ଗୂଢ଼ଭାବାର୍ଥ ଜିଜ୍ଞାସୁମାନଙ୍କ ପାଇଁ ତାଙ୍କ ଦ୍ୱାରା 'ଭାବାର୍ଥ ଦୀପିକା' ନାମକ ଅନ୍ୟ ଏକ ଟୀକା ରଚିତ ହୋଇଥିଲା । କିନ୍ତୁ ଉକ୍ତ ଟୀକାର ସନ୍ଧାନ ଏପର୍ଯ୍ୟନ୍ତ ମିଳିନାହିଁ ।

ସେ କବିରାଜ ନାରାୟଣ ଦାସ କୃତ ସର୍ବାଙ୍ଗ ସୁନ୍ଦରୀ ଟୀକାରେ ପ୍ରଦତ୍ତ 'ବାଚଃ ପଲ୍ଲବୟତ୍ୟ' ଶ୍ଳୋକର ବ୍ୟାଖ୍ୟାନକୁ ସମର୍ଥନ କରିଛନ୍ତି । କିନ୍ତୁ ସର୍ବାଙ୍ଗ ସୁନ୍ଦରୀ ଟୀକାରେ ପରିତ୍ୟକ୍ତ ନିମ୍ନଲିଖିତ ଶ୍ଳୋକ ଗୁଡ଼ିକର ଅର୍ଥ ଏଥିରେ ଦିଆଯାଇଛି ।

---

(୨୭) 'ପ୍ରାଚୀନ ବାଙ୍ଗଲା ସାହିତ୍ୟେର ଇତିହାସ' ଡକ୍ଟର ତମୋନାଶ ଚନ୍ଦ୍ର ଦାସଗୁପ୍ତ ପ୍ରଣୀତ ପୃ ୫୪୨ ।

(୨୮) 'A Des. Cat. of Sans. Mss. of Orissa' Vol. II, by Sri K. N Mahapatra, Nos. 46 & 47, pp. 40-41.

ପ୍ରଥମ ସର୍ଗ — ସମୋଲ୍ଲାସବର୍ଣ୍ଣନେଣ, ଦ୍ୱିତୀୟ ସର୍ଗ — ସାକ୍ରୋଶିତ, ତୃତୀୟ ସର୍ଗ — ଉତ୍କଣ୍ଠିତ, ଚତୁର୍ଥ ସର୍ଗ — ବୃଷ୍ଣିବ୍ୟାକୁଳ, ପଞ୍ଚମ ସର୍ଗ — ସାଧାମୁଗ୍ଧ, ଷଷ୍ଠ ସର୍ଗ — କଂଶତ୍ରାସ୍ୟପି, ସପ୍ତମ ସର୍ଗ — ପ୍ରାତଶୀଳ, ଅଷ୍ଟମ ସର୍ଗ — ତଂ ଦେବଂ ପଶ୍ୟନ୍ତୀ ଓ ଅନ୍ତର୍ମୋଦନ, ନବମ ସର୍ଗ— ସାନ୍ଦ୍ରାନନ୍ଦ, ଦଶମ ସର୍ଗ— ପ୍ରୀତଃ ବସ୍ତନୁତାଂ, ଏକାଦଶ ସର୍ଗ — ଜୟଶ୍ରୀ ବନ୍ୟସ୍ତେ, ଦ୍ୱାଦଶ ସର୍ଗ — ବ୍ୟାଲୋଲ କେଶପାଶ, ପର୍ଯ୍ୟଙ୍କୀକୃତ, (ରସିକପ୍ରିୟାରେ ନାହିଁ) ଏହାର ଶେଷ ଶ୍ଳୋକ ହେଉଛି 'ଭୋଜଦେବପ୍ରଭବସ୍ୟ......

## (୧୧) ଶେଷ 'କମଳାକର' କୃତ 'ସାହିତ୍ୟରତ୍ନାକର ଟୀକା'—

ଶେଷ କମଳାକର କୃତ 'ସାହିତ୍ୟରତ୍ନାକର ଟୀକା'ର ତିନୋଟି ପୋଥି ପୁନାସ୍ଥ ଭଣ୍ଡାରକର ପ୍ରାଚ୍ୟବିଦ୍ୟା ପ୍ରତିଷ୍ଠାନ ପୋଥିଭଣ୍ଡାରରେ ସଂରକ୍ଷିତ । (୨୯) ଏଥିମଧ୍ୟରୁ ଗୋଟିକର ନକଲ ସମୟ 'ସମ୍ବତ୍ ୧୬୩୬, ପୌଷମାସ, କୃଷ୍ଣପକ୍ଷ ପଞ୍ଚମୀ ଗୁରୁବାର ରୂପେ ବର୍ଣ୍ଣିତ ହୋଇଥିବାରୁ ଗଣନା ଅନୁସାରେ ଏହା ୧୫୭୯ ଖ୍ରୀଷ୍ଟାବ୍ଦ ଡ଼ିସେମ୍ବର ମାସ ୧୦ ତାରିଖ ହେଉଛି । (୩୦) ଅତଏବ ଟୀକାକର୍ତ୍ତା କମଳାକର ଏହା ପୂର୍ବରୁ ଆବିର୍ଭୂତ ହୋଇଥିବା ସୁନିଶ୍ଚିତ ।

ଗ୍ରନ୍ଥ ଆରମ୍ଭରେ ଥିବା ଚାରୋଟି ମଙ୍ଗଳାଚରଣ ଶ୍ଳୋକ ମଧ୍ୟରୁ ପ୍ରଥମଟିରେ ବାଣୀ (ସରସ୍ୱତୀ), ଦ୍ୱିତୀୟରେ ଶିବ, ତୃତୀୟରେ ଗଣେଶ ଓ ଚତୁର୍ଥରେ ମଧୁରିପୁ (କୃଷ୍ଣ)ଙ୍କ ସ୍ତୁତିଗାନ ପୂର୍ବକ ନିଜ କୃତ ଟୀକା ବିଷୟ ଉଲ୍ଲେଖ କରିଛନ୍ତି । ଯଥା—

"ପଦବାକ୍ୟ ପ୍ରମାଣେଷୁ ପ୍ରନ୍ତବାଦବିନୋଦିନଂ
ପିତରଂ ମେ ଅନାଥାଖ୍ୟଂ ମଲ୍ଲାମ୍ବାଂଚ ନମାମ୍ୟହଂ । ୫
**ଶ୍ରୀଗୀତଗୋବିନ୍ଦସମୁଦ୍ରକାନ୍ତ ସଦ୍ଭାବରତ୍ନାନି** ରସୈକସ୍ଥବେ
ଗ୍ରଥ୍ନାତି ଶେଷଃ କମଳାକରୋଽୟଂ ପରୀକ୍ଷିତାଂ ତାନି ବିଦଗ୍ଧସଙ୍ଘ ।

ଶେଷାଂଶ— "ଯନ୍ନିତ୍ୟୈବଚନୈ ର୍ବିରିଂଚଗିରିଜାପ୍ରାଣେଶମୁଖ୍ୟୈର୍ମୁହୁ-
ର୍ନାନାକାରବିଚାରସାରଚତୁରୈ ର୍ନାଦ୍ୟାପି ନିଶ୍ଚିୟତେ
ତଦ୍ଭାବୈଃ ଜୟଦେବକାବ୍ୟ...... ସଂଶୋଧିତେ
ରାଜ୍ୟଂ ବସ୍ତୁ ଚକାସ୍ତୁ ଚେତସିପରଂ ସାରସ୍ୟସୀମାଜୁଷାଂ । ୧

---

(୨୯) 'Des. Cat. of Mss. in the B. O. R. Institute' Poona, Vol. XIII. Kāvyas. Nos 201-203, pp 245-249.

(୩୦) "An Indian Ephemeris" by Pillai Vol V p 366.

ପ୍ରତ୍ତପ୍ରସୂତା ଗତ୍ତନାର୍ଥଶାସ୍ତ୍ରୈଃ ସଂବର୍ଦ୍ଧିତା ସୂକ୍ତକୁମାରକେସ୍ଥଂ
ଊଚତ୍ୟଚାରୁଣ୍ୟଭଙ୍ଗେକ୍ତିସଂଜ୍ଞା କାନ୍ତଂ ପତ୍ତଂ ପ୍ରାପ୍ୟଯଶଃ ପ୍ରସୂତାମ୍ ॥
ଇତ୍ତ ଶେଷକମଳାକର ବରଚତାୟାଂ ଗୀତଗୋବନ୍ଦବ୍ୟାଖ୍ୟାୟାଂ ସାହିତ୍ୟରତ୍ନ-ମାଳାୟାଂ ଦ୍ୱାଦଶଃ ସର୍ଗଃ । ସମାପ୍ତ ଟୀକା ।"

ବର୍ତ୍ତମାନ ଅବସ୍ଥାରେ 'ପାରଜାତହରଣ ଚମ୍ପୂ' ଓ 'କଂସବଧ' ପ୍ରଭୃତର ପ୍ରଣେତା ପ୍ରସିଦ୍ଧ 'ଶେଷକୃଷ୍ଣ'ଙ୍କ ସହତ(୩୧) ଏହାଙ୍କ ସମ୍ପର୍କ ନର୍ଣ୍ଣୟ ସମ୍ଭବପର ନୁହେଁ ।

## (୧୨) ଭଗବତ୍ ଦାସ ପ୍ରଣୀତ 'ରସକଦମ୍ବକଲ୍ଲୋଳନୀ' ଟୀକା—

ବହୁ ହିନ୍ଦୀ ଗ୍ରନ୍ଥ ପ୍ରଣେତା ବୃନ୍ଦାବନବାସୀ କବ ଭଗବଦ୍ଦାସ ଶ୍ରୀଗୀତ-ଗୋବନ୍ଦର 'ରସକଦମ୍ବକଲ୍ଲୋଳନୀ' ଟୀକା ରଚନା କରଥିବା ଟୀକା ଶେଷରେ ପ୍ରଦତ୍ତ ନମ୍ନୋଦ୍ଧୃତ ଶ୍ଳୋକ ଓ ଗଦ୍ୟାନୁଚ୍ଛେଦରୁ ଜଣାଯାଏ ।

"ପ୍ରଫୁଲ୍ଲଭଗବଜ୍ଜନଂ ରସକଦମ୍ବକଲ୍ଲୋଳନୀ
ପ୍ରଫୁଲ୍ଲୟତୁ ମୋହନେ ଭଜନତାନସମ୍ବର୍ଦ୍ଧିନୀ ।
ସମସ୍ତପଟୁବୃତ୍ତ୍ରିସଂକଳିତଗୀତଗୋବନ୍ଦତଃ
ପ୍ରଶସ୍ତରସଦୀପିକା ମଧୁରପୁଞ୍ଜମଞ୍ଜୁଷିକା

ଶ୍ରୀବୃନ୍ଦାବନେଶ୍ୱରପ୍ରିୟକୃତଚରଣପଙ୍କେରୁହ ମକରନ୍ଦାସ୍ୱାଦନପଟୁଚଂଚରକ ସଂଭାଷଣମଧ୍ୱାନନ୍ଦାଦୋଳନଚପଳହୃଦୟେନ ଶ୍ରୀମଦ୍ଭଗବଦ୍ଦାସେନ ଭଗବଜ୍ଜନପରତୋ-ଷାୟ ବରଚତେୟଂ ରସକଦମ୍ବକଲ୍ଲୋଳନୀ ଶ୍ରୀମଦ୍ରସବେଦ୍ଭ ର୍ଭଗବତ୍ପ୍ରିୟୈଃ ଆନନ୍ଦସନ୍ଦୋହ-ଦୀପତ ପରମୋଜ୍ଜ୍ୱଳରସାବଗାହିତମନସା ଅହର୍ନିଶ ବଗୃହଣୀୟମ୍ ।

ଇତଶ୍ରୀ ଗୀତଗୋବନ୍ଦସ୍ୟ ରସକଦମ୍ବକଲ୍ଲୋଳନୀ ଟୀକେୟଂ ସମାପ୍ତା ॥"

ଏହ ଟୀକାର ଆଲୋଚକ ଡ଼କ୍ଟର ପି: କେ: ଗୋଡ୍ଙ୍କ ଆଲୋଚନାରୁ ଜଣାଯାଏ ଯେ, ପୁନାସ୍ଥ 'ଭଣ୍ଡାରକର ପ୍ରାଚ୍ୟବଦ୍ୟା ଗବେଷଣା ସଂସ୍ଥା'ର ପୋଥି ଭଣ୍ଡାରରେ ଥିବା ଏହାର ଖଣ୍ଡିଏ ପୋଥିର ନକଲ ସମୟ ୧୬୮୪ ସମ୍ବତ୍ ବା ୧୬୨୮ ଖ୍ରୀଷ୍ଟାବ୍ଦ ହୋଇଥିବାରୁ ଏହା ତତ୍ପୂର୍ବରୁ ରଚତ ହୋଇଥିବା ସୁନଶ୍ଚିତ । ଏଥିରେ ସନାତନ ଗୋସ୍ୱାମୀଙ୍କ ଦ୍ୱାରା ୧୫୪୨ ଖ୍ରୀଷ୍ଟାବ୍ଦରେ ଗ୍ରଥିତ 'ଭଗବତ୍ ଭକ୍ତ

(୩୧) History of Sanskrit literature. V. Varadāchari p 116-161.

ରସାମୃତ ସିନ୍ଧୁ'ରୁ ବାକ୍ୟ ଉଦ୍ଧାର କରାଯାଇଥିବାରୁ ଏହା ନିଶ୍ଚୟ ତତ୍ପରବର୍ତ୍ତୀ । ତେଣୁ ଏହି ଟୀକା ଷୋଡ଼ଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ ନିର୍ମିତ ହୋଇଥିବା ସ୍ଥିର କରାଯାଇପାରେ । (୩୨)

## (୧୩) ପଣ୍ଡିତ ନାରାୟଣ ଭଟ୍ଟ ବିରଚିତ 'ପଦଦ୍ୟୋତନିକା' ଟୀକା—

ନାରାୟଣ ଭଟ୍ଟ ନାମକ ପଣ୍ଡିତ ଜନୈକ ଲକ୍ଷ୍ମୀଦାସଙ୍କ ପୁତ୍ର ଖିଷ ଦାସଙ୍କ ଦ୍ୱାରା ନିଯୁକ୍ତ ହୋଇ ଶ୍ରୀଗୀତଗୋବିନ୍ଦର 'ପଦଦ୍ୟୋତନିକା' ନାମକ ଟୀକା ରଚନା କରିଥିଲେ । ଟୀକା ଆରମ୍ଭରେ ନିମ୍ନଲିଖିତ ମଙ୍ଗଳାଚରଣ ଶ୍ଳୋକ ପରିଦୃଷ୍ଟ ହୁଏ ।

"ଭଦ୍ରାୟ ଭବତାଂ ଭୂୟାତ୍ କୃଷ୍ଣଃ ସଦ୍‌ଭକ୍ତିଭାବିତଃ
କାଳିନ୍ଦୀଜଳସଂସର୍ଗ ମେଦୁରଶ୍ୟାମୋଽନ୍ତସୁନ୍ଦରଃ ॥"

ଟୀକା ଶେଷରେ କବିଙ୍କର ନିମ୍ନୋକ୍ତ ପରିଚୟ ମିଳେ —

"ଲକ୍ଷ୍ମୀଦାସ ତନୁଜେନ ଖିଷଦାସେନ ଧୀମତା
କାରିତା ଗୀତଗୋବିନ୍ଦଟୀକେୟଂ ସୁଖଦାସ୍ତୁ ବଃ । ୧
ଖିତଦାସନିଯୁକ୍ତେନ କୃଷ୍ଣପଦ୍ମାମ୍ବୁସେବିନା
ନାରାୟଣେନ ସୁକୃତା ଗୀତଗୋବିନ୍ଦଟିପ୍ପଣୀ । ୨
ଟିପ୍ପଣୋଚ୍ଛେନ୍ନପାଠେ ବୈ ସ୍ଖଳିତଂ ସ୍ୟାତ୍ ପ୍ରମାଦତଃ
ନ କର୍ତ୍ତବ୍ୟ ମମାକ୍ଷେପୋ ଗନ୍ତବ୍ୟ ସ୍ଖଳିତଂ ଭବେତ୍ । ୩

ଇତିଶ୍ରୀ ଗୀତଗୋବିନ୍ଦ ଟୀକାୟାଂ **ନାରାୟଣଭଟ୍ଟ କୃତାୟାଂ ଖୀଷଦାସ କାରିତାୟାଂ ପଦଦ୍ୟୋତନିକାୟାଂ** ପ୍ରୀତପୀତାମ୍ବରଃ ନାମ ଦ୍ୱାଦଶଃ ସର୍ଗଃ ॥"

ପୁନାସ୍ଥ 'ଭଣ୍ଡାରକର ପ୍ରାଚ୍ୟ ଗବେଷଣା ସଂସ୍ଥା'ର ପୋଥିଭଣ୍ଡାରରେ ଏହି ଟୀକାର ଛଅଖଣ୍ଡ ପୋଥି ସଂରକ୍ଷିତ । (୩୩) କଲିକତାସ୍ଥ ଏସିଆଟିକ ସୋସାଇଟି ପୋଥିଭଣ୍ଡାରରେ ମଧ୍ୟ ଏହାର ଦୁଇଖଣ୍ଡି ପୋଥି ଅଛି । ଏହାର ଶେଷାଂଶରେ ନିମ୍ନଲିଖିତ ଅଧିକ ଶ୍ଳୋକ ରହିଛି ।

"ଗୋବିନ୍ଦଂ ଗରୁଡ଼ଧ୍ୱଜଂ ଭୟହରଂ ନୀଳୋତ୍ପଳଶ୍ୟାମଳମ୍
ରାଜୀବାୟତଲୋଚନଂ ଗୁଣନିଧିଂ ବିମ୍ବାଧରଂ ଶ୍ରୀଧରମ୍

---

(୩୨) 'Date of Rasakadamba Kallolini' Studies in Indian literary history by Dr. P. K Gode, pp 146-153

(୩୩) 'Des. Cat of Mss. Vol, XIII, part I. pp 226-234

ଦିବ୍ୟାନନ୍ଦମୟଂ ଧରାଧରଣୟଂ ଭକ୍ତାନୁପାଳଂ ବଭୂମ୍
ନାନାଭୂଷଣମଣ୍ଡିତାଙ୍ଗମମଲଂ ଦିବ୍ୟାଙ୍ଗଭୂଷଂ ଭଜେ"

ଏଥିରେ ସାଷଦାସ ପରିବର୍ତ୍ତେର 'ସାଖିଦାସ' ଓ 'ପଦଦ୍ୟୋତନିକା' ପରିବର୍ତ୍ତରେ 'ପ୍ରଦ୍ୟୋତନିକା' ପଦଦ୍ୱୟର ବ୍ୟବହାର ଦେଖାଯାଏ । ଟୀକାକାରଙ୍କ ନାମ ଲେଖାଯାଇଛି କେବଳ 'ନାରାୟଣ ପଣ୍ଡିତ' । (୩୪) ନାରାୟଣ ପଣ୍ଡିତ ଓ ତାଙ୍କ ଆଶ୍ରୟଦାସ 'ସାକ୍ଷିଦାସ'ଙ୍କ କୌଣସି ସନ୍ତୋଷଜନକ ପରିଚୟ ଏପର୍ଯ୍ୟନ୍ତ ମିଳିନାହିଁ ।

**ରଚନାକାଳ—** ପୁନାରେ ରକ୍ଷିତ ୧୯୨ ସଂଖ୍ୟକ ପୋଥିରେ ଏହାର ନକଲ ସମୟ ନିମ୍ନପ୍ରକାରେ ଲେଖାଯାଇଛି । ଯଥା— "ବସ୍ୱିଷ୍ଟତତ୍ତ୍ୱକଳା ପ୍ରମିତେଽବ୍ଦେ ଶୁକ୍ଳାତପସ୍ୟେ ଗୁରୁଦଶମ୍ୟାଂ ଚରେନ୍ତ ବାଟିକାନଗର୍ଯ୍ୟାଂ ମୌକନ୍ଦଃ ପୁଷ୍କରେ ବ୍ୟଲଖତ୍" । ଏହାକୁ ୧୬୩୪ ସମ୍ବତ୍ ରୂପେ ଅର୍ଥ କରାଯାଇଛି । କିନ୍ତୁ ପ୍ରକୃତରେ ଏହା ଅଷ୍ଟ (୮), ତତ୍ତ୍ୱ (୭) ଓ କଳା (୧୬) ଅର୍ଥାତ୍ ୧୬୭୮ ସମ୍ବତ୍ ବା ୧୬୨୨ ଖ୍ରୀଷ୍ଟାବ୍ଦ ହେବ । ତେଣୁ ନାରାୟଣ ପଣ୍ଡିତ ୧୬୨୨ ଖ୍ରୀଷ୍ଟାବ୍ଦ ପୂର୍ବରୁ ଆବିର୍ଭୂତ ହୋଇଥିବା ସୁନିଶ୍ଚିତ ।

## (୧୪) ନାରାୟଣ ଭଟ୍ଟ କୃତ 'ରସତରଙ୍ଗିଣୀ' ଟୀକା —

ଲଣ୍ଡନସ୍ଥ ଇଣ୍ଡିଆ ଅଫିସ ପୁସ୍ତକାଗାରରେ ନାରାୟଣ ଭଟ୍ଟ କୃତ ଶ୍ରୀଗୀତଗୋବିନ୍ଦର 'ରସତରଙ୍ଗିଣୀ' ଟୀକାର ଖଣ୍ଡିଏ ପୋଥି ସଂରକ୍ଷିତ । ଏହା ଦେବନାଗରୀ ଅକ୍ଷରରେ ଲିଖିତ । (୩୫) ଏହାର ପ୍ରାରମ୍ଭ ଓ ଶେଷାଂଶ ନିମ୍ନରେ ଉଦ୍ଧାର କରାଗଲା ।

"ଓଁ ଶ୍ରୀ ରାଧାକୃଷ୍ଣୌ ଜୟତଃ
ସକଳରସ-ବିରାଢାଂ କୁଞ୍ଜକେଳିପ୍ରଗାଢାଂ
ରସିତରସିକ କୃଷ୍ଣାଂ ରାଧିକାଂ କୃଷ୍ଣରାଧ୍ୟାଂ ॥
ଅଖିଳରସରସଜ୍ଞାଂ ଲମ୍ବିତଶ୍ରୀପଦାବ୍ଜାଂ
ବ୍ରଜଯୁବତିଷୁରମ୍ୟାଂ ଶ୍ରୀକଶୋରୀଂ ନମାମି । ୧
ନତ୍ୱାଶ୍ରୀକୃଷ୍ଣମାମ୍ନାନଂ ସର୍ବାରାଧ୍ୟଂ ପରଂ ଗୁରୁମ୍
ଗୀତଗୋବିନ୍ଦଗୀତସ୍ୟ ବକ୍ଷେ ରସତରଙ୍ଗିଣୀମ୍ ।" ୨

---

(୩୪) A Des. Cat. of Sans. Mss. Vol. VII. Kāvya manuscripts p. 130.

(୩୫) Cat. of Sans. and Prakrta mss. in the library of the India office Vol. II, part II, p. 1528, No. 8125.

ଶେଷାଂଶ— "ଇତିଶ୍ରୀ ଗୀତଗୋବିନ୍ଦଟୀକାୟାଂ **ଶ୍ରୀନାରାୟଣଭଟ୍ଟ ବିରଚିତାୟାଂ ରସତରଙ୍ଗିଣ୍ୟାଂ** ସୁପ୍ରୀତପୀତାମ୍ବରୋ ନାମ ଦ୍ୱାଦଶଃ ସର୍ଗଃ ।

ବିଧେଶ୍ବ ଗ୍ରଧେ ମୟି ଧାନତିତ୍ରେ
କୃପାଂବିଳାସ ସ୍ୱ ସ୍ୱଭାବ ଶତ୍ରେ ।
ମାତେବ ବାଳେ × ବିଷଲ୍ରେ
ଶ୍ରୀଗୀତଗୋବିନ୍ଦ ବିଗ୍ରେରଭ୍ରଲ୍ରେ । ୧
ଶ୍ରୀରାଧିକେ ତବକୃପା ପରମା ସଦା ସ୍ୟାତ୍
**ବୃନ୍ଦାବନେ ବସତ** × × ଖର୍ଥେ
**ଶ୍ରୀକୃଷ୍ଣ ପଦପଙ୍କଜ ସେବନା** ମେ
ନିତ୍ୟଂ ବିଳାସ କଥନେ ରତିରସ୍ତୁ ସୁକ୍ତେଃ । ୨

ଉଦ୍ଧୃତ ଶେଷ ଶ୍ଳୋକରୁ ସ୍ପଷ୍ଟ ଜଣାଯାଏ ଯେ, ଶ୍ରୀରାଧାକୃଷ୍ଣଙ୍କ ପରମଭକ୍ତ ଶ୍ରୀ ନାରାୟଣ ଭଟ୍ଟ ବୃନ୍ଦାବନ ଧାମରେ ଅବସ୍ଥାନ କାଳରେ ଶ୍ରୀଗୀତଗୋବିନ୍ଦର ରସତରଙ୍ଗିଣୀ ଟୀକା ରଚନା କରିଥିଲେ । ଦିଲ୍ଲୀ ବାଦସାହ ଔରଙ୍ଗଜେବଙ୍କ ଦ୍ୱାରା ୧୬୬୦ ବେଳକୁ ବୃନ୍ଦାବନର ମନ୍ଦିର ଗୁଡ଼ିକ ଧ୍ୱସ୍ତବିଧ୍ୱସ୍ତ ହୋଇଥିବାରୁ ନାରାୟଣ ଭଟ୍ଟଙ୍କୁ ଏହାର ପୂର୍ବବର୍ତ୍ତୀ ବୋଲି ଆପାତତଃ ସ୍ଥିର କରାଯାଇପାରେ ।

## (୧୫) ବନମାଳୀ ଭଟ୍ଟ କୃତ 'ସଞ୍ଜିବନୀ ଟୀକା'—

ପଣ୍ଡିତ ଶ୍ରୀ ଶିବଦାସଙ୍କ ପୁତ୍ର ବନମାଳୀ ଭଟ୍ଟ ଶ୍ରୀଗୀତଗୋବିନ୍ଦର ·ସଞ୍ଜୀବନୀ ନାମ୍ନୀ ଟୀକା ରଚନା କରିଥିଲେ । ମିଳିଥିବା ପୋଥିରୁ ଉକ୍ତ ଟୀକାର ପ୍ରାରମ୍ଭ ଓ ଶେଷାଂଶ ନିମ୍ନରେ ଉଦ୍ଧାର କରାଗଲା ।

"ଶ୍ରୀ ଗଣେଶାୟ ନମଃ, ଶ୍ରୀରାଧାବରଗିରିଧରଚନ୍ଦ୍ରୋ ଜୟତି ।

ମୂଳ — ସ୍ଥିରାଣାଂ ଜଂଗମାଣାଂ ଚ ଯେନ ସୃଷ୍ଟିନିରୂପିତା
ସର୍ବେଶାୟ ନମସ୍ତସ୍ମୈ କୃଷ୍ଣାୟ ଜଗଦାତ୍ମନେ । ୧
ଭୂୟାତ୍ ଭଦ୍ରାୟ ଭବତାଂ କୃଷ୍ଣଃ କମଳଲୋଚନଃ
କାଳିନ୍ଦୀ କେଳି ସଂଦୃଷ୍ଟୋ ମେଘଶ୍ୟାମୋ ବିସୁନ୍ଦରଃ । ୨
ଲୀଳାଦବନାଦସଂସିଦ୍ଧୋ ଗିରେଚନ୍ଦ୍ର ବିହାରିଣଃ
**ଜୟଦେବ** ଦ୍ୱିଜ ଦ୍ୱାରା ଚତୁରେଷୁ ପ୍ରକାଶିତା । ୩
**ଶ୍ରୀମଦ୍‌ଗିରିବରାଧୀଶଂ ବୃନ୍ଦାରଣ୍ୟପୁରନ୍ଦରମ୍**
କୃଷ୍ଣଚନ୍ଦ୍ରଂ ପ୍ରପଦ୍ୟେହଂ ଭକ୍ତାନୁଗ୍ରହକାରକମ୍ । ୪

ଶ୍ରୀକୃଷ୍ଣଲବ୍‌ଧକରୁଣାପ୍ରତିଲବ୍‌ଧବଦ୍ୟଃ
**ଶ୍ରୀ ବିଠ୍‌ଠଲେଶକୃପୟାପ୍ତକଶୋରଭକ୍ତିଃ**
ଗୋବିନ୍ଦଗୀତବିବୃତିଂ ବନମାଲୀନାମା
ଭଟ୍ଟସ୍ତନୋତି ସୁକୃତୀ ଶିବଦାସସୁନୁଃ ॥

ଶେଷାଂଶ — ଟୀକାସପ୍ତମାଲୋକ୍ୟ ସାରଂ ସାରଂ ସମୁଦ୍ଧୃତମ୍
ତଥାପି ସୁବଳିତଂ କଶ୍ଚିତ୍ ଷନ୍ତୁମର୍ହନ୍ତୁ ସୁରୟଃ । ୧
ଶିବଦାସ ତନୁଜେନ ଭଟ୍ଟେନ ବନମାଳିନା
ଗୀତଗୋବିନ୍ଦ ଟୀକେୟଂ ରଚିତା ଶୁଦ୍ଧଦାସ୍ତୁ ବଃ । ୨
ବୈଶାଖକୃଷ୍ଣପକ୍ଷସ୍ୟୈକାଦଶ୍ୟାଂ ଶୁଭମଙ୍ଗଳେ
**ବାରଣାସ୍ୟାଂ କୃତାଟୀକା** ଭଟ୍ଟେନ ବନମାଳିନା
କାଶ୍ୟାଂ **ନରୋତ୍ତମଗୃହମଧ୍ୟେ** ମାଧବଶିବୟୋଃ
ରଚିତା ଗୀତଗୋବିନ୍ଦଟୀକେୟଂ ବନମାଳିନା । ୪

ଇତି ଶ୍ରୀମଦ୍ କୃଷ୍ଣଚନ୍ଦ୍ରସେବକୋପାଧ୍ୟାୟବତଂସ ଶ୍ରୀ ଶିବଦାସାତ୍ମଜ ଶ୍ରୀ ବନମାଳୀ ଭଟ୍ଟ ବିରଚିତାୟାଂ ବନମାଳୀ ସଂଜ୍ଞାବନ୍ୟାଂ ଶ୍ରୀଗୀତଗୋବିନ୍ଦ ଟୀକାୟାଂ ସୁପ୍ରୀତ-ପୀତାମ୍ବରୋ ନାମ ଦ୍ୱାଦଶଃ ସର୍ଗଃ ।”

ପୁନାସ୍ଥ ପୋଥିଭଣ୍ଡାରରେ ଏହାର ତିନିଖଣ୍ଡି ପୋଥି ଅଛି । (୩୬) ଦୁଇଟି ପୋଥିରେ ଶ୍ରୀ ଶିବଦାସାତ୍ମଜ ପରିବର୍ତ୍ତରେ ଶିବଦାସ ପଣ୍ଡିତାତ୍ମଜ ବୋଲି ଲେଖା-ଯାଇଛି । ଉଦ୍ଧୃତ ଶ୍ଳୋକରେ ବର୍ଣ୍ଣିତ ଶ୍ରୀ ବିଠ୍‌ଠଲେଶଙ୍କୁ ନିର୍ବିବାଦରେ ଶ୍ରୀ ବଲ୍ଲଭା-ଚାର୍ଯ୍ୟଙ୍କ ପୁତ୍ର ବିଠ୍‌ଠଳେଶଙ୍କ ସହିତ ଚିହ୍ନିତ କରାଯାଇପାରେ । ଶ୍ରୀ ବଲ୍ଲଭାଚାର୍ଯ୍ୟଙ୍କ ମୃତ୍ୟୁ ପରେ (୧୫୩୦ ଖ୍ରୀଷ୍ଟାବ୍ଦ) ସେ ୧୫୮୫ ଖ୍ରୀଷ୍ଟାବ୍ଦରେ ତାଙ୍କର ମହାପ୍ରୟାଣ ପର୍ଯ୍ୟନ୍ତ ପ୍ରାୟ ଅର୍ଦ୍ଧଶତାବ୍ଦୀରୁ ଅଧିକ କାଳ ବୃନ୍ଦାବନ ଧାମରେ ଶ୍ରୀମଦ୍ ଗିରିବରାଧୀଶଙ୍କ ଉପାସନା ଦାୟିତ୍ୱରେ ଅବସ୍ଥିତ ଥିଲେ । ବନମାଳୀ ଭଟ୍ଟ ତାଙ୍କର ଶିଷ୍ୟ ଥିଲେ । ପୁନଶ୍ଚ ଶେଷାଂଶରେ ଥିବା ଶ୍ଳୋକରୁ ଜଣାଯାଏ ଯେ, ବନମାଳୀ କାଶୀସ୍ଥିତ ମାଧବ ଓ ବିଶ୍ୱେଶ୍ୱର ମନ୍ଦିର ମଧ୍ୟବର୍ତ୍ତୀ ନରୋତ୍ତମଙ୍କ ଗୃହରେ ଅବସ୍ଥାନ କାଳରେ ଉକ୍ତ ଟୀକା ରଚନା କରିଥିଲେ । ଏହି ନରୋତ୍ତମ ଗୌଡ଼ର ପ୍ରସିଦ୍ଧ ବୈଷ୍ଣବ ଧର୍ମ ପ୍ରଚାରକ ନରୋତ୍ତମ ଠାକୁର ରୂପେ ଗ୍ରହଣୀୟ । ସେ ଷୋଡ଼ଶ ଶତାବ୍ଦୀର ଶେଷଭାଗରେ

(୩୬) Des. Cat of Mss. B.O.R.I. Poona, Vol. XIII, pt. I Nos. 194-197, pp 234-240.

ବୃନ୍ଦାବନକୁ ନିଜର କର୍ମକ୍ଷେତ୍ର କରିଥିଲେ । ଅତଏବ କାଶୀରେ ଥିବା ତାଙ୍କ ମଠରେ ରହି ବନମାଳୀ ଉକ୍ତ ଟୀକା ଲେଖିଥିବାରୁ ଏହା ଷୋଡ଼ଶ ଶତାବ୍ଦୀର ଶେଷ ଭାଗରେ ରଚିତ ହୋଇଥିବା ନିର୍ବିବାଦରେ ସ୍ଥିର କରାଯାଇ ପାରେ । କିନ୍ତୁ ପଣ୍ଡିତ ଶିବ ଦାସଙ୍କ ବାସସ୍ଥାନ ସମ୍ବନ୍ଧରେ କୌଣସି ନିର୍ଭରଯୋଗ୍ୟ ତଥ୍ୟ ମିଳୁନାହିଁ ।

(୧୭) **ଶ୍ରୀକାନ୍ତ ମିଶ୍ର ପ୍ରଣୀତ 'ପଦଭାବାର୍ଥଚନ୍ଦ୍ରିକା' ଟୀକା :—**

ଶ୍ରୀକାନ୍ତ ମିଶ୍ର ନାମକ ଜଣେକ ପଣ୍ଡିତ ଶ୍ରୀ ଗୀତଗୋବିନ୍ଦର 'ପଦଭାବାର୍ଥ ଚନ୍ଦ୍ରିକା' ନାମ୍ନୀ ଟୀକା ରଚନା କରିଥିଲେ । ଏହାର ଦୁଇଟି ଅସମ୍ପୂର୍ଣ୍ଣ ପୋଥି କଲିକତା 'ଏସିଆଟିକ ସୋସାଇଟି' ପୁସ୍ତକାଗାରରେ ସୁରକ୍ଷିତ । ଏହି ଟୀକାର ମଙ୍ଗଳଚରଣ ଶ୍ଳୋକ (୩୭) ହେଉଛି —

"ଶ୍ରୀ ଗଣେଶାୟ ନମଃ
ଭଦ୍ରାୟ ଭବତାଂ ରୂପଂ କୃଷ୍ଣସଦ୍‌ଭାବଭାବିତଃ
କାଳିନ୍ଦୀଜଳସମ୍ପର୍କ ମେଘଶ୍ୟାମୋଽତିସୁନ୍ଦରଃ ॥"

ରାଜା ରାଜେନ୍ଦ୍ରଲାଲ ମିତ୍ର ପୁରୀ ରାଘବ ଦାସ ମଠରେ ଥିବା ଏହି ଟୀକାର ଖଣ୍ଡିଏ ପୋଥି ପରୀକ୍ଷା କରିଥିଲେ । (୩୮) ଏହାର ମୂଳ ଓ ଶେଷାଂଶ ନିମ୍ନରେ ଉଦ୍ଧାର କରାଗଲା ।

ମୂଳ— "ସମସ୍ତ ରସ ସୁନ୍ଦରୀବିଳାସ ରସମଣ୍ଡିତଃ
କରୋତୁ ଭାବୁକଂ ମଧୌ ମନୋଜମାନଦୀ ହରିଃ । ୧ ।
ଗୀତଗୋବିନ୍ଦଟୀକେୟଂ ପଦଭାବାର୍ଥଚନ୍ଦ୍ରିକା
ମହାଦାଙ୍କକୃତାରମ୍ଭା ସାହସେନ ବିତନ୍ୟତେ । ୨ ।
ନୋଦାହରନ୍ତି ବିଶଦାଃ ସୁରତାମାକସାଗରମ୍
ଇତିଶ୍ରୀ ପରମାନନ୍ଦ ରତିବର୍ଣ୍ଣିନମୀର୍ଯ୍ୟତେ । ୩ ।

ଶେଷ— ଏତତ୍‌କାବ୍ୟବିବେଚନଂ ପ୍ରଣୟିନାଂ ଚର୍ଚ୍ଚସ୍ୱେନ୍ଦ୍ରଲନା
ଉତ୍ପୂର୍ଣ୍ୟ ଯତ୍ର ହରସ୍ତୁତେଃ ପ୍ରଭବେବ୍ୟାଖ୍ୟସୁମେ ସନ୍ମତିମ୍

(୩୭) A Des. Cat. of Mss. Vol. VII, by Shāstri, Kāvya Mss. pp. 132-133.

(୩୮) Mitra— Notices of Sanskrit Manuscripts, Vol. VIII, pt. II, 1886, p. 286.

ତେନ ପ୍ରୀତମନାସ୍ତନୋତୁ ସତତଂ ଶ୍ରେୟୋ ମମ ଶ୍ରୀପତିଃ
ଶଶ୍ୱନ୍ମଙ୍ଗଳମାତନୋତ୍ୱପି ସତାଂ ସଙ୍ଗାପ୍ନୁତାଂ ଶୃଣ୍ୱତାମ୍

ଇତି ଶ୍ରୀଗୀତଗୋବନ୍ଦଟୀକାୟାଂ ମିଶ୍ରଶ୍ରୀକାନ୍ତ ବିରଚିତାୟାଂ ପଦଭାବାର୍ଥ ଚନ୍ଦ୍ରକାୟାଂ ଦ୍ୱାଦଶଃ ସର୍ଗଃ''

ଏହି ଶେଷ ଶ୍ଳୋକଟି 'ଏତତ୍‌କାବ୍ୟବିବେଚନଂ' ମହାମହୋପାଧ୍ୟାୟ ଶ୍ରୀ ଶଙ୍କର ମିଶ୍ରଙ୍କ ରସମଞ୍ଜରୀ ଟୀକାରୁ ଗୃହୀତ । 'ରସମଞ୍ଜରୀ' ଓ 'ପଦଭାବାର୍ଥ ଚନ୍ଦ୍ରକା' ମଧ୍ୟରେ ବିଶେଷ ସାମଞ୍ଜସ୍ୟକୁ ଲକ୍ଷ୍ୟ କରି ସାର ଚ୍ଚାର୍ଲସ ଉଇଲକିନସ୍ ଲେଖିଛନ୍ତି— **"As regards the commentary itself, it is practically identical with Śaṅkara Miśras' Rasamanjarī, the difference between them being as commonly occurs between two manuscripts of the same work, rather than two different works. (୩୯)** ଅତଏବ ଶ୍ରୀକାନ୍ତ ମିଶ୍ର ଶ୍ରୀ ଶଙ୍କର ମିଶ୍ରଙ୍କ ଟୀକାକୁ ଆତ୍ମସାତ୍ କରିଛନ୍ତି । ଏହାର ମଙ୍ଗଳାଚରଣ ଶ୍ଳୋକ 'ଭଦ୍ରାୟୁଭବତାଂ' ମଧ୍ୟ ନାରାୟଣଭଟ୍ଟ କୃତ 'ପଦଦ୍ୟୋତନିକା' ଓ ବନମାଳୀ ଭଟ୍ଟଙ୍କ 'ଧଜାବମୀ ଟୀକା'ର ଉକ୍ତ ଶ୍ଳୋକର ଅନୁରୂପ ।

**ଟୀକାର ସମୟ :—** ମହାରାଷ୍ଟ୍ରୀୟ ପଣ୍ଡିତ ଶ୍ରୀ ରଙ୍ଗନାଥ ଆରଡ଼େ (ପ୍ରାୟ ୧୭୦୦ ଖ୍ରୀଷ୍ଟାବ୍ଦ) ଶ୍ରୀକାନ୍ତ ମିଶ୍ରଙ୍କ ଟୀକାର ନାମୋଲ୍ଲେଖ କରିଛନ୍ତି । ଯଥା—

"ସନ୍ତ୍ୟେବ ରମ୍ୟରଚନା ବିଶଦାଶ୍ଚ ଟୀକାଃ
ଶ୍ରୀକାନ୍ତମିଶ୍ର ମୁଖସୂରିବର ପ୍ରଣୀତାଃ"

---

ଅତଏବ ଶ୍ରୀକାନ୍ତ ମିଶ୍ର ୧୭୦୦ ଖ୍ରୀଷ୍ଟାବ୍ଦ ପୂର୍ବରୁ ଆବିର୍ଭୂତ ହୋଇଥିବାର ସ୍ଥିର କରାଯାଇ ପାରେ ।

## (୧୭) ଶ୍ରୀ ରଙ୍ଗନାଥ ଆରଡ଼େ କୃତ 'ମାଧୁରୀ ଟୀକା'—

ମହାରାଷ୍ଟ୍ରୀୟ ପଣ୍ଡିତ ବେଦାନ୍ତୀ ମହାଦେବଙ୍କ ନାତି ଓ ନାରାୟଣ ଆରଡେଙ୍କ ପୁତ୍ର ଶ୍ରୀକୃଷ୍ଣଭକ୍ତ ଶ୍ରୀ ରଙ୍ଗନାଥ ଆରଡ଼େ ଶ୍ରୀଗୀତଗୋବନ୍ଦର 'ମାଧୁରୀ' ଟୀକା

---

(୩୯) 'Cat of Sans Mss. in the library of the India office. by J. Eggeling part VII, p. 1456. No. 3870.

ରଚନା କରିଥିଲେ । କଲିକତା ଏସିଆଟିକ ସୋସାଇଟି ପୋଥି ଭଣ୍ଡାରରେ ସଂରକ୍ଷିତ ଏହାର ପୋଥିରୁ ମୂଳ ଓ ଶେଷାଂଶ ନିମ୍ନରେ ଉଦ୍ଧାର କରାଗଲା । (୪୦)

ମୂଳ— "ନାମଂ ନାମଂ ଦ୍ୱିରଦବଦନଂ ବାରିତୋଦାମବିଘ୍ନଂ
ସ୍ମାରଂ ସ୍ମାରଂ ସରସରଚନାସାରଦାଂ ଶାରଦାଂ ତାମ୍ ।
ଧ୍ୟାୟଂ ଧ୍ୟାୟଂ ଗୁରୁପଦଯୁଗଂ ଗୀତଗୋବିନ୍ଦଟୀକାଂ
ମାଧୁର୍ଯ୍ୟାଖ୍ୟାଂ ଅତିମିତପଦାଂ ରଙ୍ଗନାଥୋ ବିଧତ୍ତେ । ୧ ।
× × ×
ସନ୍ତ୍ୟେବ ରମ୍ୟରଚନା ବହବୋଽତ୍ର ଟୀକାଃ
ଶ୍ରୀକାନ୍ତମିଶ୍ରମୁଖସୂରିବର ପ୍ରଣୀତାଃ"
× × ×

ଶେଷାଂଶ—ଆରଡ୍ଡୋପାହ୍ୱ ନାରାୟଣପ୍ରାପ୍ତ ସଜ୍ଜନ୍ମନା ରଙ୍ଗନାଥେନ ଭକ୍ତ୍ୟାକୃତା
କୃଷ୍ଣଲୀଲାରସଃପ୍ରେମଭଜାଂ ସତାଂଗୀତଗୋବିନ୍ଦମାଧୁର୍ଯ୍ୟସୌ ସ୍ୟାନ୍ମୁଦେ"
× × ×

ପୁଷ୍ପିକା—ଇତି ଶ୍ରୀମଦ୍ ବେଦାନ୍ତମହାଦେବାଖ୍ୟେନ ଶ୍ରୀକୃଷ୍ଣ ଚରଣାରବିନ୍ଦସ୍ମରଣଶରଣେନ ଆରଡ୍ଡୋପାଖ୍ୟ ନାରାୟଣସୂନୁନା ରଙ୍ଗନାଥେନ ରଚିତାୟାଂ ଶ୍ରୀ ଜୟଦେବ ମହାକବି ପ୍ରଣୀତ ଶ୍ରୀଗୀତଗୋବିନ୍ଦାଭିଧ ସତ୍‌କାବ୍ୟ ଟୀକାୟାଂ ମାଧୁରୀସମାଖ୍ୟାୟାଂ ଦ୍ୱାଦଶଃସର୍ଗଃ ।।"

ଐତିହାସିକ ଡକ୍ଟର ପି. କେ. ଗୋଡ୍ଡେ ପ୍ରସିଦ୍ଧ ଆରଡ୍ଡେ ବଂଶୋତ୍ପନ୍ନ ଟୀକାକାର ରଙ୍ଗନାଥ ଅଷ୍ଟାଦଶ ଶତାବ୍ଦୀର ପ୍ରଥମ ଭାଗରେ ଆବିର୍ଭୂତ ହୋଇଥିବା ସ୍ଥିର କରିଛନ୍ତି । (୪୧)

## (୧୮) ମୈଥିଳ କୃଷ୍ଣଦତ୍ତ କୃତ 'ଗଙ୍ଗାଟୀକା'—

ଶ୍ରୀଭବେଶଙ୍କ ଔରସରେ ଭଗବତୀ ଦେବୀଙ୍କ ଗର୍ଭଜାତ ପ୍ରସିଦ୍ଧ ମୈଥିଳ ପଣ୍ଡିତ କୃଷ୍ଣଦତ୍ତ ଶ୍ରୀ ଗୀତଗୋବିନ୍ଦର କୃଷ୍ଣ ଓ ଶିବ ଉଭୟପକ୍ଷାବଗାହିନୀ 'ଗଙ୍ଗା' ନାମ୍ନୀ ଟୀକା ରଚନା କରି ପଣ୍ଡିତମାନଙ୍କୁ ଚମତ୍କୃତ କରିଥିଲେ ; ଐତିହାସିକ

(୪୦) A Des. Cat. of Sans. Mss in the A S. Bengal, Vol. VII, Shāstri, Kāvya Mss. pp 131-132.

(୪୧) 'Some authors of the Arade family' Studies in Indian Literaury History by Dr. P. K. Gode, Vol. III, pp. 17–24.

କେ. ପି. ଜୟସ୍ୱାଲଙ୍କ ଦ୍ୱାରା ସମୀକ୍ଷିତ ଏଦ୍ୱାର ଏକ ପୋଥିର ମୂଳ ଓ ଶେଷାଂଶ ନିମ୍ନରେ ଉଦ୍ଧାର କରାଗଲା । (୪୨)

"ଓଁ ନମୋ ଗଣେଶାୟ

ପ୍ରୀତିମୟଃ ପରମେଶ୍ୱର ପରତ୍ୱତଃ ପ୍ରୀତିପ୍ରସନ୍ନପର
ମାଧୁର୍ଯ୍ୟଂ ଘନସାର ସୁନ୍ଦରତରଃ ଶ୍ରୀକସ୍ୟ ସାରାଧିକା
ଗୌରାଭୂଷଣଭୂଷଣୀୟପଦତା ମନ୍ୟୋଽନ୍ୟଶୋଭାର୍ପଣା
ଦ୍ୱୈ କ୍ଷୀରଂ ପ୍ରତିମାସିତାଙ୍ଗୁଦଘଟିତା ପ୍ରାପୋତ୍ତ ଯସ୍ୟାଙ୍କଗା । ୧
ଘନସମୟନବନ୍ଧାବଲଭ୍ୟେଽପି ପୂର୍ଣ୍ଣ୍ୟଂ
ପ୍ରଥୟତୁ ରସଛନ୍ଦଂ ଭଙ୍ଗିଭିର୍ବଂଶୁରନ୍ତୀ ।
ଗମୟତୁ ପଦମେଷା ବୈଷ୍ଣବଂ ଶାମ୍ଭବଂ ବା

ଜୟତୁ ଜୟତୁ ଗଙ୍ଗା ଗୀତଗୋବିନ୍ଦ ଟୀକା । ୨
ଶୈବଂ ନାତ୍ରିୟତେ ସୁଧୀରପିମତଂ ପ୍ରାୟୋଽଧୁନା ବୈଷ୍ଣବଃ
ଶୈବୋ ନୈବ ଚ ବୈଷ୍ଣବଂ ନଜ ନଜ ସଦ୍‌ବାସନା ବାସିତଃ ।
ମନ୍ୟେଽର୍ଥଂ ମଧୁସୂଦନୋଽପି ମୁରଜଭୃତପକ୍ଷେ ମତ୍ୱମ୍ୟୁତଂ
ବ୍ୟାଚଖ୍ୟେ ଜୟଦେବସୂକ୍ତମପି ତାଂ ଶୈବଂ ପଥେ ଯୋଜୟେ
ଅସ୍ୟାର୍ଥୋ ଜୟଦେବ ପଣ୍ଡିତକବେର୍ବାଣୀ ପବନାମୃତଃ
ପ୍ରବ୍ୟକ୍ତେ ପରଶୀଳତାତ୍ୟତପଦଶ୍ଳାଘ୍ୟା ବୁଧୈଃ ସର୍ବଦା
ସଂପ୍ରତ୍ୟଭୃତଯୋଜନାଭିବଳନା ଭଙ୍ଗ୍ୟା ଶିବେ ସଙ୍ଗତଂ
ମାତା ପଦ୍ମଭୁବଃ କମଣ୍ଡଳୁପୟୋଧାରେବ କଂ କଥ୍ୟତାମ୍ ॥"

ଶେଷାଂଶ—"ଦେଶାନାଂ ମୌଳିରତ୍ନଂ ବଭବତମିଥିଲା କୌଶିକୀ ଜହ୍ନୁକନ୍ୟା
ଗଣ୍ଡକ୍ୟନ୍ତ୍ରପାଦସ୍ଥିରରୁଚରତରଃଽସୀମକୀର୍ତ୍ତିପ୍ରଶସ୍ତିଃ;
ଶ୍ରୀବଦ୍ୟା ପୁଣ୍ୟସିଦ୍ଧିଶ୍ରିଦ୍ୱାମବଦଧତ୍ତ ଶ୍ରୀନଦଂ ବାଗୁଣ୍ଡ ଚ
ସ୍ୱାଙ୍କସ୍ୟାପୂନ୍ତ ବାସାଭଜନଭରତଯ୍ୟା ମୈଥିଳାଃ ସୁ ପ୍ରସିଦ୍ଧାଃ
ସ୍ୱେଽଭନ୍ନରୂପାବପି ଭନ୍ନବସ୍ଥିତୌ ସିତାସିତାଭୌ ଜଗଦେବପାବନୌ
ବୃଷାକପାୟୀ ସହିତୌ ବୃଷାକପି ପ୍ରୀତୌ ଭବେତାଂ ମମ ପଙ୍କଯ୍ୟାନ ଯା
ମାତାପୁଣ୍ୟସବ୍ରେତ୍ତ ଭଗବତ୍ତ ଦେବୀ ଭବେଽଷ ପଂତା
ସନ୍ତୋଷସ୍ୟ ପୁରନ୍ଦରଃ କୁଳପତଃ ଶ୍ରୀମାନକଣ୍ଠାମ୍ଭଜଃ ।

(୪୨) A Des. Cat of Mss. in Mithila, Vol. II, p. 46

ତେନେ ମୈଥିଳ କୃଷ୍ଣଦତ୍ତ କବିନା ତେନେହ ଗଙ୍ଗାଭିଧା
ଟୀକାୟାଂ ଲହରୀ ସମାପ୍ତିମଗମତ୍ତସ୍ୟାମିୟଂ ଦ୍ୱାଦଶୀ ।

ପୁଷ୍ପିକା — ଇତିଶ୍ରୀ ଭଗବତି ଭବେଶ ସମ୍ଭବ ଶ୍ରୀକୃଷ୍ଣଦତ୍ତକୃତାୟାଂ ଶ୍ରୀଗୀତ-
ଗୋବିନ୍ଦ ବ୍ୟାଖ୍ୟାୟାଂ ଶ୍ରୀ ଗଙ୍ଗାଖ୍ୟାୟାଂ ଦ୍ୱାଦଶୀଲହରୀ ।
ଶକାବ୍ଦାଃ ୧୫୩୧

ଜନଶ୍ରୁତିରୁ ଜଣାଯାଏ, କବି କୃଷ୍ଣଦତ୍ତ ନେପାଳର ଜଣେ ରାଜାଙ୍କୁ ନିଜ ପାଣ୍ଡିତ୍ୟ ଦ୍ୱାରା ସନ୍ତୁଷ୍ଟ କରି ତାଙ୍କଠାରୁ ଦଶହଜାର ଟଙ୍କା, ଗୋଟିଏ ଗ୍ରାମ, ଏକ ହସ୍ତୀ ଓ ଏକ ଶାଳଗ୍ରାମ ଦାନପ୍ରାପ୍ତ ହୋଇଥିଲେ । କୃଷ୍ଣଦତ୍ତଙ୍କ ବଂଶଧରମାନେ ଅଦ୍ୟାପି ଦ୍ୱାରଭଙ୍ଗା ଜିଲ୍ଲାର ଝଞ୍ଜାରପୁର ନିକଟବର୍ତ୍ତୀ ହଟିରବା ଗ୍ରାମରେ ବାସ କରୁଛନ୍ତି । ପୋଥିର ନକଲ ସମୟ ୧୫୩୧ ଶକାବ୍ଦ ବା ୧୬୦୯ ଖ୍ରୀଷ୍ଟାବ୍ଦ ହୋଇଥିବାରୁ ସେ ନିଶ୍ଚୟ ଏହି ବର୍ଷର ପୂର୍ବବର୍ତ୍ତୀ ।

## (୧୯) ମୈଥିଳ କୃଷ୍ଣଦତ୍ତ କୃତ 'ଶଶିଲେଖା ଟୀକା' —

ପୂର୍ବୋକ୍ତ ମୈଥିଳ କୃଷ୍ଣଦତ୍ତ ଶୈବ ଓ ବୈଷ୍ଣବ ଉଭୟପକ୍ଷ ସମର୍ଥନକାରୀ ଶ୍ରୀଗୀତଗୋବିନ୍ଦର 'ଶଶୀଲେଖା' ନାମ୍ନୀ ଅନ୍ୟ ଏକ ଟୀକା ରଚନା କରିଥିଲେ । (୭୩) ଉଭୟ ଟୀକାର ପ୍ରଥମ ମଙ୍ଗଳାଚରଣ ଶ୍ଳୋକ ଗୁଡ଼ିକ ପ୍ରାୟ ସମାନ । ଏହା ପରେ ଅନ୍ୟ ଦୁଇଟି ନୂତନ ଶ୍ଳୋକରେ ଟୀକାର ବିଶେଷତ୍ୱ ବର୍ଣ୍ଣିତ ହୋଇଛି । ଯଥା—

"ବିଶଦୟତି ଶିବପକ୍ଷାଂ ଗୀତଗୋବିନ୍ଦଟୀକାଂ
ରଚୟତି ଶଶିଲେଖାଂ ମୈଥିଳଃ କୃଷ୍ଣଦତ୍ତଃ ।
ଇହ ନବବିଧାଟୀକା ବ୍ୟଞ୍ଜିତଃ କୃଷ୍ଣପକ୍ଷୋ
ବିବୃତ ଉଭୟପକ୍ଷୈକାଭିଧେୟଂ ପଦଂ ବା"

ପୁଷ୍ପିକା — ଇତିଶ୍ରୀ ମୈଥିଳ ଶ୍ରୀ କୃଷ୍ଣଦତ୍ତ ବିରଚିତାୟାଂ ଶ୍ରୀ ଶଶୀଲେଖାଖ୍ୟାୟାଂ
ଶ୍ରୀଗୀତଗୋବିନ୍ଦସ୍ୟ ଶ୍ରୀ ଶିବପକ୍ଷ ବ୍ୟାଖ୍ୟାୟାଂ ଦ୍ୱାଦଶଃ ସର୍ଗଃ ॥

ଶ୍ରୀଗୀତଗୋବିନ୍ଦର ଟୀକାକାରମାନଙ୍କ ମଧ୍ୟରେ କେବଳ ମୈଥିଳ କୃଷ୍ଣଦତ୍ତ ଦୁଇଟି ଉପାଦେୟ ଟୀକା ପ୍ରଣୟନ କରି ସଂସ୍କୃତ ସାହିତ୍ୟରେ ତାଙ୍କର ପ୍ରଗାଢ଼ ପାଣ୍ଡିତ୍ୟ ତଥା ସ୍ୱୀୟ ଶିବଭକ୍ତିର ପରାକାଷ୍ଠା ପ୍ରଦର୍ଶନ କରିଥିଲେ । ଏ କ୍ଷେତ୍ରରେ ସେ ଅପ୍ରତିଦ୍ୱନ୍ଦୀ ।

---

(୭୩) A Des. Cat. of Mss. in Mithila, Vol. II, pp. 161-162.

(୨୦) ଉତ୍କଳୀୟ ଧନଞ୍ଜୟ ଦ୍ୱିଜ ରଚିତ 'ସର୍ବାଙ୍ଗସୁନ୍ଦରୀ ଟୀକା'—

ଧନଞ୍ଜୟ ନାମକ ଜଣେ ଉତ୍କଳୀୟ ପଣ୍ଡିତ କବିରାଜ ଶ୍ରୀ ନାରାୟଣ ଦାସଙ୍କ 'ସର୍ବାଙ୍ଗ ସୁନ୍ଦରୀ ଟୀକା'ର ଅନୁକରଣରେ ଏକ ବୃହଦାକାର ସର୍ବାଙ୍ଗସୁନ୍ଦରୀ ଟୀକା ପ୍ରଣୟନ କରିଥିଲେ । ଏହି ଟୀକା ଉତ୍କଳରେ ବିଶେଷ ପ୍ରସାରଲାଭ କରିଥିବାରୁ ନାନା ସ୍ଥାନରେ ଏହାର ପୋଥି ଥିବା ସଂବାଦ ମିଳୁଅଛି । ଏଥିରେ ଟୀକାକାର ବହୁ କାବ୍ୟ, ପୁରାଣ, କୋଷ, ଅଳଙ୍କାର, ବ୍ୟାକରଣ, ଆଗମ, ଆୟୁର୍ବେଦ, ସଂଗୀତ, କାମଶାସ୍ତ୍ର, ମାତଶାସ୍ତ୍ର ପ୍ରଭୃତିରୁ ବାକ୍ୟମାନ ଉଦ୍ଧାର କରି ନିଜ ବହୁଶାସ୍ତ୍ରଦର୍ଶିତାର ପରିଚୟ ପ୍ରଦାନ କରିଛନ୍ତି । ସେ ଏଥିରେ ମୁଦ୍ରିତ ରସିକପ୍ରିୟା ଟୀକାରେ ବ୍ୟାଖ୍ୟାତ ୧୭ଟି ଶ୍ଳୋକର ଅର୍ଥ ଦେଇନାହାନ୍ତି । ପ୍ରଥମ ସର୍ଗ — ସାମୋଦଦାମୋଦର, ଦ୍ୱିତୀୟ ସର୍ଗ— ସାକ୍ଳେଶକେଶବ, ତୃତୀୟ ସର୍ଗ — ମୁଗ୍ଧମଧୁସୂଦନ, ଚତୁର୍ଥ — ସ୍ନିଗ୍ଧମଧୁସୂଦନ, ପଞ୍ଚମ — ସାକାଂକ୍ଷପୁଣ୍ଡରୀକାକ୍ଷ, ଷଷ୍ଠ — ଧୃଷ୍ଟବୈକୁଣ୍ଠ, ସପ୍ତମ— ନାଗରନାରାୟଣ, ଅଷ୍ଟମ—ବିଲକ୍ଷଲକ୍ଷ୍ମୀପତି, ନବମ — ମୁଗ୍ଧମୁକୁନ୍ଦ, ଦଶମ — ମୁଗ୍ଧମାଧବ, ଏକାଦଶ — ସାନନ୍ଦଗୋବିନ୍ଦ, ଦ୍ୱାଦଶ — ସୁପ୍ରୀତପୀତାମ୍ବର ଇତ୍ୟାଦି ଲୀଳାବ୍ୟାଖ୍ୟାନ, ଶ୍ରୀ ଭୋଜଦେବ ପ୍ରଭବସ୍ୟ, ଇତ୍ୟଥଂ କେଳିରତି ।

ଗ୍ରନ୍ଥାଦ୍ୟରେ ଥିବା ମଙ୍ଗଳାଚରଣ ଶ୍ଳୋକ ଓ ଶେଷରେ ଥିବା ଟୀକାର ରଚନାକାଳ ଜ୍ଞାପକ ଶ୍ଳୋକ ନିମ୍ନରେ ଉଦ୍ଧାର କରାଗଲା । ଯଥା—

ମଙ୍ଗଳାଚରଣ—"ବସାନଂ ନୀଳବସନଂ କୁନ୍ଦେନ୍ଦୁଧବଳଂ ବଳଂ
ଅହଂ କଳାନ୍ଦପାରାନ୍ଦଂ ବନ୍ଦେ ବୃନ୍ଦାରକସ୍ତୁତମ୍ ।
ଅସ୍ତ୍ରେ ଯଦ ହୃଦ ବାଂଚ୍ଛବୋଦ୍ଧୁଂ ତନ୍ତ୍ରେଣ ଗୀତଗୋବିନ୍ଦମ
ଶୃଣୁ ଜନରମ୍ୟାମେତାଂ ସର୍ବାଙ୍ଗସୁନ୍ଦରୀଟୀକାମ୍"

ଶେଷ ଶ୍ଳୋକ—"ଶ୍ରୀରେନ୍ଦ୍ରସ୍ୟ ମୁକୁନ୍ଦସିନ୍ଧୁରପତେ ର୍ମେକେବଃଶୋର୍ନବ
ହିଂଶଙ୍କେ ପ୍ରଥତପତ୍ତିଯୌ ଗୁରୁଦିନେ କନ୍ୟାଂଗତେ ଭାସ୍କରେ
ଟୀକାଂ ପୂର୍ବଳକାନ୍ତିଂ ବିଲଖିତଂ ଶ୍ରୀଗୀତଗୋବିନ୍ଦକଂ
କାବ୍ୟଂ ବୃତ୍ତ ଧନଞ୍ଜୟାଖ୍ୟଧରଣୀଦେବେନ ପକ୍ଷେଽସିତେ" (୪୪)

ଶ୍ଳୋକବର୍ଣ୍ଣିତ ଖୁର୍ଦ୍ଧା ରାଜ୍ୟ ଶାସକ ଗଜପତି ମୁକୁନ୍ଦଦେବଙ୍କ ୩୯ ଅଙ୍କ କନ୍ୟା କୃଷ୍ଣ, ପ୍ରତିପଦ ତିଥି ଗୁରୁବାର ୧୭୮୮ ଖ୍ରୀଷ୍ଟାବ୍ଦ ଅଗଷ୍ଟ ମାସ ୨୮ ତାରିଖରେ ପଡ଼ୁଥିବାରୁ (୪୫)

---

(୪୪) ଓଡ଼ିଶା ରାଜ୍ୟ ସଂଗ୍ରହାଳୟ ପୋଥିଭଣ୍ଡାରରେ ସଂରକ୍ଷିତ ପୋଥିରୁ ଉଦ୍ଧୃତ ।
(୪୫) ମୋ ଦ୍ୱାରା ପ୍ରଣୀତ ଖୁର୍ଦ୍ଧା ଇତିହାସ, ପୃ ୧୨୫

ଉକ୍ତ ଦିବସରେ ଟୀକା ରଚନା ସମାପ୍ତ ହୋଇଥିବା ସୁନିଶ୍ଚିତ । ପଣ୍ଡିତ ଧନଞ୍ଜୟ ଗଜପତି ମୁକୁନ୍ଦଦେବଙ୍କ ସଭାପଣ୍ଡିତ ଥିବା ସ୍ଥିର କରାଯାଇପାରେ ।

**(୨୧) କୃଷ୍ଣଦାସ କବିରାଜ ବିରଚିତ ସର୍ବାଙ୍ଗସୁନ୍ଦରୀ ଟୀକା—**

କୃଷ୍ଣଦାସ କବିରାଜ ନାମକ ଜନୈକ ପଣ୍ଡିତ ଶ୍ରୀଗୀତଗୋବିନ୍ଦର 'ସର୍ବାଙ୍ଗ ସୁନ୍ଦରୀ' ନାମ୍ନୀ ଏକ ଟୀକା ପ୍ରଣୟନ କରିଥିଲେ । ଏହାର ଖଣ୍ଡିଏ ପୋଥି ରାଜ୍ୟ ସଂଗ୍ରହାଳୟର ପୋଥିଭଣ୍ଡାରରେ ସଂରକ୍ଷିତ । ଏହାର ମଙ୍ଗଳାଚରଣ ଓ ଗ୍ରନ୍ଥରଚନା କାଳ ଜ୍ଞାପକ ଶେଷ ଶ୍ଳୋକ ନିମ୍ନରେ ଉଦ୍ଧାର କରାଗଲା ।

"ନତ୍ୱା ଶ୍ରୀହରିଚରଣଂ କୁରୁତେ **ସର୍ବାଙ୍ଗସୁନ୍ଦରୀଟୀକାଂ**
ଶ୍ରୀଯୁକ୍ତ **କୃଷ୍ଣଦାସକବିରାଜୋ** ଗୀତଗୋବିନ୍ଦେ ।"

ଏହାର ଶେଷ ଶ୍ଳୋକ ହେଉଛି—

"ଜ୍ୟୈଷ୍ଠେମାସିସିତେ ବୁଧସ୍ୟ ଦିବସେ ପକ୍ଷେ ଚତୁର୍ଥୀ ତଥା-
ବର୍ଷେ ସପ୍ତଦଶେ ନୃପସ୍ୟ ସୁଧିୟା ଶ୍ରୀ ଦିବ୍ୟସିଂହସ୍ୟ ଚ ।"

ପୁଷ୍ପିକା — ଇତି ଶ୍ରୀକୃଷ୍ଣ ଦାସ ବିରଚିତାୟାଂ ଶ୍ରୀଗୀତଗୋବିନ୍ଦେ **ସର୍ବାଙ୍ଗସୁନ୍ଦରୀ ଟୀକାୟାଂ** ସ୍ୱାଧୀନଭର୍ତ୍ତୃକାବର୍ଣ୍ଣନେ ସୁପ୍ରୀତପୀତାମ୍ବରୋ ନାମ ଦ୍ୱାଦଶଃ ସର୍ଗଃ ।

ଏହାର ପ୍ରଥମ ସର୍ଗର ପୁଷ୍ପିକାରେ ଏହା 'ସର୍ବଙ୍କଷା' ନାମରେ ମଧ୍ୟ ଅଭିହିତ ହୋଇଛି । ଯଥା—

ଇତିଶ୍ରୀ କୃଷ୍ଣଦାସ ବିରଚିତାୟାଂ ସର୍ବଙ୍କଷାଖ୍ୟାୟାଂ ଗୀତଗୋବିନ୍ଦ ଟୀକାୟାଂ ପ୍ରଥମଃ ସର୍ଗଃ । (୪୭)

କିନ୍ତୁ ମଙ୍ଗଳାଚରଣ ଓ ଗ୍ରନ୍ଥ ଶେଷରେ ଥିବା ପୁଷ୍ପିକାରେ ଏହା 'ସର୍ବାଙ୍ଗ-ସୁନ୍ଦରୀ' ନାମରେ ଆଖ୍ୟାତ ହୋଇଥିବାରୁ ଏହି ଟୀକାର ଉକ୍ତ ନାମ ଗ୍ରହଣୀୟ । ଏହି ଟୀକାର ଶେଷ ଶ୍ଳୋକରୁ ଜଣାଯାଏ ଯେ, କବିରାଜ କୃଷ୍ଣଦାସ ଖୁରୁଧା ରାଜା ଦିବ୍ୟ-ସିଂହ ଦେବଙ୍କ ସପ୍ତଦଶ ଅଙ୍କରେ ଉକ୍ତ ଟୀକା ରଚନା ସମାପ୍ତ କରିଥିଲେ । ତାଙ୍କ ସପ୍ତଦଶ ଅଙ୍କ ୨-୯-୧୭୦୧ରୁ ୨୩-୮-୧୭୦୨ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ପ୍ରଚଳିତ ଥିଲା । (୫୭) ଉକ୍ତ ଟୀକାକାର କୃଷ୍ଣଦାସ ଓଡ଼ିଶା ରାଜାଙ୍କ ଅଙ୍କଗଣନା ବ୍ୟବହାର କରି-ଥିବାରୁ କୌଣସି ଉତ୍କଳୀୟ ପଣ୍ଡିତ ରୂପେ ଗ୍ରହଣୀୟ । ସେ ୧୬୧୫ ଖ୍ରୀଷ୍ଟାବ୍ଦରେ ବୃନ୍ଦାବନ ଧାମରେ 'ଶ୍ରୀଚୈତନ୍ୟଚରିତାମୃତ' ମହାଗ୍ରନ୍ଥ ସମାପ୍ତ କରିଥିବା ପ୍ରସିଦ୍ଧ ଗୌଡ଼ୀୟ ଗୋସ୍ୱାମୀ କୃଷ୍ଣଦାସ କବିରାଜଙ୍କ ଠାରୁ ଭିନ୍ନ ଅଟନ୍ତି ।

---

(୪୭) ମିଉଜିୟମର ପୋଥିଭଣ୍ଡାରରେ ସଂରକ୍ଷିତ ପୋଥିରୁ ଉଦ୍ଧୃତ

(୫୭) ମୋ ଦ୍ୱାରା ପ୍ରଣୀତ ଖୁରୁଧା ଇତିହାସ' ପୃ ୧୬୧

## (୧୨) ନାରାୟଣ ଶର୍ମା କୃତ 'ସର୍ବାଙ୍ଗ ସୁନ୍ଦରୀ ଟୀକା'—

ଐତିହାସିକ ରାଜେନ୍ଦ୍ରଲାଲ ମିତ୍ର ବଙ୍ଗଳାର ନୟାହାଟି ନାମକ ଗ୍ରାମରୁ ନାରାୟଣ ଶର୍ମା ଗ୍ରଥିତ ସର୍ବାଙ୍ଗ ସୁନ୍ଦରୀ ଟୀକାର ବଙ୍ଗଳା ଅକ୍ଷରରେ ଲିଖିତ ଖଣ୍ଡିଏ ପୋଥି ଆବିଷ୍କାର କରିଥିଲେ। ତାହାର ମଙ୍ଗଳାଚରଣ ଶ୍ଳୋକ ନିମ୍ନରେ ଉଦ୍ଧାର କରାଗଲା।

"ପ୍ରଣମ୍ୟ ଜଗତାମୀଶଂ କୃଷ୍ଣରୂପସନାତନଂ
କ୍ରିୟତେ ଗୀତଗୋବିନ୍ଦଟୀକା ସର୍ବାଙ୍ଗସୁନ୍ଦରୀ"

**ପୁଷ୍ପିକା**—ଇତି ଶ୍ରୀ ଗୀତଗୋବିନ୍ଦ ମହାକାବ୍ୟେ ସ୍ୱାଧୀନଭର୍ତ୍ତୃକାବର୍ଣ୍ଣନେ ସୁପ୍ରୀତପୀତାମ୍ବର ନାମ ଦ୍ୱାଦଶଃ ସର୍ଗଃ। ସମାପ୍ତୋଽୟଂ ଗ୍ରନ୍ଥ। ଶକାବ୍ଦା ୧୬୫୦"।

"ଖ-ବାଣ-ଋତୁ-ଚନ୍ଦ୍ରେ ଚ ଶାକେ ପରମିତେ ମୟା
ଲିଖିତା ଜୟଦେବସ୍ୟ ଟିପ୍ପଣୀୟଂ ପ୍ରଯନ୍ତତଃ ॥
ପ୍ରଣମ୍ୟ ଭାରତୀଦେବୀଂ ଶ୍ରୀ ନାରାୟଣଶର୍ମଣା
ଲିଖିତା ଶବ୍ଦଶାସ୍ତ୍ରସ୍ୟ ସମ୍ମତା ଶୋଧିତାଂ ସୁଦ୍ଧୈଃ"। (୪୮)

ଏହାର ରଚନା କାଳ ହେଉଛି ଖ (୦), ବାଣ (୫), ଋତୁ (୬), ଚନ୍ଦ୍ର (୧)=୧୬୫୦ ଶକାବ୍ଦ ବା ୧୭୨୮ ଖ୍ରୀଷ୍ଟାବ୍ଦ। 'ସର୍ବାଙ୍ଗସୁନ୍ଦରୀ' ନାମରେ ଆଖ୍ୟାତ ଏହା ଏପର୍ଯ୍ୟନ୍ତ ଉପଲବ୍ଧ ଚତୁର୍ଥ ଟୀକା।

## (୧୩) ଗୋପାଳ ଚକ୍ରବର୍ତ୍ତୀ କୃତ 'ଅର୍ଥରତ୍ନାବଳୀ'—

ଐତିହାସିକ ରାଜେନ୍ଦ୍ରଲାଲ ମିତ୍ର ଗୋପାଳ ଚକ୍ରବର୍ତ୍ତୀ ରଚିତ ଶ୍ରୀଗୀତ-ଗୋବିନ୍ଦର 'ଅର୍ଥ ରତ୍ନାବଳୀ' ନାମକ ଟୀକାର ପୋଥି ସମ୍ବନ୍ଧରେ ପ୍ରଥମେ ଆଲୋଚନା କରିଥିଲେ। ଏହାର ମଙ୍ଗଳାଚରଣରେ ଟୀକାକାର ଶ୍ରୀ ରାଧାକୃଷ୍ଣଙ୍କ ସ୍ତୁତିଗାନ ପୂର୍ବକ ପରବର୍ତ୍ତୀ ଶ୍ଳୋକଦ୍ୱୟରେ ଟୀକା ରଚନା ସମ୍ପର୍କରେ ଉଲ୍ଲେଖ କରିଛନ୍ତି। ଯଥା—

"ବିଲୋକ୍ୟାନେକ ଶାସ୍ତ୍ରାଣି ବିଚାର୍ଯ୍ୟ ନିପୁଣଂ ମୁହୁଃ
ଗୋପାଳ କୁରୁତେ ଟୀକାମର୍ଥରତ୍ନାବଳୀ ମିମାଂ।

---

(୪୮) 'Notices of Sanskrit Manuscripts' by R. L. Mitra Second Series, Vol. I, pt. I, p. 85.

ଗୀତଗୋବିନ୍ଦ କାବ୍ୟାବ୍ଧୌ ସ୍ଫୁରନ୍ତ କଣ୍ଠନୋରସାଃ
କଥଂ ତାନ୍ କଳୟେନ୍ ସର୍ବାନ୍ ମନ୍ଦସ୍ୟାବୁଦ୍ଧିରଳ୍ପିକା"

ଶେଷାଂଶ—ଆସୀଦ୍‌ବନ୍ଦ୍ୟକୁଲୋ ଜ୍ୱଲୋସ୍ୟେଯସତୀ ଧୀମାନ୍ ହିରଣ୍ୟାଭିଧ
ତତ୍ସୂନୁଃ ଶିବଇତ ଭୂଚ୍ଛି ବିସ୍ମୃତୋ ଜ୍ଞାନାଦ୍ଧ୍ୟେୟାଃଭୂତ୍ତତଃ ।
ଦୁର୍ଗାଦାସ ଇତି ପ୍ରମୋଦବସତି ସ୍ତସ୍ୟାଙ୍ଗଜୋ ଯଃ କୃତୀ
ଗୋପାଲଃ କଳ ତେନ ନିର୍ମଳଧିୟା ଟୀକା କୃତେୟଂ ମୁଦା

ନବାଙ୍କ ବାଣେନ୍ଦୁମିତେ ଶକାବ୍ଦେ ମାସେ ମଧୌ ଚଣ୍ଡକରସ୍ୟବାରେ
ଟୀକାମିମାଂ ରୂପବତୀଂ ତନୁଜୋ ଗୋପାଲ ଶର୍ମା ବ୍ୟତନୋତ୍ସମଗ୍ରାଂ ।

ପୁଷ୍ପିକା—ଇତି ଶ୍ରୀ ଗୟସ୍ବଡ଼ି ବନ୍ଦ୍ୟଘଟୀୟକୁଲପ୍ରସୂତ ଶ୍ରୀ ଗୋପାଳ ଚକ୍ରବର୍ତ୍ତି ବିରଚିତାୟାଂ ଗୀତଗୋବିନ୍ଦଟୀକାୟା ମର୍ଥରତ୍ନାବଲ୍ୟାଂ ଦ୍ୱାଦଶ ସର୍ଗ ବିବରଣ" । (୪୧)

ଉଦ୍ଧୃତ ଶ୍ଳୋକ ଦୁଇଟିରୁ ଜଣାଯାଏ ଯେ, ଗୟସ୍ବଡ଼ୀ ଗ୍ରାମରେ ବନ୍ଦ୍ୟଘଟୀୟ ବ୍ରାହ୍ମଣକୁଳରେ ଜନ୍ମିତ ହିରଣ୍ୟଙ୍କ ପ୍ରନପ୍ତା, ଶିବଙ୍କ ନପ୍ତା, ଦୁର୍ଗାଦାସଙ୍କ ପୁତ୍ର ଗୋପାଳ ଚକ୍ରବର୍ତ୍ତୀ ନବ (୯) ଅଙ୍କ (୯) ବାଣ (୫) ଇନ୍ଦୁ (୧)=୧୫୯୯ ଶକାବ୍ଦ ବା ୧୬୭୭ ଖ୍ରୀଷ୍ଟାବ୍ଦରେ ଶ୍ରୀ ଗୀତଗୋବିନ୍ଦର ଅର୍ଥରତ୍ନାବଳୀ ନାମ୍ନୀ ଟୀକା ରଚନା କରିଥିଲେ ।

## (୨୪) ଗୋପାଳ କୃତ 'ସର୍ବାର୍ଥବୋଧିନୀ ଟୀକା'—

ପୁନାସ୍ଥ 'ଭଣ୍ଡାରକର ପ୍ରାଚ୍ୟବିଦ୍ୟା ଗବେଷଣା ସଂସ୍ଥା' ପୋଥି ଭଣ୍ଡାରରେ ସଂରକ୍ଷିତ ଶେଷ କମଳାକର କୃତ 'ସାହିତ୍ୟ ରତ୍ନମାଳା' ପୋଥିର ଶେଷ ଭାଗରେ ଶ୍ରୀ ଗୀତଗୋବିନ୍ଦର 'ସର୍ବାର୍ଥ ବୋଧିନୀ' ନାମକ ଅନ୍ୟ ଏକ ଟୀକାର ଶେଷାଂଶ ଲିପିବଦ୍ଧ ହୋଇଅଛି । ସେଥିରୁ ଜଣାଯାଏ ଯେ, ଯମୁନା କୂଳବର୍ତ୍ତୀ ଏକ ଗ୍ରାମବାସୀ ଜ୍ୟୋତିଷ ଶୁକଦେବ ଓ କାମାକ୍ଷୀଙ୍କ ପୁତ୍ର ଗୋପାଳ ଶ୍ରୀ ଗୀତଗୋବିନ୍ଦର ସର୍ବାର୍ଥ ବୋଧିନୀ ନାମ୍ନୀ ଟୀକା ରଚନା କରିଥିଲେ । ଏହାର ରଚନା କାଳ ହେଉଛି ସମ୍ବତ୍ ୧୭୨୧ ଓ ଶକ ସମ୍ବତ୍ ୧୫୮୬ ବା ୧୬୬୪ ଖ୍ରୀଷ୍ଟାବ୍ଦ । ଯଥା—

---

(୪୧) 'Notices of Sanskrit Manuscripts' by R.L. Mitra Vol. VI, pt. II, 1881–82, pp. 292–293.

"ଶ୍ରୀଭାନୁଜାବିଲସଦମ୍ବୁସମାବରୋଦ୍ଧ
ସମ୍ଭୃତପୁଣ୍ୟଚୟଶୋଭିତକାଷ୍ଠ କାନ୍ତିଃ
ଜ୍ୟୋତିର୍ବିଦୂଷ ଶୁକଦେବାଭିଧସକାଷ୍ଠେ
କାମାତୁରୀକୃତସମାଶ୍ରୟେଣ ଦ୍ୱିଜନ୍ମ ।
ତସ୍ୟାତ୍ମଜେନ ପିତୃଭକ୍ତିପରେଣ ନିତ୍ୟଂ
ଗୋପାଳ ନାମ ସୟୁଜା ବିନୟେନକେନ
ସର୍ବାର୍ଥବୋଧିମାସୁତା ସମଲେଖି ଟୀକା
ଶ୍ରୀଗୀତଗୋବିନ୍ଦାଭିଧାସ୍ୟ ପ୍ରବନ୍ଧନସ୍ୟ"

ଏଦ୍ୱାର ପୂର୍ବ ଦୁଇଟି ଶ୍ଳୋକରୁ ଜଣାଯାଏ ଯେ, ବିକ୍ରମ ନୃପତିଙ୍କ ଭୂ (୧) ଅଶ୍ୱି (୨) ମାତୃ (୭) ଶଶୀ (୧) ବା ୧୭୨୧ ସମ୍ବତ୍ ଓ ଶାଳୀବାହାନ ନୃପଙ୍କ ରସ (୬) ଅଦ୍ରି (୮) ବାଣ (୫) ଶୀତକରଣ (୧) ବା ୧୫୮୬ ଅବ୍ଦ (୧୬୬୩ ଖ୍ରୀଷ୍ଟାବ୍ଦର) ହେମନ୍ତ ଋତୁ, କାର୍ତ୍ତିକ, କୃଷ୍ଣ ଦ୍ୱାଦଶୀ, ଶୁକ୍ରବାର ଦିନ ଉକ୍ତ ଗ୍ରନ୍ଥ ସମାପ୍ତ ହୋଇଥିଲା । (୫୦)

## (୨୫) ବିକାନୀର ରାଣା ଅନୂପସିଂହ କୃତ 'ଅନୂପୋଦୟ ଟୀକା'—

ରାଜସ୍ଥାନ ଅନ୍ତର୍ଗତ ପୂର୍ବତନ ବିକାନୀର ରାଜ୍ୟର ଅଧିପତି ରାଠୋରବଂଶୀୟ ଅନୁପସିଂହ ୧୬୭୪ ଖ୍ରୀଷ୍ଟାବ୍ଦରେ ସିଂହାସନ ଆରୋହଣ କରିଥିଲେ । ଅନୂପସିଂହ ଜଣେ ପଣ୍ଡିତ ଓ ଗୁଣଗ୍ରାହୀ ରାଜା ଥିଲେ । ସେ ଶ୍ରୀ ଗୀତଗୋବିନ୍ଦର 'ଅନୂପୋଦୟ' ନାମକ ଟୀକା ଲେଖାଇଥିଲେ ।

"ଅଥ ଶ୍ରୀଜୟଦେବୀୟ ପଦଭାବାର୍ଥବୋଧକମ୍
ଭୂପାନୂପାବିନୋଦାର୍ଥଂ ଅନୂପୋଦୟମାରଭେ" (୫୧)

ତାଙ୍କ ରାଜତ୍ୱ କାଳରେ ରଚିତ ଉକ୍ତ ଟୀକାକୁ ନିଃସନ୍ଦେହରେ ୧୬୭୪ ଖ୍ରୀଷ୍ଟାବ୍ଦ ପରେ ଅବସ୍ଥାପିତ କରାଯାଇ ପାରେ । ଐତିହାସିକ ହ ଷ୍ଟମାଗୃହାଙ୍କ ମତରେ ତାଙ୍କ ସଭାକବି ଭବ ଭଟ୍ଟ ପ୍ରକୃତରେ ଉକ୍ତ ଟୀକାର ପ୍ରଣେତା ! ଅନୂପସିଂହଙ୍କ ପୃଷ୍ଠ-ପୋଷକତା ଲାଭକରି ସେ ସଙ୍ଗୀତ ସମ୍ବନ୍ଧରେ ନିମ୍ନଲିଖିତ ଗ୍ରନ୍ଥମାନ ରଚନା

(୫୦) Cat. of B.O.R. Institute, Poona, Vol. XIII, pt. I, p. 249.

(୫୧) New Indian Antiquary, Vol. IV, 1941–1942.

କରଥିଲେ । ୧) ଅନୂପସଙ୍ଗୀତ ରତ୍ନାକର, ୨) ଅନୁପସଙ୍ଗୀତ ବର୍ତ୍ତମାନ ୩) ଅନୂପ ସଙ୍ଗୀତ ବଳାସ ୪) ଅନୂପ ସଙ୍ଗୀତାଙ୍କୁର ୫) ଅନୁପରାଗ ସାଗର । (୫୨)

## (୨୬) ଶଦାନନ୍ଦ ଭିକ୍ଷୁ କୃତ 'ଗୀତଗୋବନ୍ଦ ଟିପ୍ପଣ'—

ଶଦାନନ୍ଦ ଭିକ୍ଷୁ ନାମକ ଜନୈକ ସନ୍ନ୍ୟାସୀ 'ଶ୍ରୀଗୀତଗୋବନ୍ଦ ଟିପ୍ପଣ' ରଚନା କରଥିବା ପୁନାସ୍ଥ 'ଭଣ୍ଡାରକର ପ୍ରାଚ୍ୟବଦ୍ୟା ଗବେଷଣା ସଂସ୍ଥା'ରେ ଥିବା ଏହାର ଏକ ପୋଥିରୁ ଜଣାଯାଏ । (୫୩) ଏହାର ମଙ୍ଗଳାଚରଣ ନିମ୍ନରେ ଉଦ୍ଧାର କରଗଲା—

"ଯନ୍ମୂର୍ତ୍ତିର୍ଧ୍ୟାନଗମ୍ୟା ଶ୍ରୁତିନୟୃତପଥା ଯୋଗିବୃନ୍ଦୈରମନ୍ଦୈ-
ଯଦ୍‌ବାକ୍ୟଂ ବେଦଦ୍ଧୃଦଂ ଶ୍ୱସିତମଜପଦଂ ମାନଭୂତଂ ବୁଧାନ୍ତୁଃ ।
ଯତ୍କୃକର୍ଣଂ ବଶ୍ୱସୃଷ୍ଟିସ୍ଥିତିଲୟନଲୟଂ ବଶ୍ୱତୋପ୍ୟନ୍ତିବାସେ
ଯନ୍ନାମାମଙ୍ଗଳଘ୍ନଂ ଜୟତୁ ଯୁବତଡଃ କୃଷ୍ଣଗୋପାଳବାଳଃ । ୧
ଅନ୍ତର୍ଯସା ନୟୁକ୍ତେନ **ଶଦାନନ୍ଦେନ ଭିକ୍ଷୁଣା**
ରଚତଂ କୃଷ୍ଣତୁଷ୍ଟ୍ୟର୍ଥଂ **ଗୀତଗୋବନ୍ଦ ଟିପ୍ପଣମ୍** । ୨
ପ୍ରୀତୋସ୍ତୁ ଭଗବାଂସ୍ତେନ ବଶ୍ୱରୂପୋ ଜଗଦ୍‌ଗୁରୁଃ
ହୃଷୀକେଶୋ ବ୍ରଜବାସ ଗୋପୀମଣ୍ଡଳମଣ୍ଡନଃ । ୩

**ପୁଷ୍ପିକା**— ଇତଶ୍ରୀ ଗୀତଗୋବନ୍ଦ ଟୀକାୟାଂ ଦ୍ୱାଦଶ ସର୍ଗ ଟିପ୍ପଣଂ ସମାପ୍ତିମଗମତ୍ ଶ୍ରୀକୃଷ୍ଣାର୍ପଣମସ୍ତୁ" ।

ଟୀକାକାର ଶଦାନନ୍ଦ ଭିକ୍ଷୁଙ୍କ ପରଚୟ ଓ ଆବର୍ଭାବକାଳ ସମ୍ବନ୍ଧରେ ଏପର୍ଯ୍ୟନ୍ତ କୌଣସି ତଥ୍ୟ ମିଳନାହିଁ ।

## (୨୭) ରାମତାରଣ ଚୂଡ଼ାମଣି କୃତ 'ମାଧୁରୀ ଟୀକା'—

ରାଜା ରାଜେନ୍ଦ୍ରଲାଲ ମିତ୍ରଙ୍କ ଦ୍ୱାରା ଉଦ୍ଧୃତ ମାଧୁରୀ ଟୀକାର ମୂଳ ଓ ଶେଷାଂଶ ନିମ୍ନରେ ଲେଖାଗଲା ।

"ନବୀନନୀରଦଶ୍ୟାମଂ ଗୋବନ୍ଦଂ ନନ୍ଦନନ୍ଦନଂ
ପ୍ରଣମ୍ୟ କ୍ରିୟତେ ଟୀକା **ଗୀତଗୋବନ୍ଦମାଧୁରୀ** ।

---

(୫୨) Proceedings of A. I. O. Conference, 13th Session, 1946, p 168.

(୫୩) Cat. of Mss in the B. O. R. I., Poona.

**ପୁଷ୍ପିକା** — ଇତିଶ୍ରୀ ରମଚାରଣ ଚୂଡ଼ାମଣି କୃତାୟାଂ ଗୀତଗୋବିନ୍ଦମାଧୁର୍ଯ୍ୟାଂ ଟୀକାୟାଂ ଦ୍ୱାଦଶଃ ସର୍ଗଃ ସମାପ୍ତଃ" (୫୪)

ଏହି ଟୀକାର ବିଶେଷ ପ୍ରଚାର ଥିବାର ଜଣାଯାଏ ନାହିଁ ।

## (୨୮) ରମାକାନ୍ତ କୃତ 'ଗୀତଗୋବିନ୍ଦପ୍ରବୋଧ'—

ମହାମହୋପାଧ୍ୟାୟ ହରପ୍ରସାଦ ଶାସ୍ତ୍ରୀଙ୍କ ଦ୍ୱାରା ଢାକାରେ ଆବିଷ୍କୃତ ଗୀତ-ଗୋବିନ୍ଦ ପ୍ରବୋଧ' ପୋଥିରୁ ଉଦ୍ଧୃତାଂଶ ନିମ୍ନରେ ପ୍ରଦତ୍ତ ହେଲା ।

ମୂଳ— "ଓଁ ନମୋ ଗଣେଶାୟ

ଗୋପିକାଳକବିଧାୟ ରାଧିକାଭ୍ରୂବିଭଙ୍ଗପରିକମ୍ପିତାନ୍ତରଃ
ନବ୍ୟନୀରଧରକଜ୍ଜ୍ୱୋରତରଃ ଶ୍ୟାମଳଃ ଜୟତି ଯଦୁନନ୍ଦନଃ । ୧
ପ୍ରଣମ୍ୟମନ୍ୟାନ୍ ବହୁମାନପୂର୍ବମନ୍ୟାନୁପସ୍ଥାୟ କୃତାଞ୍ଜଳିକମ୍
ଶ୍ରୀଗୀତଗୋବିନ୍ଦପ୍ରବୋଧ ମୁଖ୍ୟ ଦେବା ରମାକାନ୍ତ ଇମଞ୍ଚକାର । ୨
ଅନେକଶଃ ପୂର୍ବବିଚକ୍ଷଣାନାଂ ବିସ୍ତାରିତାଃ ସନ୍ତି ଯଦସ୍ୟ ଟୀକାଃ
ତଥାପି ସଂକ୍ଷେପେ ବିଶେଷହେତୋ ମମ ଶ୍ରମଃ ସଦ୍ଭିରପୂର୍ବଂ ନ ବାଚ୍ୟଃ ।୩

ଶେଷ — ଯୋ ଜାତୋ ବସୁଧାସନଗୁରୋର୍ଗୋବିନ୍ଦପାଦାମ୍ବୁଜ
ଦ୍ୱନ୍ଦ୍ୱଧ୍ୟାନକରାଜରାଜତହୃଦଃ ଶ୍ରୀରାମଭଦ୍ରାତ୍ମଜଃ ॥
ତେନୈବାଙ୍କମୁଦେ ମୁଦେସ୍ତୁ ମୁଦିତା ଟୀକାତରାବ ଶ୍ରିୟଃ
ପ୍ରାୟଃ କେଳକଳାକଳାନିଧି ଲସତ୍କାବ୍ୟାବ୍ଧିପାରାଗ୍ରଣୀ ॥

× × ×

ସମାପ୍ତୋଽୟଂ ଗ୍ରନ୍ଥ"

ଶେଷରେ ଥିବା ସମୟ ଜ୍ଞାପକ ଶ୍ଲୋକଟିର ପ୍ରଥମ ଧାଡ଼ି ନଷ୍ଟ ହୋଇଯାଇଥିବାରୁ ଏହାର ରଚନାକାଳ ସ୍ଥିର କରାଯାଇ ପାରୁ ନାହିଁ । (୫୫)

## (୨୯) ଶ୍ରୀକ୍ଷେତ୍ରବାସୀ ଲକ୍ଷ୍ମଣ ଭଟ୍ଟ କୃତ 'ରସିକରଙ୍ଗଦା ଟୀକା'—

ଶ୍ରୀକ୍ଷେତ୍ରବାସୀ ଶ୍ରୀରାଧାକୃଷ୍ଣ ଭକ୍ତ ଶ୍ରୀଚୈତନ୍ୟ ମତାବଲମ୍ବୀ ପଣ୍ଡିତ ଶ୍ରୀ ଲକ୍ଷ୍ମଣ ଭଟ୍ଟ ଶ୍ରୀଗୀତଗୋବିନ୍ଦର 'ରସିକରଙ୍ଗଦା ଟୀକା' ପ୍ରଣୟନ କରିଥିଲେ । ଉତ୍କଳରେ

---

(୫୪) Mitra— 'Notices of Sanskrt manuscripts' Vol, VII, pt I, 1883, p 84.

(୫୫) Notices of manuscripts, New Series by Mm. H. P. Sastri, Vol. I, pt. I. 1898 pp. 86-87

ଏହି ଟୀକାର ବିଶେଷ ପ୍ରଚଳନ ଥିବାରୁ ଓଡ଼ିଶାର ନାନାସ୍ଥାନରୁ ଏହାର ପୋଥି ମିଳୁଅଛି । ଏହାର ମୂଳ ଓ ଶେଷାଂଶ ନିମ୍ନରେ ଉଦ୍ଧୃତ ହେଲା । (୫୭)

"ଶ୍ରୀରାଧାକୃଷ୍ଣାଭ୍ୟାଂ ନମଃ ।
ଅନ୍ୟୋନ୍ୟ ପ୍ରେମପୀୟୂଷସ୍ୱାଦନାତୃପ୍ତମାନସୌ
ସ୍ଫୁରତାଂ ହୃଦି ମେ ନିତ୍ୟଂ **ରାଧାମଦନମୋହନୌ** । ୧
ମଦ୍‌ବିଧଦୁର୍ବିଧବନ୍ଧୁଃ ସ ଜୟତି **ନୀଳାଚଳେନ୍ଦ୍ର**ପୁର୍ଣ୍ଣେନ୍ଦୁଃ
ଯେନାହଂ ବହୁକୃପୟା ନିଜାଙ୍ଘ୍ରିସେବାମୃତୈଃ ପୁଷ୍ଟଃ । ୨
ସଂସାର ପାପସନ୍ତପ୍ତଂ ସ୍ୱପ୍ରେମରସବର୍ଷଣୈଃ
ବିଶ୍ୱମାପ୍ୟାୟିତଂ ଯେନ ତଂ **ଚୈତନ୍ୟଘନଂ** ନୁମଃ । ୩
ଇୟଂ ଶ୍ରୀଗୀତଗୋବିନ୍ଦଟୀକା ରସିକରଙ୍ଗଦା
ମୟା ସଂଗୃହ୍ୟତା ତତ୍ତ୍ୱ ଭାବଲୁବ୍‌ଧେନ କେନଚିତ୍ । ୪
ପୂର୍ବେ ବିରଚିତା ଯାସ୍ତୁ ଟୀକା ସର୍ବାର୍ଥବୋଧିକାଃ
ତାଭ୍ୟଃ ସାରଂ ସମାକୃଷ୍ୟ ଗ୍ରଥ୍ୟାମ୍ୟତ୍ର ଯଥାରୁଚିଃ ।" ୫
ଶେଷାଂଶ—"ଇୟଂ ଉଜ୍ଜ୍ୱଳରସପୂର୍ଣ୍ଣବିଚନତତ ସୌରଭାକୀର୍ଣ୍ଣା
ହରିଚରଣସ୍ପୃଷ୍ଟଭାଜାଂ ନିବସତୁ ହୃଦୟେ ପ୍ରସୂନମାଳେବ ।
ଯେ ଶ୍ରୀମୁକୁନ୍ଦଭଜନ ସ୍ଫଲଲବ୍‌ଧଧାରା-
ନିର୍ମିହ୍ରଗରସବିବେଚନସାଧୁଶୀର୍ଷ୍ୟାଃ ।
ସି ଗ୍ଧାଶୟାଃ ସହୃଦୟାଃ ସଦୟାଃ ସଦେବ
ତେ ଭାରତୀଂ ପରମିମାଂ ପରିଶୀଳୟନ୍ତୁ ।
ଶକାବ୍ଦେ ଷୋଡ଼ଶଶତେ ଚତୁଃଷଷ୍ଠ୍ୟଧିକଂ ଗତେ
ଗ୍ରଥିତା ଲକ୍ଷ୍ମଣେନାସୌ ଟୀକା **ଶ୍ରୀପୁରୁଷୋତ୍ତମେ**"

ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ସେବାରେ ନିଯୁକ୍ତ ପଣ୍ଡିତ ଲକ୍ଷ୍ମଣ ଭଟ୍ଟ ଶ୍ରୀରାଧା, ମଦନମୋହନ, ଶ୍ରୀଜଗନ୍ନାଥ ଓ ଶ୍ରୀଚୈତନ୍ୟଙ୍କ ସ୍ତୁତିଗାନ ପୂର୍ବକ ରସିକରଙ୍ଗଦା ଟୀକା ରଚନାରେ ପ୍ରବୃତ୍ତ ହୋଇଥିଲେ । ଶ୍ରୀପୁରୁଷୋତ୍ତମ ବା ପୁରୀରେ ଅବସ୍ଥାନ କାଳରେ ୧୬୬୪ ଶକାବ୍ଦ ବା ୧୭୪୨ ଖ୍ରୀଷ୍ଟାବ୍ଦରେ ଏହି ଟୀକା ରଚନା ସମାପ୍ତ ହୋଇଥିଲା । ସେ ଓଡ଼ିଆ ଭାଷାରେ **ଶ୍ରୀକୃଷ୍ଣଲୀଳାମୃତ** ନାମକ କାବ୍ୟ ମଧ୍ୟ ରଚନା କରିଥିଲେ ।

---

(୫୭) A Des Cat of Sans. Mss. of Orissa' Vol. II by Sri K. N. Mahapatra, p 45 and p 48—Nos 55 & 63.

ଏହା ବୀରକେଶରୀ ଦେବଙ୍କ ୫୩ ଅଙ୍କ, ତୁଳମାସ, ଦଶଦିନ ଦଶଦଣ୍ଡ ଠାରେ ସମାପ୍ତ ହୋଇଥିଲା । ଗଣନା ଅନୁସାରେ ଏହା ହେଉଛି ୨୩-୧୦-୧୭୭୮ ଖ୍ରୀଷ୍ଟାବ୍ଦ । ଅତଏବ ଶ୍ରୀକ୍ଷେତ୍ରବାସୀ ଲକ୍ଷ୍ମଣ ଭଟ୍ଟ (ମିଶ୍ର) ସ୍ୱ ସ୍ୱ କୃତି ଦ୍ୱାରା ଉଭୟ ସଂସ୍କୃତ ଓ ଓଡ଼ିଆ ସାହିତ୍ୟକୁ ସମୃଦ୍ଧ କରିଥିଲେ । (୫୭)

## (୩୦) ପଣ୍ଡିତ ରୂପଦେବ କୃତ 'ଗୀତଗୋବିନ୍ଦ ବିବରଣ'—

ତାଞ୍ଜୋରସ୍ଥ ମହାରାଜ ସରଫୋଜୀ ସରସ୍ୱତୀ ମହଲ ପୁସ୍ତକାଗାରରେ ପଣ୍ଡିତ ରୂପଦେବ ବିରଚିତ 'ଗୀତଗୋବିନ୍ଦ ବିବରଣ' ନାମକ ଏକ ଟୀକାର ଏକାଦଶ ସର୍ଗ ବିଶିଷ୍ଟ ଖଣ୍ଡିଏ ପୋଥି ସଂରକ୍ଷିତ । ଏହାର ଏକାଦଶ ସର୍ଗରେ ପୁଷ୍ପିକା ହେଉଛି—
"ଇତି **ଶ୍ରୀଗୀତଗୋବିନ୍ଦ ବିବରଣେ** କୃଷ୍ଣଚରଣାମ୍ବୁଜୈକ ଶରଣ **ପଣ୍ଡିତ ରୂପଦେବ କବି** ବିରଚିତ ଗୀତଗୋବିନ୍ଦ ବିବରଣେ ସାନନ୍ଦଗୋବିନ୍ଦୋ ନାମୈକାଦଶଃ ସର୍ଗଃ" (୫୮)

ଟୀକା ଅସମ୍ପୂର୍ଣ୍ଣ ଥିବାରୁ ଟୀକାକାର ଓ ଗ୍ରନ୍ଥରଚନା କାଳ ସମ୍ବନ୍ଧରେ ସାଧାରଣତଃ ଟୀକା ଶେଷରେ ଥିବା ବିବରଣ ଏଥିରୁ ମିଳୁନାହିଁ ।

## (୩୧) ମହାରାଜ ଶ୍ରୀ ଶୁକ୍ଳଧ୍ୱଜ ରଚିତ 'ସରସ୍ୱତୀ ଟୀକା'—

ଷୋଡ଼ଶ ଶତାବ୍ଦୀରେ ଆସାମ ଓ କୁଚବିହାର ରାଜ୍ୟରେ ରାଜତ୍ୱ କରୁଥିବା ନରନାରାୟଣଙ୍କ ମନ୍ତ୍ରୀ ଓ ସେନାପତି ମହାରାଜ ଶ୍ରୀ ଶୁକ୍ଳଧ୍ୱଜ ଶ୍ରୀଗୀତଗୋବିନ୍ଦର 'ସରସ୍ୱତୀ' ନାମ୍ନୀ ଟୀକା ରଚନା କରିଥିଲେ । ତାହାର ଶେଷାଂଶ ନିମ୍ନରେ ଉଦ୍ଧାର କରାଗଲା ।

"ବଶ୍ୟା ଶ୍ରୀ ଜୟଦେବ ପଣ୍ଡିତକବେର୍ବାଣୀ ନବୀନାଙ୍ଗନା
ନ ପ୍ରୟାନ୍ତି ନିବେଶିତୁଂ ପ୍ରଭବତି ଶ୍ରିୟଂ ସ୍ୱୟଂ କଞ୍ଜନ ।
**ଶ୍ରୀଶୁକ୍ଳଧ୍ୱଜ ଭାରତୀବ** ବସତି ଯସ୍ୟା ବୟସ୍ୟା ତତଃ
ତାପୃଷ୍ଠାଣି ଗତାନି ଲସତିପଦଂ ଜାମିତ ବିଦ୍ୱଜ୍ଜନାଃ ।
ସଦ୍‌ବର୍ତ୍ତୀ ଜୟଦେବ ପଣ୍ଡିତକବେର୍ବାଣୀ ନିଗୂଢ଼ାଶୟାଂ
ନାନାଲଂକୃତିଭୂଷିତାଂ ଗୁଣବତୀଂ ହୃଦ୍ୟାଙ୍ଗମାସ ପରାମ୍

(୫୭) ମୋ ଦ୍ୱାରା ପ୍ରଣୀତ 'ଖୁର୍ଦ୍ଧା ଇତିହାସ' ପୃ ୬୧୩

(୫୮) A Des. Cat. of Sans. Mss' by P.P.S. Sastri, Vol XVI No, 10943. p 7338.

× × କ୍ଷିତିପାଳମୌଳିମୁକୁଟ ପ୍ରଶ୍ଲିଷ୍ଟ ପାଦଦ୍ୟୁତେଃ
ଶ୍ରୀଶୁକ୍ଳଧ୍ୱଜ ଭୂଭୁଜୋ ବିଜୟିତା ମାକଳ୍ପମେଷା କୃତିଃ ॥ (୬୯)

ଐତିହାସିକ ଡକ୍ଟର ଏନ୍. ଏନ୍. ଶର୍ମା ଆସାମର ବିଭିନ୍ନ ସ୍ଥାନରେ ସଂସ୍କୃତ ନାଟକ ଓ ଟୀକା ଗୁଡ଼ିକର ପୋଥି ସନ୍ଧାନ ସମୟରେ ଏହି ଟୀକାର ପୋଥି ଆବିଷ୍କାର କରିଥିଲେ । ଏହାଦ୍ୱାରା ସୁଦୂର ଆସାମ ପ୍ରଦେଶରେ ଶ୍ରୀ ଗୀତଗୋବିନ୍ଦ ଚର୍ଚ୍ଚା ସମ୍ବନ୍ଧରେ ନୂତନ ତଥ୍ୟ ମିଳିଲା ।

## ଶ୍ରୀ ଗୀତଗୋବିନ୍ଦର ଅନ୍ୟାନ୍ୟ ଟୀକା (୭୦)—

ଉକ୍ତ ଅଧ୍ୟାୟରେ ଆଲୋଚିତ ୩୧ଟି ଟୀକା ବ୍ୟତୀତ ଶ୍ରୀ ଗୀତଗୋବିନ୍ଦର ଅନ୍ୟ କେତେକ ଟୀକାର ନାମମାତ୍ର ଜଣାଯାଏ ।

୧) ବଚନ ମାଳିକା — ବରନେଲ୍ଙ୍କ ଦ୍ୱାରା ପରୀକ୍ଷିତ
୨) ଚୈତନ୍ୟ ଦାସ କୃତ ଅର୍ଥରତ୍ନାବଳୀ (ଜର୍ମାନ୍ କ୍ୟାଟଲଗ୍)
୩) ପଣ୍ଡିତ ରୂପଦେବ କୃତ ସାନନ୍ଦଗୋବିନ୍ଦ
୪) ବିଠ୍‌ଠଲ ଦୀକ୍ଷିତ କୃତ ଗୀତଗୋବିନ୍ଦାପ୍ରଥମାଷ୍ଟପଦୀ ବିବୃତି (ହଲ (Hall) ଙ୍କ ଦ୍ୱାରା ପରୀକ୍ଷିତ)
୫) ବିଶ୍ୱେଶ୍ୱର ଭଟ୍ଟ କୃତ ଶ୍ରୁତିରଞ୍ଜନୀ
୬) ହୃଦୟାଭରଣ କୃତ ଗୀତଗୋବିନ୍ଦ ତିଳକୋତ୍ତମ ।

## ଗୁଜରାଟ ବିଦ୍ୟାସଭା ଦ୍ୱାରା ସଂଗୃହୀତ ଟୀକାଗ୍ରନ୍ଥ (୭୧)

| କ୍ରମିକ ସଂଖ୍ୟା | ସୂଚୀ ଗ୍ରନ୍ଥର ସଂଖ୍ୟା ଓ ଟୀକାର ନାମ | ଟୀକାକାର | ପୋଥି ସମ୍ବନ୍ଧରେ ମନ୍ତବ୍ୟ |
|---|---|---|---|
| ୨୧୩୭ | ୮୭୭ ସନ୍ଦେହଭେଦିକା | କୁମାର ଖାନ | ୫୦ ବର୍ଷ ପୂର୍ବବର୍ତ୍ତୀ |

(୬୯) Proceedings of the A. I. O. Conference, 18th session, p. 139.

(୭୦) '*Ctalogus Catalogorum*' by Theodor Aufrecht, part-I & II, 1891–1896, 1–6.

(୭୧) A Des. Cat. of Sans. Mss (Gujarat Vidyasabha collection) part-II, edited by Prof. Dr. P. Shah, p.656

୨୧୩୮ ୧୮୯୪ ରସ ସଦ୍ଧପଣୀ ଭକ୍ତ ରତ୍ନାକର ସମ୍ବତ୍ ୧୬୭୮
ଜ୍ୟୈଷ୍ଠ ଶୁ ୫, ରବି

୨୧୩୯ ୨୩୨୪ ଶ୍ରୀବପ୍ରବୋଧିନୀ × ୧୫୦ ବର୍ଷ ପ୍ରାଚୀନ

## ସଂସ୍କୃତ ସାହିତ୍ୟର ଇତିହାସରୁ ଗୃହୀତ (୭୨)—

୧) ଅର୍ଥରତ୍ନାବଳୀ—କୃଷ୍ଣଦତ୍ତ କୃତ, ୨) ଅର୍ଥରତ୍ନାବଳୀ—କୃଷ୍ଣ ଦାସ କୃତ, ୩) ସର୍ବାଙ୍ଗ ସୁନ୍ଦରୀ—ଚୈତନ୍ୟ ଦାସ ରଚିତ, ୪) ରସକଦମ୍ବ କଲ୍ଲୋଳିନୀ—ପୀତାମ୍ବର ରଚିତ, ୫) ମାଧୁରୀ—ଶଙ୍କରାର୍ଯ୍ୟ କୃତ, ୬) ସାନନ୍ଦଗୋବିନ୍ଦ—ରାମ ଦତ୍ତ, ୭) ସାହିତ୍ୟ ରତ୍ନାକର—ଶାଳୀନାଥ, ୮) ସାହିତ୍ୟ ରତ୍ନାକର—କ୍ଷେମରତ୍ନାକର ୯) ଗୀତଗୋବିନ୍ଦ ତିଳକୋତ୍ତମ—ଶ୍ରୀହର୍ଷ ।

ଅଧ୍ୟାପକ ନଗେନ୍ଦ୍ରନାଥ ପ୍ରଧାନଙ୍କ ପୁସ୍ତକରୁ ନିମ୍ନଲିଖିତ କେତେକ ଟୀକାର ବିବରଣ ମିଳେ ।

୧) ଉତ୍କଳ ବିଶ୍ୱବିଦ୍ୟାଳୟ ପାଣ୍ଡୁଲିପି ସଂଗ୍ରହାଳୟରେ ସଂରକ୍ଷିତ ବଂଶୀ ଦାସଙ୍କ ଗୀତଗୋବିନ୍ଦ ଟୀକା ।

୨) ବଙ୍ଗୀୟ ସାହିତ୍ୟ ପରିଷଦ ଦ୍ୱାରା ସଂଗୃହୀତ ମହାମହୋପାଧ୍ୟାୟ ଭରତ ସେନଙ୍କ ସୁବୋଧା ନାମ୍ନୀ ଟୀକା ।

୩) କଲିକତା ସଂସ୍କୃତ ମହାବିଦ୍ୟାଳୟରେ ସଂରକ୍ଷିତ କବିରାଜ ଚଣ୍ଡୀ ଦାସ କୃତ 'ପ୍ରକାଶ କୌମୁଦୀ' ଟୀକା । (ଉକ୍ତ କବିରାଜ ଚଣ୍ଡୀ ଦାସ ଓ କବିରାଜ ବିଶ୍ୱନାଥଙ୍କ ଦ୍ୱାରା ବହୁ ସମ୍ମାନିତ ମହାମହୋପାଧ୍ୟାୟ ଚଣ୍ଡୀଦାସଙ୍କ ଏକତ୍ୱ ଓ ଅଭିନ୍ନତ୍ୱ ସ୍ଥିର ହୋଇ ନାହିଁ ।)

୪) ଶ୍ରୀ ବୃନ୍ଦାବନସ୍ଥ ଜୟଦେବ ପୀଠରେ ଶ୍ରୀରାମ ରାୟଙ୍କ ପ୍ରଣୀତ 'ତତ୍ତ୍ୱଦୀପିକା' ଟୀକାର ପୋଥି ସଂରକ୍ଷିତ ।

୫) ଜୟପୁର ଶ୍ରୀ ଗୋବିନ୍ଦ ଗ୍ରନ୍ଥାଗାରରେ ପ୍ରବୋଧାନନ୍ଦ ସରସ୍ୱତୀ କୃତ 'ଗୀତଗୋବିନ୍ଦ ବ୍ୟାଖ୍ୟାନ' ଟୀକା ସଂରକ୍ଷିତ । ଏଥିରେ ରାଣା କୁମ୍ଭଙ୍କ 'ରସିକ ପ୍ରିୟା' ଓ ଶଙ୍କର ମିଶ୍ରଙ୍କ 'ରସମଞ୍ଜରୀ' ଟୀକାଦ୍ୱୟରୁ ବହୁ ଉଦ୍ଧୃତ ମିଳେ ।

---

(୭୨) History of Sans. Literature, by Dr. S.K. De, p. 666.

୬)  ରତ୍ନାକର କନ୍ଦଳୀ ନାମକ ପଣ୍ଡିତଙ୍କ ଦ୍ୱାରା ରଚିତ 'ସାରଦୀପିକା' ଟୀକାର ପାଣ୍ଡୁଲିପି ଆସାମର ପ୍ରତ୍ନତତ୍ତ୍ୱ ବିଭାଗର ସଂଗ୍ରହାଳୟରେ ସଂରକ୍ଷିତ ।

ଏଗୁଡ଼ିକ ବ୍ୟତୀତ ସେ କେତେକ ଟୀକାର ନାମୋଲ୍ଲେଖ କରିଛନ୍ତି । ଯଥା— ଗୋପାଳ କୃତ ଦୀପିକା, ବାସୁଦେବ ବାଗ୍ମିସୁନ୍ଦର ରଚିତ 'ପଦାଭିନୟ ମଞ୍ଜରୀ', ବନମାଳୀ ଦାସ କୃତ ଟୀକା । (୭୩)

ଓଡ଼ିଶାରେ ରଚିତ ଅନ୍ୟ କେତେକ ଗୀତଗୋବିନ୍ଦ ଟୀକା ସମ୍ବନ୍ଧରେ ପୋଥିମାଲିକ ମାନଙ୍କ ଠାରୁ ଖବର ମାତ୍ର ମିଳୁଛି । କିନ୍ତୁ ପୋଥି ପରୀକ୍ଷା ନ ହେଲା ପର୍ଯ୍ୟନ୍ତ ସେ ସମ୍ପର୍କରେ ଉଲ୍ଲେଖ ଅନାବଶ୍ୟକ ।



---

(୭୩)  'ଓଡ଼ିଆ ସାହିତ୍ୟରେ ଜୟଦେବ'—ପୃ ୧୧୫—୧୧୧

# ଦ୍ୱାଦଶ ଅଧ୍ୟାୟ

# 'ଶ୍ରୀଗୀତଗୋବିନ୍ଦମ୍'ରେ ପ୍ରକ୍ଷେପ

## 'ଶ୍ରୀଗୀତଗୋବିନ୍ଦମ୍' ଏକ ଧର୍ମଗ୍ରନ୍ଥ—

'ହରିପ୍ରବଣ', 'କୃତହରିସେବ' 'ହରିଚରଣଶରଣ' 'କୃତହରିଗୁଣନ' 'ମଧୁରିପୁପଦସେବକ' ପ୍ରଭୃତିରେ ନିଜକୁ ଆଖ୍ୟାତ କରିଥିବା 'କବିରାଜ-ରାଜ' ଶ୍ରୀ ଜୟଦେବଙ୍କ ଅମର କୃତି 'ଶ୍ରୀଗୀତଗୋବିନ୍ଦମ୍' ପ୍ରାଚୀନ ସଂସ୍କୃତ ସାହିତ୍ୟର ଶ୍ରେଷ୍ଠ ଗୀତିକାବ୍ୟ ହେଲେମଧ୍ୟ ଏହାକୁ ଶ୍ରୀମଦ୍‌ଭଗବତ୍ ଗୀତାପରି ନିତ୍ୟ ପାଠ୍ୟ ଏକ ଧର୍ମଗ୍ରନ୍ଥ ରୂପେ ପ୍ରତିଷ୍ଠିତ କରିବା ପାଇଁ ଏହାର ପ୍ରଣେତା ଗଭୀର ଅଭିଳାଷ ପୋଷଣ କରିଥିଲେ । ତେଣୁ ସେ ଗ୍ରନ୍ଥ ଆଦ୍ୟରେ ତୃତୀୟ ଶ୍ଳୋକରେ ପଣ୍ଡିତ ଓ ଭକ୍ତମାନଙ୍କୁ ସମ୍ବୋଧନ କରି ଲେଖିଛନ୍ତି— "ହେ ସଜ୍ଜନବୃନ୍ଦ, ଯଦି ଆପଣମାନଙ୍କର ହରିସ୍ମରଣ ଦ୍ୱାରା ମନକୁ ସରସ କରିବାର ବାସନା ଥାଏ, ଯଦି ବାସୁଦେବଙ୍କ ବାସନ୍ତୀ ରାସଲୀଳାର ବିଳାସକଳା ବା ରସଗୂଢ଼ାର୍ଥ ସମ୍ବନ୍ଧରେ ଜାଣିବାକୁ କୌତୂହଳ ଥାଏ, ତେବେ ମୋର ଏହି ମଧୁର-କୋମଳ-କାନ୍ତ ପଦାବଳୀ ମଣ୍ଡିତ ରଚନାବଳୀ ଶ୍ରବଣ କରନ୍ତୁ ।" (୧)

ଏହାପରେ ପ୍ରଥମ ଗୀତରେ ସେ ସ୍ୱ ଇଷ୍ଟଦେବ ଜଗଦୀଶ ବା ଜଗନ୍ନାଥଙ୍କ ଉଦ୍ଦେଶ୍ୟରେ ଚିର ଅମର ଓ ଚିର ଭାସ୍ୱର 'ଦଶାବତାର ସ୍ତୁତି' ଗାନକରି ଶେଷରେ ଶ୍ରୀଜଗନ୍ନାଥଶ୍ରୀ କୃଷ୍ଣଙ୍କୁ 'ଦଶାକୃତିକୃତ୍' ପରଂବ୍ରହ୍ମ ରୂପେ ପ୍ରତିପାଦନ କରିଛନ୍ତି ।

ପ୍ରଥମ ଗୀତ ପରି ଦ୍ୱିତୀୟ ଗୀତର ପ୍ରତ୍ୟେକ ପଦ ପରେ 'ଜୟ ଜୟ ଦେବ ହରେ' ଘୋଷାରେ ଭକ୍ତକବି ଶ୍ରୀହରି ବା ଶ୍ରୀଜଗନ୍ନାଥଙ୍କ ମହିମା କୀର୍ତ୍ତନ କରିଛନ୍ତି । ଗୀତ ଶେଷରେ ସେ ଭକ୍ତିତଦ୍‌ଗତ ହୃଦୟରେ ଗାଇଛନ୍ତି "ହେ ଶ୍ରୀମୁଖଚନ୍ଦ୍ରଚକୋର ବା ଲକ୍ଷ୍ମୀଙ୍କ ମୁଖଚନ୍ଦ୍ର ପ୍ରତି ଚକୋରତୁଲ୍ୟ ସଲାଳସ ଦୃଷ୍ଟିପାତକାରୀ ପ୍ରଭୁ ଜଗନ୍ନାଥ ! ଆମ୍ଭେମାନେ ଆପଣଙ୍କର ଚରଣପଦ୍ମରେ ପ୍ରଣତ ହେଉଅଛୁ । ଆପଣ ଆମ୍ଭମାନଙ୍କ ମଙ୍ଗଳ ବିଧାନ କରନ୍ତୁ ! (୨) ପୁନର୍ବାର ଭକ୍ତକବି ଭାବବିହ୍ୱଳ ହୋଇ ପ୍ରାର୍ଥନା

---

(୧) ଯଦି ହରିସ୍ମରଣେ...... ଜୟଦେବ ସରସ୍ୱତୀମ୍, ପ୍ରଥମ ସର୍ଗ, ତୃତୀୟ ଶ୍ଳୋକ
(୨) ଦ୍ୱିତୀୟ ଗୀତର ଶେଷାଂଶ

କରିଛନ୍ତି— ହେ ପ୍ରଭୋ ! ମୋ ଦ୍ୱାରା ବିରଚିତ ଏହି ଉଜ୍ଜ୍ୱଳ ମଙ୍ଗଳଦାୟିନୀ ଗୀତ ଶ୍ରୋତାମାନଙ୍କର ଆନନ୍ଦବର୍ଦ୍ଧନ କରୁ ।

ଏତିକରେ ସନ୍ତୁଷ୍ଟ ନ ହୋଇ ସନ୍ଥଶିରୋମଣି ଧର୍ମପ୍ରାଣ ଜନତାର ହୃଦୟରେ ଭକ୍ତିଭାବ ଜାଗ୍ରତ କରିବା ଉଦ୍ଦେଶ୍ୟରେ ଅଧିକାଂଶ ଗୀତର ଭଣିତାରେ ଏହାର ମାହାତ୍ମ୍ୟ କୀର୍ତ୍ତନ କରିଛନ୍ତି । ଯଥା—

| | |
|---|---|
| "ଉଦୟତୁ ହରିଚରଣସ୍ମୃତିସାରମ୍ | ତୃତୀୟ ଗୀତ ଭଣିତା |
| ବିତନୋତୁ ଶୁଭାନି ଯଶସ୍ୟମ୍ | ଚତୁର୍ଥ ,, |
| ହରିଚରଣସ୍ମରଣଂ ପ୍ରତି ସଂପ୍ରତି ପୁଣ୍ୟବତାମନୁରୂପମ୍ | ପଞ୍ଚମ ,, |
| ସୁଖୟତୁ କେଶବପଦମୁପନୀତମ୍ | ନବମ ,, |
| ମନସି × × ହରିରୁଦୟତୁ ସୁକୃତେନ | ଦଶମ ,, |
| ହରିମଭିସଦୟଂ ନମତ ସୁକୃତ କମନୀୟମ୍ | ଏକାଦଶ ,, |
| କଲିକଳୁଷଂ ଜନୟତୁ ପରିଶମିତମ୍ | ଚତୁର୍ଦ୍ଦଶ ,, |
| କଲିଯୁଗଚରିତଂ ନ ବସତୁ ଦୁରିତଂ | ପଞ୍ଚଦଶ ,, |
| ପ୍ରବିଶତୁ ହରିରପି ହୃଦୟମନେନ | ଷୋଡ଼ଶ ,, |
| ସୁଖୟତୁ ରସିକଜନଂ ହରିଚରିତମ୍ | ଅଷ୍ଟାଦଶ ,, |
| ହରିବିନିହିତମନସାମଧିତିଷ୍ଠତୁ କଣ୍ଠତଟୀମବିରାମମ୍ | ବିଂଶତିତମ ,, |
| କୁରୁ ମୁରାରେ ମଙ୍ଗଳଶତାନି | ଏକବିଂଶତିତମ ,, |
| ପ୍ରଣମତ ହୃଦି ବିନିଧାୟ ହରିଂ ସୁଚିରଂ ସୁକୃତୋଦୟସାରମ୍ | ଦ୍ୱାବିଂଶତିତମ ,, |
| ଶ୍ରୀ ଜୟଦେବ ଭଣିତ ମିଦମନୁପଦନିଗଦିତ- ମଧୁରିପୁପ୍ରମୋଦମ୍ | ତ୍ରୟୋବିଂଶତିତମ ଗୀତ |
| ହରିଚରଣସ୍ମରଣାମୃତ ନିର୍ମିତକଲିକଳୁଷଜ୍ୱରଖଣ୍ଡନେ — | ଚତୁର୍ବିଂଶତିତମ ,, |

ଉପରେ ଉଦ୍ଧୃତ ଭଣିତା ଗୁଡ଼ିକ ପାଠକଲେ ସ୍ପଷ୍ଟ ଜଣାଯାଏ ଯେ, 'ହରିଚରଣଶରଣ' ଶ୍ରୀ ଜୟଦେବ ଶ୍ରୀଜଗନ୍ନାଥଙ୍କ ନିକଟରେ ଶ୍ରୀଗୀତଗୋବିନ୍ଦକୁ ନିଜର ପ୍ରାଣପ୍ରିୟା 'ଗୀତଜ୍ଞା' 'ଲୟତାନ ନର୍ତ୍ତନକଳାକୁଶଳା' ପତ୍ନୀ ପଦ୍ମାବତୀଙ୍କ ସହ ନୃତ୍ୟ ଗାନକରି ଶ୍ରୋତାମାନଙ୍କର 'କଳିଯୁଗ ଚରିତ ଦୁରିତବହ୍ନି' ନାଶନ ପାଇଁ ପୂର୍ଣ୍ଣପ୍ରାଣରେ ଉଦ୍ୟମ କରୁଥିଲେ ।

## ମୂଳ ଶ୍ରୀଗୀତଗୋବିନ୍ଦ ୭୨ଟି ଶ୍ଳୋକବିଶିଷ୍ଟ—

ଉତ୍କଳରେ ପରଂପରା କ୍ରମେ ପ୍ରଚଳିତ ନିମ୍ନୋକ୍ତ ଶ୍ଳୋକରୁ ଜଣାଯାଏ ଯେ, ବିଭିନ୍ନ ରାଗରେ ନିବଦ୍ଧ ୨୪ଟି ଗୀତ ଓ ବିଭିନ୍ନ ବୃତ୍ତରେ ଗ୍ରଥିତ ୭୨ଟି ଶ୍ଳୋକର

ସମାବେଶରେ ଦ୍ୱାଦଶସର୍ଗ ବିଶିଷ୍ଟ ମୂଳ ଶ୍ରୀଗୀତଗୋବିନ୍ଦ ମହାକାବ୍ୟ ପଣ୍ଡିତପ୍ରବର ଶ୍ରୀ ଜୟଦେବ ଶ୍ରୀଜଗନ୍ନାଥଙ୍କ ପ୍ରୀତିବିଧାନ ନିମିତ୍ତ ରଚନା କରିଥିଲେ । ଯଥା—

"ସର୍ଗୈର୍ଦ୍ୱାଦଶଭିସ୍ତୁ ତଦ୍ଧି ଗୁଣିତୈର୍ଗାଥାପ୍ରସର୍ଗାଂଶକୈଃ
ଶ୍ଳୋକୈଃ ଷଡ଼ଗୁଣିତୈଃ ସୁବୃତ୍ତଭଣିତୈ ର୍ଗାନନ୍ଦସନ୍ଦୋହଦଂ
ପ୍ରୀତ୍ୟୈ ଶ୍ରୀପୁରୁଷୋତ୍ତମସ୍ୟ ରଚିତଂ ଶ୍ରୀଗୀତଗୋବିନ୍ଦକଂ
ଜାୟାଙ୍କ୍ରୀ ଜୟଦେବ ପଣ୍ଡିତବରେଣେଦଂ ସମନ୍ତାତ୍ପରମ୍ ॥" (୩)

ଉତ୍କଳର ପ୍ରାଚୀନ କବିମାନେ ଏହି ପରଂପରାକୁ ସ୍ୱୀକାର କରୁଥିବା ସପ୍ତଦଶ ଶତାବ୍ଦୀର ପ୍ରଥମ ଭାଗରେ ଆବିର୍ଭୂତ ବୈଷ୍ଣବକବି ବୃନ୍ଦାବନ ଦାସ କୃତ ଶ୍ରୀଗୀତଗୋବିନ୍ଦର ପଦ୍ୟାନୁବାଦ **ରସବାରିଧି** ଗ୍ରନ୍ଥପାଠରୁ ଜଣାଯାଏ । (୪) ଯଥା—

"ଶୁଣ ଏଥି ଉତ୍ତରେ ଦିବ୍ୟଗୀତ, ସାଧୁସୁଜନେ କର ଏକମତ । ୨୧
ଗାଥା ଚବିଶ **ଶ୍ଳୋକ ବାଅସ୍ତରି,** ସର୍ଗ ଦ୍ୱାଦଶ ବର୍ଣ୍ଣି ଆଦିକରି ।"୨୨

ପରବର୍ତ୍ତୀ କାଳରେ ବଳଭି ଦାସ ନାମକ ଏକ ପଶ୍ଚିମ ଦେଶାଗତ ସନ୍ଥକବି ଖୁରୁଧା ଗଜପତି ପ୍ରଥମ ମୁକୁନ୍ଦଦେବଙ୍କ ୨୧ ଅଙ୍କ ବା ୧୭୭୨—୧୭୭୩ ଖ୍ରୀଷ୍ଟାବ୍ଦରେ ଶ୍ରୀଗୀତଗୋବିନ୍ଦର ଏକ ପଦ୍ୟାନୁବାଦ କରିଥିଲେ । ଏହାର ନାମ **ଅର୍ଥଗୋବିନ୍ଦ ।** ଏଥିରେ ଅନୁବାଦକ ଶ୍ରୀଗୀତଗୋବିନ୍ଦର ଶ୍ଳୋକସଂଖ୍ୟା ୭୨ ବୋଲି ଦୁଇଟି ସ୍ଥାନରେ ଉଲ୍ଲେଖ କରିଛନ୍ତି । ଯଥା—

"ଶ୍ରୀଗୀତଗୋବିନ୍ଦର ଅର୍ଥ । ଛନ୍ଦିବ ଅଧ୍ୟାମତେ ଗୀତ
ଚୌବିଶ ଗାଥା ଗୀତମତେ । **ବାସ୍ତରି ଶୋଲକ ସହିତେ**
ଲେଖନ କରିବି ଗୋସାଇଁ । ଅର୍ଥଗୋବିନ୍ଦ ନାମେ ମୁହିଁ ।
ଏ ବାଂଛା ପୂର୍ଣ୍ଣକର ମୋରେ । ଜୟଯୁକ୍ତ ହୋଇ ଭୂମ୍ବରେ ।"
(ଅର୍ଥଗୋବିନ୍ଦ, ପ୍ରଥମ ଅଧ୍ୟାୟ) (୫ କ)

କବି ସ୍ୱ 'ଅର୍ଥଗୋବିନ୍ଦ'ର ୨୭ ଅଧ୍ୟାୟରେ ପୁଣି ଶ୍ରୀଗୀତଗୋବିନ୍ଦର ପାଠ ବିଷୟ ଉଲ୍ଲେଖ କରି କହିଛନ୍ତି— ଯଥା—

---

(୩) ବନ୍ଧୁବର ଶ୍ରୀ ଚକ୍ରଧର ମହାପାତ୍ରଙ୍କ ଦ୍ୱାରା ଏହି ମୂଲ୍ୟବାନ ଶ୍ଳୋକ ସଂଗୃହୀତ 'ନବଜୀବନ', ଏକାଦଶ ଭାଗ, ଏକାଦଶ ସଂଖ୍ୟା,

(୪) ପ୍ରାଚୀ ସମିତି ଦ୍ୱାରା ପ୍ରକାଶିତ 'ରସବାରିଧି', ପୃ ୮

(୫ କ) ସାଂସ୍କୃତିକ ବ୍ୟାପାର ବିଭାଗ ଦ୍ୱାରା ପ୍ରକାଶିତ ବଳଭି ଦାସଙ୍କ ଅର୍ଥଗୋବିନ୍ଦ ପୃ-୭

ଗୀତମ୍—"ଚଉବଂଶ ଗାଥା ବାସ୍ତର ଶ୍ଳୋକଂ
ଦ୍ୱାଦଶ ସର୍ଗ ମୁକ୍ତଗନ୍ତଲୋକଂ
ସକଳଶାସ୍ତ୍ର ଏହୁ ବେଦପୁରାଣା
ସର୍ବସଙ୍ଗୀତା ଗୀତଗୋବିନ୍ଦନାମା"

ଅର୍ଥ—ଚଉବଂଶ ଗାଥା ଗୀତମତେ । ବାଅସ୍ତର ଶ୍ଳୋକ ସର୍ବତେ
ଦ୍ୱାଦଶ ସର୍ଗ ଏହୁ ଭାବ । କାବ୍ୟ ଉପରେ ମହାକାବ୍ୟ ।
ସକଳଶାସ୍ତ୍ର ପରେ ସାର । ବ୍ରହ୍ମଜ୍ଞାନଙ୍କୁ ଏ ବିଚାର ।
ସର୍ବଶଂସିତ ଗୀତ ସେହି । ଗୀତଗୋବିନ୍ଦ ନାମ ସେହି । (୫ଖ)

'ଅର୍ଥ ଗୋବିନ୍ଦ'ରେ ବଳରାମ ଦାସ ନିମ୍ନୋକ୍ତ ୭୨ଟି ଶ୍ଳୋକର ପଦ୍ୟାନୁବାଦ ପ୍ରଦାନ କରିଛନ୍ତି । ଯଥା—

**ଶ୍ରୀ ଗୀତଗୋବିନ୍ଦ, ପ୍ରଥମ ସର୍ଗ—**

୧) ମେଘୈର୍ମେଦୁର... ୨) ବାଗ୍‌ଦେବତା, ୩) ଯଦି ହରିସ୍ମରଣେ
୪) ବାଚଃ ପଲ୍ଲବୟତି ୫) ବେଦାନୁଦ୍ଧରତେ ୬) ପଦ୍ମାପୟୋଧର
୭) ବସନ୍ତେ ବାସନ୍ତୀ ୮) ଦରବିଦଳିତ ମଲ୍ଲୀ ୯) ଉନ୍ମୀଲନମଧୁ
୧୦) ଅନେକ ନାରୀ ୧୧) ବିଶ୍ୱେଷାମନୁରଞ୍ଜନେନ ୧୨) ଆଦ୍ୟୋପାଙ୍ଗ ।

ଇତି ଶ୍ରୀ ଗୀତଗୋବିନ୍ଦେ ମହାକାବ୍ୟେ କବିରାଜ ଜୟଦେବକୃତୌ ସାମୋଦଦାମୋଦରୋ ନାମ ପ୍ରଥମଃ ସର୍ଗଃ ॥

**ଦ୍ୱିତୀୟ ସର୍ଗ—**

୧୩) ବିହରତି ବନେ ରାଧା ୧୪) ଗଣୟତି ଗୁଣଗ୍ରାମଂ
୧୫) ହସ୍ତସ୍ରସ୍ତବିଳାସ ୧୬) ଦୁରାଲୋକଃ
ଇତି—ସ୍ନିଗ୍ଧମାଧବୋ ନାମ ଦ୍ୱିତୀୟଃ ସର୍ଗଃ

**ତୃତୀୟ ସର୍ଗ—**

୧୭) କଂସାରିରପିସଂସାର ୧୮) ଇତସ୍ତତସ୍ତାମନୁ ୧୯) ହୃଦି ବିସଲତା
୨୦) ପାଣୌମାକୁରୁ ୨୧) ଭ୍ରୂ ଚାପେନିହିତ ୨୨) ତାନି ସ୍ପର୍ଶସୁଖାନି
୨୩) ଭ୍ରୂପଲ୍ଲବଂଧନୁରପାଙ୍ଗ ।
ଇତି—ମୁଗ୍ଧମଧୁସୂଦନୋ ନାମ ତୃତୀୟଃ ସର୍ଗଃ ।

---

(୫-ଖ) ଧର୍ମଗ୍ରନ୍ଥ ବ୍ୟାପାର ଭଣ୍ଡାର ଦ୍ୱାରା ପ୍ରକାଶିତ ବଳରାମ ଦାସଙ୍କ **ଅର୍ଥଗୋବିନ୍ଦ**-ପୃ.୪୩

## ଚତୁର୍ଥ ସର୍ଗ—

୨୪) ଯମୁନାତୀର ବାନୀର ୨୫) ଆବାସୋ ବିପିନାସ୍ତରେ ୨୬) ସ୍ମରଭୁରାଂ ଦୈବତ ୨୭) କନ୍ଦର୍ପଜ୍ୱରସଜ୍ୱର ୨୮) କ୍ଷଣମପି ବିରହଃ ।

ଇତି—ସ୍ନିଗ୍ଧମାଧବୋ ନାମ ଚତୁର୍ଥଃ ସର୍ଗଃ ।

## ପଞ୍ଚମ ସର୍ଗ—

୨୯) ଅହମିହ ନିବସାମି ୩୦) ପ୍ରବଂସଥ ସମଂ ୩୧) ବକରଟ ମୁହୁଃ
୩୨) ତ୍ୱଦ୍‌ବାମ୍ୟେନ (ଶ୍ରେଣ) ସମଂ ୩୩) ଆଶ୍ଳେଷାଦନୁଚୁମ୍ବନାଦନୁ
୩୪) ସନ୍ତ୍ତ୍ୱଂଚକିତଂ ବିନ୍ୟସ୍ୟନ୍ତୀ ।

ଇତି—ଅଭିସାରିକାବର୍ଣ୍ଣନେ ସାକାଂକ୍ଷପୁଣ୍ଡରୀକାକ୍ଷୋ ନାମ ପଞ୍ଚମ ସର୍ଗଃ ।

## ଷଷ୍ଠ ସର୍ଗ—

୩୫) ଅଥତାଂଗନ୍ତୁମଶକ୍ତାଂ ୩୬) ବିପୁଲପୁଲକପାଳୀ
୩୭) ଅଙ୍ଗେଷ୍ୱାଭରଣଂ କରୋତି ବହୁଶଃ ।

ଇତି—ବାସକ ସଜ୍ଜାବର୍ଣ୍ଣନେ ସୋତ୍କଣ୍ଠବୈକୁଣ୍ଠୋ ନାମ ଷଷ୍ଠଃ ସର୍ଗଃ

## ସପ୍ତମ ସର୍ଗ—

୩୮) ଅତ୍ରାନ୍ତରେ ଚ କୁଲଟା ୩୯) ପ୍ରସରତି ଶଶଧରବିମ୍ବେ ୪୦) ଚରୁ କାଂ କାମପି କାମିନୀ ୪୧) ଅଥାଗତାଂ ମାଧବମନ୍ତରେଣ ୪୨) ବିରହପାଣ୍ଡୁ ମୁରାରି ମୁଖାମ୍ବୁଜ ୪୩) ନାୟାତଃ ସଖି ନିର୍ଦ୍ଦୟୋ ୪୪) ମନୋଭବାନନ୍ଦନଚନ୍ଦନାନିଳ ୪୫) ରିପୁରିବ ସଖୀ ସଂବାସୋଽୟଂ ୪୬) ବାଧା ବିଧେହି ମଳୟାନିଳ ପଞ୍ଚବାଣ ।

ଇତି…ବିପ୍ରଲବ୍ଧାବର୍ଣ୍ଣନେ ନାଗର ନାରାୟଣୋ ନାମ ସପ୍ତମଃ ସର୍ଗଃ ।

## ଅଷ୍ଟମ ସର୍ଗ—

୪୭) ଅଥକଥମପି ଯାମିନୀଂ ବିନୀୟ ୪୮) ରଜନୀଜନିତ…

ଇତି…ଖଣ୍ଡିତାବର୍ଣ୍ଣନେ ବିଲକ୍ଷଲକ୍ଷ୍ମୀପତିର୍ନାମାଷ୍ଟମଃ ସର୍ଗଃ ॥

## ନବମ ସର୍ଗ—

୪୯) ତାମଥ ମନ୍ମଥଖିନ୍ନାଂ ୫୦) ସିନ୍ଧେ ଯଦ୍ ପରୁଷାସି

ଇତି…କଳହାନ୍ତରିତାବର୍ଣ୍ଣନେ ମନ୍ଦମୁକୁନ୍ଦୋ ନାମ ନବମଃ ସର୍ଗଃ ॥

**ଦଶମ ସର୍ଗ—**

୫୧) ଅହାନ୍ତରେ ମସୃଣଗ୍ରେଷ   ୫୨) ପରହରକୃତାତଙ୍କେ
୫୩) ମୁଗ୍ଧେବଧେହ୍ୱ ମସ୍ପି   ୫୪) ବ୍ୟଥଯୁକ୍ତ ବୃଥା ମୌନଂ
୫୫) ବନ୍ଧୁକଦ୍ୟୁତବାନ୍ଧବୋ   ୫୬) ଦୃଶୌ ତବ ମଦାଲସେ
ଇତି···ମାନିନୀବର୍ଣ୍ଣନେ ଚତୁରଚତୁର୍ଭୁଜୋ ନାମ ଦଶମଃ ସର୍ଗଃ ॥

**ଏକାଦଶ ସର୍ଗ—**

୫୭) ସୁଚିର ମନୁନୟେନ   ୫୮) ସା ମାଂ ଦ୍ରକ୍ଷ୍ୟତିବକ୍ଷ୍ୟତି
୫୯) ଅକ୍ଷ୍ଣୋର୍ନିକ୍ଷିପଦଞ୍ଜନଂ   ୬୦) କାଶ୍ମୀରଗୌରବପୁଷାମଭିସାରିକାଣା
୬୧) ହାରବଲୀ ତରଳ-କାଞ୍ଚନ-କାଞ୍ଚୀଦାମ   ୬୨) ଭ୍ରୂଂ ଚଲ୍ଲେନ ଚରଂ
୬୩) ସ ସାଧ୍ୱସ-ସାନନ୍ଦଂ ଗୋବିନ୍ଦେ   ୬୪) ଅନ୍ତର୍ଗମ୍ୟାପାଙ୍ଗଂ
୬୫) ଭଜନ୍ତ୍ୟାସ୍ତଲ୍ପାନ୍ତଂ କୃତକପଟକଣ୍ଡୂ-ପିହିତ ।
ଇତି···ଅଭିସାରିକା ବର୍ଣ୍ଣନେ ସାନନ୍ଦଗୋବିନ୍ଦୋ ନାମ ଏକାଦଶଃ ସର୍ଗଃ ।

**ଦ୍ୱାଦଶ ସର୍ଗ—**

୬୬) ଗତବତି ସଖୀବୃନ୍ଦେ   ୬୭) ପ୍ରତ୍ୟୂହଃ ପୁଲକାଙ୍କୁରେଣ
୬୮) ଦୋର୍ଭ୍ୟାଂ ସଂଯମିତଂ   ୬୯) ମାରାଙ୍କେ ରତିକେଳିସଙ୍କୁଲରଣାରମ୍ଭେ
୭୦) ତସ୍ୟାଃ ପାଟଳପାଣିଜାଙ୍କିତମୁରୋ   ୭୧) ଉଚ୍ଛ୍ୱସତ୍କୁଚଯୋପରଂ ଚରଂ
୭୨) ଯଦ୍ ଗାନ୍ଧର୍ବକଳାସୁ   ୭୩) ସାଧ୍ୱୀ ମାଧ୍ୱୀକଚିନ୍ତା ନ ଭବତି ।
ଇତି— ସ୍ୱାଧୀନଭର୍ତ୍ତୃକାବର୍ଣ୍ଣନେ ସୁପ୍ରୀତପୀତାମ୍ବରୋ ନାମ ଦ୍ୱାଦଶଃ ସର୍ଗଃ ॥

## ଶ୍ରୀ ଗୀତଗୋବିନ୍ଦରେ ପ୍ରକ୍ଷିପ୍ତ ଶ୍ଲୋକାବଳୀ—

ପ୍ରସିଦ୍ଧ ଉତ୍କଳୀୟ ପଣ୍ଡିତ କବିରାଜ ନାରାୟଣ ଦାସ କୃତ 'ସର୍ବାଙ୍ଗ ସୁନ୍ଦରୀ ଟୀକା' (ପ୍ରାୟ ୧୩୫୦ ଖ୍ରୀଷ୍ଟାବ୍ଦ), ମାନାଙ୍କ ନୃପତି ରଚିତ ଟିପ୍ପଣିକା (ପ୍ରାୟ ୧୪୦୦ ଖ୍ରୀଷ୍ଟାବ୍ଦ), ପ୍ରଖ୍ୟାତ ମୈଥିଳ ପଣ୍ଡିତ ମହାମହୋପାଧ୍ୟାୟ ଶଙ୍କର ମିଶ୍ର କୃତ 'ରସ-ମଞ୍ଜରୀ ଟୀକା' (ପ୍ରାୟ ୧୫୦୦ ଖ୍ରୀଷ୍ଟାବ୍ଦ) ପ୍ରଭୃତି ପ୍ରସିଦ୍ଧ ସଂସ୍କୃତ ଟୀକାରେ ଗୃହୀତ ପାଠ ଏବଂ ଉତ୍କଳରେ ସୁପ୍ରଚଳିତ ଧରଣୀଧର କୃତ 'ଗୀତଗୋବିନ୍ଦ' ଓ ବଳରାମ ଦାସ କୃତ 'ଅର୍ଥଗୋବିନ୍ଦ'ରେ ପ୍ରଦତ୍ତ ଅନୁବାଦ ଉପରେ ନିର୍ଭର କରି ଶ୍ରୀ ଗୀତଗୋବିନ୍ଦରେ ନିମ୍ନୋକ୍ତ ଶ୍ଲୋକଗୁଡ଼ିକ ପରବର୍ତ୍ତୀ କାଳରେ ପ୍ରକ୍ଷିପ୍ତ ହୋଇଥିବାର ସ୍ଥିର କରାଯାଇ ପାରେ । *

* ସ— ସର୍ବାଙ୍ଗସୁନ୍ଦରୀ, ଟି— ଟିପ୍ପଣିକା, ର— ରସମଞ୍ଜରୀ, ଧ— ଧରଣୀଧର, ଅ— ଅର୍ଥଗୋବିନ୍ଦ ।

**ପ୍ରଥମ ସର୍ଗ** (ଶେଷ ଶ୍ଳୋକ)—

"ରସୋଲ୍ଲାସଭରେଣ ବିଭ୍ରମଭୃତାମାଭୀରବାମଭ୍ରୁବାମ୍
ଅଭ୍ୟର୍ଣ୍ଣେ ପରିରଭ୍ୟ ନିର୍ଭରମୁରଃ ପ୍ରେମାନ୍ଧୟା ରାଧୟା ।
ସାଧୁ ତ୍ୱଦ୍ବଦନଂ ସୁଧାମୟମିତି ବ୍ୟାହୃତ୍ୟ ଗୀତସ୍ତୁତି-
ବ୍ୟାଜାଦୁଦ୍ଭଟଚୁମ୍ବିତଃ ସ୍ମିତମନୋହାରୀ ହରିଃ ପାତୁ ବଃ" ॥

(ସ, ର, ଧ, ଓ ଅରେ ପରିତ୍ୟକ୍ତ)

**ଦ୍ୱିତୀୟ ସର୍ଗ** — (ଶେଷ ଶ୍ଳୋକ)

"ସାକୂତ-ସ୍ମିତମାକୁଳାକୁଳ-ଗଳଦ୍ଧମ୍ମିଲ୍ଲମୁଲ୍ଲାସିତ-
ଭ୍ରୂବଲ୍ଲୀକମଲୀକ-ଦର୍ଶିତଭୁଜାମୂଳାର୍ଦ୍ଧ-ଦୃଷ୍ଟସ୍ତନମ୍ ।
ଗୋପୀନାଂ ନିଭୃତଂ ନିରୀକ୍ଷ୍ୟ ଗମିତାକାଙ୍କ୍ଷଶ୍ଚିରଂ ଚିନ୍ତୟ-
ନ୍ନନ୍ତର୍ମୁଗ୍ଧମନୋହରଂ ହରତୁ ବଃ କ୍ଲେଶଂ ନବଃ କେଶବଃ"

(ସ, ଟି, ର, ଧ, ଅ ରେ ପରିତ୍ୟକ୍ତ)

**ତୃତୀୟ ସର୍ଗ**— (ଶେଷ ଶ୍ଳୋକ)

"ତିର୍ଯ୍ୟକ୍କଣ୍ଠବିଲୋଲମୌଳିତରଳୋତ୍ତଂସସ୍ୟ ବଂଶୋଚ୍ଚରଦ୍—
ଗୀତିସ୍ଥାନକୃତାବଧାନଲଲନା ଲକ୍ଷୈର୍ନ ସଂଲକ୍ଷିତାଃ ।
ସମ୍ମୁଗ୍ଧଂ ମଧୁସୂଦନସ୍ୟ ମଧୁରେ ରାଧାମୁଖେନ୍ଦୌ ମୃଦୁ-
ସ୍ପନ୍ଦଂ କନ୍ଦଳିତାଶ୍ଚିରଂ ଦଧତୁ ବଃ କ୍ଷେମଂ କଟାକ୍ଷୋର୍ମୟଃ"

(ସ, ଟି, ର, ଧ, ଅରେ ପରିତ୍ୟକ୍ତ)

**ଚତୁର୍ଥ ସର୍ଗ**— (ଶେଷ ଶ୍ଳୋକ)

"ବୃଷ୍ଟିବ୍ୟାକୁଳ-ଗୋକୁଳାବନ ରସାଦୁଦ୍ଧୃତ୍ୟ ଗୋବର୍ଦ୍ଧନଂ
ବିଭ୍ରଦ୍ବଲ୍ଲବ-ବଲ୍ଲଭାଭିରଧିକା ନନ୍ଦାଚ୍ଚିରଂ ଚୁମ୍ବିତଃ ।
ଦର୍ପେଣୈବ ତଦର୍ପିତାଧରତଟୀ-ସିନ୍ଦୂରମୁଦ୍ରାଙ୍କିତୋ
ବାହୁର୍ଗୋପତନୋସ୍ତନୋତୁ ଭବତାଂ ଶ୍ରେୟାଂସି କଂସଦ୍ୱିଷଃ ॥"

(ସ, ର, ଧ, ଅରେ ପରିତ୍ୟକ୍ତ)

**ପଞ୍ଚମ ସର୍ଗ** – (ଶେଷ ଶ୍ଳୋକ)

"ରାଧା-ମୁଗ୍ଧ-ମୁଖାରବିନ୍ଦ-ମଧୁପସ୍ତ୍ରୈଲୋକ୍ୟ-ମୌଳିସ୍ଥଳୀ-
ନେପଥ୍ୟୋଚିତ-ନୀଳରତ୍ନମବନୀ ଭାରାବତାରାନ୍ତକଃ ॥

ସ୍ୱଚ୍ଛନ୍ଦଂ ବ୍ରଜସୁନ୍ଦରୀଜନମନସ୍ତୋଷ ପ୍ରଦୋଷଶ୍ଚିରଂ
କଂସଧ୍ୱଂସନ-ଧୂମକେତୁରବତୁ ତ୍ୱାଂ ଦେବକୀନନ୍ଦନଃ ॥
(ସ, ଟି, ର, ଧ, ଅରେ ପରିତ୍ୟକ୍ତ)

**ଷଷ୍ଠ ସର୍ଗ**— (ଶେଷ ଶ୍ଳୋକ)

"କଂବଶ୍ରାମ୍ୟସି କୃଷ୍ଣବେଗିଭବନେ ଭଣ୍ଡୀରଭୂମୀରୁହ
ଭ୍ରାତର୍ଯାହି ନ ଦୃଷ୍ଟିଗୋଚରମିତଃ ସାନନ୍ଦନନ୍ଦାସ୍ପଦମ୍ ।
ରାଧାୟା ବଚନଂ ତଦଧ୍ୱଗମୁଖାନ୍ନନ୍ଦାନ୍ତିକେ ଗୋପତୋ
ଗୋବିନ୍ଦସ୍ୟ ଜୟନ୍ତି ସାୟମତିଥି-ପ୍ରାଶସ୍ତ୍ୟଗର୍ଭା ଗିରଃ ॥"
(ସ, ଟି, ର, ଧ, ଅରେ ପରିତ୍ୟକ୍ତ)

**ସପ୍ତମ ସର୍ଗ**— (ଶେଷ ଶ୍ଳୋକ)

"ପ୍ରାତର୍ନୀଳନିଚୋଳମଚ୍ୟୁତମୁରଃ ସମ୍ବୀତ ପୀତାଂଶୁକଂ
ରାଧାୟାଶ୍ଚକିତଂ ବିଲୋକ୍ୟ ହସତି ସ୍ୱୈରଂ ସଖୀମଣ୍ଡଳେ ॥
ବ୍ରୀଡ଼ାଚଞ୍ଚଳମଞ୍ଚଳଂ ନୟନୟୋରାଧାୟ ରାଧାନନେ
ସ୍ମେରସ୍ମେରମୁଖୋଽୟମସ୍ତୁ ଜଗଦାନନ୍ଦାୟ ନନ୍ଦାତ୍ମଜଃ ॥
(ସ, ଟି, ର, ଧ, ଅରେ ପରିତ୍ୟକ୍ତ)

**ଅଷ୍ଟମ ସର୍ଗ**— (ଶେଷ ଶ୍ଳୋକ)

ଅନ୍ତର୍ମୋହନମୌଳିଘୂର୍ଣ୍ଣନଚଳନ୍ମନ୍ଦାରବିସ୍ରଂସନ
ସ୍ତବ୍ଧାକର୍ଷଣଦୃଷ୍ଟିହର୍ଷଣ ମହାମନ୍ତ୍ରଃ କୁରଙ୍ଗୀଦୃଶାମ୍ ।
ଦୃପ୍ୟଦ୍ଦାନବଦୂୟମାନଦିବିଷଦ୍ଦୁର୍ବାରଦୁଃଖାପଦାଂ
ଭ୍ରଂଶଃ କଂସରିପୋର୍ବ୍ୟପୋହୟତୁ ବଃ ଶ୍ରେୟାଂସି ବଂଶୀରବଃ ॥
(ସ, ଟି, ର, ଧ, ଅରେ ପରିତ୍ୟକ୍ତ)

**ନବମ ସର୍ଗ**— (ଶେଷ ଶ୍ଳୋକ)

"ସାନ୍ଦ୍ରାନନ୍ଦପୁରନ୍ଦରାଦି ଦିବିଷଦ୍ବୃନ୍ଦୈରମନ୍ଦାଦର-
ଦାନମ୍ରୈର୍ମୁକୁଟେନ୍ଦ୍ରନୀଳମଣିଭିଃ ସନ୍ଦର୍ଶିତେନ୍ଦିନ୍ଦିରମ୍ ।
ସ୍ୱଚ୍ଛନ୍ଦଂ ମକରନ୍ଦସୁନ୍ଦରଗଳନ୍ମନ୍ଦାକିନୀମେଦୁରଂ
ଶ୍ରୀଗୋବିନ୍ଦପଦାରବିନ୍ଦମଶୁଭସ୍କନ୍ଦାୟ ବନ୍ଦାମହେ ॥
(ସ, ଟି, ର, ଧ, ଅରେ ପରିତ୍ୟକ୍ତ)

**ଦଶମ ସର୍ଗ— (ଶେଷ ଶ୍ଲୋକ)**

"ପ୍ରୀତିଂ ବସ୍ତନୁତାଂ ହରିଃ କୁବଲୟାପୀଡ଼େନ ସାର୍ଦ୍ଧଂରଣେ
ରାଧାପୀନପୟୋଧରସ୍ମରଣକୃତ୍‌କୁମ୍ଭେନ ସମ୍ଭେଦବାନ୍ ।
ଯତ୍ର ସ୍ୱିଦ୍ୟତି ମୀଲତି କ୍ଷଣମଥ କ୍ଷିପ୍ତେ ଦ୍ୱିପେ ତତ୍‌କ୍ଷଣାତ୍
କଂସସ୍ୟାଲମଭୂଜ୍ଜିତଂ ଜିତମିତି ବ୍ୟାମୋହକୋଲାହଳଃ

(ସ, ଟି, ର, ଧ, ଅରେ ପରିତ୍ୟକ୍ତ)

**ଏକାଦଶ ସର୍ଗ— (ଶେଷ ଶ୍ଲୋକ)**

ଜୟଶ୍ରୀବିନ୍ୟସ୍ତୈର୍ମହିତ ଇବ ମନ୍ଦାରକୁସୁମୈଃ
ସ୍ୱୟଂ ସିନ୍ଦୂରେଣ ଦ୍ୱିପ-ରଣମୁଦା ମୁଦ୍ରିତ ଇବ ।
ଭୁଜାପୀଡ଼କ୍ରୀଡ଼ାହତକୁବଲୟା ପୀଡ଼କରିଣଃ
ପ୍ରକୀର୍ଣ୍ଣାସୃଗ୍‌ବିନ୍ଦୁର୍ଜୟତି ଭୁଜଦଣ୍ଡୋ ମୁରଜିତଃ ॥

(ସ, ଟି, ର, ଧ, ଅରେ ପରିତ୍ୟକ୍ତ)

ରାଣାକୁମ୍ଭ କୃତ ରସିକପ୍ରିୟା ଟୀକାରେ 'ଭଜନ୍ତ୍ୟାସ୍ତଲ୍ପାନ୍ତଂ' ଶ୍ଳୋକ ପରେ ନିମ୍ନୋକ୍ତ ଶ୍ଳୋକ ମିଳେ ।

"ସାନନ୍ଦଂ ନନ୍ଦସୂନୁର୍ଦିଶତୁ ମିତିପରଂ ସଂମଦଂ ମନ୍ଦମନ୍ଦଂ
ରାଧାମାଧାୟ ବାହ୍ୱୋର୍ବିବରମନୁଦୃଢ଼ଂ ପୀଡୟନ୍ ପ୍ରୀତିଯୋଗାତ୍ ।
ତୁଙ୍ଗୌ ତସ୍ୟା ଉରୋଜାବତନୁବରତନୋ ନିର୍ଗତୌମାସ୍ମଭୂତାଂ
ପୃଷ୍ଠଂ ନିର୍ଭିଦ୍ୟ ତସ୍ମାଦ୍‌ବହିରତି ବଳିତଗ୍ରୀବମାଲୋକୟନ୍ ବଃ ॥ "

ରସିକାପ୍ରିୟା ଟୀକାରେ 'ଜୟଶ୍ରୀବିନ୍ୟସ୍ତୈ' ଶ୍ଳୋକ ପରେ ନିମ୍ନୋକ୍ତ ଶ୍ଳୋକ ପରିଦୃଷ୍ଟ ହୁଏ ।

"ସୌନ୍ଦର୍ଯ୍ୟୈକନିଧେରନଙ୍ଗଲଳନା-ଲାବଣ୍ୟ-ଲୀଳା-ଯୁଷୋ
ରାଧାୟା ହୃଦି ପଲ୍ୱଲେ ମନସିଜ କ୍ରୀଡ଼ୈକରଙ୍ଗସ୍ଥଳେ ।
ରମ୍ୟୋରଜ-ସରୋଜ-ଖେଳନ ରସିତ୍ୱାଦାତ୍ମନଃ ଖ୍ୟାପୟନ୍
ଧ୍ୟାତୁର୍ମାନସ ରାଜହଂସନିଭତାଂ ଦେୟାନ୍ମୁକୁନ୍ଦୋ ମୁଦମ୍ ॥

(ଉଭୟ ଶ୍ଳୋକ ସ, ଟି, ର, ଧ, ଅରେ ପରିତ୍ୟକ୍ତ)

## ଦ୍ୱାଦଶ ସର୍ଗ—

(୧) ମୀଲଦ୍ଦୃଷ୍ଟି ମିଲତ୍କପୋଲପୁଲକଂ ଶୀତ୍କାରଧାରାବଶା-(ବନ୍ମୀଳିତଦ୍ଦୃଷ୍ଟି)
ଦବ୍ୟକ୍ତାକୁଳକେଳିକାକୁବିକସଦ୍ଦନ୍ତାଂଶୁଧୌତାଧରମ୍ ।
ଶ୍ୱାସୋନ୍ନଦ୍ଧପୟୋଧରୋପରି ପରିଷ୍ୱଙ୍ଗୀ କୁରଙ୍ଗୀଦୃଶୋ
ହର୍ଷୋତ୍କର୍ଷବିମୁକ୍ତନିଃସହତନୋର୍ଧନ୍ୟୋ ଧୟତ୍ୟାନନମ୍"

× × ×

(୨) ବ୍ୟାଳୋଳଃକେଶପାଶସ୍ତରଳିତମଳକୈଃ ସ୍ୱେଦଲୋଲୌ କପୋଲୌ (ବ୍ୟାକୋଶ)
କ୍ଲିଷ୍ଟା ଦଷ୍ଟାଧରଶ୍ରୀଃ କୁଚକଳସରୁଚା ହାରିତା ହାରୟଷ୍ଟିଃ
କାଞ୍ଚୀ କାଞ୍ଚିଦ୍ଗତାଶାଂ ସ୍ତନଜଘନପଦଂ ପାଣିନାଚ୍ଛାଦ୍ୟ ସଦ୍ୟଃ
ପଶ୍ୟନ୍ତୀ ସତ୍ରପଂ ମାଂ ତଦପି ବିଲୁଳିତସ୍ରଗ୍ଧରେୟଂ ଧିନୋତି ॥

× × ×

(୩) ପର୍ଯ୍ୟଙ୍କୀକୃତନାଗନାୟକଫଣାଶ୍ରେଣୀମଣୀନାଂ ଗଣେ
ସଂକ୍ରାନ୍ତପ୍ରତିବିମ୍ବସଂବଳନୟା ବିଭ୍ରଦ୍ବିଭୁପ୍ରକ୍ରିୟାମ୍ ।
ପାଦାମ୍ଭୋରୁହଧାରିବାରିଧିସୁତାମକ୍ଷ୍ଣାଂ ଦିଦୃକ୍ଷୁଃ ଶତୈଃ
କାୟବ୍ୟୂହମିବାଚରନ୍ନୁପଚିତାକୂତୋ ହରିଃ ପାତୁ ବଃ ॥

× × ×

(୪) ତ୍ୱାମପ୍ରାପ୍ୟ ମୟି ସ୍ୱୟଂବରପରାଂ କ୍ଷୀରୋଦତୀରୋଦରେ
ଶଙ୍କେ ସୁନ୍ଦରି । କାଳକୂଟମପିବନ୍ମୂଢୋ ମୃଡାନୀପତିଃ ।
ଇତ୍ଥଂ ପୂର୍ବକଥାଭିରନ୍ୟମନସୋ ବିକ୍ଷିପ୍ୟ ବକ୍ଷୋଽଞ୍ଚଳମ୍
ରାଧାୟାସ୍ତନକୋରକୋପରି ମିଲନ୍ନେତ୍ରୋ ହରିଃ ପାତୁ ବଃ ॥

× × ×

(୫) ସାଧ୍ୱୀ ମାଧ୍ୱୀକଚିନ୍ତା ନ ଭବତି ଭବତଃ ଶର୍କରେ କର୍କଶାସି
ଦ୍ରାକ୍ଷେ ଦ୍ରକ୍ଷ୍ୟନ୍ତି କେ ତ୍ୱାମମୃତ ମୃତମସି କ୍ଷୀରନୀରଂ ରସସ୍ତେ ।
ମାକନ୍ଦ କ୍ରନ୍ଦ କାନ୍ତାଧର ଧରଣିତଳଂ ଗଚ୍ଛ ଯଚ୍ଛନ୍ତି ଯାବ-
ଦ୍ଭାବଂ ଶୃଙ୍ଗାରସାରସ୍ୱତମିହ ଜୟଦେବସ୍ୟ ବିଷ୍ୱଗ୍ବଚାଂସି ।

(୬) ଶ୍ରୀ ଭୋଜଦେବପ୍ରଭବସ୍ୟ ବାମାଦେବୀସୁତ ଶ୍ରୀ ଜୟଦେବକସ୍ୟ
ପରାଶରାଦିପ୍ରିୟବନ୍ଧୁକଣ୍ଠେ ଶ୍ରୀଗୀତଗୋବିନ୍ଦକବିତ୍ୱମସ୍ତୁ ।

ଇତି— ସ୍ୱାଧୀନଭର୍ତ୍ତୃକା ବର୍ଣ୍ଣନେ ସୁପ୍ରୀତପୀତାମ୍ବରୋ ନାମ ଦ୍ୱାଦଶଃ
ସର୍ଗଃ । ସମାପ୍ତଶ୍ଚାୟଂ ଗ୍ରନ୍ଥଃ ॥

(୭) ରାଣାକୁମ୍ଭଙ୍କ ରସିକପ୍ରିୟା ଟୀକା ଶେଷରେ ନିମ୍ନୋକ୍ତ ଶ୍ଳୋକ ମିଳେ—

ଇତ୍ଥଂ କେଳିତତୀର୍ବିହୃତ୍ୟ ଯମୁନାକୂଳେ ସମଂ ରାଧୟା
ତଦ୍‌ରୋମାବଳି-ମୌକ୍ତିକାବଳି ଯୁଗେ ବେଣୀଭ୍ରମଂ ବିଭ୍ରତି
ତତ୍ରାହ୍ଲାଦି କୁଚପ୍ରୟାଗଫଳୟୋ ର୍ଲିପ୍‌ସାବତୋର୍ହସ୍ତୟୋ
ର୍ବ୍ୟାପାରାଃ ପୁରୁଷୋତ୍ତମସ୍ୟ ଦଦତୁ ସ୍ଫୀତାମୁଦଂ ସଂପଦମ୍

ଦ୍ୱାଦଶ ସର୍ଗର ଏ ସାତଟି ଶ୍ଳୋକର ବ୍ୟାଖ୍ୟା ମାନାଙ୍କ କୃତ 'ଟିପ୍‌ପଣିକା' ଓ ଧରଣୀଧରଙ୍କ ପଦ୍ୟାନୁବାଦରେ ମିଳେନାହିଁ । ଅର୍ଥଗୋବିନ୍ଦରେ କେବଳ 'ସାଧ୍ୱୀମାଧ୍ୱୀକଚିନ୍ତା' ଶ୍ଳୋକର ଅର୍ଥ ଦିଆଯାଇଛି । ଏହାକୁ ବାଦ୍‌ଦେଲେ ତା'ର ଶ୍ଳୋକସଂଖ୍ୟା ପରଂପରାସମ୍ମତ ୭୨ ହେବ । କବିରାଜ ନାରାୟଣ ଦାସ ଏଥିମଧ୍ୟରୁ ଶ୍ରୀ ଭୋଜରାଜ ପ୍ରଭବସ୍ୟ' ଶ୍ଳୋକଟିକୁ ଗ୍ରହଣ କଲେମଧ୍ୟ ଏହାର ବ୍ୟାଖ୍ୟା କରି-ନାହାନ୍ତି । ଶଙ୍କର ମିଶ୍ର ଏଥିରୁ ଗୋଟିଏଟିକୁ ବାଦ୍‌ ଦେଇଛନ୍ତି । ପୁନଶ୍ଚ ଚତୁର୍ଥ ସର୍ଗର 'ଯା ରୋମାଞ୍ଚତି' ଓ ଦଶମ ସର୍ଗରେ 'ଶଶିମୁଖି ତବ ଭାତି' ଏହି ଦୁଇଟି ଶ୍ଳୋକ ସର୍ବାଙ୍ଗ-ସୁନ୍ଦରୀ' ଓ ରସିକପ୍ରିୟାରେ ମିଳୁଥିଲେ ମଧ୍ୟ ଅର୍ଥଗୋବିନ୍ଦରେ ମିଳୁନାହିଁ । ଯଥା—

"ଯା ରୋମାଞ୍ଚତି ଶୀତ୍କରୋତି ବିଳପତ୍ୟୁତ୍କମ୍ପତେ ତାମ୍ୟତି
ଧ୍ୟାୟତ୍ୟୁଦ୍‌ଭ୍ରମତି ପ୍ରମୀଳତି ପତତ୍ୟୁଦ୍‌ଯାତି ମୂର୍ଚ୍ଛତ୍ୟପି ।
ଏତାବତ୍ୟତନୁଜ୍ୱରେ ବରତନୁ ର୍ଜୀବେନ୍ନ କିନ୍ତେ ରସାତ୍
ସ୍ୱର୍ବୈଦ୍ୟପ୍ରତିମ ପ୍ରସୀଦସି ଯଦି ତ୍ୟକ୍ତୋଽନ୍ୟଥା ହସ୍ତକଃ"
(ଚତୁର୍ଥ ସର୍ଗ)

ଧରଣୀଧର ମଧ୍ୟ ଏହି ଶ୍ଳୋକର ଅନୁବାଦ ଦେଇନାହାନ୍ତି । ବଜରୀ ଦାସଙ୍କ ଦ୍ୱାରା ପରିତ୍ୟକ୍ତ ଦଶମ ସର୍ଗର ଶ୍ଳୋକଟି ହେଉଛି—

"ଶଶିମୁଖି ତବ ଭାତି ଭଙ୍ଗୁର-ଭ୍ରୂ
ର୍ଯୁବଜନ ମୋହ-କରାଳ-କାଳସର୍ପୀ
ତଦୁଦିତ ଭୟ ଭଞ୍ଜନାୟ ଯୂନାଂ
ତ୍ୱଦଧର-ସୀଧୁ-ସୁଧୈବ ସିଦ୍ଧମନ୍ତ୍ରଃ" (ଦଶମ ସର୍ଗ)

ଏହି ଶ୍ଳୋକଟି ବଜରୀ ଦାସ ପରିତ୍ୟାଗ କରିଥିଲେ ମଧ୍ୟ ଧରଣୀଧର ଏହାର ଅନୁବାଦ କରିଛନ୍ତି । ଉତ୍କଳୀୟ ପଣ୍ଡିତ ଧନଞ୍ଜୟ ସ୍ୱ 'ସର୍ବାଙ୍ଗ ସୁନ୍ଦରୀ ଟୀକା'ରେ ସମୁଦାୟ

୭୫ଟି ଶ୍ଳୋକର ବ୍ୟାଖ୍ୟା ପ୍ରଦାନ କରିଛନ୍ତି । ସେଥି ମଧ୍ୟରୁ ଚତୁର୍ଥ ସର୍ଗର 'ସା ରୋମାଞ୍ଚିତ', ଦଶମ ସର୍ଗର 'ଶଶିମୁଖି ତବ ଭାତି' ଓ ଦ୍ୱାଦଶ ସର୍ଗର 'ସାଧ୍ୱୀମାଧ୍ୱୀକ-ଚିନ୍ତା' ଶ୍ଳୋକତ୍ରୟ ଅଗ୍ରାହ୍ୟ କଲେ ପରଂପରା ସମର୍ଥିତ ମୂଳ ଶ୍ରୀ ଗୀତଗୋବିନ୍ଦର ୭୨ଟି ଶ୍ଳୋକ ମିଳି ଯାଉଛି ।

ବଙ୍ଗଳାର ପ୍ରସିଦ୍ଧ ଟୀକାକାର ବୃହସ୍ପତି ରାୟମୁକୁଟ କୃତ ଶ୍ରୀ ଗୀତଗୋବିନ୍ଦ ଟୀକାରେ ଦ୍ୱାଦଶ ସର୍ଗର 'ଯଦ୍ ଗାନ୍ଧର୍ବ କଳାସୁ' ଶ୍ଳୋକର ପରେ ନିମ୍ନୋକ୍ତ ଶ୍ଳୋକଟି ରହିଅଛି । ଯଥା—

"ଜୟଶ୍ରୀକାନ୍ତସ୍ୟ ପ୍ରସରତର- ସାରସ୍ୱତବତ
ସ୍ଫୁରଦ୍‌ବୃନ୍ଦେ ଗୋବର୍ଦ୍ଧନଚରଣରେଣୁପ୍ରଣୟିନଃ ।
ଇୟଂ ମେ ବୈଦଗ୍ଧୀ ସୁରତରଳ-ବାଳାଧର-ସୁଧା
ରସସ୍ୟନ୍ଦ-ସ୍ୱାଦୁ ର୍ଜୟତି ଜୟଦେବସ୍ୟ କବିତା" । (୭)

## ପ୍ରକ୍ଷେପର ସମୟ ନିର୍ଦ୍ଧାରଣ—

ଶ୍ରୀ ଜଗନ୍ନାଥ ମନ୍ଦିରରେ ରଚିତ ଓ ନିତ୍ୟ ଆବୃତ୍ତ ଶ୍ରୀ ଗୀତଗୋବିନ୍ଦର ଅତି କ୍ଷିପ୍ରଭାବରେ ଆଦର ଓ ଲୋକପ୍ରିୟତା ବୃଦ୍ଧିରେ ଅନୁପ୍ରାଣିତ ହୋଇ ଶ୍ରୀକ୍ଷେତ୍ରାଧିପ ଏହାର ସମକକ୍ଷ ଏକ ଗୀତକାବ୍ୟ ରଚନା କରିଥିବା ସମ୍ପର୍କରେ ଭାରତର ବିଭିନ୍ନାଞ୍ଚଳରେ ଲିଖିତ କେତେକ ପ୍ରାଚୀନ ଗ୍ରନ୍ଥପାଠରୁ ଜଣାଯାଏ । କିନ୍ତୁ ରାଜ ରଚିତ ଗ୍ରନ୍ଥ ଜଗନ୍ନାଥ ମହାପ୍ରଭୁଙ୍କ ଦ୍ୱାରା ଆଦୃତ ନ ହେବାରୁ ରାଜକବିଙ୍କ ସନ୍ତୋଷ-ବିଧାନ ନିମିତ୍ତ ଶ୍ରୀ ଜଗନ୍ନାଥଙ୍କ ଆଜ୍ଞାରେ ତତ୍‌ପ୍ରଣୀତ ଗ୍ରନ୍ଥରୁ କେତେକ ଉତ୍କୃଷ୍ଟ ଶ୍ଳୋକ ଶ୍ରୀ ଗୀତଗୋବିନ୍ଦରେ ସନ୍ନିବିଷ୍ଟ ହେଲା । ମହାରାଷ୍ଟ୍ରର ସନ୍ଥକବି ମହୀପତି ଏପରି ପ୍ରକ୍ଷିପ୍ତ ଶ୍ଳୋକ ସଂଖ୍ୟା 'ତେଇଶ' ବୋଲି ଉଲ୍ଲେଖ କରିଥିବା ସ୍ଥଳରେ ବୃନ୍ଦାବନବାସୀ ଭକ୍ତକବି ପ୍ରିୟା ଦାସ ଓ ତଦୀୟ ଅନୁଗାମୀ ବଙ୍ଗୀୟ ବୈଷ୍ଣବ କବି କୃଷ୍ଣ ଦାସ ଓ ଓଡ଼ିଆ 'ଦାର୍ଢ୍ୟତାଭକ୍ତି' ରଚୟିତା ମହାନ୍ତ ରାମ ଦାସ ରାଜରଚିତ ଦ୍ୱାଦଶଟି ଶ୍ଳୋକ 'ଶ୍ରୀ ଗୀତଗୋବିନ୍ଦ'ରେ ସ୍ଥାନ ପାଇଥିବା ପ୍ରକାଶ କରିଛନ୍ତି । (୭) କିନ୍ତୁ ବହୁ ଟୀକା ଓ ଓଡ଼ିଆ ଅନୁବାଦର ଆଲୋଚନା ପରେ ପ୍ରକ୍ଷିପ୍ତ ଶ୍ଳୋକ ସଂଖ୍ୟା ନିର୍ଦ୍ଧିଷ୍ଟ ଭାବରେ

---

(୭) ଶ୍ରୀ ହରେକୃଷ୍ଣ ମୁଖୋପାଧ୍ୟାୟ କୃତ 'କବି ଜୟଦେବ ଓ ଶ୍ରୀ ଗୀତଗୋବିନ୍ଦ' ପୃ-୨୨୫

(୭) ପୃ ୨୫୦ ଓ ୨୫୧ ଦ୍ରଷ୍ଟବ୍ୟ ଓ ବଙ୍ଗଳା 'ଶ୍ରୀଭକ୍ତମାଳ' ପୃ ୧୩୩—୧୩୪
"ଜୟଦେବ କୃତ ଗ୍ରନ୍ଥ ଦ୍ୱାଦଶ ଯେ ସର୍ଗେ
ତବ କୃତ ବାର ଶ୍ଳୋକ ଥାକିବେକ ଅଗ୍ରେ" ।

ଦ୍ୱାଦଶାଧିକ ଥିବା ଜଣାଯାଉ ଥିବାରୁ ମହାରାଷ୍ଟ୍ର ଅଞ୍ଚଳରେ ପ୍ରଚଳିତ କିମ୍ବଦନ୍ତୀ ସତ୍ୟାଶ୍ରିତ ରୂପେ ଗୃହୀତ ହୋଇପାରେ ।

ଶ୍ରୀକ୍ଷେତ୍ରର ପଣ୍ଡିତ ମଣ୍ଡଳୀ ଦ୍ୱାରା ଶ୍ରୀ ଗୀତଗୋବିନ୍ଦର ଏହି ରାଜ ସଂସ୍କରଣ ଅନୁମୋଦିତ ହେବା ପରେ ଏହା ଭାରତର ଅନ୍ୟାନ୍ୟ ପ୍ରାନ୍ତର ପଣ୍ଡିତମାନଙ୍କ ଦ୍ୱାରା ଗୃହୀତ ହୋଇଥିଲା । ଚତୁର୍ଦ୍ଦଶ ଶତାବ୍ଦୀର ପ୍ରଥମ ଭାଗରେ ମିଥିଳାରେ ଆବିର୍ଭୂତ ପ୍ରସିଦ୍ଧ ପଣ୍ଡିତ ଶ୍ରୀ ଜଗଦ୍ଧର ସ୍ୱକୃତ ଶ୍ରୀ ଗୀତଗୋବିନ୍ଦର 'ସାରଦୀପିକା' ନାମ୍ନୀ ଟୀକାରେ ଏପରି ଅଷ୍ଟାଦଶଟି ପ୍ରକ୍ଷିପ୍ତ ଶ୍ଳୋକର ବ୍ୟାଖ୍ୟା ପ୍ରଦାନ କରିଥିବାରୁ ଶ୍ରୀଗୀତ-ଗୋବିନ୍ଦର ରାଜ ସଂସ୍କରଣ ଏହା ପୂର୍ବରୁ ରଚିତ ହୋଇଥିବା ସୁନିଶ୍ଚିତ ! ଗୌଡ଼ାଧିପ ଲକ୍ଷ୍ମଣ ସେନଙ୍କ ସଭାକବି ଶ୍ରୀଧର ଦାସଙ୍କ ଦ୍ୱାରା ୧୧୨୭ ଶକାବ୍ଦ ବା ୧୨୦୫ ଖ୍ରୀଷ୍ଟାବ୍ଦରେ ସଙ୍କଳିତ 'ସଦୁକ୍ତିକର୍ଣ୍ଣାମୃତମ୍'ର ଦେବ-ପ୍ରବାହରେ ପ୍ରକ୍ଷିପ୍ତ ରୂପେ ବିବେଚିତ ଶ୍ରୀ ଗୀତଗୋବିନ୍ଦର ଏକାଦଶ ସର୍ଗର ଶେଷଶ୍ଳୋକ 'ଜୟଶ୍ରୀବିନ୍ୟସ୍ତୈ' ଶ୍ଳୋକ ଉଦାହରଣ ସ୍ୱରୂପ ପ୍ରଦତ୍ତ ହୋଇଥିବାରୁ ଶ୍ରୀଧର ଦାସଙ୍କ ସମୟରୁ ଶ୍ରୀଗୀତଗୋବିନ୍ଦର ରାଜସଂସ୍କରଣ ପ୍ରସାର ଲାଭ କରିସାରିଥିଲା । ଅତଏବ ଶ୍ରୀ ଗୀତଗୋବିନ୍ଦ ରଚନାର ଅଳ୍ପକାଳ ପରେ ଏବଂ ୧୨୦୦ ଖ୍ରୀଷ୍ଟାବ୍ଦ ପୂର୍ବରୁ ଏଥିରେ ପ୍ରକ୍ଷିପ୍ତ ଶ୍ଳୋକ ସମୂହ ସନ୍ନିବିଷ୍ଟ ହୋଇଥିବା ଆପାତତଃ ସ୍ଥିର କରାଯାଇ ପାରେ ।

ଆକୁମାରୀ ହିମାଳୟ ସମଗ୍ର ଭାରତବର୍ଷରେ ପ୍ରସାରଲାଭ କରି ଭାରତର ବିଭିନ୍ନ ପ୍ରାନ୍ତୀୟ ସାହିତ୍ୟ ଓ ସଙ୍ଗୀତକୁ ଗଭୀର ଭାବରେ ପ୍ରଭାବିତ କରିଥିବା ଏହି ଅମର କୃତିର ଏକ ବିଶୁଦ୍ଧ, ସଟୀକ ଓ ତଥ୍ୟ ସମ୍ବଳିତ ସଂସ୍କରଣ ପ୍ରକାଶ ଦ୍ୱାରା ଏହି ଯୁଗ-ପ୍ରବର୍ତ୍ତକ ବାଣୀ-ସାଧକଙ୍କର ଉପଯୁକ୍ତ ସ୍ମୃତିରକ୍ଷା କରାଯାଇ ପାରିବ ।

ଓଁ ଶାନ୍ତିଃ ।





[କେନ୍ଦୁଳୀ ଗ୍ରାମର ଭଗ୍ନଦଶାପନ୍ନ ଚଣ୍ଡୀ ମନ୍ଦିର



ଗ୍ରନ୍ଥକର୍ତ୍ତାଙ୍କ ଦ୍ୱାରା
ଜୀର୍ଣ୍ଣୋଦ୍ଧାର ପରେ ଚଣ୍ଡୀ ମନ୍ଦିର



ଦଶାବତାରୁ ପ୍ରକଟିତ ବିଷ୍ଣୁ - କୃଷ୍ଣ ବିଗ୍ରହ
( ଭୁବନେଶ୍ୱର ରାଜ୍ୟ ସଂଗ୍ରହାଳୟରେ ସୁରକ୍ଷିତ



ଚଣ୍ଡୀ ମନ୍ଦିର ନିକଟରେ ନିର୍ମିତ ଶ୍ରୀ ଜୟଦେବ ବାଗ



ଶ୍ରୀ ଜୟଦେବଙ୍କ ରୂପେ ସମ୍ମାନିତ ସନ୍ନ୍ୟାସୀ ବିଗ୍ରହ
( ପ୍ରାଚୀ ରୁଦ୍ରପୁର ଶାସନ )



ଚଣ୍ଡୀ ମନ୍ଦିର ନିକଟରେ
ପୂଜିତ ହେଉଥିବା ମାଧବ ବିଗ୍ରହ



କେନ୍ଦୁଲୀ ଗ୍ରାମର ଇଷ୍ଟ ଦେବୀ ଚଣ୍ଡୀ (ଅଙ୍କିତ)

# — ଶୁଦ୍ଧିପତ୍ର —

| ପୃଷ୍ଠା | ଧାଡ଼ି | ମୁଦ୍ରଣଦୋଷ | ଶୁଦ୍ଧପାଠ |
|---|---|---|---|
| ୨ | ପାଦଟୀକା ୫ | ବଦ୍ଧମାନ | ବର୍ଦ୍ଧମାନ |
| ୪ | ,, ବୃକ୍ଷଲତା | କେନ୍ଦୁପାଠ | କେନ୍ଦୁମାଂଠଣା |
| ୭ | ,, ୧୭ | ବଜଯାନ | ବଜ୍ରଯାନ |
| ୧୯ | ତୃତୀୟ ଅନୁଚ୍ଛେଦ | ଜୀବନୀ ଚରିତ | ଜୀବନ ଚରିତ |
| ୨୭ | ଶେଷ ,, ପ୍ରଥମ ଧାଡ଼ି | ଭକ୍ତ ବିବରଣ | ଉକ୍ତ ବିବରଣ |
| ୨୮ | ୧୦ମ ଧାଡ଼ି | କଥିଲେ | କରିଥିଲେ |
| | ୧୫ଶ ,, | ପ୍ରବାଶ | ପ୍ରକାଶ |
| ୩୧ | ୮ମ ଧାଡ଼ି | ନପେଣ ଚ | ନୃପେଣ ଚ |
| ୪୧ | ଶ୍ଳୋକ ଶେଷ ଧାଡ଼ି | ପେର୍ଚ୍ଚନୋତା | ପେର୍ଚ୍ଚୋନାତା |
| ୪୫ | ୧୭ଶ ଧାଡ଼ି | ଚରଣସ୍ତ୍ରୋ | ଷ୍ଟରଣସ୍ତ୍ରୋ |
| ୪୯ | ୫ମ ,, | ସମୂଭୂତ | ସମୁଦ୍‌ଭୂତ |
| ୪୯ | | ପଦାବଣୀ | ପଦ୍ମାବଣୀ |
| ୬୭ | ୨୦ ଧାଡ଼ି | ବାସ ପ୍ରପ୍ୟାଦାସ | ବାସୀ ପ୍ରିପ୍ୟାଦାସ |
| ୬୮ | ୨୩ ,, | ବଗପୁଟି | ବଷ୍ଟିପୁଟି |
| ୭୪ | ୭ମ ,, | ଶ୍ରୀଜଗନ୍ନାଥ | ଶ୍ରୀଜଗନ୍ନାଥଙ୍କ |
| | ୨୧ ,, | ନକଲ | ସକଳ |
| ୭୫ | ପାଦଟୀକା ୧୪ | ମିଦମଭୂତ | ମିଦମଦ୍‌ଭୁତ |
| ୭୭ | ,, ୨୯ | ମନ୍ତ୍ରଶତମ୍ | ମନ୍ତ୍ରଶାନ୍ତମ୍ |
| ୮୧ | ୫ମ ଧାଡ଼ି | ଧମଗ୍ରନ୍ଥ | ଧର୍ମଗ୍ରନ୍ଥ |
| ୯୭ | | ଧମବଜ୍ର ଧମକେତୁ | ଧୂମବଜ୍ର, ଧୂମକେତୁ |
| ୧୦୪ | ୨୦ ଧାଡ଼ି | ଅନନ | ଅନ୍ୟୂନ |
| ୧୧୨ | ଶ୍ଳୋକ | ଶ୍ରତମାର୍ଗତୋ ଭବାନ୍ୟପତେଃ | ଶ୍ରୁତିମାର୍ଗତୋ, ର୍ଭବାନ୍ନ ପତେଃ |
| ୧୨୬ | ୨୫ ଧାଡ଼ି | ନାଚବଲ୍ଲ × କଛ | ନାଟବେଲ୍ଲୀ × ବଛ |
| ୧୩୨ | ୮ମ ଧାଡ଼ି | ଲକ୍ଷୀ ବଦ୍ଧାସ୍ନିବା | ଲକ୍ଷ୍ମୀଂ ବର୍ଦ୍ଧାୟେବା |
| ୧୩୮ | ୨ୟ ଶ୍ଳୋକ ଶେଷଧାଡ଼ି | ବବେଳଭ୍ରବପୁଃ | ବେଳଭ୍ରବପୁଃ |
| ୧୩୯ | ଶ୍ଳୋକ — ୩ୟ ଧାଡ଼ି | ଶାଙ୍ଗଣଃ | ଶାର୍ଙ୍ଗିଣଃ |

| ପୃଷ୍ଠା | ଧାଡ଼ି | ମୁଦ୍ରଣ ଦୋଷ | ଶୁଦ୍ଧପାଠ |
|---|---|---|---|
| ୧୪୩ | | ସଂଗୀତ ଚଡ଼ାମଣି | ସଂଗୀତ ଚୂଡ଼ାମଣି |
| ୧୬୫ | ପାଦ ଟୀକା ୧୪ | ଗ୍ରନ୍ତି | ଗ୍ରନ୍ଥି |
| ୧୬୮ | ୨୦ ଧାଡ଼ି | ପ୍ରାଣ୍ଟୀପ୍ସୁ | ପ୍ରାନ୍ତୀପ୍ସୁ |
| ୧୬୯ | ୨୧ ପାଦଟୀକା | ପ୍ରାଚୀ ସତ | ପ୍ରାଚୀ ସମିତ |
| ୧୯୬ | ୨୦ ଧାଡ଼ି | ବଠ୍ଠନାଥଜୀ | ବଠ୍ଠଲନାଥଜୀ |
| ୨୦୨ | ୧୪ ,, | ଶ୍ରୀକୃଷ୍ଣ କୀତନ | ଶ୍ରୀକୃଷ୍ଣ କୀର୍ତ୍ତନ |
| ୨୧୫ | ଶେଷ ଅନୁଚ୍ଛେଦ | କବରାଜ ସର | କବରାଜ ସୂର |
| ୨୨୦ | ୨ୟ ଧାଡ଼ି | ବଦନ୍ତ | ବଦନ୍ତ |
| ୨୨୨ | ବାଳବୋଧିନୀ ଟୀକା ଅନୁଚ୍ଛେଦ | ଯଥା, କାବ, ଗର୍ବା | ଯଥା, କାବ୍ୟ, ଗିର୍ବା |
| ୨୩୦ | ଷଷ୍ଠ ଧାଡ଼ି | ସମସ୍ତ, | ସମସ୍ତ |
| ୨୩୬ | ,, | ଶ୍ରୀ ଲସକ୍ଷ୍ମଣ ସେନ | ସ ଶ୍ରୀ ଲକ୍ଷ୍ମଣ ସେନ |
| ୨୪୩ | ୧୦ମ ଧାଡ଼ି | ଜନଶ୍ରୁତିର | ଜନଶ୍ରୁତିର |
| ୨୫୨ | ୨ୟ ଶ୍ଲୋକ ୩ୟ ଧାଡ଼ି | ଲପ୍ସାବତୋ | ଲିପ୍ସାବତୋ |
| ୨୫୫ | ସପ୍ତମ ଧାଡ଼ି | ମରକର | ମରକତ |
| ୨୫୬ | ୧୭ଶ ଧାଡ଼ି | ଗୋଣ୍ଡରୀ | ଗୋଣ୍ଡକରୀ |
| ୨୬୬ | ୧୮ଶ ,, | ପାରପାର୍ଶ୍ୱକଃ | ପାରପାର୍ଶ୍ୱିକଃ |
| ୨୭୭ | ୧୧ଶ ,, | ନାନ୍ତ ନାନ୍ତ | ନାନ୍ତ |
| ୨୭୮ | ୫ମ ,, | କଳଧୌଳା × ଗ୍ରବମ୍ | କଳଧୌତା × ଗ୍ରଳମ୍ |
| ୨୮୨ | ୨ୟ ,, | ଶିବେଲପ୍ସୁତାଂ | ଶିବୌ କଲପ୍ସୁତାଂ |
| ୩୧୦ | ୧୬ଶ ,, | ଚତୁରାନତ | ଚତୁରାନନ |
| ୩୧୭ | ୮ମ ଓ ୯ମ ଧାଡ଼ି | ସାହିତ୍ୟ ରତ୍ନାକର | ସାହିତ୍ୟ ରତ୍ନମାଳା |
| ୩୨୩ | ୬ଷ୍ଠ ଧାଡ଼ି | ଜନେକ | ଜନୈକ |
| ୩୩୩ | (୨୭) | ମାଧୁରୀ ଟୀକା | ଗୀତଗୋବିନ୍ଦ ମାଧୁରୀ |
| ୩୪୪ | ୨ୟ ଓ ୬ଷ୍ଠ ଧାଡ଼ି | ଜର, ଉଦ୍‌ବାମ୍ୟେନ୍ନ | ଜ୍ୱର ଉଦ୍‌ବାମ୍ୟେନ |
| ୩୪୭ | ୧ମ ଧାଡ଼ି | ବଭ୍ରମଭ୍ରୁତା | ବଭ୍ରମଭ୍ରୁତା |
| ୩୪୭ | ସପ୍ତମ ସର୍ଗ ଶେଷଶ୍ଳୋକ, ୧ମ ଧାଡ଼ି | ମଚ୍ୟୁନ୍ତ | ମଚ୍ୟୁତ |
| ,, | ଅଷ୍ଟମ ,, ,, ୪ର୍ଥ ଧାଡ଼ି | ବପୋଦ୍ଧୃତ୍ତ | ବ୍ୟପୋଦ୍ଧୃତ୍ତ |
| ୩୪୮ | ୨୩ଶ ଧାଡ଼ି | ଭାଦାଣ୍ଣନଃ | ଭାଦାମ୍ନନଃ |
| ୩୪୯ | ୧୨ଶ ଧାଡ଼ି | ଧାତଚବାଧେସୁଦା | ଧାତ୍ରବାଚଧସୁଧା |
| ୩୫୦ | ୧୨ଶ ଧାଡ଼ି | ଶ୍ରୀ ଭୋଜରାଜ | ଶ୍ରୀ ଭୋଜଦେବ |
| ,, | ଶେଷଶ୍ଳୋକ ୪ର୍ଥ ଧାଡ଼ି | ଉଧର | ଉଦଧର |